# ଉତ୍ତରପୂର୍ବ ଉପାନ୍ତଓଡ଼ିଶାର
# ଭାଷା ସାହିତ୍ୟ ଓ ସଂସ୍କୃତି

ଡକ୍ଟର ନଗେନ୍ଦ୍ରନାଥ ମହାପାତ୍ର

ଓଡ଼ିଶା ସାହିତ୍ୟ ଏକାଡେମୀ

Digitized by srujanika@gmail.com

# ଉତ୍ତର-ପୂର୍ବ ଉପାନ୍ତ ଓଡ଼ିଶାର ଭାଷା ସାହିତ୍ୟ ଓ ସଂସ୍କୃତି

ଡକ୍ଟର ନଗେନ୍ଦ୍ରନାଥ ମହାପାତ୍ର




ଓଡ଼ିଶା ସାହିତ୍ୟ ଏକାଡେମୀ

Digitized by srujanika@gmail.com

# ଉତ୍ତର-ପୂର୍ବ ଓଡ଼ିଶାର ଭାଷା ସାହିତ୍ୟ ଓ ସଂସ୍କୃତି

ରଚନା :
ଡକ୍ଟର ନଗେନ୍ଦ୍ରନାଥ ମହାପାତ୍ର

ପ୍ରକାଶକ :
**ଓଡ଼ିଶା ସାହିତ୍ୟ ଏକାଡେମୀ**
ସଂସ୍କୃତି ଭବନ, ଭୁବନେଶ୍ୱର-୧୪

ପ୍ରଚ୍ଛଦ : **ଅମର ଜେନା**

**ପ୍ରଥମ ପ୍ରକାଶ : ୧୯୯୭**

ମୁଦ୍ରଣ :
**ଓଡ଼ିଶା ପ୍ରିଣ୍ଟିଂ ୱାର୍କସ**
ମିଶନ ରୋଡ଼, କଟକ-୧

ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସର୍ବସ୍ୱତ୍ୱ ସଂରକ୍ଷିତ

ମୂଲ୍ୟ : ୮୦ ଟଙ୍କା

**UTTARA-PURBA ORISSARA BHASA SAHITYA O SANSKRUTI,** *written by* : **Dr Nagendranath Mohapatra,** *Published by* : **Orissa Sahitya Akademi,** *Sanskruti Bhaban, Bhubaneswar-14, 1st Edition* : **1997,** *Price* : **Rupees Eighty only.**

*ISBN 81-7586-024-3*

Digitized by srujanika@gmail.com

# ଅଗ୍ରଲେଖ

ଓଡ଼ିଶାର ବାଲେଶ୍ୱର, ମୟୂରଭଞ୍ଜ ଓ ମେଦନୀପୁର ଜିଲ୍ଲାକୁ ନେଇ ଉତ୍ତର-ପୂର୍ବ ଓଡ଼ିଶା ଓ ଏହାର ଉପାନ୍ତ ଅଞ୍ଚଳ ଗଠିତ । ଏହି ଅଞ୍ଚଳରେ ଓଡ଼ିଆ ଭାଷାର ଶବ୍ଦସମ୍ଭାର ବହୁ ବୈଚିତ୍ର୍ୟପୂର୍ଣ୍ଣ । ଏଠାରେ ପ୍ରଚଳିତ ଭାଷା, ଲୋକୋକ୍ତି ଢଗଢମାଳି ପ୍ରବଚନକୁ ବ୍ୟବହାର କରି ସେ ଅଞ୍ଚଳର ବହୁ ସାହିତ୍ୟସାଧକ ସେମାନଙ୍କ ରଚନାକୁ ସମୃଦ୍ଧ କରିଛନ୍ତି । ସେମାନଙ୍କ ମଧ୍ୟରେ ବ୍ୟାସକବି ଫକୀରମୋହନ ସେନାପତି ଅଗ୍ରଗଣ୍ୟ । ସାଂପ୍ରତିକ କାଳର ସ୍ୱନାମଧନ୍ୟ ଗାଳ୍ପିକ ଶ୍ରୀ ମନୋଜ ଦାସ ତାଙ୍କ ରଚନାରେ ଏହି ଲୋକୋକ୍ତି ଓ ଲୌକିକ ଶବ୍ଦାବଳୀର ସଫଳ ପ୍ରୟୋଗ କରି ଲୋକପ୍ରିୟ ହୋଇ ପାରିଛନ୍ତି ।

ଖ୍ରୀ. ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ଧଳଭୂମି ଓ ମେଦନୀପୁର ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା । ମେଦନୀପୁର ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଯିବା ପରେ ସୁଦ୍ଧା ଓଡ଼ିଆ ଭାଷା ଏହି ଅଞ୍ଚଳରେ ପ୍ରଚଳିତ ଥିବା ବିଷୟରେ ଜନ୍‌ବିମ୍‌ସ୍ ଲେଖିଛନ୍ତି । ବ୍ୟାସକବି ଫକୀରମୋହନ ସେନାପତି ତାଙ୍କ ଆତ୍ମଜୀବନ ଗ୍ରନ୍ଥରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି ଯେ ମେଦନୀପୁର ଜିଲ୍ଲାର ବାଇଶ ଶହ ମାଇଲ ଦକ୍ଷିଣାଞ୍ଚଳ ଜଗୋଳା ଓଡ଼ିଆ ଭାଷୀ ଅଧ୍ୟୁଷିତ ଅଞ୍ଚଳ ଏବଂ ସେମାନଙ୍କ ଘରେବାହାରେ, କଥାଭାଷା, ଚିଠିପତ୍ରର ଭାଷା· ଦଲିଲଦସ୍ତାବିଜ୍, ସିରସ୍ତା କେବଳ ଓଡ଼ିଆ ଭାଷାରେ ଲେଖାପଢ଼ା ହେଉଥିଲା । କଚେରୀଭାଷା ମଧ୍ୟ ଆଂଶିକ ଓଡ଼ିଆ ଥିଲା । ଏହି ଉପାନ୍ତ ଅଞ୍ଚଳର ଭାଷା, ସାହିତ୍ୟ ଓ ସଂସ୍କୃତି ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ଦ୍ୱାରା ବହୁ ଭାବରେ ପ୍ରଭାବିତ ।

ମେଦନୀପୁର ଅଞ୍ଚଳରୁ ସଂଗୃହୀତ ବଙ୍ଗଳା ଲିପିରେ ଲିଖିତ ବହୁ ଓଡ଼ିଆ କବିଙ୍କ ରଚନାବଳୀ ମଧ୍ୟରେ ଅତିବଡ଼ୀ ଜଗନ୍ନାଥ ଦାସକୃତ ଓଡ଼ିଆ ଭାଗବତ ଉଲ୍ଲେଖଯୋଗ୍ୟ । ଏଥିରୁ ସେ ଅଞ୍ଚଳରେ ଓଡ଼ିଆ ଭାଗବତର ପ୍ରଭାବ ଓ ପ୍ରତିଷ୍ଠା ସହଜରେ ଅନୁମେୟ । ଉତ୍ତର ପୂର୍ବାଞ୍ଚଳର ବହୁ ସାହିତ୍ୟିକ ଉଭୟ ଓଡ଼ିଆ ଓ ବଙ୍ଗଳା ଭାଷାରେ ସାହିତ୍ୟ ରଚନା କରି ସେମାନଙ୍କର ଉଜ୍ଜ୍ୱଳ ପ୍ରତିଭାର ପରିଚୟ ଦେଇଛନ୍ତି । ଭାଷାତାତ୍ତ୍ୱିକ ଦୃଷ୍ଟିରୁ ଭୋଗରାଇ, ବାଲିଆପାଳ, ଜଳେଶ୍ୱର, ବସ୍ତା, ଦାନ୍ତନ, ମୋହନପୁର, କାନ୍ଥି ଆଦି ଅଞ୍ଚଳରେ ପ୍ରଚଳିତ ଭାଷା ରୂପରେ ଅଧିକ ଘନିଷ୍ଠତା ଓ ସମନ୍ୱୟ ଥିବା ବିଷୟ

Digitized by srujanika@gmail.com

ସର୍ବେକ୍ଷଣରୁ ଜଣାପଡ଼ୁଛି । ଏଣୁ ସେଠାରେ ପ୍ରଚଳିତ ଲୋକଗଳ୍ପ, ଲୋକଗୀତ ଲୋକୋକ୍ତି କଥିତ ଓଡ଼ିଆ ଭାଷାର ସମୃଦ୍ଧ ପରିପ୍ରକାଶ ଏଥିରେ ସନ୍ଦେହ ନାହିଁ । ଭାଷାର କଳେବର କ୍ରମବର୍ଦ୍ଧମାନ । ଓଡ଼ିଆ ଭାଷା ଅନ୍ୟାନ୍ୟ ବିଦେଶୀୟ ଓ ପ୍ରାଦେଶିକ ଭାଷାରୁ ଶବ୍ଦ ଆହରଣ କରି ସମୃଦ୍ଧ ହେଉଥିବା ବେଳେ ଆଞ୍ଚଳିକ ଉପଭାଷା ଦ୍ୱାରା ପରିପୁଷ୍ଟ ହେବା ଅବଶ୍ୟମ୍ଭାବୀ ଏବଂ ସମୀଚୀନ ମଧ୍ୟ ।

ଉତ୍ତର-ପୂର୍ବ ଓଡ଼ିଶାର ଉପାନ୍ତ ଅଞ୍ଚଳର ଓଡ଼ିଆ, ଭାଷା, ସାହିତ୍ୟ ଓ ସଂସ୍କୃତିର ଅନୁଧ୍ୟାନ, ଅନୁଶୀଳନ ଓ ଗବେଷଣା ନିମିତ୍ତ ଏହି ପୁସ୍ତକର ରଚୟିତା ଡକ୍ଟର ନଗେନ୍ଦ୍ରନାଥ ମହାପାତ୍ରଙ୍କୁ ଏକାଡେମୀ ପକ୍ଷରୁ ଫେଲୋସିପ୍ ପ୍ରଦାନ କରାଯାଇଥିଲା । ଗବେଷଣାଲବ୍ଧ ତଥ୍ୟ ଉପରେ ପର୍ଯ୍ୟବସିତ ଏହି ପୁସ୍ତକରେ ଉତ୍ତର-ପୂର୍ବ ଓଡ଼ିଶାର ଭାଷା, ଲୋକୋକ୍ତି, ଢଗଢମାଳି, ପ୍ରବଚନ ଏବଂ ସାରସ୍ୱତ ଓ ସାଂସ୍କୃତିକ ଐତିହ୍ୟ ଓ ପରମ୍ପରାକୁ ସଂଯୋଜିତ କରି ଡକ୍ଟର ମହାପାତ୍ର ଏହାକୁ ଏକ ପ୍ରାମାଣିକ ତଥା ଉପାଦେୟ ନିବନ୍ଧରେ ପରିଣତ କରିଛନ୍ତି । ତାଙ୍କର ଏହି ଆୟାସସାଧ୍ୟ ମହତ୍ ସାରସ୍ୱତ କାର୍ଯ୍ୟ ପାଇଁ ଏକାଡେମୀ ପକ୍ଷରୁ ତାଙ୍କୁ ସାଧୁବାଦ ଜଣାଉଛୁ । ପୁସ୍ତକର ସମୀକ୍ଷକ ବିଶିଷ୍ଟ ଭାଷାବିତ୍ ଡକ୍ଟର ଖଗେଶ୍ୱର ମହାପାତ୍ର ଆବଶ୍ୟକ ସ୍ଥଳେ କେତେକ ସଂଶୋଧନ ଓ ପରିମାର୍ଜନ କରି ଏହାର ମାନବୃଦ୍ଧିରେ ସହାୟକ ହୋଇଥିବାରୁ ତାଙ୍କୁ କୃତଜ୍ଞତା ଜଣାଉଛୁ । ଏହି ଗ୍ରନ୍ଥଟି ସାଧାରଣ ପାଠକ ଓ ଗବେଷକଙ୍କ ଦ୍ୱାରା ବିଶେଷଭାବେ ଆଦୃତ ହେବ ବୋଲି ମୋର ଏକାନ୍ତ ଆଶା ଓ ବିଶ୍ୱାସ ।

**ହରପ୍ରସାଦ ପରିଚ୍ଛା ପଟ୍ଟନାୟକ**
ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ

ଅଗଷ୍ଟ ୧୫, ୧୯୯୭

Digitized by srujanika@gmail.com

# ସୂଚିପତ୍ର



Digitized by srujanika@gmail.com

**ବିଷୟ** **ପୃଷ୍ଠାଙ୍କ**



Digitized by srujanika@gmail.com

—*—

Digitized by srujanika@gmail.com

# ମୁଖବନ୍ଧ

ଗବେଷଣା କାର୍ଯ୍ୟ ଓ ଅଧ୍ୟୟନ ସମ୍ପର୍କରେ କିଛି ଲେଖିବା ଆଗରୁ ସର୍ବପ୍ରଥମେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଅନ୍ତରର ଭକ୍ତି ଅର୍ପଣ କରି ଓଡ଼ିଶା ସାହିତ୍ୟ ଏକାଡ଼େମୀ କର୍ତ୍ତୃପକ୍ଷଙ୍କୁ ଧନ୍ୟବାଦ ଜଣାଉଅଛି । ଏକାଡ଼େମୀ ତରଫରୁ ପ୍ରଥମ ଥର ଜନ୍ମଶତ୍ତ୍ଵ ଗୋପବନ୍ଧୁଙ୍କ ନାମରେ ଗବେଷଣା କାର୍ଯ୍ୟ ପାଇଁ ବୃତ୍ତି ପ୍ରଦାନ-ଏକାଡ଼େମୀ ଇତିହାସରେ ଏକ ବିଶିଷ୍ଟ ଓ ବଳିଷ୍ଠ ପଦକ୍ଷେପ । ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଉପରେ ଗବେଷଣା କରିବା ଏହି ବୃତ୍ତିର ଉଦ୍ଦେଶ୍ୟ । ସେହି ମହାତ୍ମାଙ୍କ ନାମରେ ପ୍ରଥମ ପ୍ରଦତ୍ତ ବୃତ୍ତିଟି ଆୟୋଜିତ ପରୀକ୍ଷାରେ ପ୍ରଥମ ହୋଇ ପାଇଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ଓଡ଼ିଶାର ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳ କହିଲେ ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର ଉତ୍ତର-ପୂର୍ବାଞ୍ଚଳ ଓ ତତ୍‌ସଂଲଗ୍ନ ମେଦିନୀପୁର ଜିଲ୍ଲା ଅନ୍ତର୍ଗତ ଦକ୍ଷିଣ-ପଶ୍ଚିମାଂଶର ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ବୁଝାଏ । ତନ୍ମଧ୍ୟରୁ ମେଦିନୀପୁର ଜିଲ୍ଲା ଅନ୍ତର୍ଗତ ଅଞ୍ଚଳ "ବିସ୍ମୃତ-ପ୍ରାୟ କଳିଙ୍ଗ ଅଥବା ଓଡ଼ିଶା ସାମ୍ରାଜ୍ୟ"ର ଅନ୍ତର୍ଭୁକ୍ତ ରହିଥିଲା । ଏ ଅଞ୍ଚଳର ଅଧିବାସୀଗଣ ଓଡ଼ିଆ ଭାଷା କହୁଥିଲେ, ଓଡ଼ିଆରେ ଲେଖୁଥିଲେ, ଓଡ଼ିଆ ପଢୁଥିଲେ । ସଂସ୍କୃତିର ରୂପ ଉତ୍କଳୀୟ ଥିଲା । ଓଡ଼ିଆ ସଂସ୍କୃତିର ବାର୍ତ୍ତାବହ ଉତ୍କୃଷ୍ଟ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇଥିଲା । ଓଡ଼ିଆ ସଂସ୍କୃତଜ୍ଞ ପଣ୍ଡିତ ଓ ବିଦ୍ୱାନମାନଙ୍କ ଦ୍ୱାରା ପ୍ରଣୀତ ବହୁ ଉପାଦେୟ ସଂସ୍କୃତ ଗ୍ରନ୍ଥ ଓ ବ୍ୟବହାର ଶାସ୍ତ୍ରର ଶତସଂଖ୍ୟକ ପାଣ୍ଡୁଲିପି ତଥା ଓଡ଼ିଆ କାବ୍ୟକାରମାନଙ୍କ ଦ୍ୱାରା ଲିଖିତ ପୁରାଣ, କାବ୍ୟ ଓ ଚଉତିଶା-ଭଜନ ଆଦିର ଶତ ଶତ ପୋଥି ଏ ଅଞ୍ଚଳର ପ୍ରାୟ ସର୍ବତ୍ର ଏବେବି ଦୃଷ୍ଟିଗୋଚର ହୁଏ । ଓଡ଼ିଆ ଭାଷାର ଲୋକ ସାହିତ୍ୟ ଓ ସଙ୍ଗୀତରେ ଏ ଅଞ୍ଚଳ ସମୃଦ୍ଧ । ଓଡ଼ିଶାର ଉତ୍ତର-ପୂର୍ବାଞ୍ଚଳୀୟ ଉପଭାଷା କଥିତ ଭାଷା ରୂପେ ଭିନ୍ନ ଭିନ୍ନ ଅଞ୍ଚଳର ସାମାନ୍ୟ ଭିନ୍ନତାର ସହ ଏ ସମଗ୍ର ଅଞ୍ଚଳରେ ପ୍ରଚଳିତ । ଓଡ଼ିଆ ଓ ବଙ୍ଗଳାର ବହୁ ପ୍ରସିଦ୍ଧ କୃତିସମୂହରେ ଏ ଉପଭାଷାର ପ୍ରୟୋଗ ଓ ପ୍ରଭାବ ପରିଲକ୍ଷିତ ହୁଏ ।

ଏ ସମଗ୍ର ଅଞ୍ଚଳରେ ଦେଖା ଯାଉଥିବା ଅଗଣିତ ଦେବମନ୍ଦିର ଓ ପୀଠସ୍ଥଳୀ ଏବଂ ବାସଗୃହଗୁଡ଼ିକ ଓଡ଼ିଶୀ ସ୍ଥାପତ୍ୟରୀତିରେ ନିର୍ମିତ ହୋଇଅଛି । ଦେବସ୍ଥାନ-

Digitized by srujanika@gmail.com

ମାନଙ୍କରେ ପ୍ରଚଳିତ ଅନୁଷ୍ଠାନ, ଭୋଗରାଗ, ପର୍ବପର୍ବାଣୀ, ମେଳା ମହୋତ୍ସବ ଓଡ଼ିଆ ରୀତିରେ ସମ୍ପାଦିତ ହେଉଥିଲା ଓ ଏବେବି ହେଉଛି ।

ଦୈନନ୍ଦିନ ଜୀବନର ଅନୁଷ୍ଠାନ ସମୂହ ଯଥା :—ଜାତବନ୍ଧ, ଶିକ୍ଷା ପଦ୍ଧତି, ବିବାହ, ମୃତକ୍ରିୟା କର୍ମ, ପୂଜା, ଉପାସନା, ବାରବ୍ରତ, ଓଷା, ସମ୍ପତ୍ତି ଭାଗ ବଣ୍ଟନ ପ୍ରଭୃତି ବିଭିନ୍ନ ସାମାଜିକ କ୍ରିୟାକଳାପ ପ୍ରଭୃତିରେ ଉତ୍କଳୀୟ ରୀତି ଅନୁସୃତ ହେଉଥିଲା ।

ଏ ସମଗ୍ର ଅଞ୍ଚଳର ପ୍ରତି ଗ୍ରାମରେ ଭାଗବତ ଟୁଙ୍ଗୀ ରହିଥିଲା । ଲୋକମାନଙ୍କ ଘରେ ତାଳପତ୍ର ପୋଥି ପୁରାଣ, କାବ୍ୟଶାସ୍ତ୍ର ପ୍ରଭୃତି ସର୍ବଦା ଭକ୍ତି ସହକାରେ ପ୍ରତ୍ୟହ ପୂଜିତ ଓ ପଠିତ ହେଉଥିଲା । ନାରାୟଣରୂପୀ ଭାଗବତଗାଦି ରହିଥିବା ଭାଗବତ ଟୁଙ୍ଗୀ ଗ୍ରାମର ପଞ୍ଚ ଲୋକଙ୍କର ସାନ୍ଧ୍ୟ ମିଳନ, ବିଚାର ଆଲୋଚନା, ଦଣ୍ଡକ୍ଷମାର ସ୍ଥଳ; ଶାନ୍ତିଶୃଙ୍ଖଳା ରକ୍ଷା ଓ ଆଧ୍ୟାତ୍ମିକଭାବ ପ୍ରଚାରର ପୀଠ ରୂପେ ବିରାଜମାନ କରୁଥିଲା । ବାରମାସରେ ତେର ପର୍ବ ସମୟରେ ଲୀଳା, ସୁଆଙ୍ଗ, ପାଲା, ଦାସକାଠିଆ; ନାଚଗୀତ, ଉଡ଼ା ପାଟ ଆଦି "ତେରପର୍ବ'' ଲାଗି ରହିଥିଲା ।

ଓଡ଼ିଆ ସାଧବ ପୁଅ ସାତ ସମୁଦ୍ର ତେର ନଦୀ ପାରି ହୋଇ ବେପାର ବାଣିଜ୍ୟ କରି ଫେରୁଥିଲେ—ସାଧବ ବୋହୂମାନେ ଆନନ୍ଦରେ ସେମାନଙ୍କୁ ଘରକୁ ପାଛୋଟି ଆଣୁଥିଲେ । ପରିଜନମାନେ ବୋଇତରୁ ଧନରତ୍ନ ବୋହି ଆଣୁଥିଲେ । ତା'ର ନିଦର୍ଶନ ଏବେ କାର୍ତ୍ତିକ ପୂର୍ଣ୍ଣିମାରେ କଦଳୀ ବାଟୁଙ୍ଗା ଭସାଣରେ ସୀମାବଦ୍ଧ । କର୍ପୂର ଉଡ଼ି ଯାଇଛି, ପଡ଼ି ରହିଛି—କନା କଣ୍ଢିକ । ଏବେ ରହିଛି ସେ ସବୁର ସ୍ମୃତି କେବଳ— ସେ ସ୍ମୃତିର ଏକ କରୁଣ ଆଲେଖିକା—"ତଅପୋଇ'' କାହାଣୀ ।

ନନ୍ଦୀ ଐତିହାସିକ ସ୍ମୃତିବିଜଡ଼ିତ ତାମ୍ରଲିପ୍ତି, ପିପିଲି ଓ ବାଲେଶ୍ୱର ବନ୍ଦରର ଗୌରବ ଆଜି ଅବଲୁପ୍ତ । ସାଧବ ପୁଅର ପାରମ୍ପରିକ ସାହସିକ ନଉଯାତ୍ରା ଏ ଅଞ୍ଚଳର ଲୋକ ଗୀତରେ ବର୍ଣ୍ଣିତ ।

ଏ ସବୁ ଅଞ୍ଚଳ ଦିନେ ଓଡ଼ିଆ ପାଇକମାନଙ୍କର କୁହାଟ ଓ ଧାଉଡ଼ି ଶବ୍ଦରେ ମୁଖରିତ ହେଉଥିଲା । ଓଡ଼ିଶାର ଗଜପତିମାନେ ସମରାଭିଯାନରେ, ଶିକାରାଭିଯାନରେ ଯିବେ କି ଆସିବେଲେ ଗଜପୃଥ-ଧୂଳି-ଧୂସରିତ ହେଉଥିଲା ଗ୍ରାମଦାଣ୍ଡ । ରାଇବଣିଆ, ମନ୍ଦାରଣ ପରି ସୁବୃହତ୍ ଭଗ୍ନପ୍ରାପ୍ତ ବହୁ ଦୁର୍ଗ ଏ ସବୁର ମୂକ ସାକ୍ଷୀ ।

Digitized by srujanika@gmail.com

କାଳର କରାଳ ଗତିରେ, ରାଜନୈତିକ ଉତ୍ଥାନ-ପତନ ମଧ୍ୟରେ ଅତୀତର ସେ ପ୍ରାଚୀନ କଳିଙ୍ଗର ସାମ୍ରାଜ୍ୟ ନାହିଁ କିମ୍ବା ସେ ସମସ୍ତ ଅଞ୍ଚଳ ଆଜି ଆଧୁନିକ ଓଡ଼ିଶା ପ୍ରଦେଶ ଭିତରେ ନାହିଁ । ତେବେ ଏସବୁ ଅଞ୍ଚଳର ଲୋକ ସମାଜ ପରିବର୍ତ୍ତିତ ପରିସ୍ଥିତିରେ ପଡ଼ୋଶୀ ରାଜ୍ୟ ସହିତ ମିଶିଯିବାରେ ବାଧ୍ୟ ହୋଇଛନ୍ତି । ଆମର ଆଲୋଚ୍ୟ ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ମେଦିନୀପୁରୀ ଲୋକମାନେ ବର୍ତ୍ତମାନ ପ୍ରଚଳିତ ବଙ୍ଗ ଭାଷା ଶିଖୁଛନ୍ତି, ପଢ଼ୁଛନ୍ତି । ଘରେ ଓଡ଼ିଆ ମିଶ୍ରିତ ବଙ୍ଗଳା ଭାଷାରେ କଥା କୁହନ୍ତି । ଓଡ଼ିଆ ସାମାଜିକ ରୀତିନୀତି ପାଳନ୍ତି । ଓଡ଼ିଆ ଭାଷାରେ ରଚିତ ବହୁ ସାହିତ୍ୟ ଏବେ ବଙ୍ଗ ଲିପିରେ ମୁଦ୍ରିତ ହୋଇ ସେଠାରେ ପ୍ରଚଳିତ ।

ଏହି ପୃଷ୍ଠ ଭୂମି ଉପରେ ମୋର ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ଭାଷା, ସାହିତ୍ୟ ଓ ସଂସ୍କୃତି ଅଧ୍ୟୟନ କରିବା, ଅତୀତରେ ଗୌରବଦୀପ୍ତ ସାମ୍ରାଜ୍ୟର ଇତିହାସ ଓ ସଂସ୍କୃତିକୁ ବର୍ତ୍ତମାନ ସମୟରେ ଉଦ୍‌ଘାଟନ କରିବା—ଏଥିପାଇଁ ମୋ ଜନ୍ମ ମାଟିର ପ୍ରେରଣା ମୋତେ ସତତ ଅନୁସନ୍ଧାନରେ କର୍ମଚଞ୍ଚଳ କରି ଆସିଛି ।

**ଓଡ଼ିଶା ଓ ତାହାର ଉପାନ୍ତ ଅଞ୍ଚଳ** :—ବର୍ତ୍ତମାନ ଓଡ଼ିଶା କହିଲେ ୧୯୩୬ ମସିହା ଅପ୍ରେଲ ପହିଲାରୁ ପୁନର୍ଗଠିତ ଓ ୧୯୪୮ରେ ପରିବର୍ଦ୍ଧିତ ଭୂଖଣ୍ଡ—ଭାରତର ଏକ ସ୍ୱତନ୍ତ୍ର ପ୍ରଦେଶ । ଏହାର ଉତ୍ତର-ପୂର୍ବ ଦିଗରେ ପଶ୍ଚିମ ବଙ୍ଗ, ଉତ୍ତର ଦିଗରେ ବିହାର, ଦକ୍ଷିଣ ଦିଗରେ ଆନ୍ଧ୍ର ପ୍ରଦେଶ, ପଶ୍ଚିମ ଦିଗରେ ମଧ୍ୟ ପ୍ରଦେଶ ଓ ପୂର୍ବରେ ବଙ୍ଗୋପସାଗର ଅବସ୍ଥିତ । ଓଡ଼ିଶାର ଉପାନ୍ତ ଅଞ୍ଚଳ କହିଲେ ସେହିସବୁ ଅଞ୍ଚଳକୁ ବୁଝାଏ—ଯାହା ଓଡ଼ିଶା ସୀମା ଶେଷରେ ଅଛି । ଓଡ଼ିଶା ପ୍ରଦେଶର ଭିତରେ ବା ଓଡ଼ିଶା ପ୍ରଦେଶ ବାହାରେ ଅନ୍ୟ କେଉଁ ପ୍ରଦେଶରେ ଥାଉ । ଐତିହାସିକ ଓଡ଼ିଶା ସାମ୍ରାଜ୍ୟର ସୀମା ବହୁକାଳ ପର୍ଯ୍ୟନ୍ତ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ରହିଥିଲା । ଉତ୍ତରରେ କେତେବେଳେ ସେ କାଳର ଗୌଡ଼ଦେଶ ଉପରେ ବି ଓଡ଼ିଶାର ଆଧିପତ୍ୟ ଥିଲା । ଓଡ଼ିଶାର ପଶ୍ଚିମ ସୀମାନ୍ତ ବହୁକାଳ ଯାଏଁ ଏବର ମଧ୍ୟପ୍ରଦେଶର ପୂର୍ବାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କେତେବେଳେ ଦୂରକୁ ଆହୁରି ପଶ୍ଚିମକୁ ବିସ୍ତୃତ ଥିଲା । ସେ ଓଡ଼ିଶା ୧୯୩୬ ମସିହା ଅପ୍ରେଲ ପହିଲାରେ ଗଠିତ ଓଡ଼ିଶା ପ୍ରଦେଶଠାରୁ ଆକାରରେ ଥିଲା ବହୁତ ବହୁତ ବଡ଼ ।

**ବର୍ତ୍ତମାନ ଗବେଷଣା କାର୍ଯ୍ୟର ପରିସର ଓ ଅଭିମୁଖ୍ୟ** : ଐତିହାସିକ ଓଡ଼ିଶାର ଯେଉଁସବୁ ଅଞ୍ଚଳ ଏ ପ୍ରଦେଶ ବାହାରେ ରହିଗଲା, ସେଠି ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି ଏବେ ଆଉ ଅଛି କି ନାହିଁ, ଥିଲେ କି ଅବସ୍ଥାରେ ଅଛି, ପୁଣି ଏବର ଓଡ଼ିଶା ରାଜ୍ୟ ସୀମାର ଏପାଖ ସେପାଖରେ ଯେଉଁ ଓଡ଼ିଆଭାଷୀ ଲୋକେ

Digitized by srujanika@gmail.com

ଅଛନ୍ତି, ତାଙ୍କ ଭାଷା, ସାହିତ୍ୟ, ସଂସ୍କୃତି କିଭଳି—ଏ ସବୁ ଭଲଭାବେ ଅନୁସନ୍ଧାନ କରିବା ନିମନ୍ତେ ବହୁ ଗବେଷକଙ୍କ ଦୀର୍ଘକାଳୀନ ଆସ୍ଥାସାପେକ୍ଷ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀରୁ ୧୯୮୦ ମସିହାରେ ଗୋଟିଏ ବର୍ଷ ଗୋପବନ୍ଧୁ ବୃତ୍ତି ପାଇ ମୁଁ ବାଲେଶ୍ୱର, ମୟୂରଭଞ୍ଜ ଜିଲ୍ଲାର ସୀମାସଂଲଗ୍ନ ପଶ୍ଚିମ ବଙ୍ଗର ମେଦିନୀପୁର ଜିଲ୍ଲାର ସନ୍ନିହିତ ଅଞ୍ଚଳ, ଯେଉଁଠି ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଏବେ ବି ପ୍ରଚଳିତ, ଅର୍ଥାତ୍ ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟବର୍ତ୍ତୀ ଅଞ୍ଚଳକୁ ଆପାତତଃ ଓଡ଼ିଶାର ଉତ୍ତର-ପୂର୍ବାଞ୍ଚଳ ଭାବରେ ମୋର ଗବେଷଣା କାର୍ଯ୍ୟର କ୍ଷେତ୍ର ଅଧ୍ୟୟନ ପରିସରଭୁକ୍ତ କରିଅଛୁ । ଏତଦ୍‌ବ୍ୟତୀତ ବିହାର ପ୍ରଦେଶ ଅନ୍ତର୍ଗତ ସିଂହଭୂମି ଜିଲ୍ଲାର ଧଳଭୂମ ସବ୍‌ଡ଼ିଭିଜନର ମେଦିନୀପୁର—ମୟୂରଭଞ୍ଜ ସଂଲଗ୍ନ ବହଡ଼ା ଗୋଡ଼ା ଅଞ୍ଚଳକୁ ମଧ୍ୟ ବର୍ତ୍ତମାନ ଗବେଷଣା କାର୍ଯ୍ୟର ପରିସରଭୁକ୍ତ କରିଅଛୁ ।

**ଗବେଷଣା କାର୍ଯ୍ୟର ସୁନିର୍ଦ୍ଦିଷ୍ଟ ଆଭିମୁଖ୍ୟ :**

୧ । ଉପରୋକ୍ତ ଅଞ୍ଚଳରେ ଫର୍ମାଲ ସ୍ତରରେ ବ୍ୟବହୃତ ମାନକ ଓଡ଼ିଆ ଓ ମାନକ ବଙ୍ଗଳା ଭାଷାର ସ୍ୱାତନ୍ତ୍ର୍ୟ ଥିଲାବେଳେ ପ୍ରଚଳିତ କଥିତ ଭାଷାର ରୂପ କିପରି ଜାଣିବା ;

୨ । ଲିଖିତ ସାହିତ୍ୟ ଉପରେ ପ୍ରଚଳିତ କଥିତ ଭାଷାର ପ୍ରଭାବ କିପରି ଜାଣିବା ;

୩ । ରାଜନୈତିକ ସୀମା ରେଖାର ଦୁଇପଟ ଅଞ୍ଚଳର ଅଧିବାସୀମାନଙ୍କର ସାଂସ୍କୃତିକ ଜୀବନଧାରା ସମ୍ପର୍କରେ ଜାଣିବା ସଙ୍ଗେ ସଙ୍ଗେ ବର୍ତ୍ତମାନ ପ୍ରଚଳିତ ଭାଷା, ସାହିତ୍ୟ ଓ ସଂସ୍କୃତି ଉପରେ ବଙ୍ଗୀୟ ପ୍ରଭାବ ସମ୍ପର୍କରେ ଜାଣିବା ।

**କ୍ଷେତ୍ର ଅଧ୍ୟୟନର ସମୟ :**

ମୋର ଏହି ଗବେଷଣା କାର୍ଯ୍ୟ ନିମନ୍ତେ ୧୯୮୦ ମସିହାର ଜାନୁଆରୀ ମାସଠାରୁ ଅକ୍ଟୋବର୍ ମାସ ପର୍ଯ୍ୟନ୍ତ ଦଶ ମାସ ଧରି କ୍ଷେତ୍ର ଅଧ୍ୟୟନ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ପରବର୍ତ୍ତୀ ସମୟରେ ନିବନ୍ଧର ସଂଶୋଧନ ଓ ପୁନର୍ଲିଖନ ନିମନ୍ତେ ପୁନର୍ବାର ୧୯୯୨ ମସିହାର ମାର୍ଚ୍ଚ ମାସଠାରୁ ମେ ମାସ ପର୍ଯ୍ୟନ୍ତ ତିନି ମାସ, ଦ୍ୱିତୀୟ ପର୍ଯ୍ୟାୟରେ ନିବନ୍ଧ ସଂଶୋଧନ ପରେ ୧୯୯୨ର ନଭେମ୍ବର ଓ ଡିସେମ୍ବର ମାସରେ ଅବଶିଷ୍ଟ କ୍ଷେତ୍ର ଅଧ୍ୟୟନ କାର୍ଯ୍ୟ ସମ୍ପନ୍ନ ହୋଇଅଛୁ ।

Digitized by srujanika@gmail.com

**ସଂକଳ୍ପନା :**

ପ୍ରକାଶିତ ପ୍ରବନ୍ଧ, ଗବେଷଣା ବିବରଣୀ ଓ ମୋର ପ୍ରାଥମିକ କ୍ଷେତ୍ର ଅଧ୍ୟୟନ ବିବରଣୀର ତଥ୍ୟକୁ ଭିତ୍ତି କରି ନିମ୍ନଲିଖିତ ସମ୍ଭାବ୍ୟ ସଂକଳ୍ପନା ଉପଲବ୍ଧି ହେଉଅଛି ।

୧ । ଅଧ୍ୟୟନ—ସମ୍ପୃକ୍ତ ଅଞ୍ଚଳ ରାଜନୈତିକ କାରଣରୁ ଦୁଇଟି ଭିନ୍ନ ରାଜ୍ୟ ଅନ୍ତର୍ଗତ ହେଲେ ହେଁ ଏହା ଏକ ଭାଷା—ସାଂସ୍କୃତିକ ପରିମଣ୍ଡଳ ଅନ୍ତର୍ଭୁକ୍ତ ।

୨ । ଦୁଇଟି ଭିନ୍ନ ପ୍ରଦେଶାନ୍ତର୍ଗତ ହେଲେ ହେଁ ଅଧ୍ୟୟନ—ସମ୍ପୃକ୍ତ ଅଞ୍ଚଳର ଅଧିବାସୀମାନଙ୍କର ଜାତିଗତ ଓ ସାମାଜିକ ଅବସ୍ଥାରେ ସମାନତା ହେତୁ କଥିତ ଭାଷା, ସାହିତ୍ୟ ଓ ସଂସ୍କୃତି ଭିନ୍ନ ନୁହେଁ ।

୩ । ଦୁଇଟି ଭିନ୍ନ ପ୍ରଦେଶାନ୍ତର୍ଗତ ହେଲେ ହେଁ ପ୍ରାକୃତିକ ଓ ଭୌଗୋଳିକ ପରିବେଶର ଅଭିନ୍ନତା ହେତୁ ସମାନ କଥିତ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରଚଳନ ।

୪ । ଦୁଇଟି ସ୍ୱତନ୍ତ୍ର ପ୍ରଦେଶାନ୍ତର୍ଗତ ହୋଇଥିବାରୁ ଭାଷା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଯେଉଁ ଭିନ୍ନତା ପରିଲକ୍ଷିତ ହେବା ସ୍ୱାଭାବିକ, ତାହା ସମ୍ଭବତଃ ଫର୍ମାଲ ସ୍ତରରେ ସୀମିତ ।

୫ । ସୀମା ରେଖାର ଉଭୟ ପଟରେ ଅବସ୍ଥାନ କରୁଥିବା ସମଜାତି/ଗୋଷ୍ଠୀର ଲୋକ ସମାଜରେ ବୈବାହିକସମ୍ପର୍କଜନିତ ଆଦାନପ୍ରଦାନ ସୂତ୍ରରେ ଆବଦ୍ଧ କନ୍ୟା-ବଧୂମାନଙ୍କର ଭାଷା ସ୍ୱାଭାବିକ ଭାବେ ପରିବର୍ତ୍ତିତ ପରିସ୍ଥିତିରେ ଓଡ଼ିଆ କିମ୍ବା ବଙ୍ଗଳା ହେଉଥିବା ଅନୁମେୟ ।

୬ । ବାଲେଶ୍ୱର ଓ ମେଦିନୀପୁର ଉପକୂଳାଞ୍ଚଳ, ମେଦିନୀପୁରର ଝାଡ଼ଗ୍ରାମ ଓ ମୟୂରଭଞ୍ଜର ବାରିପଦା ସହର ମଧ୍ୟବର୍ତ୍ତୀ ଅଞ୍ଚଳ—ଏପରି ଦୁଇଗୋଟି ଭୌଗୋଳିକ ପ୍ରାକୃତିକ ଭୂ-ଖଣ୍ଡ ଆରଣ୍ୟକ ଓ ଉପକୂଳାଞ୍ଚଳୀୟ ସଂସ୍କୃତି ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହେବା ଅନୁମେୟ ।

୭ । ଏପରି ଦୁଇଗୋଟି ସଂସ୍କୃତି ମଧ୍ୟରେ ପାର୍ଥକ୍ୟ ଥିବା ସହିତ ମେଦିନୀପୁର ପଶ୍ଚିମାଞ୍ଚଳ ଝାଡ଼ଗ୍ରାମ, ବାରିପଦା ଓ ବାଲେଶ୍ୱର—ମେଦିନୀପୁର ଦକ୍ଷିଣାଞ୍ଚଳ, ହିଜଳି, ଖଡ଼ଗପୁରର ସଂସ୍କୃତି ସହିତ ପାରସ୍ପରିକ ସାମ୍ୟ ପରିଲକ୍ଷିତ ହେବା ଅନୁମେୟ ।

୮ । ଏପରି ପାର୍ଥକ୍ୟ ଓ ସମାନତାର ସମ୍ଭାବନା ଥିଲେହେଁ ସାମଗ୍ରିକ ଭାବେ ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ଭାଷା, ସାହିତ୍ୟ ଓ ସଂସ୍କୃତିର ରୂପରେଖ ଓଡ଼ିଶୀ-ମାଗଧୀ-ବଙ୍ଗ ମିଶ୍ରିତ ପର୍ଯ୍ୟାୟର ହେବାର ସମ୍ଭାବନା ଅଛି ।

Digitized by srujanika@gmail.com

**ତଥ୍ୟ ଆହରଣର ଉତ୍ସ :**

ବର୍ତ୍ତମାନର ଅଧ୍ୟୟନ ତିନ ଭାଗରେ ବିଭକ୍ତ । ପ୍ରଥମତଃ ଅଧ୍ୟୟନ ସମ୍ପୃକ୍ତ ଅଞ୍ଚଳର ଭାଷା, ଦ୍ୱିତୀୟତଃ—ଏ ଅଞ୍ଚଳର ସାହିତ୍ୟ ଓ ତୃତୀୟତଃ ସଂସ୍କୃତି । ଓଡ଼ିଶାରେ ଓଡ଼ିଆ ଭାଷାରେ ଏପରି ଏକ ଅଧ୍ୟୟନ ସମ୍ପର୍କରେ ଆଲୋଚନା ଗ୍ରନ୍ଥ ଉପଲବ୍ଧ ନୁହେଁ । ତେଣୁ ବର୍ତ୍ତମାନ ଅଧ୍ୟୟନ ମୁଖ୍ୟତଃ ମୋର କ୍ଷେତ୍ର ଅଧ୍ୟୟନ ବିବରଣୀ, କେତେକ ପ୍ରକାଶିତ ସଂକ୍ଷିପ୍ତ ପ୍ରବନ୍ଧ ଓ ଗବେଷଣା ରିପୋର୍ଟ (ଯଥା :—ବିଶ୍ୱଭାରତୀ ଦୀପିକା-୬, ୧୯୮୫ର କେତୋଟି ପ୍ରବନ୍ଧ, ଝଙ୍କାର ନଭେମ୍ବର ୧୯୭୧ରେ ପ୍ରକାଶିତ ଶ୍ରୀମତୀ ବୀଣା ଗିରିଙ୍କ ପ୍ରବନ୍ଧ, ବାଲେଶ୍ୱରର ଇତିବୃତ୍ତ—ପ୍ରଥମ ଖଣ୍ଡର କେତେଗୋଟି ପ୍ରବନ୍ଧ ଓ ବୁଲେଟିନ ଅଫ୍ ଦ ଆନ୍ଥ୍ରୋପୋଲଜିକାଲ ସର୍ଭେ ଅଫ୍ ଇଣ୍ଡିଆର ଦ୍ୱାବିଂଶ ସଂଖ୍ୟାରେ ଡଃ ଦୀପଙ୍କର ଦାଶଗୁପ୍ତଙ୍କର ପ୍ରକାଶିତ "ରିପୋର୍ଟ ଅନ୍ ଦ ଷ୍ଟଡ଼ି ଅଫ୍ ଦ ସିଷ୍ଟେମ ଅଫ୍ ଲିଙ୍ଗୁଇଷ୍ଟିକ୍ କମ୍ୟୁନିକେଶନ ଆକ୍ରସ ଦ ବୋର୍ଡ଼ର ବିଟୋଇନ ଓ୍ୱେଷ୍ଟ ବେଙ୍ଗଲ ଆଣ୍ଡ ଓଡ଼ିଶା,") ପରିସଂଖ୍ୟାନ ବିଭାଗର ରିପୋର୍ଟ ଓ ଜିଲ୍ଲାଗେଜେଟିଅର ପ୍ରଭୃତି ଉପରେ ପର୍ଯ୍ୟବସିତ ।

କଲିକତାର ଜାତୀୟ ପାଠାଗାର, ଇଣ୍ଡିଆନ୍ କାଉନସିଲ୍ ଅଫ୍ ସୋସିଆଲ ସାଇନସେସ୍ ପାଠାଗାର, ଶ୍ରୀରାମଚନ୍ଦ୍ର ପାଠାଗାର, ବାରିପଦା, ଜବାହର ବିଦ୍ୟାପୀଠ—ଚନ୍ଦଡ଼ା, ଦୀନକୃଷ୍ଣ କଲେଜ—ଜଲେଶ୍ୱର, ସରକାରୀ ମହିଳା ମହାବିଦ୍ୟାଳୟ—ବାରିପଦା, ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ—ବାରିପଦା, ପଞ୍ଚାୟତ ସମିତି ମହାବିଦ୍ୟାଳୟ—ଧର୍ମପୁର·ଶୁଳିଆପଦା) ପ୍ରଭୃତି ସ୍କୁଲ କଲେଜ ପାଠାଗାର, ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ପାଠାଗାର, ଓଡ଼ିଶା ମିଉଜିୟମ ପାଠାଗାରରେ ଅଧ୍ୟୟନ କରି ତଥ୍ୟ ସଂଗ୍ରହ କରିଛି ।

ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟବର୍ତ୍ତୀ ଅଞ୍ଚଳରେ ପର୍ଯ୍ୟାୟକ୍ରମିକ କ୍ଷେତ୍ର ଅଧ୍ୟୟନ କରାଯାଇ ଭାଷା, ଲୋକ ସାହିତ୍ୟ ଓ ସଂସ୍କୃତି ସମ୍ବନ୍ଧୀୟ ବିଭିନ୍ନ ତଥ୍ୟ, ବିଶିଷ୍ଟ ସ୍ଥାନର ପ୍ରସିଦ୍ଧ, ବିଦଗ୍ଧ ଓ ଆଧୁନିକ ସାହିତ୍ୟର ରୂପରେଖ ସମ୍ପର୍କରେ ତଥ୍ୟ ଆହୃତ ହୋଇଛି । ବିଭିନ୍ନ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ପରିଦର୍ଶନ କରି ତଥ୍ୟ ସଂଗୃହୀତ ହୋଇଛି । ଗ୍ରାମାଞ୍ଚଳର ବିଭିନ୍ନ ସ୍ଥାନରେ ଗଚ୍ଛିତ ତାଳପତ୍ର ପୋଥି ଦେଖି ଅତୀତର ଭଗବତ ଟୁଙ୍ଗୀ ସମ୍ପର୍କରେ ଅନୁଧ୍ୟାନ କରିଅଛି । ବାରିପଦା ଓ ଝାଡ଼ଗ୍ରାମ, ବାଲେଶ୍ୱର ଓ ଏଗ୍ରା, ଦାନ୍ତନ, କାନ୍ଥୀ ଅଞ୍ଚଳର ଲୋକନାଟର ଆନୁସଙ୍ଗିକ ଆନୁଷ୍ଠାନିକ ଉପସ୍କର ପ୍ରଭୃତିର ବିବରଣୀ ସଂଗୃହୀତ ହୋଇଅଛି ।

ଏପରି ଏକ ଅଧ୍ୟୟନ ସମ୍ପର୍କୀୟ ସୁନିର୍ଦ୍ଦିଷ୍ଟ ତଥ୍ୟ ଆହରଣ ନିମନ୍ତେ ସୀମା ରେଖାର ଦୁଇ ପଟରେ ଅବସ୍ଥିତ ଦୁଇଗୋଟି ଗ୍ରାମ, ଯଥା :—ବାଲେଶ୍ୱର ଜିଲ୍ଲାର

Digitized by srujanika@gmail.com

ଜଳେଶ୍ୱର ଥାନା ଅନ୍ତର୍ଗତ ବାଣିଦା ଗ୍ରାମ ଓ ମେଦନୀପୁର ଜିଲ୍ଲାର ଦାନ୍ତନ ଥାନା ଅନ୍ତର୍ଗତ ବର୍ଣ୍ଣିଷ୍ଟ ଗ୍ରାମକୁ ମନୋନୀତ କରି ଭାଷା ତାତ୍ତ୍ୱିକ, ସାମାଜିକ, ସାହିତ୍ୟିକ ଓ ସାଂସ୍କୃତିକ ଅଧ୍ୟୟନ ସମ୍ପନ୍ନ ହୋଇଅଛି । ଉପରୋକ୍ତ ଦୁଇଗୋଟି ଗ୍ରାମ ମଧ୍ୟରେ ଦୂରତ୍ୱ ଅନ୍ୟୁନ ୧୦ କି: ମି: ।

କଥିତ ଭାଷା, ସାହିତ୍ୟ ଓ ସଂସ୍କୃତିର ରୂପରେଖ ସମ୍ବନ୍ଧରେ ଜାଣିବା ନିମନ୍ତେ ଏ ଦୁଇ ଗ୍ରାମର ଲୋକମାନଙ୍କର ସ୍ୱାଭାବିକ ଦୈନନ୍ଦିନ କାର୍ଯ୍ୟକ୍ରମ, କଥାବାର୍ତ୍ତା, ସ୍କୁଲ-ଚଳନ, ଘରୋଇ ପରିସ୍ଥିତି, ବିବାହ, ପୂଜାପର୍ବ, ପର୍ବପର୍ବାଣୀ ପ୍ରଭୃତି ସହ ଫର୍ମାଲ ସ୍ତରରେ ବ୍ୟବହୃତ ଭାଷା, ଶିକ୍ଷା, ସାହିତ୍ୟ ଲେଖନ ଓ ପଠନ ବିଷୟରେ ଅଧ୍ୟୟନ ସମ୍ପନ୍ନ ହୋଇଅଛି ।

ଦୁଇଗୋଟି ଗ୍ରାମରୁ ଲୋକ ସାହିତ୍ୟ ସଂଗୃହୀତ ହୋଇଅଛି । ଦୁଇଗୋଟି ଗ୍ରାମରେ ବଙ୍ଗଳା ଓ ଓଡ଼ିଆ କନ୍ୟା ବଧୂଙ୍କର କଥିତ ଭାଷାର ରୂପ ଓ ପରିବର୍ତ୍ତିତ ପରିସ୍ଥିତିରେ ସ୍ଥାନୀୟ ଭାଷା ଶିକ୍ଷା ସମ୍ପର୍କରେ ଅଧ୍ୟୟନ ସମ୍ପନ୍ନ ହୋଇଛି ।

ଦୁଇଗୋଟି ଗ୍ରାମରେ ଥିବା ତାଳପତ୍ର ପୋଥି, ଓଡ଼ିଆ ଭାଷା-ବଙ୍ଗ ଲିପି ପୁସ୍ତକ ଓ ଓଡ଼ିଆ ଲିପି-ବଙ୍ଗ ଭାଷା ପୁସ୍ତକ ସମ୍ପର୍କରେ ଅନୁଧ୍ୟାନ କରାଯାଇଛି । ଦୁଇଗୋଟି ଗ୍ରାମରେ ପ୍ରଚଳିତ କଥିତ ଭାଷାର ରୂପ ସମାନ । ଦୁଇଗୋଟି ଗ୍ରାମରେ ଫର୍ମାଲ ସ୍ତରରେ ମାନକ ଭାଷା ( ମାନକ ଓଡ଼ିଆ ଓ ମାନକ ବଙ୍ଗଳା ) ବ୍ୟବହୃତ ହୁଏ । ସରକାରୀ ଚିଠି ପତ୍ରରେ କେତେକ କ୍ଷେତ୍ରରେ ଇଂରେଜୀ ବ୍ୟବହୃତ ହୁଏ, ବାହାର୍‌ଦା ବର୍ଣ୍ଣିଷ୍ଟ ଗ୍ରାମର ଲୋକେ କଥାବାର୍ତ୍ତା ସମୟରେ ନାମ ସହିତ ପଦବୀ, ଯଥା :— ମାହାନ୍ତି, ବେହେରା, ଜେନା ପ୍ରଭୃତି ଉଚ୍ଚାରଣ କରିଥାନ୍ତି । ଲେଖିବା ସମୟରେ ମାଇତି, ବେରା, ଜାନା ପ୍ରଭୃତି ଲେଖିଥାନ୍ତି ।

ଦୁଇ ଗ୍ରାମରେ ବାସ କରୁଥିବା ସାନ୍ତାଳ ଗୋଷ୍ଠୀର ଲୋକେ ସାନ୍ତାଳୀ ଭାଷା ସହିତ କଥିତ ଭାଷାରେ କଥା ହୁଅନ୍ତି । ବିଦ୍ୟାଳୟ ଓ ଫର୍ମାଲ ସ୍ତରରେ (ସ୍କୁଲକଲେଜ ପ୍ରଭୃତି କ୍ଷେତ୍ରରେ) ମାନକ ଓଡ଼ିଆ/ମାନକ ବଙ୍ଗଳା ଭାଷା ବ୍ୟବହୃତ ହୁଏ ।

## ସୁରୁଲ-ବାଣିଦା (ଥାନା-ଜଳେଶ୍ୱର) :

ସୀମା ରେଖାର ଦକ୍ଷିଣ ଦିଗକୁ ପ୍ରାୟ ୫ କି: ମି: ଦୂରରେ ସୁରୁଲ-ବାଣିଦା ଗ୍ରାମ ଅବସ୍ଥିତ । ସୁରୁଲ ଏକ ସ୍ୱତନ୍ତ୍ର ରେଭିନ୍ୟୁ ମୌଜା । ଏହା ବାଣିଦା ସହିତ ମିଶି ରହିଅଛି ଓ ସାଧାରଣତଃ ବାଣିଦା ନାମରେ କଥିତ ହୁଏ । ତେଣୁ ବର୍ତ୍ତମାନ ରିପୋର୍ଟରେ ବାଣିଦା ନାମ ବ୍ୟବହାର କରିଅଛି ।

Digitized by srujanika@gmail.com

ଟର୍ମିଲ୍ ପର୍ଯ୍ୟାୟର ଅନୁଷ୍ଠାନ ଭାବେ ଗ୍ରାମରେ ପ୍ରଥମରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଦେବା ପାଇଁ ବିଦ୍ୟାଳୟ, କ୍ଲବ, ମହିଳା ସମିତି, ଜନ୍‌ଟର୍ମିଲ ସ୍କୃଟଶାଳୀ, ଲିଫ୍‌ଟ ଇରିଗେସନ ପଏଣ୍ଟ ପ୍ରଭୃତି ରହିଅଛି ।

ଗ୍ରାମରେ ଶ୍ରୀ ଶ୍ରୀ ଭାଗବତ ଗାଁଓ ପୂଜା ସମିତି, ଶ୍ରୀ ଶ୍ରୀ ଅନ୍ନପୂର୍ଣ୍ଣା ଦେବୀ ପୂଜା ସମିତି, ଶ୍ରୀ ଶ୍ରୀ ସରସ୍ୱତୀ ଦେବୀ ପୂଜା ସମିତି ପ୍ରଭୃତି ସ୍ଥାୟୀ ସମିତିମାନ ରହିଅଛି । ଗ୍ରାମ ମଧ୍ୟରେ ମହାଦେବ, ଭଗବତୀ, ଭାଗବତ ଗାଁଓ, ଅନ୍ନପୂର୍ଣ୍ଣା ଦେବୀଙ୍କର ମନ୍ଦିର, ମହାକାଳୀ ଓ କ୍ଷେତ୍ରପାଳଙ୍କର ଅବସ୍ଥାନ ରହିଅଛି ।

ଭାଗବତ ଗାଁଓ ମନ୍ଦିରରେ ତାଳପତ୍ରରେ ଲିଖିତ ଭାଗବତ ପୋଥି ସଂରକ୍ଷିତ ଓ ନିତ୍ୟ ପୂଜିତ ଓ ପଠିତ ହୁଅନ୍ତି । ମାଘମାସରେ ପୋଥିବସା ଓ ଦୋଳରୁ ହରିହାଟ ମହୋତ୍ସବ ଅନୁଷ୍ଠିତ ହୁଏ । ଭାଗବତ ଗାଁଓଙ୍କର ପୋଥିବସା ଅନୁଷ୍ଠାନ ଆଜକୁ ୮୦ ବର୍ଷ ଧରି ଅବିଚ୍ଛିନ୍ନ ଭାବେ ଧାରାବାହିକତା ରକ୍ଷା କରିଛି ।

ମହାଦେବ, ଭଗବତୀ, ମହାକାଳୀଙ୍କ ନିକଟରେ ନାଗର, ପଇତାପକା ମାଜଣା, ଜଳହିଆ ପୂଜା ପରମ୍ପରାକ୍ରମେ ଅନୁଷ୍ଠିତ ହୁଏ ।

ଗ୍ରାମରେ ନିମ୍ନଲିଖିତ ଜାତି ଓ ଗୋଷ୍ଠୀର ଲୋକ ବାସ କରନ୍ତି ।

| | ନାମ | ପରିବାର ସଂଖ୍ୟା |
|---|---|---|
| ୧ । | କରଣ | ୧୬୮ |
| ୨ । | କମାର | ୧ |
| ୩ । | କଣ୍ଡରା | ୧୩ |
| ୪ । | ଗଉଡ଼ | ୨ |
| ୫ । | ଡୋମ | ୨ |
| ୬ । | ତନ୍ତୀ | ୩ |
| ୭ । | ଧୋବା | ୧ |
| ୮ । | ନାଇକ (ନାହାକ) | ୧ |
| ୯ । | ବଣିଆ | ୧ |
| ୧୦ । | ବାରିକ | ୬ |
| ୧୧ । | ବୈଷ୍ଣବ | ୧୧ |
| ୧୨ । | ବ୍ରାହ୍ମଣ | ୮ |
| ୧୩ । | ସାନ୍ତାଳ | ୨୪ |
| ୧୪ । | ହାଡ଼ି | ୧ |

(ବ୍ୟକ୍ତିଗତ ସଂଗ୍ରହ)

Digitized by srujanika@gmail.com

**ବାହ୍ମାର୍‌ଦା-ବଇଁଗ୍ (ଥାନା—ଦାନ୍ତନ) :**

ସୀମାରେଖାର ଉତ୍ତର ଦିଗକୁ ପ୍ରାୟ ୫ କି. ମି. ଦୂରରେ ବାହ୍ମାର୍‌ଦା-ମଧୁବଇଁଗ୍ ଗ୍ରାମ ଅବସ୍ଥିତ । ଏହା ସହିତ କେତେଗୋଟି ସ୍ୱତନ୍ତ୍ର ରେଭିନ୍ୟୁ ମୌଜା ମିଶି ରହିଅଛି ଓ ଏହା ସାଧାରଣତଃ ବଇଁଗ୍ ନାମରେ କଥିତ ହେଉଥିବାରୁ ବର୍ତ୍ତମାନ ରିପୋର୍ଟରେ ମୁଁ ବଇଁଗ୍ ନାମ ବ୍ୟବହାର କରିଅଛି ।

ଗ୍ରାମରେ ପ୍ରଥମ ଶ୍ରେଣୀରୁ ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ବିଦ୍ୟାଳୟ, କ୍ଲବ, ମହିଳା ସମିତି, ଲିଫ୍‌ଟ ଇରିଗେସନ ପଏଣ୍ଟ ରହିଅଛି ।

ଗ୍ରାମ ମଧ୍ୟରେ ମହାଦେବ, ଭଗବତୀ, ଭାଗବତ ଜିଉଙ୍କ ମନ୍ଦିର, ଚଣ୍ଡୀ ଓ କ୍ଷେତ୍ରପାଳଙ୍କର ଆସ୍ଥାନ ରହିଅଛି । ପ୍ରତିବର୍ଷ ସାର୍ବଜନୀନ ଲକ୍ଷ୍ମୀପୂଜା, ସରସ୍ୱତୀ ପୂଜା ଓ ବାସନ୍ତୀ ପୂଜା ଅନୁଷ୍ଠିତ ହୁଏ ।

ଭାଗବତ ମନ୍ଦିରରେ ଆଗରୁ ଓଡ଼ିଆ ଭାଷାରେ ଲିଖିତ ତାଳପତ୍ର ପୋଥି ପୂଜିତ ଓ ପଠିତ ହେଉଥିଲା । ପୋଥିଗୁଡ଼ିକ ଉଇ ଖାଇ ନଷ୍ଟ କରିଦେବାରୁ ନିକଟବର୍ତ୍ତୀ କୁସୁମୀ ଗ୍ରାମର ବ୍ରାହ୍ମଣଙ୍କ ଘରୁ ତାଳପତ୍ର ପୋଥି ଆଣି ପୂଜା ଅନୁଷ୍ଠିତ ହେଉଥିଲା । ସେ ସବୁ ତାଙ୍କୁ ଫେରାଇ ଦେଇ ବର୍ତ୍ତମାନ ଛପା ଓଡ଼ିଆ ଓ ବଙ୍ଗଳା ଭାଗବତ ସେଠି ରଖି ପୂଜିତ ଓ ପଠିତ ହେଉଅଛି । ବାର୍ଷିକ ପୋଥିବସା, ହରିହାଟ ଓ ମହୋତ୍ସବ ଅନୁଷ୍ଠିତ ହୁଏ । ଗ୍ରାମରେ ଏହା ଶତାଧିକ ବର୍ଷ ଧରି ଅବିଚ୍ଛିନ୍ନ ଭାବେ ଏ ପରମ୍ପରା ରକ୍ଷା କରିଥିବାର ଜଣାଯାଏ । ପୋଥିବସା ହେଉଥିବା ସମୟରେ ପୋଥି ପଢ଼ା ପଦ୍ଧତିରେ ଉତ୍କଳ ଶ୍ରେଣୀ ବ୍ରାହ୍ମଣ ନିଯୁକ୍ତ ହେଉଥିଲେ । ବାର୍ଷିକ ହରିହାଟ ସମୟରେ ଗ୍ରାମର ଓଡ଼ିଶାବାସୀ ବ୍ରାହ୍ମଣ ଓ ଆଗନ୍ତୁକ ବନ୍ଧୁଗଣ ଅଂଶ ଗ୍ରହଣ କରି ଓଡ଼ିଆ ଭାଗବତ (ଛପା ପୁସ୍ତକ) ପାଠର ଦାୟିତ୍ୱ ପରମ୍ପରା କ୍ରମେ ସମ୍ପାଦନ କରି ଆସୁଛନ୍ତି ।

ମହାଦେବ, ଭଗବତୀ ଓ ଚଣ୍ଡୀଙ୍କ ନିକଟରେ ଶିବରାତ୍ରି (ଜାଗର), ପଇତାପକା, ମାଜଣା, ଜଳଦିଆ ପୂଜା ପ୍ରଭୃତି ପରମ୍ପରାକ୍ରମେ ଅନୁଷ୍ଠିତ ହୁଏ ।

| ନାମ | ପରିବାର ସଂଖ୍ୟା |
|---|---|
| ୧ । କରଣ | ୩୦ |
| ୨ । କଣ୍ଡରା | ୨୮ |
| ୩ । ତେଲୀ | ୧୨ |
| ୪ । ନାଇକ (ନାହାକ) | ୧ |
| ୫ । ବାରିକ | ୧ |

Digitized by srujanika@gmail.com

| | | |
|---|---|---|
| ୬ । | ବ୍ରାହ୍ମଣ | ୧୦ |
| ୭ । | ବୈଷ୍ଣବ | ୨୬ |
| ୮ । | ମାହିଷ୍ୟ | ୨୨ |
| ୯ । | ଭକ୍ତୁ | ୬ |
| ୧୦ । | ଗୁଡ଼ୀ | ୪ |
| ୧୧ । | ସଦ୍‌ଗୋପ | ୧୯ |
| ୧୨ । | ସାନ୍ତାଳ | ୧୫ |

(ବ୍ୟକ୍ତିଗତ ସଂଗ୍ରହ)

**ଭାଷା :**

ମେଦିନୀପୁର, ବାରିପଦା ଓ ବାଲେଶ୍ୱର ମଧ୍ୟବର୍ତ୍ତୀ ଅଞ୍ଚଳରେ ସାମାଜିକ ସ୍ତରରେ ମୁଖ୍ୟତଃ ବଙ୍ଗଳା ଓ ଓଡ଼ିଆ ମାନକ ଭାଷା ପ୍ରଚଳିତ । ଉପରୋକ୍ତ ଅଞ୍ଚଳର କଥିତ ଭାଷାର ରୂପ ସବଂଶ ପ୍ରାୟ ସମାନ । ଏତଦ୍‌ବ୍ୟତୀତ ଏ ଅଞ୍ଚଳରେ ଆଦିବାସୀ ଭାଷା ଗୋଷ୍ଠୀର କେତେକ ଭାଷା ଯଥା :—(ହୋ, ମୁଣ୍ଡାରି, ଭୂୟାଁ, ବାଥୁଡ଼ି, କୁର୍ମାଳୀ ପ୍ରଭୃତି) ପ୍ରଚଳିତ । କଥିତ ଭାଷା ଉପକୂଳାଞ୍ଚଳୀୟ ଓଡ଼ିଆ ଉପଭାଷାର ଅନ୍ତର୍ଭୁକ୍ତ । କୁର୍ମାଳୀ—ଓଡ଼ିଆ, ବଙ୍ଗଳା ଓ କେତେକ ଆଦିବାସୀ ଭାଷାର ମିଶ୍ରିତ ରୂପ । ମୁଁ ଓଡ଼ିଆ ଓ ବଙ୍ଗଳା ଭାଷା ଜାଣିଥିବାରୁ ଓ କୁର୍ମାଳୀ ଭାଷା ବୁଝୁଥିବାରୁ କ୍ଷେତ୍ର ଅଧ୍ୟୟନ କାର୍ଯ୍ୟ ସହଜରେ ଚାଲିଛି ଅଛି । ଗବେଷକ ଯଦି ଗବେଷଣା ସ୍ଥାନର ଲୋକଙ୍କ ଭାଷାରେ ତଥ୍ୟ ସଂଗ୍ରହ କରିପାରେ, ତେବେ ତାହାହିଁ ଉତ୍କୃଷ୍ଟ ତଥ୍ୟ ସଂଗ୍ରହ ପ୍ରଣାଳୀ ହୋଇଥାଏ ।

ଅଧ୍ୟୟନ ସମୟରେ ସୁବିଧା ଓ ଶୀଘ୍ର ଲେଖିବା ପାଇଁ ଓଡ଼ିଆ ଭାଷା ଓ ଲିପି ବ୍ୟବହାର କରିଅଛି । ମେଦିନୀପୁର ଅଞ୍ଚଳରେ ପ୍ରୟୋଜନ ଅନୁସାରେ ବଙ୍ଗଳା ଭାଷାରେ ପ୍ରଶ୍ନ କରିଛି । ଓଡ଼ିଆ ଭାଷାରେ ଉତ୍ତର ଲେଖିଛି ।

**ଗବେଷଣା ପଦ୍ଧତି :**

ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଅଧ୍ୟୟନ ମୁଖ୍ୟତଃ କ୍ଷେତ୍ର ଅଧ୍ୟୟନ ଓ ପାଠାଗାର ଅଧ୍ୟୟନ ଉପରେ ପର୍ଯ୍ୟବସିତ ହୋଇଅଛି । ସଂସ୍କୃତି ସମ୍ପର୍କୀୟ ଅଧ୍ୟୟନ କାଳରେ କେତେଗୁଡ଼ିଏ ସାଂସ୍କୃତିକ ବୈଶିଷ୍ଟ୍ୟକୁ ମୂଳ କରି ଅଧ୍ୟୟନ ସମ୍ପନ୍ନ ହୋଇଅଛି । ସାହିତ୍ୟ ସମ୍ପର୍କରେ ଲିଖିତ ସାହିତ୍ୟ ସଂଗ୍ରହ ଓ ପଠନ ସହିତ ଉପଲବ୍ଧ କେତୋ ଆଲୋଚନା ଗ୍ରନ୍ଥ ଓ ପତ୍ର ପତ୍ରିକାର ଉପଯୋଗ କରିଅଛି । ଭାଷା ଅଧ୍ୟୟନ କାଳରେ ଲୋକ ସାହିତ୍ୟ ସଂଗ୍ରହ କରାଯାଇ ଭାଷା ଓ ସାହିତ୍ୟିକ ଅଧ୍ୟୟନ ସମ୍ପନ୍ନ କରାଯାଇଛି । ସାହିତ୍ୟିକ/କଳାକାରମାନଙ୍କ ପାଖକୁ ଉଦ୍ଦିଷ୍ଟ ଫର୍ମ ସବୁ ଡାକ ଯୋଗେ

Digitized by srujanika@gmail.com

ଘଣଚଟ ଓ ସାହିତ୍ୟିକ ବନ୍ଧୁଙ୍କ ମାଧ୍ୟମରେ ପଠାଇ କିମ୍ବା ଯଥାସମ୍ଭବ ସାକ୍ଷାତ କରି ତଥ୍ୟ ସଂଗ୍ରହ କରିଅଛୁ ।

**ବିଶ୍ଳେଷଣ :**

ସଂଗୃହୀତ ତଥ୍ୟର ଯଥାଯଥ ସର୍ଜ୍ଜୀକରଣ, ବର୍ଗୀକରଣ ଓ ବିଶ୍ଳେଷଣ କରି ନିବନ୍ଧ ରଚନାରେ ଉପଯୋଗ କରିଅଛୁ । ବିଚ୍ଛିନ୍ନାଞ୍ଚଳ ଓଡ଼ିଆ, ଆଦିବାସୀ, ମହିଳା, ବୟୋବୃଦ୍ଧ କିମ୍ବା ଉପେକ୍ଷିତ ସାରସ୍ୱତ ସାଧକମାନଙ୍କୁ ଅଗ୍ରାଧିକାର ଦେଇ ନିବନ୍ଧରେ ସ୍ଥାନିତ କରିଛୁ ।

ମୋର ଚେଷ୍ଟା ସତ୍ତ୍ୱେ ସାରସ୍ୱତ ସାଧକମାନଙ୍କ ବିଷୟରେ ବିବରଣୀ ନିର୍ଦ୍ଦିଷ୍ଟ ସମସ୍ତ ସୀମା ମଧ୍ୟରେ ସଂଗୃହୀତ ହୋଇ ନାହିଁ । ସନ୍ଦର୍ଭ ପ୍ରସ୍ତୁତ କାଳରେ କେତେକ ବିବରଣୀ ସଂଗୃହୀତ ହୋଇଥିବା ଦୃଷ୍ଟେ ସନ୍ନିବିଷ୍ଟ ସମସ୍ତ ନାମ ଅକ୍ଷର କ୍ରମରେ ସଜ୍ଜିତ ହୋଇପାରି ନାହିଁ । ସାହିତ୍ୟ ଏକାଡ଼େମୀରେ ସନ୍ଦର୍ଭ ଦାଖଲ କଲା ପରେ ସଂଗୃହୀତ ବିବରଣୀ 'ପରବର୍ତ୍ତୀ ସଂଯୋଜନ' କ୍ରମରେ ଲିଖିତ ହୋଇଛି । ଏଥିନିମନ୍ତେ 'ସାରସ୍ୱତ ସାଧକ ନାମସୂଚୀ' ପ୍ରସ୍ତୁତ ହୋଇ ଅକ୍ଷର କ୍ରମରେ ମହାଜନଙ୍କ ନାମ ସବୁକୁ ସଜ୍ଜିତ କରି ସନ୍ଦର୍ଭର ସୂଚୀପତ୍ର ପରେ ଯୋଗ କରାଯାଇଅଛି ।

**କୃତଜ୍ଞତା :**

ଏପରି ଏକ ଗବେଷଣା କାର୍ଯ୍ୟର ପରିସମାପ୍ତିରେ ପ୍ରଖ୍ୟାତ ସାହିତ୍ୟିକ ସ୍ୱର୍ଗୀୟ ଡକ୍ଟର ଗୋପୀନାଥ ମହାନ୍ତି, ଉତ୍କଳ ବିଶ୍ୱବିଦ୍ୟାଳୟ ନୃତତ୍ତ୍ୱ ବିଭାଗର ପ୍ରାକ୍ତନ ମୁଖ୍ୟ ପ୍ରଫେସର ଲକ୍ଷ୍ମଣ କୁମାର ମହାପାତ୍ର ଓ ଓଡ଼ିଶାର ଆଦିବାସୀ ଭାଷା ଏକାଡ଼େମୀର ନିର୍ଦ୍ଦେଶକ ଭାଷାବିତ୍ ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କ ସାହାଯ୍ୟ ଅବିସ୍ମରଣୀୟ । ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ସମ୍ପାଦକଙ୍କ ସାହାଯ୍ୟ ଉଲ୍ଲେଖନୀୟ । ବାରିପଦା ସରକାରୀ ମହିଳା ମହାବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରାକ୍ତନ ମୁଖ୍ୟ ଡଃ ବନମାଳି ରଥ, ବିଖ୍ୟାତ କବି ବ୍ରଜନାଥ ରଥ ଓ ସାହିତ୍ୟିକ ସାଂବାଦିକ ହୋତାଙ୍କ ସାହାଯ୍ୟ ଓ ସହଯୋଗ ନିମନ୍ତେ କୃତଜ୍ଞ । ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ, ବାରିପଦାର ପ୍ରାଧ୍ୟାପକ ଶ୍ରୀ ଚଣ୍ଡୀଚରଣ ବେହେରା ବାହାଲଡ଼ାଗୋଡ଼ା ଓ ଗୋପୀବଲ୍ଲଭପୁର ଅଞ୍ଚଳର ତଥ୍ୟ ସଂଗ୍ରହ ଦିଗରେ ସାହାଯ୍ୟ କରିଥିବାରୁ ଧନ୍ୟବାଦ ଜଣାଉଅଛୁ ।

ଏତଦ୍‌ବ୍ୟତୀତ କବି ଶ୍ରୀ ବନମାଳି ସେନାପତି, ଗାଳ୍ପିକ ଶ୍ରୀ ବିଜୟ କୁମାର ବାରିକ, ଅଧ୍ୟାପକ ଶ୍ରୀ ପରମେଶ୍ୱର ବେହେରା, ଶ୍ରୀ ହରିହର ପାଣି (ମଣିଆବାଡ଼ି) ଶ୍ରୀ ଜଗଦୀଶ ସର୍ଦ୍ଦାର (ଧରମପୁରା), ଶ୍ରୀ ପ୍ରମୋଦଚନ୍ଦ୍ର ନାୟକ (ସାନ ମୁଣ୍ଡାବଣି), ଶ୍ରୀ ସନ୍ତୋଷ କୁମାର ନାୟକ (ଧନ୍ତାଙ୍କ, ଝାଡ଼ଗ୍ରାମ), ଶ୍ରୀ ବୀରେନ୍ଦ୍ର କୁମାର ମହାପାତ୍ର,

Digitized by srujanika@gmail.com

ଶ୍ରୀ ଶ୍ୟାମରାମ ଦାଶ, ଶ୍ରୀ ଶିବଶଙ୍କର ଦାସ, ଶ୍ରୀ ସତ୍ୟେନ୍ଦ୍ର କୁମାର ରଣା, ଶ୍ରୀ ଅମୂଲ୍ୟ କୁମାର ମହାନ୍ତି (ବାଣିଦା), ଶ୍ରୀ ଦୁର୍ଗାଦାସ ମହାପାତ୍ର, ଶ୍ରୀ ଗଦାଧର ମାଇତି, ଶ୍ରୀ ମହେଶ୍ୱର ସାହୁ, ଶ୍ରୀ ଗୋବିନ୍ଦ ମାଇତି (ବାହାରଦା-ବର୍ଦ୍ଧନ୍ତ), ଶ୍ରୀ ବ୍ରଜକିଶୋର ମହାନ୍ତି (ବସନ୍ତପୁର) ପ୍ରଭୃତି ଅଗଣିତ ବ୍ୟକ୍ତିବୃନ୍ଦ ତଥ୍ୟ ସଂଗ୍ରହ ଓ ପାଣ୍ଡୁଲିପି ପ୍ରସ୍ତୁତରେ ସାହାଯ୍ୟ ଓ ସହଯୋଗ କରିଥିବା ହେତୁ ଏହି ଅବସରରେ ସେମାନଙ୍କୁ ଆନ୍ତରିକ ସାଧୁବାଦ ଜଣାଉଅଛି । ନାମ ତାଲିକା ବୃଦ୍ଧି ଭୟରେ ସମସ୍ତ ସହଯୋଗୀଙ୍କର ନାମ ଉଲ୍ଲେଖ କରାଯାଇ ନାହିଁ ।

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ସାରସ୍ୱତ ସାଧକମାନଙ୍କର ଏକ ସମ୍ପୂର୍ଣ୍ଣ ତାଲିକା ପ୍ରସ୍ତୁତ କରିବା ସମ୍ଭବ ହୋଇ ନାହିଁ । ଲୋକ ସାହିତ୍ୟ ଓ ସଂସ୍କୃତି ସମ୍ପର୍କୀୟ ସମନ୍ୱିତ ଏକ ସମୃଦ୍ଧ ଉପତ୍ୟକା ଓ ଉପକୂଳଭୂମିର ଆଖ୍ୟାନ ରୂପେ ପୁସ୍ତକର ସର୍ବପ୍ରକାର ଅପୂର୍ଣ୍ଣତା ନିମନ୍ତେ ମୁଁ କ୍ଷମାପ୍ରାର୍ଥୀ ।

ନଗେନ୍ଦ୍ରନାଥ ମହାପାତ୍ର

୨୩-୨-୯୩

Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

## ଅଧ୍ୟୟନ-ସଂପୃକ୍ତ ଅଞ୍ଚଳର ପ୍ରାକୃତିକ ଓ ଭୌଗୋଳିକ ପରିବେଶ :

ଆଧୁନିକ ଓଡ଼ିଶାର ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ଭୌଗୋଳିକ ଓ ପ୍ରାକୃତିକ ପରିବେଶ ଅତ୍ୟନ୍ତ ସମୃଦ୍ଧ । ଏ ଅଞ୍ଚଳର ଦକ୍ଷିଣ ଦିଗରେ ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର, ବାଲିଆପାଳ ଓ ବାଲେଶ୍ୱର ସହର; ଦକ୍ଷିଣ-ପଶ୍ଚିମ ଦିଗରେ ବାରିପଦା ଓ ବେତନଟୀ; ଉତ୍ତର-ପୂର୍ବ ଦିଗରେ ପଶ୍ଚିମ ବଙ୍ଗର ଗୋପୀବଲ୍ଲଭପୁର, ଝାଡ଼ଗ୍ରାମ, ମେଦିନୀପୁର, ତମଲୁକ ସହର ଓ ଦକ୍ଷିଣ-ପୂର୍ବ ଦିଗରେ ବଙ୍ଗୋପସାଗର ଅବସ୍ଥିତ ।

ଓଡ଼ିଶାର ଉତ୍ତର-ପୂର୍ବ ଦିଗରେ ୨୦°୪୪′ ଓ ୨୧°୫୭″ ଉତ୍ତର ଅକ୍ଷାଂଶ ଏବଂ ୮୬°୧୬′ ଏବଂ ୮୭°୨୯′ ପୂର୍ବ ଦ୍ରାଘିମା ମଧ୍ୟରେ ବାଲେଶ୍ୱର ଜିଲ୍ଲା ଅବସ୍ଥିତ । ପଶ୍ଚିମ ବଙ୍ଗର ଦକ୍ଷିଣ ଦିଗରେ ୨୨°୫୭′୪୦″ ଓ ୨୧°୩୬′୪୦″ ଉତ୍ତର ଅକ୍ଷାଂଶ ଏବଂ ୮୮°୧୩′୩୦″ ଓ ୮୬°୩୫′୨୨″ ପୂର୍ବ ଦ୍ରାଘିମା ମଧ୍ୟରେ ମେଦିନୀପୁର ଜିଲ୍ଲା ଅବସ୍ଥିତ । ଓଡ଼ିଶାର ଉତ୍ତର-ପୂର୍ବ ଦିଗରେ ୨୧°୧୬′ ଓ ୨୨°୩୪′ ଉତ୍ତର ଅକ୍ଷାଂଶ ଏବଂ ୮୫°୪୦′ ଓ ୮୭°୧୦′ ପୂର୍ବ ଦ୍ରାଘିମା ମଧ୍ୟରେ ଅବସ୍ଥିତ ।

ସୁବର୍ଣ୍ଣରେଖା, ପଞ୍ଚପଡ଼ା, ବୁଢ଼ାବଳଙ୍ଗ, ରୂପନାରାୟଣ, ରସୁଲପୁର, ହଳଦୀ, କାସାଇ (କଂସାବତୀ/କପିଶା) ପ୍ରଭୃତି ମୁଖ୍ୟ ନଦୀ ଏ ଅଞ୍ଚଳରେ ପ୍ରବାହିତ ହେଉଅଛି । ଏତଦ୍‌ବ୍ୟତୀତ ବହୁ ଛୋଟ ନଦୀ, ନାଳ ଓ କେନାଲ ଏ ଅଞ୍ଚଳରେ ବିଦ୍ୟମାନ । ଜମ୍ବୀରା, ସନ୍ଦାନ୍ଦି ଓ ଗୁଲଫା ଏ ଦୁଇଟି ଉପନଦୀ ମିଳିତ ହୋଇ ଜମ୍ବୀରାରେ ମିଶିଛନ୍ତି । ଭୈରଙ୍ଗୀ, କାଶବାଶ ପ୍ରଭୃତି ଉପ ଓ ଶାଖା ନଦୀ ଏବଂ ନାଳ ପ୍ରବାହିତ । କୋଷ୍ଟ କେନାଲ ଓ ହିଜଳି ଟାଇଡ଼ାଲ କେନାଲ, ବାଲେଶ୍ୱର ଓ ମେଦିନୀପୁର ଜିଲ୍ଲାର ଦୁଇଗୋଟି ମୁଖ୍ୟ କେନାଲ । ନିର୍ମାଣାଧୀନ ସୁବର୍ଣ୍ଣରେଖା ପ୍ରୋଜେକ୍ଟ କେନାଲ ଏ ଅଞ୍ଚଳର ମୟୂରଭଞ୍ଜ, ମେଦିନୀପୁର ବାଲେଶ୍ୱର ଜିଲ୍ଲା ମଧ୍ୟରେ ସମ୍ପୂର୍ଣ୍ଣ ହେବ । ଏତଦ୍‌ ବ୍ୟତୀତ ବଡ଼ ବଡ଼ ପୁଷ୍କରଣୀ ଓ ବନ୍ଧ ଏ ଅଞ୍ଚଳରେ ବିଦ୍ୟମାନ । ଦକ୍ଷିଣ-ପୂର୍ବ ଦିଗରେ ସମୁଦ୍ର ଏ ଅଞ୍ଚଳକୁ ଶ୍ରୀ ସମୃଦ୍ଧ କରିଛି । ଉତ୍ତର-ପଶ୍ଚିମ ଦିଗରେ ସିମିଳିପାଳ ପାହାଡ଼-ଶ୍ରେଣୀ ଅବସ୍ଥିତ । ମାଙ୍କଡ଼ା ପଥର ଓ କଙ୍କରମିଶ୍ର ଲାଲ ମୃତ୍ତିକାର ଭୂମି, ବନ ଅରଣ୍ୟ ସମ୍ପଦରେ ଏ ଅଞ୍ଚଳ ପରିପୂର୍ଣ୍ଣ । ଅରଣ୍ୟରେ ଶାଳ, ପିଆଶାଳ, ଶାଗୁଆନ, ମହୁଲ, କୁସୁମ, ଶିଶୁ, ଧାମିନୀ ପ୍ରଭୃତି ମୂଲ୍ୟବାନ ବୃକ୍ଷ ବ୍ୟତୀତ ଅର୍ଜୁନ, କଦମ୍ବ, ଆମ୍ବ, ଜାମୁ, କେନ୍ଦୁ, କରମ, ନିମ୍ବ, ବର, ଅଶ୍ୱତ୍ଥ, କଇଥ, ତାଳ, ତେନ୍ତୁଳି ପ୍ରଭୃତି ବୃକ୍ଷ ଦେଖାଯାଏ ।

Digitized by srujanika@gmail.com

ବିଭିନ୍ନ ପ୍ରକାର ଲତା, ଗୁଳ୍ମ, ଚେରମୂଳ ଔଷଧ, ଲାଖ, ଝୁଣା, ମହୁ, ବେତ, କେନ୍ଦୁପତ୍ର, କୁସୁମ, ହରଡ଼ା, ବାହାଡ଼ା, ଅଁଳା ପ୍ରଭୃତି ଫଳ ଓ ଫୁଲ, ଆରଣ୍ୟକ ପଶୁ ଚର୍ମ, ହାତୀ ଦାନ୍ତ, ବିଭିନ୍ନ ପକ୍ଷୀର ପର ପ୍ରଭୃତି ଦ୍ରବ୍ୟ ଓ ସାମଗ୍ରୀ ଅରଣ୍ୟରୁ ମିଳିଥାଏ । ଅରଣ୍ୟରେ ମହାବଳ ବାଘ, ଭାଲୁ, ହାତୀ, ସମ୍ବର, ବାରହା, ଚିତା, ହେଣ୍ଡାଲ, ଜଙ୍ଗଲି କୁକୁର, ମାଙ୍କଡ଼, ପାତି ମାଙ୍କଡ଼, ମୂଷା, ବହୁ ବିଷଧର ସାପ, ଯଥା :—ନାଗ, ଗୋଖର, ବୋଡ଼ା, ଚନ୍ଦ୍ର ପ୍ରଭୃତି ସରୀସୃପ; ମୟୂର, ମଇନା, ଭୃଙ୍ଗରାଜ, ଶୁଆ, ଭାଲୁଖାଇ, କୋଚିଲାଖାଇ, ଛଞ୍ଚାଣ, ବଣି, କପୋତ ପ୍ରଭୃତି ବିଭିନ୍ନ ପଶୁ ଓ ପକ୍ଷୀ ଦେଖାଯାଆନ୍ତି ।

ଏ ଅଞ୍ଚଳରେ ଆବହାଓ୍ୱା ଉପକୂଳ ଅଞ୍ଚଳଠାରୁ ପୃଥକ । ଶୀତ ସମୟରେ ଅତ୍ୟଧିକ ଶୀତ, ଗ୍ରୀଷ୍ମ ସମୟରେ ପ୍ରଚଣ୍ଡ ଉତ୍ତାପ ଅନୁଭୂତ ହୁଏ ।

ଦକ୍ଷିଣ-ପୂର୍ବ ଦିଗର ଉପକୂଳାଞ୍ଚଳୀୟ ସମତଳ ଭୂମି ଚାଷୋପଯୋଗୀ ଉର୍ବର ମୃତ୍ତିକାରେ ଧାନ, ଗହମ, ସୋରିଷ, ଡାଲି, ପାନ, ନଡ଼ିଆ, ଲଙ୍କାଆମ୍ବ, କାଜୁ ପ୍ରଭୃତି ଶସ୍ୟସାମଗ୍ରୀ ପ୍ରଚୁର ପରିମାଣରେ ଉତ୍ପନ୍ନ ହୁଏ । ସମୁଦ୍ରରୁ ଲୁଣ ଓ ମାଛ ଆମଦାନୀ ହୁଏ । ଉତ୍ତର-ପଶ୍ଚିମାଞ୍ଚଳରେ ଧାନ, ଗହମ, ମକା, ବାଜରା, କାଜୁ ପ୍ରଭୃତି ଶସ୍ୟ ଅପେକ୍ଷାକୃତ କମ୍ ଉତ୍ପନ୍ନ ହେଲେହେଁ ସବାଇ ଘାସର ଉତ୍ପାଦନ ଅଧିକ । ବଡ଼ ବଡ଼ ପୁଷ୍କରିଣୀ, ବନ୍ଧ ଓ ନଦୀରୁ ଉଠା ଓ ଗଭୀର ନଳକୂପରୁ ନିର୍ଗତ ଜଳସେଚନ ଦ୍ୱାରା ବର୍ଷର ବିଭିନ୍ନ ସମୟରେ କୃଷି କାର୍ଯ୍ୟ ସମ୍ପାଦିତ ହୁଏ ।

ଉତ୍ତର-ପଶ୍ଚିମ ଭାଗ ବାରିପଦା ଓ ଝାଡ଼ଗ୍ରାମ ଅଞ୍ଚଳରେ ମୁଖ୍ୟତଃ ଆଦିବାସୀ ବହୁଳ ଜନବସତି ଦେଖାଯାଏ । ଏ ଅଞ୍ଚଳରେ ଉଚ୍ଚ ଓ ଉନ୍ନତ ହିନ୍ଦୁ ଜାତିର ଲୋକ-ସଂଖ୍ୟା ଅପେକ୍ଷାକୃତ କମ୍ । ଆଦିବାସୀମାନଙ୍କ ମଧ୍ୟରେ ସାନ୍ତାଳ, ଭୂମିଜ; ବାଥୁଡ଼ି, ଭୂୟାଁ, ଖଡ଼ିଆ, ଲୋଧା, ମାହିଁ ପ୍ରଭୃତି ଗୋଷ୍ଠୀ ଓ ବ୍ରାହ୍ମଣ, କରଣ, କ୍ଷତ୍ରିୟ, ରାଜୁ, ପୁରାଣ, ବଣିଆ, ଶୁଣ୍ଢୀ, ମାହାଲି, ସୁନାରି, ବୈଦ୍ୟ, ଗଉଡ଼, ପାଣ, ତନ୍ତୀ ପ୍ରଭୃତି ଜାତିର ଲୋକେ ବାସ କରନ୍ତି । ଉପକୂଳବର୍ତ୍ତୀ ଅଞ୍ଚଳର ଅଧିବାସୀଗଣ ମୁଖ୍ୟତଃ କୃଷକ ସମ୍ପ୍ରଦାୟ । ଖଣ୍ଡାୟତ, ମାହିଷ୍ୟ, ରାଜୁ, ବ୍ରାହ୍ମଣ, କରଣ, ବଣିଆ, ତନ୍ତୀ, ତେଲି, ସାନ୍ତାଳ, ଭୂମିଜ, ଖଡ଼ିଆ—ପ୍ରଭୃତି ବିଭିନ୍ନ ଜାତି ଓ ଗୋଷ୍ଠୀର ଲୋକ ବାସ କରନ୍ତି ।

ଗୋରୁ, ଛେଳି, ମେଣ୍ଢା, କୁକୁଡ଼ା ପ୍ରଭୃତି ସମଗ୍ର ଅଞ୍ଚଳର ପ୍ରଧାନ ଗୃହପାଳିତ ପଶୁ ଓ ପକ୍ଷୀ । ଗୋ ପୂଜା ଓ ବଳି ପ୍ରଥା ଏ ଅଞ୍ଚଳରେ ସର୍ବତ୍ର ପ୍ରଚଳିତ ।

**ପାଣି ପାଗ :**

ବାଲେଶ୍ୱର ଓ ମେଦିନୀପୁର ଉପକୂଳବର୍ତ୍ତୀ ଅଞ୍ଚଳରେ ମୁଖ୍ୟତଃ ଗ୍ରୀଷ୍ମ, ବର୍ଷା ଓ ଶୀତ ଋତୁର ପ୍ରଭାବ ଅନୁଭୂତ ହୁଏ । ସାଧାରଣତଃ ମାର୍ଚ୍ଚ ମାସରୁ ଗ୍ରୀଷ୍ମ ଋତୁ ଆରମ୍ଭ

Digitized by srujanika@gmail.com

ହୋଇ ଜୁନ୍ ମାସ ପର୍ଯ୍ୟନ୍ତ ଅନୁଭୂତ ହୋଇଥାଏ । ଦକ୍ଷିଣ ପଶ୍ଚିମ ସାମୁଦ୍ରିକ ବାୟୁ ପ୍ରବଳ ଗତିରେ ପ୍ରବାହିତ ହେବା ଫଳରେ ଗ୍ରୀଷ୍ମର ପ୍ରଚଣ୍ଡ ଉତ୍ତାପ ବିଶେଷ ଅନୁଭୂତ ହୁଏ ନାହିଁ । ସମୁଦ୍ର ପାଖ ଅଞ୍ଚଳଗୁଡ଼ିକରେ ଉତ୍ତାପ ଏ ସମୟରେ ନିମ୍ନକୁ ଖସି ଆସେ । ଜୁନ୍ କିମ୍ବା ଜୁଲାଇ ମାସର ପ୍ରଥମ ଦିନରୁ ବର୍ଷାଋତୁ ଆରମ୍ଭ ହୋଇ ସେପ୍ଟେମ୍ବର ଅକ୍ଟୋବର ପର୍ଯ୍ୟନ୍ତ ଉପଲବ୍ଧ ହୁଏ । ବାଲେଶ୍ୱର-ମେଦିନୀପୁରର ଉପକୂଳାଞ୍ଚଳରେ ଭୂମି ଏ ସମୟରେ କର୍ଦ୍ଦମାକ୍ତ ସନ୍ତସନ୍ତିଆ ଓ ବେଶି ଭାଗ ଜଳପୂର୍ଣ୍ଣ ରହେ । ଅକ୍ଟୋବର ମାସ ଶେଷରୁ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଶୀତ ଅନୁଭୂତ ହୁଏ । ଡ଼ିସେମ୍ବର ଜାନୁୟାରୀ ମାସରେ ମଝିରେ ମଝିରେ ବର୍ଷା ହୁଏ ।

ମୟୂରଭଞ୍ଜ-ଝାଡ଼ଗ୍ରାମର ଅରଣ୍ୟପୂର୍ଣ୍ଣ ପଥୁରିଆ ଅଞ୍ଚଳରେ ମୁଖ୍ୟତଃ ତିନିଗୋଟି ଋତୁ ଅନୁଭୂତ ହୁଏ । ଏ ଅଞ୍ଚଳରେ ମାର୍ଚ୍ଚ ମାସରୁ ମେ ମାସ ପର୍ଯ୍ୟନ୍ତ ପ୍ରଚଣ୍ଡ ଗ୍ରୀଷ୍ମ ଅନୁଭୂତ ହୁଏ । ଜୁନ୍ ମାସରୁ ସେପ୍ଟେମ୍ବର ମାସ ମଧ୍ୟରେ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ପ୍ରବାହିତ ହେବା ଫଳରେ ବର୍ଷା ଉପଲବ୍ଧ ହୁଏ । ଅକ୍ଟୋବର, ନଭେମ୍ବର ମାସ ଦୁଇଟିରେ ବର୍ଷା ଓ ଶୀତ ଉଭୟ ଅନୁଭୂତ ହୁଏ । ଡ଼ିସେମ୍ବର ମାସରୁ ଫେବୃୟାରୀ ମଧ୍ୟରେ ଉପକୂଳାଞ୍ଚଳ ଅପେକ୍ଷା ଅଧିକ ଶୀତ ଅନୁଭୂତ ହୁଏ । ଏ ଅଞ୍ଚଳରେ ମେ ମାସରେ ପ୍ରଚଣ୍ଡ ଗ୍ରୀଷ୍ମ, ଜୁନ୍, ଜୁଲାଇ ଓ ଅଗଷ୍ଟ ମାସରେ ପ୍ରବଳ ବର୍ଷା, ଡ଼ିସେମ୍ବର ଓ ଜାନୁୟାରୀ ମାସରେ ଅତ୍ୟଧିକ ଶୀତ ଅନୁଭୂତ ହୁଏ । ମେ ମାସ, ଅକ୍ଟୋବର ଓ ନଭେମ୍ବର ମାସରେ ବଙ୍ଗୋପସାଗର ମଧ୍ୟରେ ସୃଷ୍ଟି ହେଉଥିବା ଲଘୁଚାପ ଫଳରେ ଘୂର୍ଣ୍ଣି ବାତ୍ୟା ସାଙ୍ଗକୁ ବହୁତ ଦିନ ଧରି ବର୍ଷା ଓ ଝଡ଼ ଅନୁଭୂତ ହୁଏ ।

**ଜୀବନ ଧାରା :**

ଆଲୋଚ୍ୟ ଅଞ୍ଚଳର ଓଡ଼ିଆ ସମାଜରେ ସାଧାରଣତଃ ଏକାନ୍ନବର୍ତ୍ତୀ ପରିବାର ପ୍ରଥା ପ୍ରଚଳିତ । ପରିବାରରେ ଲୋକ ସଂଖ୍ୟା ଅଧିକ ହେଲେ, ଭାଇ ଭାଇମାନଙ୍କ ମଧ୍ୟରେ ମନାନ୍ତର ହେଲେ କିମ୍ବା କେହି ଭାଇ ଅନ୍ୟ ସ୍ଥାନର ବାସିନ୍ଦା ହେଲେ ସମ୍ପତ୍ତି ଭାଗ ବଣ୍ଟନ ହୁଏ । ସାଂପ୍ରତିକ କାଳରେ ଏକାନ୍ନବର୍ତ୍ତୀ ପରିବାର ସବୁ ଧୀରେ ଧୀରେ ବିନଷ୍ଟ ହେଉଅଛି ।

ଆଦିବାସୀମାନଙ୍କ ସମାଜରେ ଏକାନ୍ନବର୍ତ୍ତୀ ପରିବାର ବାସ କରିବା କ୍ୱଚିତ୍ ଦେଖାଯାଏ । ପୁଅ ବାହା ହେଲା ପରେ ବୋହୂ ସହିତ ଅଲଗା ରହିବା ପ୍ରଚଳିତ ।

ହିନ୍ଦୁ ଓ ଆଦିବାସୀ ଉଭୟ ସମାଜରେ ବିବାହ ପରେ କନ୍ୟାର ବାପଘର ସହିତ ସମ୍ପର୍କ ମୁଖ୍ୟ ହୋଇ ରହେ ନାହିଁ । ଘର ଜୋଇଁଙ୍କ ଓ ଗୁଡ଼ପଣ ପ୍ରଭୃତି କେତେକ ସ୍ୱତନ୍ତ୍ର କ୍ଷେତ୍ରରେ ଏହାର ବ୍ୟତିକ୍ରମ ଲକ୍ଷ୍ୟ କରାଯାଏ ।

Digitized by srujanika@gmail.com

ଓଡ଼ିଆ ସମାଜରେ ଭଣଜା ଭଣିଜ ଉପରେ ମାମୁଁଙ୍କର ଅଧିକାର ଅଧିକ ସ୍ନେହପୂର୍ଣ୍ଣ ଓ ଦାୟିତ୍ୱମୂଳକ ।

ସମ୍ପତ୍ତି ଭାଗବଣ୍ଟନ ପାରମ୍ପରିକ ରୀତିରେ ଅନୁଷ୍ଠିତ ହୁଏ । ଆଧୁନିକ କାଳରେ କେତେକ କ୍ଷେତ୍ରରେ 'ଉଇଲ'ର ପ୍ରଚଳନ ହେଉଅଛି ।

ପୂର୍ବରୁ ହିନ୍ଦୁ ସମାଜରେ ବହୁ ବିବାହ •ପ୍ରଥା ପ୍ରଚଳିତ ଥିଲା । ବର୍ତ୍ତମାନ ବହୁ ବିବାହ ଆଇନତଃ ନିଷିଦ୍ଧ ହୋଇଥିଲେହେଁ ଆଲୋଚ୍ୟ ଅଞ୍ଚଳରେ କେତେକ କ୍ଷେତ୍ରରେ ବହୁ ବିବାହ ପ୍ରଥା ପ୍ରଚଳିତ ଅଛି । ପ୍ରଥମ ସ୍ତ୍ରୀଙ୍କର ଅକାଳ ମୃତ୍ୟୁ ଘଟିଲେ, କିମ୍ବା ପ୍ରଥମ ସନ୍ତାନହୀନା ହେଲେ, କିମ୍ବା ପୁତ୍ର ସନ୍ତାନ ପ୍ରାପ୍ତି ନିମନ୍ତେ, ଜଣେ ପୁରୁଷ ଦ୍ୱିତୀୟବାର ସ୍ତ୍ରୀ ଗ୍ରହଣ କରିପାରନ୍ତି । ସ୍ତ୍ରୀ ଚରିତ୍ରହୀନା ହେଲେ, ପାଗଳୀ କିମ୍ବା ରୋଗିଣୀ ହେଲେ ମଧ୍ୟ ଦ୍ୱିତୀୟ ବିବାହ ଅନୁଷ୍ଠିତ ହୁଏ । ଚରିତ୍ରହୀନତା କ୍ଷେତ୍ରରେ ଛାଡ଼ିଦେବା ଘଟଣା ଘଟେ । ଆଧୁନିକ କାଳରେ ଆଇନ ଅନୁଯାୟୀ ଛାଡ଼ପତ୍ର ପ୍ରଥା ପ୍ରଚଳିତ ହେଉଅଛି । କେତେକ କ୍ଷେତ୍ରରେ ଅସବର୍ଣ୍ଣ ବିବାହ ଅନୁଷ୍ଠିତ ହୁଏ । ଏହା ସାଧାରଣତଃ ପ୍ରେମ କ୍ଷେତ୍ରରେ ଦେଖାଯାଏ । ସମଗୋତ୍ରରେ ବିବାହ ନିଷେଧ । ବିଶେଷତଃ ଉଚ୍ଚ ବର୍ଣ୍ଣରେ ଏ ପ୍ରଥା ପ୍ରଚଳିତ । ମାଉଳ କନ୍ୟା ବିବାହ କ୍ୱଚିତ ଘଟିଥାଏ । ଏହା ସମ୍ପର୍କୀୟ ମାମୁଁ ଝିଅ କ୍ଷେତ୍ରରେ କେବଳ ସମ୍ଭବ ହୁଏ । କେତେକ ଜାତିର ମାମୁଁ-ଭଣିଜି ବିବାହ କ୍ୱଚିତ୍ ଘଟେ ।

ଆଲୋଚ୍ୟ ଅଞ୍ଚଳରେ ଓଡ଼ିଆ ସମାଜରେ ସର୍ବତ୍ର ଯୌତୁକ ପ୍ରଥା ପ୍ରଚଳିତ । ବିଭିନ୍ନ ପରିସ୍ଥିତିରେ/କ୍ଷମତାନୁସାରେ ଯୌତୁକର ପରିମାଣ ଓ ଯୌତୁକ ସାମଗ୍ରୀ ପ୍ରଦାନ କରାଯାଏ । ଏ ଅଞ୍ଚଳରେ ୫୦ ବର୍ଷ ପୂର୍ବେ 'କନ୍ୟାପଣ' ପ୍ରଥା ପ୍ରଚଳିତ ଥିଲା । ଉତ୍ତର-ପୂର୍ବାଞ୍ଚଳୀୟ ସମାଜରେ (ବ୍ରାହ୍ମଣ, କରଣ ପ୍ରଭୃତି କେତେକ ଉଚ୍ଚ ବର୍ଣ୍ଣ ବ୍ୟତିରେକେ) ସର୍ବତ୍ର ବିଧବା ବିବାହ ପ୍ରଥା ପ୍ରଚଳିତ ।

ଓଡ଼ିଆ ଭାଷୀମାନଙ୍କ ମଧ୍ୟରେ ବିଶେଷତଃ ବ୍ରାହ୍ମଣ, କରଣ, ଖଣ୍ଡାୟତ ପ୍ରଭୃତି ଶ୍ରେଣୀର ଲୋକ ସମାଜରେ ନାରୀମାନେ ପୁରୁଷମାନଙ୍କ ଉପରେ ମୁଖ୍ୟତଃ ନିର୍ଭରଶୀଳା । ପୁରୁଷମାନଙ୍କ ସହାୟତା ବିନା ସେମାନେ କେତେକ ମୁଖ୍ୟ ସାମାଜିକ ରୀତିନୀତି ପାଳନ ମଧ୍ୟ କରିପାରନ୍ତି ନାହିଁ । କେତେକ କ୍ଷେତ୍ରରେ ଅନୁନ୍ନତ ହିନ୍ଦୁ ସମ୍ପ୍ରଦାୟ ସ୍ତ୍ରୀଲୋକ ଉନ୍ନତ ଜାତିର ସ୍ତ୍ରୀ ଲୋକଙ୍କ ଅପେକ୍ଷା ଅଧିକ ସ୍ୱାଧୀନତା ଉପଭୋଗ କରନ୍ତି । ସାଂପ୍ରତିକ କାଳରେ ସ୍ତ୍ରୀ ଲୋକେ ଅଧିକ ସ୍ୱାବଲମ୍ବୀ ହେବାର ପରିଲକ୍ଷିତ ହୁଏ ।

Digitized by srujanika@gmail.com

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ବିଭିନ୍ନ ଓଡ଼ିଆ ଭାଷୀ ବିଭିନ୍ନ ଆଦିବାସୀ ଗୋଷ୍ଠୀରେ ଭିନ୍ନ ଭିନ୍ନ ପରିସ୍ଥିତିରେ ହିନ୍ଦୁ ରୀତିନୀତି ପ୍ରଭାବିତ ନିଜ ନିଜ ଗୋଷ୍ଠୀଗତ ପାରମ୍ପରିକ ପ୍ରଥା ପାଳିତ ହୁଏ ।

ବାଲେଶ୍ୱର-ମେଦିନୀପୁର ଉପକୂଳାଞ୍ଚଳ ଲୋକେ ସାଧାରଣତଃ ମାଟିରେ ଦୁଇ ଛିନ୍ଦ ଚାଳ ଘର ନିର୍ମାଣ କରିଥାନ୍ତି । ଘରଗୁଡ଼ିକ ଆଗରୁ କୁଟାରେ ଛପର ହେଉଥିଲା । ବର୍ତ୍ତମାନ ଗ୍ରାମାଞ୍ଚଳରେ ମଧ୍ୟ ଆଜବେଷ୍ଟସ୍, ଟିଣ, ଟାଇଲ ଛପର ହୁଏ । ସହରାଞ୍ଚଳରେ ଅଧିକ ସଂଖ୍ୟକ ପକ୍କା ଘର ଦୃଷ୍ଟିଗୋଚର ହୁଏ ।

ଆଲୋଚ୍ୟ ଅଞ୍ଚଳର ସ୍ତ୍ରୀ ଲୋକେ ସାଧାରଣତଃ ତନ୍ତ ଓ ମିଲ ତିଆରି ରଙ୍ଗ ବେରଙ୍ଗର ଶାଢ଼ୀ ପିନ୍ଧନ୍ତି । ଶାଢ଼ୀ ସହିତ ସାୟା, ବ୍ଲାଉଜ ବର୍ତ୍ତମାନ ସର୍ବତ୍ର ବ୍ୟବହୃତ ହେଉଅଛି । ପର୍ବପର୍ବାଣି ଉପଲକ୍ଷେ ସୁନା, ରୁପା ପ୍ରଭୃତି ଧାତୁରେ ନିର୍ମିତ ଗହଣା ଅଧିକ ବ୍ୟବହୃତ ହୁଏ । ପୁରୁଷମାନେ ସାଧାରଣତଃ ଧୋତି, ଗଞ୍ଜି, ଗାମୁଛା, ଲୁଙ୍ଗୀ, ଚାଦର, ଚଉଲିଆ, ଜାମା, ପ୍ୟାଣ୍ଟ, ରୁମାଲ ବ୍ୟବହାର କରନ୍ତି । ଝିଅମାନେ ଆଧୁନିକ ଫେସନରେ ପୋଷାକ ବ୍ୟବହାର କରିଥାନ୍ତି । ଝିଅ ଓ ସ୍ତ୍ରୀ ଲୋକ ଭିନ୍ନ ଭିନ୍ନ ଋତୁରେ ଉପଲବ୍ଧ ବିଭିନ୍ନ ଫୁଲ ଗଭାରେ ଖୋସନ୍ତି । ଏ ଅଞ୍ଚଳର ଲୋକେ ମୁଖ୍ୟଖାଦ୍ୟ ରୂପେ ଭାତ, ପଖାଳ, ମୁଢ଼ି, ଚୂଡ଼ା ଜଳଖିଆ ରୂପେ ବ୍ୟବହାର କରନ୍ତି । ଲୁଣି ଓ ମଧୁର ଜଳର ମାଛ, ମାଂସ, ଡାଲିପରିବା, ତରକାରୀ ଶାଗ ଭଜା ଖାଆନ୍ତି । ମାଛର ବ୍ୟବହାର ଅଧିକ ହୁଏ । ଉପକୂଳାଞ୍ଚଳରେ ଶୁଖୁଆର ଚାହିଦା ଅଧିକ । ଗ୍ରାମାଞ୍ଚଳରେ ମୁଢ଼ିର ପ୍ରଚଳନ ବହୁତ । ସହରାଞ୍ଚଳରେ ମୁଢ଼ି, ଚୂଡ଼ା, ରୁଟି, ପାଉଁରୁଟି ଜଳଖିଆ ରୂପେ ବ୍ୟବହୃତ ହୁଏ । ଦହି, ଦୁଧ, ଛେନା ତିଆରି ଖାଦ୍ୟ ଘରେ ପ୍ରସ୍ତୁତ କରି କମ୍ବା କିଣି ଆଣି ଖାଆନ୍ତି । ବିଭିନ୍ନ ପର୍ବପର୍ବାଣୀ ଉପଲକ୍ଷେ ବହୁ ପ୍ରକାର ପିଠା,ପଣା ପ୍ରସ୍ତୁତ ହୁଏ । ନଡ଼ିଆ, କାକୁଡ଼ି, ମୁଗ, ବୁଟ, କଦଳୀ, କାଜୁ, ପଣସ, ବେଲ ପ୍ରଭୃତି ବିଭିନ୍ନ ଋତୁଭିତ୍ତିକ ଫଳ ଓ ଉତ୍ପାଦିତ ଦ୍ରବ୍ୟ ବ୍ୟବହୃତ ହୁଏ । ଗମନାଗମନର ସୁବିଧା ହେତୁ ଅଙ୍ଗୁର, ନାସପାତି, ଖଜୁରି ପ୍ରଭୃତି ଫଳ ଆମଦାନୀ ହୋଇ ବ୍ୟବହୃତ ହୁଏ । ସମଗ୍ର ଅଞ୍ଚଳରେ ଅନେକ ସ୍ଥାନରେ ପାନ ଉତ୍ପନ୍ନ ହୁଏ । ପାନର ବହୁଳ ପ୍ରଚଳନ ସର୍ବତ୍ର ପରିଲକ୍ଷିତ ହୁଏ ।

ଘରମାନଙ୍କରେ କାଠର ଖଟ, ପଲଙ୍କ, ଚେୟାର, ବେଞ୍ଚ ଓ ଆଲମିରା ପ୍ରଭୃତିର ବ୍ୟବହାର ସର୍ବତ୍ର ଦେଖାଯାଏ । ସାଧାରଣତଃ ଗ୍ରାମାଞ୍ଚଳ ଅପେକ୍ଷା ସହରାଞ୍ଚଳରେ ଆଧୁନିକ ସୁବିଧା ସୁଯୋଗ ବେଶି ଉପଲବ୍ଧ ହୁଏ ।

ବାରିପଦା-ଝାଡ଼ଗ୍ରାମ ଅରଣ୍ୟାଞ୍ଚଳରେ ଜୀବନଧାରା ପାରଂପରିକ ଓ କଷ୍ଟକର । ଏ ଅଞ୍ଚଳର ଲୋକେ ଅଧିକ ପରିଶ୍ରମୀ, କିନ୍ତୁ ସହିଷ୍ଣୁ ହେଲେହେଁ ଜୀବନଧାରାର ମାନ

Digitized by srujanika@gmail.com

ଉପକୂଳାଞ୍ଚଳ ଅପେକ୍ଷା ଉନ୍ନତ ନୁହେଁ । ଗ୍ରାମାଞ୍ଚଳରେ ମାଟି ନିର୍ମିତ କାନ୍ଥ ଓ ନଡ଼ା ଛପର ଗୃହର୍ଣ୍ଣୀରର ସଂଖ୍ୟାରେ ଅଧିକ । ଟାଇଲ, ଟିଣ ଓ ଏଜବେଷ୍ଟସ୍ ମଧ୍ୟ ଅନେକ ବ୍ୟବହାର କରୁଛନ୍ତି । ଏ ଅଞ୍ଚଳରେ ନିମ୍ନ ମଧ୍ୟବିତ୍ତ, ମଧ୍ୟବିତ୍ତ ଗୃହୀ ସାଧାରଣତଃ ଖଞ୍ଜା ଘରେ ବାସ କରନ୍ତି । ପ୍ରତ୍ୟେକ ସ୍ୱଚ୍ଛଳ ବ୍ୟକ୍ତିଙ୍କ ଘର ମାଟି କାନ୍ଥର ପ୍ରାଚୀର ପରିବେଷ୍ଟିତ ହୋଇଥାଏ । ଘର ପାଖରେ ପରିବା ଷ୍ଟଶ ନିମନ୍ତେ ପରିବା ବାଆଗ୍ମୁଟିଏ ରହିଥାଏ । ଘରଗୁଡ଼ିକ ଗାଁର ମୁଖ୍ୟ ରାସ୍ତାର ଦୁଇ ପାଖରେ ନିର୍ମିତ ହୋଇଥାଏ । ଘରର ସମ୍ମୁଖପାଖେ ଅଣଓସାରିଆ ବାରଣ୍ଡା ଥାଏ । ସ୍ୱଚ୍ଛଳ ପରିବାରରେ ଶୋଇବା ଘରେ ଗ୍ଲେଟ ଝରକା ରହିଥାଏ । ଘରମାନଙ୍କରେ କାଠପଟା ଓ ବାଉଁଶରେ ଛାତ ପଡ଼ିଥାଏ । ମଫସଲ ଅଞ୍ଚଳ ଅପେକ୍ଷା ଗ୍ରାମାଞ୍ଚଳରେ ପକ୍‌କା ଘର କ୍ୱଚିତ୍ ଦେଖାଯାଏ ।

ମାଟିର ନିର୍ମିତ କାନ୍ଥଗୁଡ଼ିକ ବିଭିନ୍ନ ରଙ୍ଗ ମାଟି ଓ ଗୋବରରେ ସୁନ୍ଦର ଭାବେ ଲିପି ପରିଷ୍କାର ପରିଚ୍ଛନ୍ନ ରହିଥାଏ । ସ୍ୱଚ୍ଛଳ ହିନ୍ଦୁ ପରିବାରରେ କାଠର ନିର୍ମିତ ଖଟ, ଚେୟାର, ଟେବୁଲ, ବେଞ୍ଚ. ଆଲମାରି ପ୍ରଭୃତି ଆସବାବପତ୍ର ଥିବାର ଦେଖାଯାଏ । ପ୍ରତ୍ୟେକ ଲୋକଙ୍କ ଘରେ ସାଧାରଣତଃ ଦଉଡ଼ିଆ ଖଟ ବ୍ୟବହୃତ ହୁଏ ।

ସାନ୍ତାଳ ଓ ଖଡ଼ିଆ ସ୍ତ୍ରୀ ଲୋକମାନେ ପିତ୍ତଳ ନିର୍ମିତ ଗହଣା ବ୍ୟବହାର କରନ୍ତି । ଏତଦ୍ ବ୍ୟତୀତ ରୂପା, ନିକେଲ ପ୍ରଭୃତି ଧାତୁରେ ନିର୍ମିତ ଗହଣା ମଧ୍ୟ ବ୍ୟବହାର କରିଥାନ୍ତି ।

ଏ ଅଞ୍ଚଳର ଆଦିବାସୀ ଲୋକେ ସାଧାରଣତଃ ହାଣ୍ଡିଆ ପାନ କରନ୍ତି । ଅନେକ ମଧ୍ୟ ମହୁଲି ପାନ କରନ୍ତି ।

ମାଛ, ମାଂସ ଓ ପନିପରିବା ତରକାରି ସହିତ ଭାତ, ପଖାଳ, ମୁଢ଼ି ପ୍ରଭୃତି ଖାଦ୍ୟ ସର୍ବତ୍ର ପ୍ରଚଳିତ ।

**ପ୍ରଶାସନିକ ମୁଖ୍ୟ କେନ୍ଦ୍ର :**

ମେଦିନୀପୁର ସହର ଖ୍ରୀଷ୍ଟୀୟ ତେର ଶତକରେ ଓଡ଼ିଶାର ସାମନ୍ତ ରାଜା ପ୍ରାଣ କରଙ୍କ ପୁତ୍ର ମେଦିନୀକର ପ୍ରତିଷ୍ଠା କରିଥିବାର ଜନଶ୍ରୁତି ଅଛି । ପ୍ରସିଦ୍ଧ ସଂସ୍କୃତ ଅଭିଧାନ 'ମେଦିନୀ କୋଷ'ର ସଂକଳନ ଭାବରେ ମେଦିନୀକର ବିଖ୍ୟାତ । ଏ ଜିଲ୍ଲାର ପ୍ରଶାସନିକ ମୁଖ୍ୟ ଦପ୍ତର ମେଦିନୀପୁର ସହରରେ ଅବସ୍ଥିତ ।

୧୯୪୯ ମସିହାରେ ପୂର୍ବତନ ମୟୂରଭଞ୍ଜ ରାଜ୍ୟ ଓଡ଼ିଶା ସହିତ ମିଶି ଓଡ଼ିଶାର ଏକ ଜିଲ୍ଲା ରୂପେ ପରିଗଣିତ ହେଲା । ମଧ୍ୟଯୁଗୀୟ ମୟୂର ଓ ଭଞ୍ଜ ନାମକ ଦୁଇଗୋଟି ରାଜବଂଶର ନାମାନୁସାରେ ରାଜ୍ୟର ନାମ ମୟୂରଭଞ୍ଜ ହୋଇଥିବାର ଜଣାଯାଏ । ବୁଢ଼ାବଳଙ୍ଗ ନଦୀ କୂଳରେ ଅବସ୍ଥିତ ବାରିପଦା ସହର ପୂର୍ବତନ ରାଜ୍ୟର ରାଜଧାନୀ

Digitized by srujanika@gmail.com

ରୂପେ ସ୍ଥାପିତ ହୋଇଥିଲା । ଏହା ବର୍ତ୍ତମାନ ମୟୂରଭଞ୍ଜ ଜିଲ୍ଲାର ପ୍ରଶାସନିକ ମୁଖ୍ୟ କେନ୍ଦ୍ର ରୂପେ ପରିଗଣିତ । ବାଲେଶ୍ୱର ଜିଲ୍ଲାର ପ୍ରଶାସନିକ ମୁଖ୍ୟ କେନ୍ଦ୍ର ସ୍ଥଳରେ ବାଲେଶ୍ୱର ସହର ବୁଢ଼ାବଳଙ୍ଗ ନଦୀ କୂଳରେ ଅବସ୍ଥିତ । ପୁରାଣଯୁଗର ରାଜା ବାଣାସୁରଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପୂଜିତ ହେଉଥିବା ବାଣେଶ୍ୱର ମହାଦେବଙ୍କ ନାମାନୁସାରେ ବାଲେଶ୍ୱର ନାମିତ ହୋଇଥିବା କଥିତ ।

**ସଂକ୍ଷିପ୍ତ ରାଜନୈତିକ ଇତିହାସ :**

ବର୍ତ୍ତମାନର ଓଡ଼ିଶାଭୂଖଣ୍ଡ ପ୍ରାଚୀନ କାଳରେ କଳିଙ୍ଗ, ଉତ୍କଳ, ଓଡ୍ର ଓ କୋଶଳ ନାମରେ ପ୍ରସିଦ୍ଧ ଥିଲା । ପ୍ରାଚୀନ ସଂସ୍କୃତ ଓ ପାଲି ସାହିତ୍ୟମାନଙ୍କରେ ଏ ସବୁର ନାମ ଉଲ୍ଲେଖ ଥିବାର ଜଣାଯାଏ । ପୁରାଣ ସାହିତ୍ୟରେ କଳିଙ୍ଗ ସହିତ ଅଙ୍ଗ, ବଙ୍ଗ, ପୁଣ୍ଡ୍ର ଓ ସୁମହ ନାମରେ ଉଲ୍ଲେଖ ଦେଖାଯାଏ । ମହାଭାରତରେ କଳିଙ୍ଗ ରାଜ୍ୟ ଓ ଏହାର ଅଧିବାସୀ, ରାଜା ଓ ସୈନ୍ୟମାନଙ୍କ ବୀରତ୍ୱ ସମ୍ପର୍କରେ ଉଲ୍ଲେଖ ରହିଅଛି । ପରିବ୍ରାଜକ ମେଗାସ୍ଥିନିସ୍ ଓ ପ୍ଲିନିଙ୍କ ବିବରଣୀରୁ କଳିଙ୍ଗ ରାଜ୍ୟର ଉଲ୍ଲେଖ ମିଳୁ-ଥିଲେହେଁ ଏହାର ସୀମା ସମ୍ପର୍କରେ କୌଣସି ସୂଚନା ମିଳେ ନାହିଁ । ଖ୍ରୀ. ପୂ. ୩ୟ ଶତକ ବେଳକୁ କଳିଙ୍ଗ ଯେ ଏକ ଦୁର୍ଦ୍ଧର୍ଷ ଓ ଶକ୍ତିଶାଳୀ ରାଷ୍ଟ୍ରରୂପେ ପୂର୍ବ ଭାରତରେ ପ୍ରତିଷ୍ଠିତ ହୋଇଥିଲା, ତାହାର ପ୍ରମାଣ ସମ୍ରାଟ ଅଶୋକଙ୍କ ସହିତ କଳିଙ୍ଗ ରାଷ୍ଟ୍ରରେ ସଂଘଟିତ ଯୁଦ୍ଧରୁ ପ୍ରତିପନ୍ନ ହୁଏ । ଅଶୋକଙ୍କ ଧଉଳୀ ଶିଳାଲେଖରୁ ତତ୍କାଳୀନ କଳିଙ୍ଗ ରାଷ୍ଟ୍ରର ପ୍ରକୃଷ୍ଟ ପରିଚୟ ମିଳେ । ଖ୍ରୀ. ପୂ. ଦ୍ୱିତୀୟ ଶତାବ୍ଦୀବେଳକୁ କଳିଙ୍ଗାଧିପତି ସମ୍ରାଟ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରୁ କଳିଙ୍ଗ ସାମ୍ରାଜ୍ୟର ସୀମା ଉତ୍ତରରେ ଗଙ୍ଗା ନଦୀ, ଦକ୍ଷିଣରେ ରାମେଶ୍ୱରମ୍, ଉତ୍ତର-ପଶ୍ଚିମ ଦିଗରେ ବିନ୍ଧ୍ୟ ପର୍ବତମାଳା ପର୍ଯ୍ୟନ୍ତ ବିସ୍ତୃତ ଥିବାର ଜଣାଯାଏ । କେଶରୀ ବଂଶର ରାଜୁତି (୫୨୦ ଖ୍ରୀ.) ପର୍ଯ୍ୟନ୍ତ ଓଡ଼ିଶା ଇତିହାସର ଅନ୍ଧକାର ଯୁଗ । ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀରେ କାଳିଦାସଙ୍କ ରଚିତ ରଘୁ ବଂଶରେ କଳିଙ୍ଗ ରାଷ୍ଟ୍ର ଉତ୍କଳ ଓ କଳିଙ୍ଗ ଏପରି ଦୁଇ ଭାଗରେ ବିଭକ୍ତ ହୋଇ-ଥିବାର ଦେଖୁଁ । ଏଥିରେ କଳିଙ୍ଗର ଉତ୍ତର ଅଂଶ ଉତ୍କଳ ନାମରେ ପରିଚିତ । ଚତୁର୍ଥ ଶତକରେ ଉତ୍କଳର ଅଧିବାସୀଗଣ ମହାରାଜ ରଘୁଙ୍କୁ କଳିଙ୍ଗକୁ ରାସ୍ତା ପ୍ରଦର୍ଶନ କରିଥିବାର ବିବରଣୀ ପ୍ରଦତ୍ତ ହୋଇଅଛି । ଉତ୍କଳ ରାଷ୍ଟ୍ରର ଉତ୍ତର ସୀମାରେ କପିଶା (ବର୍ତ୍ତମାନର କାସାଇ ନଦୀ) ନଦୀ ପ୍ରବାହିତ ଥିବାର ଉଲ୍ଲେଖ ରହିଅଛି । କେଶରୀ ବଂଶ (୫୯୦-୧୦୪୨ ଖ୍ରୀ.) ଉତ୍କଳର ଉତ୍ତର ସୀମା କଂସାଇ ନଦୀ ଓ ଦକ୍ଷିଣରେ ଋଷିକୁଲ୍ୟା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ହୁଏନସାଂଙ୍କ ବିବରଣୀରୁ ତାମ୍ରଲିପ୍ତି ବନ୍ଦର କଳିଙ୍ଗ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବାର ଜଣାଯାଏ । କେଶରୀମାନଙ୍କ ପରେ ଗଙ୍ଗବଂଶୀ ସମ୍ରାଟମାନେ (୧୦୪୨-୧୪୩୪ ଖ୍ରୀ.) ଉତ୍କଳର ଶାସନ କ୍ଷମତା ଅଧିକାର କଲେ । ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ (୧୦୭୮-୧୧୫୦ ଖ୍ରୀ.) ଦେବ ସମସାମୟିକ ଭାରତୀୟ

Digitized by srujanika@gmail.com

ରାଜନୀତିରେ ପୂର୍ବ ଭାରତର ଜଣେ ଶକ୍ତିଶାଳୀ ରାଜା ଭାବରେ ନିଜକୁ ପ୍ରତିଷ୍ଠିତ କରିଥିଲେ । ନିଜର ପରାକ୍ରମ ବଳରେ ସେ ଉତ୍ତର ଦିଗରେ ଗଙ୍ଗା ନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ମଧ୍ୟସ୍ଥ ସମସ୍ତ ଭୂମି ଉପରେ ଅଖଣ୍ଡ ପ୍ରଭୁତ୍ୱ ପ୍ରତିଷ୍ଠା କରିଥିଲେ । ଦକ୍ଷିଣ-ପଶ୍ଚିମ ବଙ୍ଗଳାର କିଛି ଅଂଶ ସହ ଭାଗୀରଥୀ ନଦୀ ପର୍ଯ୍ୟନ୍ତ ଅଞ୍ଚଳ ଅଧିକାର ପୂର୍ବକ ପୁରୁଣୀ ଆରମ୍ୟ (ଆରାମବାଗ)ଠାରେ ତାଙ୍କର ଦ୍ୱିତୀୟ ରାଜଧାନୀ ପ୍ରତିଷ୍ଠା କରିଥିଲେ । ସେନ ରାଜଗଣ ସେ ସବୁ ଅଞ୍ଚଳ ପୁନର୍ଦ୍ଦଖଲ କରି ନେଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଓଡ଼ିଶାର ଗଜପତିଙ୍କ ଅଧୀନସ୍ଥ ହୋଇଥିଲା । ଚୋଡ଼ଗଙ୍ଗ ଦେବ ଜଣେ ଶକ୍ତିଶାଳୀ ରାଜା ଭାବରେ ୭୨ ବର୍ଷ ରାଜୁତି କରି ଯେଉଁ ଉତ୍କଳ ରାଷ୍ଟ୍ର ପ୍ରତିଷ୍ଠା କରିଥିଲେ, ତାହା ୩୨୫ ବର୍ଷ ପର୍ଯ୍ୟନ୍ତ ପ୍ରତିଷ୍ଠିତ ଥିଲା । ସେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କରି ଓଡ଼ିଶା ଇତିହାସ ଓ ସମଗ୍ର ହିନ୍ଦୁ ଜଗତରେ ଅକ୍ଷୟ କୀର୍ତ୍ତିର ଅଧିକାରୀ ହୋଇଥିଲେ । ※

ନରସିଂହ ଦେବ ପ୍ରଥମ (ଲାଙ୍ଗୁଳା ନରସିଂହ ଦେବ ୧୨୩୪-୧୨୪୫ ଖ୍ରୀ.) ଏକ ସମୟରେ ହାଓଡ଼ା, ହୁଗୁଳୀ, ବାଙ୍କୁଡ଼ା ଓ ବୀରଭୂମି ପ୍ରଭୃତି ଅଞ୍ଚଳ ଆକ୍ରମଣ କରି ଉତ୍କଳ ରାଷ୍ଟ୍ରର ଅନ୍ତର୍ଭୁକ୍ତ କରିଥିଲେ । ନରସିଂହ ଦେବ "ଯୁଦ୍ଧ ଓ ରାଜନୀତିରେ ଯେପରି ଧୁରନ୍ଧର ଥିଲେ, କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ପ୍ରତିଷ୍ଠାରେ ସେହିପରି ଅଗ୍ରଣୀ ଥିଲେ ।" ※※

ସେ ତାଙ୍କର ରାଜତ୍ୱ କାଳରେ ପୃଥିବୀ ବିଖ୍ୟାତ ସୂର୍ଯ୍ୟ ମନ୍ଦିର ନିର୍ମାଣ କରାଇଥିଲେ । ତାଙ୍କ ରାଜତ୍ୱ କାଳରେ ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ଓଡ଼ିଶାର ଏକତ୍ରୀକରଣ କରାଇଥିଲେ । ସମଗ୍ର ରାଜ୍ୟରେ ଚରାସ୍ତୃତ ଓଡ଼ିଆ ସଂସ୍କୃତି ଓ ଭାଷା ପ୍ରଚଳିତ ହୋଇଥିଲା ।

---

※ "Ruling for long 72 years he founded the strong Ganga Kingdom in Orissa which was destined to survive for 325 years. By erecting the Jagannath temple and by increasing the importance of this famous shrine he also earned immortal fame in Orissan History"—History of Orissa, K. C. Panigrahi—1981, P. 156.

※ ※ "His achievements in the field of art and architecture were as brilliant as his achievements in the fields of politics and wars."—History of Orissa, K. C. Panigrahi—1981, P. 166.

Digitized by srujanika@gmail.com

ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବ (୧୪୩୫-୧୪୬୭ ଖ୍ରୀ.) କଳିଙ୍ଗ ସମ୍ରାଟ ଖାରବେଳଙ୍କ ପରେ ହିଁ କେବଳ ଓଡ଼ିଶା ସାମ୍ରାଜ୍ୟର ପ୍ରତିଷ୍ଠାତା ଭାବେ ଐତିହାସିକମାନଙ୍କ ଦ୍ୱାରା ପରିଗଣିତ ହୁଅନ୍ତି । ଗଙ୍ଗ ବଂଶର ଉତ୍ତରାଧିକାରୀ ଭାବରେ ଗଜପତି ଉପାଧି ତାଙ୍କର ପ୍ରାପ୍ୟ ଥିଲା । ୧୪୪୭ ଖ୍ରୀ.ରେ ପ୍ରଦତ୍ତ ଗୋଟିଏ ଶିଳାଲେଖ ଘୋଷଣାନାମାରେ କପିଳେନ୍ଦ୍ର ଦେବ "ଗୌଡ଼େଶ୍ୱର" ଉପାଧିରେ ନିଜକୁ ଭୂଷିତ କରାଇଛନ୍ତି । ଏହାର ଅର୍ଥ ବଙ୍ଗଳାର ଗୌଡ଼ ରାଜ୍ୟର ବିଜେତା । ପ୍ରକୃତରେ ସେ ଗୌଡ଼ ରାଜ୍ୟର ଏକାଂଶ ଅଧିକାର କରିଥିଲେ । କପିଳେନ୍ଦ୍ର ଦେବ ଗଙ୍ଗାନଦୀ ପର୍ଯ୍ୟନ୍ତ ଦକ୍ଷିଣପଶ୍ଚିମ ବଙ୍ଗଳାର ବହୁ ଅଂଶ ଅଧିକାର କରିଥିବାର ବିଷୟ ସମସ୍ତ ଐତିହାସିକ ସ୍ୱୀକାର କରନ୍ତି । କପିଳେନ୍ଦ୍ର ଦେବ ରାଜତ୍ୱର ପ୍ରଥମ ଭାଗରେ ବଙ୍ଗଳାର ଏକାଂଶ ହୁଗୁଳି ଜିଲ୍ଲାର ଆରାମବାଗ ସବ୍‌ଡ଼ିଭିଜନ ଅନ୍ତର୍ଗତ ମନ୍ଦାରଣ ଦୁର୍ଗ ପର୍ଯ୍ୟନ୍ତ ଅଧିକାର କରିଥିଲେ । ତ୍ରିବେଣୀ ମଧ୍ୟ ଓଡ଼ିଶା ଅନ୍ତର୍ଭୁକ୍ତ ହୋଇଥିଲା । ଚୋଡ଼ଗଙ୍ଗଠାରୁ ନରସିଂହ ଦେବ ପ୍ରଥମ ଓ କପିଳେନ୍ଦ୍ର ଦେବ ଏସବୁ ଅଞ୍ଚଳ ବାରମ୍ବାର ଅଧିକାର କରି ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଛନ୍ତି । ଅବଶ୍ୟ ସୀମାରେ ବଙ୍ଗଳାର ମୁସଲମାନଙ୍କ ସହିତ ବାରମ୍ବାର ଯୁଦ୍ଧ ଘଟିଛି । ବିଜୟ ଲାଭ କରି ସେ ସବୁ ସ୍ଥାନ ପୁଣି ଓଡ଼ିଶାରେ ମିଶିଛି ।

ଗଜପତି କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ପରେ ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦ ଦେବ (ଖ୍ରୀ. ୧୫୬୦-୧୫୬୮) ଗୌଡ଼ ରାଜ୍ୟର ଅଧିପତିଙ୍କୁ ପରାସ୍ତ କରି ତୁଳା ପୁରୁଷ ଦାନ ସହ ଅନ୍ୟାନ୍ୟ ଅନୁଷ୍ଠାନ କରିଥିଲେ । ଖ୍ରୀ. ୧୫୬୭ ପୂର୍ବରୁ ମୁକୁନ୍ଦ ଦେବ ନିଜ ରାଜ୍ୟର ସୀମା ଉତ୍ତର ଦିଗରେ ତ୍ରିବେଣୀ ପର୍ଯ୍ୟନ୍ତ ବଢ଼ାଇଥିବାର ପ୍ରଦତ୍ତ ଶୀଳା ଲେଖରୁ ସ୍ପଷ୍ଟ ଜଣାପଡ଼େ । ହୁଗୁଳି ଜିଲ୍ଲାର ଗଙ୍ଗାର ତ୍ରିବେଣୀଠାରେ ମୁକୁନ୍ଦ ଘାଟ ନିର୍ମାଣ ଏହାର ପ୍ରମାଣ । ମୁକୁନ୍ଦ ଦେବ ଗୋଟିଏ ପ୍ରକାଣ୍ଡ ବନ୍ଧ ନିର୍ମାଣ କରି ତ୍ରିବେଣୀ ପର୍ଯ୍ୟନ୍ତ ରାସ୍ତା ନିର୍ମାଣ କରାଇଥିଲେ । ତ୍ରିବେଣୀ ଘାଟରେ ଅଦ୍ୟାବଧି ଓଡ଼ିଆଙ୍କ ପ୍ରଭାବ ପରିଲକ୍ଷିତ ହୁଏ ।

ବଙ୍ଗଳା ଓ ବିହାର ତୁର୍କମାନଙ୍କ ଦ୍ୱାରା ବାରମ୍ବାର ଆକ୍ରମିତ ଓ ଅଧିକୃତ ହୋଇଥିଲେହେଁ ଓଡ଼ିଶାର ସ୍ୱାଧୀନତା ୧୫୬୮ ଖ୍ରୀ. ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିଲା । ୧୫୬୮ ଖ୍ରୀ.ରେ ବଙ୍ଗର ମୁସଲମାନ ଆକ୍ରମଣକାରୀ ସୁଲେମାନ କରାଣୀଙ୍କ ସହିତ ଯୁଦ୍ଧରେ ମୁକୁନ୍ଦଦେବ ଗୋହିରାଟିକିରି (ଯାଜପୁର) ଠାରେ ନିହତ ହେଲେ । ତାଙ୍କ ମୃତ୍ୟୁପରେ ଓଡ଼ିଶାର ସ୍ୱାଧୀନତା ସୂର୍ଯ୍ୟ ଅସ୍ତମିତ ହେଲା ।

ଖ୍ରୀ. ୧୫୬୮ ରୁ ୧୭୫୧ ଖ୍ରୀ. ପର୍ଯ୍ୟନ୍ତ ଓଡ଼ିଶା ମୋଗଲମାନଙ୍କ ଶାସନାଧୀନ ହୋଇ ରହିଥିଲା । ଏହି ସମୟରେ ବିଭିନ୍ନ ବିବରଣୀରେ ପୂର୍ବ ପ୍ରଚଳିତ 'ଉତ୍କଳ' ସ୍ଥାନରେ 'ଓଡ଼ିଶା' ନାମ ଅନ୍ତର୍ଭୁକ୍ତ ହୋଇଥିବାର ଜଣାଯାଏ । ରାଜା ଟୋଡ଼ରମଲ୍ଲଙ୍କ

Digitized by srujanika@gmail.com

ଭୂ-ବନ୍ଦୋବସ୍ତ ଅନୁସାରେ ଓଡ଼ିଶା ଉତ୍ତରରେ ରୂପନାରାୟଣ ନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ଉପରେ ପାଞ୍ଚଗୋଟି ସରକାରରେ ବିଭକ୍ତ ହୋଇଥିଲା । ମୁର୍ସିଦ୍ କୁଲିଖାଁ (୧୭୦୪ ଖ୍ରୀ.)ଙ୍କ ସମୟରେ ମେଦିନୀପୁର ବଙ୍ଗଳା ସୁବାର ଅନ୍ତର୍ଭୁକ୍ତ ହୋଇଥିଲା ।

ଖ୍ରୀ. ୧୭୫୧ ରୁ ୧୮୦୩ ଖ୍ରୀ. ପର୍ଯ୍ୟନ୍ତ ଓଡ଼ିଶା ମରହଟ୍ଟାମାନଙ୍କ ଦ୍ୱାରା ଶାସିତ ହୋଇଥିଲା । ଏହି ସମୟରେ ଓଡ଼ିଶାର ରାଜନୈତିକ ଶାସନ ବ୍ୟବସ୍ଥାରେ ଅସ୍ଥିରତା ଦେଖା ଯାଇଥିଲା ।

ଖ୍ରୀ. ୧୮୦୩ ଠାରୁ ଓଡ଼ିଶା ବ୍ରିଟିଶମାନଙ୍କ ଅଧୀନସ୍ଥ ହେଲା । ୧୯୧୧ ଖ୍ରୀ. ପର୍ଯ୍ୟନ୍ତ ବଙ୍ଗଳା, ବିହାର ଓ ଓଡ଼ିଶା ଗୋଟିଏ ଶାସନାଧୀନରେ ରହିଲା ଓ ୧୯୧୧ ଖ୍ରୀ. ପରେ ବିହାର ଓ ଓଡ଼ିଶା ଅଲଗା ହୋଇ ଗୋଟିଏ ଶାସନାଧୀନ ହୋଇଥିଲେହେଁ ମେଦିନୀପୁର ଜିଲ୍ଲା ବଙ୍ଗଳାରେ ମିଶି ରହିଲା । ୧୯୩୬ ମସିହାରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା ।

* ଓଡ଼ିଶାର ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟର ଘଟଣା । ଶ୍ରୀ ଚୈତନ୍ୟ ଦେବ ସନ୍ୟାସ ଗ୍ରହଣ ପରେ ୧୫୧୦ ଖ୍ରୀ.ରେ ପ୍ରଥମ ଥର ପୁରୀ ଆଗମନ କାଳରେ ଓଡ଼ିଶାର ଉତ୍ତର ସୀମା ସମ୍ପର୍କରେ ଶ୍ରୀ ଦିଲ୍ଲୀପ କୁମାର ମୁଖାର୍ଜି ତାଙ୍କର 'ଚୈତନ୍ୟ' ଗ୍ରନ୍ଥରେ ଲେଖି ଅଛନ୍ତି, "ତାହା ୧୫୧୦ ଖ୍ରୀ.ର ପ୍ରାରମ୍ଭ କାଳ । ସେତେବେଳେ ବଙ୍ଗଳାର ସୁଲତାନ ହୁସେନ ଶା ଓ ଓଡ଼ିଶାର ଗଜପତିଙ୍କ ମଧ୍ୟରେ ଏକ ଯୁଦ୍ଧ ଘୋଷଣା ହୋଇ-ଥିଲା । ଚୈତନ୍ୟ ଏବଂ ତାଙ୍କର ଗୁରୁଜଣ ସହଯାତ୍ରୀ ନୌକା ଯୋଗେ ଓଡ଼ିଶା ଯାଇଥିଲେ । କଲିକତାଠାରୁ ୨୫ ମାଇଲ ଦୂର ଦକ୍ଷିଣ ବଙ୍ଗର ଛତ୍ରଭୋଗ ସେତେବେଳେ ବଙ୍ଗଳାର ଶେଷ ସୀମାନ୍ତ ଗ୍ରାମ ଥିଲା । ଛତ୍ରଭୋଗ ଗଙ୍ଗା ଓ ବଙ୍ଗୋପସାଗରର ସଙ୍ଗମ ସ୍ଥଳ ଡ଼ାଇମଣ୍ଡ ହାରବର ନିକଟରେ ଅବସ୍ଥିତ । ସେହିଠାରୁ ଓଡ଼ିଶାର ସୀମାରେଖା ଆରମ୍ଭ ।

ବଙ୍ଗଳା ସୀମାରେ ଥିବା ସୁଲତାନଙ୍କର ତୁର୍କ-ଆଫଗାନ (ପଠାଣ) ପ୍ରତିନିଧି ପଥିକମାନଙ୍କୁ ହଇରାଣ କରୁଥିଲେ । × ×

ଯାହାହେଉ, ଚୈତନ୍ୟ ନିରାପଦ ଭାବରେ ଛତ୍ରଭୋଗଠାରେ ସୀମା ଅତିକ୍ରମ-କରି ଓଡ଼ିଶା ଭୂମିରେ ପାଦ ଦେଇଥିଲେ ।" ଚୈତନ୍ୟ—ଏନ୍. ବି. ଟି. ଇଣ୍ଡିଆ (ଓଡ଼ିଆ) ୧୯୭୧ । ପୃ—୨୨-୨୩ ।

Digitized by srujanika@gmail.com

ନବ ଗଠିତ ଓଡ଼ିଶାରୁ ଉତ୍ତର-ପୂର୍ବ ଦିଗରେ ମେଦିନୀପୁର ଜିଲ୍ଲା ସହ ସିଂଭୂମି ଓ ମାନଭୂମିର ବିସ୍ତୃତ ଅଞ୍ଚଳ ପଶ୍ଚିମ ବଙ୍ଗଳା ଓ ବିହାର ପ୍ରଦେଶ ସହ ମିଶି ରହିଲା । ସେହିପରି ପଶ୍ଚିମ ଓ ଦକ୍ଷିଣରେ ମଧ୍ୟପ୍ରଦେଶ ଓ ଆନ୍ଧ୍ର ପ୍ରଦେଶରେ ବହୁ ଓଡ଼ିଆ ଅଞ୍ଚଳ ରହିଗଲା । ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତ ରାଖାଲ ଦାସ ବାନାର୍ଜିଙ୍କ ଉକ୍ତି ଏ ପ୍ରସଙ୍ଗରେ ଉଦ୍ଧାର କରାଯାଇଛି । ସେ ଲେଖିଛନ୍ତି, "ପ୍ରକୃତରେ କଳିଙ୍ଗ ରାଜ୍ୟ ବଙ୍ଗଳାର ଆଧୁନିକ ମେଦିନୀପୁର ଓ ହାଓଡ଼ା ଜିଲ୍ଲା ପର୍ଯ୍ୟନ୍ତ ବିସ୍ତୃତ ରହିଥିଲା । ଏପରିକି ବର୍ତ୍ତମାନ ସୁଦ୍ଧା ମେଦିନୀପୁର ହିନ୍ଦୁ ସଂଖ୍ୟାଧିକ ଜମିଦାରଗଣ ଓଡ଼ିଶାର ପୂର୍ବତନ ହିନ୍ଦୁ ରାଜାମାନଙ୍କ ଅଧୀନରେ ଜମିଦାରୀ ଭୋଗ ଦଖଲ କରି ରହିଥିଲେ ।"

("The country of Kalinga originally extended to the modern districts ol Midnapur and Howrah in Bengal," and "Even now the majority of the Hindu Zamidars of Midnapur prove that they were land-holders and fudatories of Hindu kings of Orissa at no distinct date." History of Orissa, R. D. Benerjee, Vol. 1, P. 2.

**ମୟୂରଭଞ୍ଜ ରାଜ୍ୟର ସଂକ୍ଷିପ୍ତ ଇତିହାସ :**

ମୟୂରଭଞ୍ଜ ରାଜ୍ୟରେ ଭଞ୍ଜବଂଶୀୟ ରାଜାଗଣ ଧାରାବାହିକ ଭାବରେ ନବମ ଶତକରୁ ରାଜତ୍ୱ କରି ଆସିଛନ୍ତି । ଗଙ୍ଗବଂଶୀ ରାଜା ତୃତୀୟ ଭାନୁଦେବ (୧୩୫୨-୭୮ ଖ୍ରୀ.)ଙ୍କ ସମୟରେ ଦିଲ୍ଲୀର ସୁଲତାନ ଫିରୋଜ ଶାହ ତୋଗଲକ୍ ୧୩୬୧ ଖ୍ରୀ.ର ଆରମ୍ଭରେ ମାନଭୂମି ଓ ସିଂଭୂମି ମଧ୍ୟ ଦେଇ ଆସି ଉତ୍କଳର ରାଜଧାନୀ ବାରାଣସୀ କଟକ ଆକ୍ରମଣ କରିଥିଲେ । ଏହି ଯୁଦ୍ଧଯାତ୍ରା ସମୟରେ ମୁସଲମାନମାନଙ୍କ ଦ୍ୱାରା ମୟୂରଭଞ୍ଜର ରାଜଧାନୀ ଖିଚିଙ୍ଗର ଅଟ୍ଟାଳିକା, ପ୍ରାସାଦ, ମୂର୍ତ୍ତି ଓ ମନ୍ଦିର ସମୂହ ଧ୍ୱଂସୀଭୂତ ହୋଇଥିଲା । ଏହି ଘଟଣା ପରେ ମହାରାଜା ହରିହର ଭଞ୍ଜ ଖିଚିଙ୍ଗ ପରିତ୍ୟାଗ କରି ୧୪୦୦ ଖ୍ରୀ. ବେଳକୁ ହରିହରପୁରଠାରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ତାଙ୍କରି ନାମାନୁସାରେ ସ୍ଥାନର ନାମ ହୋଇଥିଲା ହରିହରପୁର ।

ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବ (୧୪୩୫ ଖ୍ରୀ.) ଦେଶର ଗଜପତି ଭାବରେ ଅଭିଷିକ୍ତ ହେଲେ । ସେ ସମୟ ପରେ ଅର୍ଥାତ୍ ୧୪୩୫ ଖ୍ରୀ. ପରେ ମୟୂରଭଞ୍ଜ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ୧୫୧୦ ଖ୍ରୀ. ବେଳକୁ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ସମୟରେ ଶ୍ରୀ ଚୈତନ୍ୟ ପୁରୀ ଯିବା ରାସ୍ତାରେ ରାଜଧାନୀ ହରିହରପୁରଠାରେ ଅବସ୍ଥାନ କରିଥିଲେ ।

Digitized by srujanika@gmail.com

୧୫୬୮ ଖ୍ରୀ.ରେ ମୟୂରଭଞ୍ଜ ସହ ଓଡ଼ିଶା ବଙ୍ଗଳାର ଆଫଗାନ ଶାସକଙ୍କ ଦ୍ୱାରା ଅଧିକୃତ ହେଲା । ମୋଗଲ ସମ୍ରାଟ ଆକବର ବଙ୍ଗଳା ଓ ଓଡ଼ିଶା ଅଧିକାର କରିବା ପାଇଁ ପ୍ରସ୍ତୁତ ହେବା ବେଳକୁ ବଙ୍ଗଳାର ସୁଲତାନ ସୁଲେମାନ କର୍‌ରାଣୀଙ୍କ ମୃତ୍ୟୁ (୧୫୭୩ ଖ୍ରୀ.) ପରେ ଓଡ଼ିଶାରେ ମୋଗଲ ଓ ଆଫଗାନମାନଙ୍କ ମଧ୍ୟରେ ବାରମ୍ବାର ଯୁଦ୍ଧ ସଂଘଟିତ ହେଲା । ଆଫଗାନ ଶାସକ ଦାଉଦ୍ ଖାଁ ୧୫୭୪ ଖ୍ରୀ.ରେ ମୋଗଲମାନଙ୍କ ସହିତ ଯୁଦ୍ଧରେ ପରାସ୍ତ ହୋଇ ୧୫୭୫ ଖ୍ରୀ.ରେ କିଛୁକାଳ ନିମନ୍ତେ ହରିହର-ପୁରଠାରେ ଆଶ୍ରୟ ନେଇଥିଲେ । ସୁବର୍ଣ୍ଣରେଖା ନିକଟସ୍ଥ ତୁକାରୋହିଠାରେ ୧୫୭୫ ଖ୍ରୀ. ମାର୍ଚ୍ଚ ୩ ତାରିଖ ଦିନ ଅନୁଷ୍ଠିତ ଯୁଦ୍ଧରେ ମୋଗଲ ସେନାପତି ମୁନିମ୍ ଖାଁ ଓ ଟୋଡ଼ର ମଲ୍ଲଙ୍କ ଦ୍ୱାରା ଦାଉଦ୍ ପରାସ୍ତ ହୋଇଥିଲେ । ୧୫୭୬ ଖ୍ରୀ.ରେ ରାଜମହଲ ଯୁଦ୍ଧରେ ଦାଉଦ୍ ମୃତ୍ୟୁବରଣ କଲା ପରେ ଓଡ଼ିଶା ଓ ବଙ୍ଗଳା ମୋଗଲମାନଙ୍କ ଅଧିନସ୍ଥ ହେଲା । କିନ୍ତୁ ମୋଗଲ ଶାସନାଧିନ ହୋଇଥିଲେହେଁ ଆଫଗାନ ସେନାପତିମାନଙ୍କ ସହିତ ବାରମ୍ବାର ଯୁଦ୍ଧ ଘଟୁଥିଲା । ପରିଶେଷରେ ୧୫୯୨ ଖ୍ରୀ. ବେଳକୁ ରାଜା ମାନସିଂହଙ୍କ ଦ୍ୱାରା ଓଡ଼ିଶା ସମ୍ପୂର୍ଣ୍ଣ ଭାବେ ମୋଗଲ ଶାସନାଧୀନ ହେଲା । ଐତିହାସିକ ରାଖାଲ ଦାସ ବାନାର୍ଜୀଙ୍କ ମତରେ ସେ ସମୟକୁ ଅର୍ଥାତ୍ ୧୫୯୨ ଖ୍ରୀ. ବେଳକୁ ମୟୂରଭଞ୍ଜର ରାଜା ଖୋର୍ଦ୍ଧାର ଗଜପତିଙ୍କ ସମାନ କ୍ଷମତା ଓ ସମ୍ମାନର ଅଧିକାରୀ ହୋଇଥିଲେ ।

(According to R. D Banerjee "the states of the Raja of Mayurbhanj in 1592 was the same as that of the Gajapati Raja of Khurda and he ruled over a wider area........" O. D. G., Mayurbhanj. P. 2, 1967)

ସେତେବେଳେ ମୟୂରଭଞ୍ଜ ସିଂହଭୂମି ଠାରୁ ସୁବର୍ଣ୍ଣରେଖାର ଉତ୍ତର ଦିଗରେ ଅବସ୍ଥିତ ଜାମୁକୁଣ୍ଡା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମୋଗଲ ରାଜତ୍ୱ (୧୫୯୨-୧୭୫୧) ସମୟରେ ମୟୂରଭଞ୍ଜର ଶାସକଙ୍କ ଅଧୀନରେ ୪୨ ଗୋଟି କିଲ୍ଲାଯୁକ୍ତ ୧୨ ଗୋଟି ଜମିଦାରୀ ରହିଥିଲା । ଷ୍ଟାର୍ଲିଂଙ୍କ ଦ୍ୱାରା ୧୮୨୨ ଖ୍ରୀ.ରେ ପ୍ରକାଶିତ ରାଜା ମାନସିଂହଙ୍କ ୧୫୯୨ ଖ୍ରୀ.ର ବିବରଣୀ ଅନୁସାରେ ସେତେବେଳେ ମୟୂରଭଞ୍ଜ ଜମିଦାରୀରେ ୧୮ ଗୋଟି ଦୁର୍ଗ, ଯଥା :—ଭଞ୍ଜଭୂମି, ମାଣିନୀ ହରିହରପୁର, ଦେଓ୍ୟାଲିଆ, ପୁରୁଣିଆ, କରକ-ଚୁଆ, ବାମନଘାଟୀ, ସରହଣ୍ଡା ପ୍ରଭୃତି ପ୍ରଖ୍ୟାତ ଦୁର୍ଗ ବ୍ୟତୀତ ଆଉ ଦଶ ଗୋଟି ଅପ୍ରଖ୍ୟାତ ଦୁର୍ଗ ରହିଥିଲା । ଭଞ୍ଜଭୂମି ପ୍ରଗଣା ବ୍ୟତୀତ ଆଉ ସବୁ ସ୍ଥାନ ବର୍ତ୍ତମାନ ମୟୂରଭଞ୍ଜର ଅନ୍ତର୍ଗତ ଥିବାର ଜଣାଯାଇଛି । ଭଞ୍ଜଭୂମି ପ୍ରଗନ୍ନା ମେଦିନୀପୁର ଟାଉନର ଉତ୍ତରରେ ଅବସ୍ଥିତ । ପରମ୍ପରା ଅନୁସାରେ ମେଦିନୀପୁର ରାଜା ମୟୂରଭଞ୍ଜର ଅଧିନସ୍ଥ ଥିଲେ ।

Digitized by srujanika@gmail.com

ମାନସିଂହଙ୍କ ବିବରଣୀରେ ଆହୁରି ମଧ୍ୟ ଉଲ୍ଲେଖ ଅଛି ଯେ, ମୋଗଲ ପ୍ରଶାସନର ପ୍ରାଥମିକ ପର୍ଯ୍ୟାୟରେ ୧୦ ଜଣ ଅଧୀନସ୍ଥ ମୁଖିଆ ରହିଥିଲେ । ନିମ୍ନଲିଖିତ ଜମିଦାରୀ-ଗୁଡ଼ିକର ମୁଖିଆମାନେ ହେଲେ, ନୀଳଗିରି, ସିଂଭୂମି, ବରାଭୂମ, ପଥରାହି, ନରସିଂହପୁର (ଉତ୍ତର ବାଲେଶ୍ୱର) ଦେବ ଟାଇର ଗୃହ (ଧାପ କୀଆର ଗୃହ, ମେଦିନୀପୁର) ଜମରପାଲ (ମେଦିନୀପୁର) କାମକୁଣ୍ଡା (ବାଲେଶ୍ୱର) ଗୃରଗଡ଼ ଓ ତାଲମୁଣ୍ଡା (ଭଦ୍ରକ, ବାଲେଶ୍ୱର) । ରାଞ୍ଚି ଜିଲ୍ଲା ଗେଜେଟିଆରରେ ମୟୂରଭଞ୍ଜ ଅଧୀନରେ ତମାଡ଼ ଅଞ୍ଚଳ, ମେଦିନୀପୁର ଜିଲ୍ଲା ଗେଜେଟିଅରରେ ସମୁଦ୍ର ତୀରବର୍ତ୍ତୀ ହୀରକୁଳ ଅଞ୍ଚଳ, ମୟୂରଭଞ୍ଜ ଅଧୀନରେ ଥିବାର ଉଲ୍ଲେଖ ଅଛି । ଏଥିରୁ ମୟୂରଭଞ୍ଜ ରାଜ୍ୟ ସେ ସମୟରେ ଉତ୍ତର ଦିଗରେ ତମାଡ଼, ବରାଭୂମ, ମେଦିନୀପୁର ସହର, ଦକ୍ଷିଣରେ ବୈତରଣୀ ନଦୀ, ପୂର୍ବରେ ସମୁଦ୍ର ଓ ପଶ୍ଚିମରେ ସିଂହଭୂମି ପଶ୍ଚିମ ଭାଗ ପର୍ଯ୍ୟନ୍ତ ବିସ୍ତୃତ ଥିବାର ଜଣାଯାଏ ।

ସମ୍ରାଟ ଔରଙ୍ଗଜେବ ଓଡ଼ିଶାର ଗଭର୍ଣ୍ଣର ଭାବେ ୧୬୬୦ ଖ୍ରୀ.ରେ ଖାନ୍-ଇ-ଦୁରାନଙ୍କୁ ନିଯୁକ୍ତ କଲେ । ନୂଆ ଗଭର୍ଣ୍ଣର ଜଲେଶ୍ୱରରେ ପହଞ୍ଚିବା ପରେ ମୟୂରଭଞ୍ଜର ରାଜା କୃଷ୍ଣଚନ୍ଦ୍ର ଭଞ୍ଜ ତାଙ୍କୁ ସାକ୍ଷାତ୍ କରିବା ପାଇଁ ଗଲେ । ସେଠାରେ ସୁବାଦାରଙ୍କ ଦ୍ୱାରା ଅପମାନିତ ହୋଇ କ୍ରୁଦ୍ଧ କୃଷ୍ଣ ଭଞ୍ଜ ତାଙ୍କୁ ଆକ୍ରମଣ କରିବା ଫଳରେ ନିଜର ଦଳବଳ ସହ ନିହତ ହେଲେ ।

ଜଲେଶ୍ୱରଠାରୁ ଖାନ-ଇ-ଦୁରାନ ହରିପୁର ଯିବା ପାଇଁ ବାହାରିଲେ । କୃଷ୍ଣଭଞ୍ଜଙ୍କ ପୁଅ ପ୍ରଥମ ତ୍ରିବିକ୍ରମ ଭଞ୍ଜ ମାମୁଁ ଜୟଭଞ୍ଜଙ୍କ ସହିତ ରେମୁଣାରେ ତାଙ୍କୁ ଭେଟି ଟୀକା ଓ ଜମିଦାରୀ ପ୍ରାପ୍ତ ହେଲେ । ତ୍ରିବିକ୍ରମ ଭଞ୍ଜ (୧୬୬୦ ରୁ ୧୬୮୮ ଖ୍ରୀ.) ପରେ ତାଙ୍କ ପୁଅ ସର୍ବେଶ୍ୱର ଭଞ୍ଜ (୧୬୮୮-୧୭୧୧ ଖ୍ରୀ.) ତାଙ୍କ ପରେ ବୀର ବିକ୍ରମାଦିତ୍ୟ ଭଞ୍ଜ (୧୭୧୧-୧୭୨୮ ଖ୍ରୀ.) ଏହାଙ୍କ ପରେ ତାଙ୍କ ପୁଅ ରଘୁନାଥ ଭଞ୍ଜ (୧୭୨୮-୧୭୫୦ ଖ୍ରୀ. ପର୍ଯ୍ୟନ୍ତ) ମୟୂରଭଞ୍ଜ ରାଜ୍ୟ ଶାସନ କଲେ । ୧୭୫୧ ଖ୍ରୀ.ରେ ମୟୂରଭଞ୍ଜ ମରହଟ୍ଟା ଶାସନାଧୀନକୁ ଆସିଲା । ଏ ସମୟରେ ମୟୂରଭଞ୍ଜ ରାଜ୍ୟ ପିପିଲି ପ୍ରଭୃତି ଅନେକ ତାଲୁକ ହରାଇ କ୍ରମେ ସଙ୍କୁଚିତ ହୋଇଗଲା । ଅଷ୍ଟାଦଶ ଶତକର ଶେଷାଂଶ ଆଡ଼କୁ ମହାରାଣୀ ସୁମିତ୍ରା ଦେବୀଙ୍କ ସମୟରେ ପୁରୁଣା ରାଜଧାନୀ ହରିପୁର ପରିତ୍ୟାଗ କରି ବାରିପଦାକୁ ରାଜଧାନୀ ସ୍ଥାନାନ୍ତରିତ ହୋଇଥିଲା । ଖ୍ରୀ. ୧୮୦୦ରେ ସୁମିତ୍ରା ଦେବୀ ଚିରସ୍ଥାୟୀ ବନ୍ଦୋବସ୍ତ ଫଳରେ ନୟାବଣ ପ୍ରଗଣା (ବର୍ତ୍ତମାନ ମେଦିନୀପୁର ଅନ୍ତର୍ଗତ) ହାସଲ କରି ମୟୂରଭଞ୍ଜ ରାଜ୍ୟରେ ଅନ୍ତର୍ଭୁକ୍ତ କଲେ । ୧୮୦୩ ଖ୍ରୀ.ରେ ମୟୂରଭଞ୍ଜ ଇଂରେଜମାନଙ୍କ ଅଧୀନ ଓ ଅନ୍ତର୍ଭୁକ୍ତ ହେଲା । ସେହି ସମୟରେ ବାମନ ଘାଟୀର କୋହ୍ଲମାନଙ୍କର ବିଦ୍ରୋହ ଫଳରେ ମୟୂରଭଞ୍ଜ ଆହୁରି ସଙ୍କୁଚିତ ହୋଇଗଲା । ମୟୂରଭଞ୍ଜର ବହୁପିଢ଼ ସିଂଭୂମିରେ ମିଶିଲା । କିନ୍ତୁ ୧୯୪୯ ମସିହାରେ ଓଡ଼ିଶା ସହିତ

Digitized by srujanika@gmail.com

ମିଶ୍ରଣ ପର୍ଯ୍ୟନ୍ତ ଆଉ ଏ ରାଜ୍ୟର ଭୂମିକାଙ୍କ ପଛି ନ ଥିଲା । ଭାରତ ସ୍ୱାଧୀନ ହେବା ପରେ ୧୯୪୯ ମସିହା ଜାନୁଆରୀ ପହିଲାରେ ଓଡ଼ିଶା ସହିତ ମିଶିଲା । ବର୍ତ୍ତମାନ ମୟୂରଭଞ୍ଜ ଓଡ଼ିଶାର ଏକ ଜିଲ୍ଲା ରୂପେ ଉତ୍ତର-ପୂର୍ବ ସୀମାନ୍ତରେ ଅବସ୍ଥିତ ।

**ସହାୟିକା ସୂଚୀ :**


୧—O' Malley L. S. S., Bengal District Gazetteers, Balasore—1907, P. 1.

୨—Hunter W. W., Statistical Account of the District Midnapur, S. A. B. Vol. III, P. 2.

୩—Senapati S., Sahu N. K. ] Orissa District Gazetteer Mayurbhanj, 1967, P. 2.

୪—ଭଟ୍ଟାଚାର୍ଯ୍ୟ ତରୁଣ ଦେବ, ପଶ୍ଚିମ ବଙ୍ଗ ଦର୍ଶନ—ମେଦନୀପୁର, ୧୯୭୯, ପୃ-୪ ।

୫—(i) Panigrahi K. C., History of Orissa—1981

(ii) Senapati S., Sahu N. K. ] Orissa District Gazetter, Mayurbhanj.

(iii) Hunter W. W. S. A. B. Vol. III.

(iv) O' Malley, B. D. G. Balasore-1907, ଏବଂ

(v) ମହାନ୍ତି ସୁରେନ୍ଦ୍ର, ଓଡ଼ିଆ ସାହିତ୍ୟର ଆଦିପର୍ବ-୧୯୭୧




Digitized by srujanika@gmail.com

# ଦ୍ୱିତୀୟ ଅଧ୍ୟାୟ

## ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା

ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର ଉତ୍ତର-ପୂର୍ବାଞ୍ଚଳ ଓ ମେଦିନୀପୁର ଜିଲ୍ଲା (ପଶ୍ଚିମବଙ୍ଗ)ର ଦକ୍ଷିଣ ପଶ୍ଚିମାଂଶ ପରସ୍ପର ସଂଲଗ୍ନ ଅଞ୍ଚଳ, ମୂଳତଃ ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟସ୍ଥିତ ଅଞ୍ଚଳକୁ ଓଡ଼ିଶାର ଉତ୍ତର-ପୂର୍ବାଞ୍ଚଳ ରୂପେ ଗ୍ରହଣ କରାଯାଉଛି । ଏହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ପ୍ରଚଳିତ ଲୋକକଥିତ ଭାଷା ହିଁ ଉତ୍ତର-ପୂର୍ବାଞ୍ଚଳ ଓଡ଼ିଆ ଭାଷା ରୂପେ ପରିଗଣିତ । (ଭାଷାତାତ୍ତ୍ୱିକ ଦୃଷ୍ଟିରୁ ଭୋଗରାଇ, ବାଲିଆପାଳ, ଜଳେଶ୍ୱର, (ବାଲେଶ୍ୱର ସଦର) ମୁରୁଡ଼ା, ଶୁଳିଆପଦା, କୁଳିଅଁାନା (ବାରିପଦା ସହର) ନୟାଗ୍ରାମ (ଝାଡ଼ଗ୍ରାମ ସବ୍‌ଡିଭିଜନ) ଦାନ୍ତନ, ମୋହନପୁର, ରାମନଗର କାନ୍ଥି (ମେଦିନୀପୁର ସଦର) ଅଞ୍ଚଳରେ ପ୍ରଚଳିତ କଥିତ ଭାଷା ରୂପରେ ଅଧିକ ସାମଞ୍ଜସ୍ୟ ଐକ୍ୟ ରକ୍ଷିତ ହୋଇଥିବା ସ୍ଥଳେ ଆଧୁନିକ କାଳରେ ଶିକ୍ଷା ଓ ସଭ୍ୟତାର ପ୍ରସାର ଓ ପ୍ରଭାବ ଫଳରେ ବାଲେଶ୍ୱର, ବାରିପଦା, ମେଦିନୀପୁର ସହରାଞ୍ଚଳରେ ମାନକ ଭାଷା (ଓଡ଼ିଆ ଓ ବଙ୍ଗଳା)ର ପ୍ରଚଳନ ଅଧିକ । ଏତଦ୍ ବ୍ୟତୀତ ଏହି ଉପଭାଷା ଓଡ଼ିଶା, ପଶ୍ଚିମ ବଙ୍ଗ, ସଂଲଗ୍ନ ବିହାର ପ୍ରଦେଶର ସିଂଭୂମ ସୀମାନ୍ତ ଗୋପୀବଲ୍ଲଭପୁର, ବାହାଡ଼ା ଗୋଡ଼ା (ଧଳଭୂମି), ଷଢ଼େଇକଳା, ଖରସୁଆଁ ଅଞ୍ଚଳରେ (କେତେକାଂଶରେ ପୂର୍ବୀ ହିନ୍ଦୀ ପ୍ରଭାବିତ) ପ୍ରଚଳିତ । ଏକଭାଷା କ୍ଷେତ୍ରରୂପେ "ଉତ୍ତର ପୂର୍ବାଞ୍ଚଳର ବୈଶିଷ୍ଟ୍ୟ ହେଉଛି ଯେ ଏହା ତିନିଗୋଟି ଭାଷା-ପରିବାରର ମିଳନ କ୍ଷେତ୍ର । ଆର୍ଯ୍ୟ-ଗୋଷ୍ଠୀର ତିନିଗୋଟି ପ୍ରଧାନ ଭାଷା ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ବ୍ୟତୀତ ଉର୍ଦ୍ଦୁ, ହିନ୍ଦୁସ୍ଥାନୀ ଓ ପାର୍ଶୀ ପ୍ରଭୃତି ଭାଷା ପ୍ରଚଳିତ । ଆର୍ଯ୍ୟେତର ଭାଷା ଭାବେ ମୁଣ୍ଡା ଗୋଷ୍ଠୀର ସାନ୍ତାଳୀ, ହୋ, ଭୂମିଜ, ମୁଣ୍ଡାରୀ ପ୍ରଭୃତି ଭାଷା ଓ ଦ୍ରାବିଡ଼ ଗୋଷ୍ଠୀର ଓରାଓଁ, ଖଡ଼ିଆ, ଗଣ୍ଡି ପ୍ରଭୃତି ଭାଷା ପ୍ରଚଳିତ । ଏତଦ୍‌ବ୍ୟତୀତ କର୍ମାଳୀ, ବାଥୁଡ଼ି, ଭୂୟାଁ ପ୍ରଭୃତି ଭାଷା ମଧ୍ୟ ଏ ଅଞ୍ଚଳରେ ପ୍ରଚଳିତ । ଉପରୋକ୍ତ ଅଞ୍ଚଳରେ ବେସରକାରୀ/ସରକାରୀ ସ୍ତରରେ ଅଫିସିଆଲ ଭାଷା ରୂପେ 'ଇଂରାଜୀ' ବ୍ୟବହୃତ ହେଉଅଛି ।

ସାଧାରଣତଃ କୌଣସି କ୍ଷେତ୍ରବିଶେଷରେ ଏକାଧିକ ଭାଷା ପ୍ରଚଳିତ ଥିଲେ ଭାଷାମାନଙ୍କ ମଧ୍ୟରେ ପାରସ୍ପରିକ ସଂଯୋଗ ଘଟିବାର ଅବକାଶ ଆସିବା ସଙ୍ଗେ ସଙ୍ଗେ ବିଶେଷ ଲୌକିକ ପ୍ରବୃତ୍ତି ପ୍ରକାଶ ଲାଭ କରିଥାଏ । "ପୁଣି ଏହି ଭାଷାମାନଙ୍କ ମଧ୍ୟରୁ ଯଦି କୌଣସି ଭାଷା କୌଣସି ସ୍ତରରେ ବିଶେଷ ମର୍ଯ୍ୟାଦା ବା ଗୁରୁତ୍ୱ ଲାଭ କରେ

Digitized by srujanika@gmail.com

ତାହାଲେ ଅନ୍ୟାନ୍ୟ ଭାଷା ସକଳ ତାହାର ଆଦର୍ଶାଭିମୁଖୀ ହୋଇ ପଡ଼ନ୍ତି'' । ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ ଉପାନ୍ତ ଅଞ୍ଚଳୀୟ ଉପଭାଷାର ଭାଷା ତାତ୍ତ୍ୱିକ ବିଶ୍ଳେଷଣ କଲେ, ଏହାର "ସ୍ୱାତନ୍ତ୍ର୍ୟ ଓ ଔପଭାଷିକ ସୃଷ୍ଟି ମୂଳରେ କେତେକ ଯଥାର୍ଥ ଭାଷା-ତାତ୍ତ୍ୱିକ ଓ ଐତିହାସିକ କାରଣ'' ବିଦ୍ୟମାନ ଥିବା ବିଷୟ ଉପଲବ୍ଧି ହେବ ।

ପନ୍ଦରଶହ ବୟାଅଶୀ ଖ୍ରୀ:ରେ ତୋଡ଼ରମଲ୍ଲଙ୍କ ଶାସନ କାର୍ଯ୍ୟରେ ଓଡ଼ିଆ ପରିବର୍ତ୍ତେ ପାର୍ଶୀ ଭାଷା ପ୍ରଚଳିତ ହେଲା । ଶୋହଳ ଶହ ଏଗାର ଖ୍ରୀଷ୍ଟାବ୍ଦରେ ମରହଟ୍ଟା ଭାସ୍କର ପଣ୍ଡିତ ବଙ୍ଗର ନବାବଙ୍କ ଠାରୁ ଓଡ଼ିଶା ଶାସନ ଭାର ଗ୍ରହଣ କଲେ । ଷୋହଳ-ଶହ ଚାଳିଶ ସାଲରେ ଇଂରେଜମାନେ ବାଲେଶ୍ୱରରେ ବାଣିଜ୍ୟ କୋଠୀ ସ୍ଥାପନ କଲେ । ପର୍ତ୍ତୁଗୀଜ ଓ ଓଲନ୍ଦାଜମାନେ, ବାଲେଶ୍ୱର, ହିଜଳୀ ପ୍ରଭୃତି ସ୍ଥାନରେ ବାଣିଜ୍ୟ ବ୍ୟବସାୟରେ ଲିପ୍ତ ଥିଲେ । ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ ଓ ଶାସନ କାର୍ଯ୍ୟ ପରିଚାଳନା ନିମନ୍ତେ ଶିକ୍ଷିତ ବଙ୍ଗାଳୀମାନଙ୍କୁ ନିଯୁକ୍ତ କରିଥିଲେ । ପୂର୍ବତନ ମୟୂରଭଞ୍ଜ ରାଜ୍ୟର ଶାସନ ପରିଚାଳନାରେ ମଧ୍ୟ ବହୁ ସଂଖ୍ୟକ ବଙ୍ଗାଳୀ ନିଯୁକ୍ତ ହୋଇଥିଲେ । ଆଲୋଚ୍ୟ ଅଞ୍ଚଳର କଥିତ ଭାଷା ଉପରେ ଏ ସବୁର ପ୍ରଭାବ ପରିଲକ୍ଷିତ ହୁଏ ।

ମେଦିନୀପୁର ଜିଲ୍ଲା ବହୁ କାଳଧରି ବିଭିନ୍ନ ଶାସନାଧୀନ ହୋଇ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ବଙ୍ଗଳାରେ ରହିଥିଲେ ହେଁ, ଏଠାରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଅକ୍ଷୁର୍ଣ୍ଣ ରହିଥିଲା ।

ଏ ସମ୍ପର୍କରେ ଓଡ଼ିଆ ସାହିତ୍ୟ ଇତିହାସର * ବିଶିଷ୍ଟ ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତି, ଶ୍ରୀ ରାଜେନ୍ଦ୍ରଲାଲ ମିତ୍ରଙ୍କ ଉକ୍ତିକୁ ତର୍ଜମା କରି ଲେଖିଛନ୍ତି, ଏବର ମେଦିନୀପୁର ଓ ନାରାୟଣପୁର ପ୍ରଭୃତି ଅଞ୍ଚଳ (ଯାହା ପରବର୍ତ୍ତୀ କାଳରେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଅଛି) ସେ ସମୟରେ 'ଜଲେଶ୍ୱର' ସରକାର'ର ଅନ୍ତର୍ଭୁକ୍ତ ଥିଲା । ମାତ୍ର ଇଷ୍ଟ-ଇଣ୍ଡିଆ କମ୍ପାନୀ, ବଙ୍ଗଳା, ବିହାର ଓ ଓଡ଼ିଶାର ଦେଓ୍ୱାନୀ ଅଧିକାର କଲାବେଳକୁ ଓଡ଼ିଶାର ଉତ୍ତର ସୀମା କ୍ରମେ ସଙ୍କୁଚିତ ହୋଇ ଆସି ରୂପନାରାୟଣ ନଦୀର ଦକ୍ଷିଣ ତୀରରେ ପହଞ୍ଚିଲା ପରେ ମେଦିନୀପୁର ଜିଲ୍ଲା ବର୍ଦ୍ଧମାନର କମିଶନରଙ୍କ ଦ୍ୱାରା ଶାସନାଧିନ ହେବା ପରେ ଓଡ଼ିଶାର ଉତ୍ତର ସୀମା ସୁବର୍ଣ୍ଣରେଖା ନଦୀର ତୀରବର୍ତ୍ତୀଭୂମି ପର୍ଯ୍ୟନ୍ତ ଆହୁରି ସଙ୍କୁଚିତ ହୋଇ ଆସିଥିଲା । ଶାସନତାନ୍ତ୍ରିକ ଭାଗ ବିଭାଗ ଫଳରେ ଓଡ଼ିଶାର ଉତ୍ତର ଓ ଦକ୍ଷିଣ ସୀମାରେ ସଂକୁଚିତ ଓ ପରିବର୍ତ୍ତନ ଯାହା ହୋଇଥାଉନା କାହିଁକି, ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଏହି ଭୂମିରେ ଓଡ଼ିଆ ଏକାନ୍ତ ପ୍ରଚଳିତ ଭାଷା

* ଓଡ଼ିଆ ସାହିତ୍ୟର ଆଦିପର୍ବ—ପୃ.୧୪, (୧୯୭୧) ଓ ପୃ. ୧୬ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

ଥିଲା । ବିଶେଷତଃ ଓଡ଼ିଶାର ଉତ୍ତର ସୀମାରେ ମେଦିନୀପୁର ଜିଲ୍ଲା ପୁରାପୁରି ଓଡ଼ିଆ ଭାଷୀ ରହିଥିଲା ।

"A little before the time, when the East India company assumed the Dewany of Bengal, Bihar and Orissa, the northern boundary of the last named province, was the south of the Rupnarayan river, and that was Probably its extreme limit to the north, for it is upto that line that the Uriya dialect was always current, unit pressed back to the bank of the Subarnarekha when midnapur was transferred to the Commissionership of Burdwan—" (Antiquities of Orissa.)

ମେଦିନୀପୁର ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଯିବା ପରେ ସୁଦ୍ଧା ଓଡ଼ିଆ ଭାଷା ଏହି ଅଞ୍ଚଳରେ ପ୍ରଚଳିତ ଥିବା ଉଲ୍ଲେଖ କରି ସାର ଜନବୀମ୍ସ୍ ଲେଖିଛନ୍ତି * ଓଡ଼ିଶାର ଉତ୍ତରରେ ସୁବର୍ଣ୍ଣରେଖା ନଦୀ କୂଳେ କୂଳେ ଓ ହିଜଳି ଉପକୂଳରେ ଏପରିକି ମେଦିନୀ-ପୁର ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳରେ ଏକ ପ୍ରକାର ଓଡ଼ିଆ ଅପଭ୍ରଂଶ ଓ ବଙ୍ଗଳା ଅପଭ୍ରଂଶର ମିଶାମିଶି ଭାଷା କଥିତ ଭାଷା ରୂପେ ପ୍ରଚଳିତ ।

In the north of Orissa, about the Subarnarekha river and along the Hijli coast, and even to within short distance of midnapur a corrupt form of Oriya is spoken, mixed with an equally corrupt from of Bengali." (Comparative Grammar of Indo-Aryan languages-P. 100.

ଫକୀରମୋହନ ଆତ୍ମଜୀବନ ଚରିତରେ ଲେଖିଛନ୍ତି, "ମେଦିନୀପୁର ଜିଲ୍ଲା ପରିମାଣ ପ୍ରାୟ ୫ ହଜାର ୨ ଶତ ମାଇଲ । ସେଥିମଧ୍ୟରୁ ଜିଲ୍ଲାର ଦକ୍ଷିଣାଞ୍ଚଳ ପ୍ରାୟ ୨୨ ଶତ ମାଇଲ ନିରେଳା ଓଡ଼ିଆଭାଷୀମାନଙ୍କ ସ୍ଥାନ । ସେମାନଙ୍କ ଘର ବାହାରର କଥା ଭାଷା, ଘରୋଇ ଚିଠି, ହିସାବ ପତ୍ର, ମହାଜନ ପିରସ୍ତା, ଦଲିଲ ଦସ୍ତାବିଜ କେବଳ ଓଡ଼ିଆ ଭାଷାରେ ଲେଖାପଢ଼ା ହେଉଥିଲା । ପୂର୍ବେ ମେଦିନୀପୁର ଜିଲ୍ଲାର କଚେରୀ ଭାଷା ମଧ୍ୟ ଆଂଶିକ ଓଡ଼ିଆ ଥିଲା । ବାଲେଶ୍ୱର ଜିଲ୍ଲା ସଦର କଚେରୀରୁ ଅମଲାମାନେ ନିଯୁକ୍ତ ହୋଇ ସେ ସ୍ଥାନକୁ ଯାଉଥିଲେ ।"

Digitized by srujanika@gmail.com

ଉପରୋକ୍ତ ସମସ୍ତ ଅଞ୍ଚଳ ଅତୀତରେ ଐତିହାସିକ କଳିଙ୍ଗ * ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବା ଦୃଷ୍ଟିରୁ ଏଠାରେ ଓଡ଼ିଆ ଭାଷା ପୂର୍ଣ୍ଣ ପ୍ରତିଷ୍ଠା ଲାଭ କରିଥିଲା । ଭାଗବତ ଟୁଙ୍ଗୀମାନ ଗଠିତ ହୋଇ ଓଡ଼ିଆ ଭାଷା ଓ ସାହିତ୍ୟ ଶିକ୍ଷାର ପ୍ରସାର ଏବଂ ସଂସ୍କୃତିର ବିକାଶ ଘଟିଥିଲା । ସ୍ୱାଧୀନ ଭାରତର ପ୍ରତି ପ୍ରଦେଶରେ ସେଠାକାର ପ୍ରଧାନ ଭାଷା ପ୍ରଚଳିତ ହୁଏ । ସେ ପ୍ରଦେଶର ସରକାର ସେଠାକାର ପ୍ରଧାନ ଭାଷାର ଉନ୍ନତିକଳ୍ପେ ସବୁ ପ୍ରକାର ଚେଷ୍ଟା କରିଥାନ୍ତି । ବଙ୍ଗଳା ଭାଷାର ପ୍ରଚଳନ ହେତୁ ମେଦିନୀପୁର ବାସୀ ଓଡ଼ିଆ ଶିକ୍ଷା ଦିଗରୁ ପୂର୍ଣ୍ଣତଃ ବଞ୍ଚିତ ହୋଇଛନ୍ତି । ତଥାପି ତାଙ୍କର 'ବୁନିୟାଦ୍' ମାତୃଭାଷା ଓଡ଼ିଆକୁ ଭୁଲି ପାରି ନାହାନ୍ତି କିମ୍ବା ସେ ସାହିତ୍ୟକୁ ଛାଡ଼ିପାରି ନାହାନ୍ତି । ଏଠାକାର ଭାଷା ମିଶ୍ରିତ ହୋଇଥିଲେ ମଧ୍ୟ ଓଡ଼ିଆ ଭାଷାର ବିଭିନ୍ନ ବୈଶିଷ୍ଟ୍ୟର ପ୍ରାଧାନ୍ୟ ଲକ୍ଷଣୀୟ । ଏହି ସୀମାନ୍ତବର୍ତ୍ତୀ ଅଞ୍ଚଳ ଭାବେ ଏହି ଉପଭାଷାର ଅସମାପିକା କ୍ରିୟାରୂପ ତଥା ଶାବ୍ଦିକ ପ୍ରୟୋଗ କ୍ଷେତ୍ରରେ କିଛିଟା ବଙ୍ଗୀୟ ପ୍ରଭାବ ଅନୁଭୂତ ହୋଇଥାଏ । କିନ୍ତୁ ତାର ବାକ୍ୟରୀତି ଓ ଶବ୍ଦ ଭଣ୍ଡାର ବହୁ ପରିମାଣରେ ଓଡ଼ିଆ ଭାଷାର ମୌଳିକ ସମ୍ପଦରେ ସମୃଦ୍ଧ । ଅର୍ଦ୍ଧମାଗଧୀ ପରିବାର ଭୁକ୍ତ ଆଧୁନିକ ସମସ୍ତ ଭାଷା ମଧ୍ୟରେ ଓଡ଼ିଆ ସର୍ବାଧିକ ରକ୍ଷଣଶୀଳ । ଡଃ ସୁନୀତି କୁମାର ଚଟ୍ଟୋପାଧ୍ୟାୟ ଏହା ସ୍ୱୀକାର କରିଛନ୍ତି । ପୁନଶ୍ଚ ଡ: ଦେବୀ ପ୍ରସନ୍ନ ପଟ୍ଟନାୟକ ପ୍ରମାଣିତ କରିଛନ୍ତି ଯେ ବଙ୍ଗଳା ଏବଂ ଅସମୀୟା ତୁଳନାରେ ମୂଳ ଅର୍ଦ୍ଧମାଗଧୀ ଭାଷାରୁ ଓଡ଼ିଆ ପ୍ରଥମେ ବିଚ୍ଛିନ୍ନ ହୋଇଥିଲା । ଓଡ଼ିଶାର ଉତ୍ତରାଞ୍ଚଳୀୟ ଉପଭାଷାରେ ବଙ୍ଗୀୟ ସଂସର୍ଗ ତାକୁ ଏଭଳି ସ୍ୱାତନ୍ତ୍ର୍ୟ ପ୍ରଦାନ କରିନାହିଁ । ବରଂ ମୂଳ ଅର୍ଦ୍ଧମାଗଧୀ ଭାଷାରୁ ଓଡ଼ିଆ, ବଙ୍ଗଳା ଓ ଅସମୀୟା ଆଦି ଆଧୁନିକ ଭାରତୀୟ ଭାଷାର ଉନ୍ମେଷ କାଳରେ ଅର୍ଥାତ୍ ଏ ଗୁଡ଼ିକ ସୃଷ୍ଟିର ଠିକ୍ ଅବ୍ୟବହିତ ପୂର୍ବରୁ ଯେଉଁ ଔପଭାଷିକ ସ୍ୱାତନ୍ତ୍ର୍ୟମାନ ସୃଷ୍ଟି ହୋଇଥିଲା, ତାହାହିଁ ଆଲୋଚ୍ୟ ଉପଭାଷାରେ ସମଧିକ ପରିମାଣରେ ବିଧୃତ । ଏହାହିଁ ତାର ସ୍ୱାତନ୍ତ୍ର୍ୟର ପ୍ରକୃଷ୍ଟି ସମ୍ପାଦନ କରେ ।

---

* ବିଶିଷ୍ଟ ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତି ଐତିହାସିକ ଶ୍ରୀ ରାଜେନ୍ଦ୍ରଲାଲ ମିତ୍ରଙ୍କର ଉକ୍ତି ଉଦ୍ଧାର କରି ଲେଖିଛନ୍ତି, "ଇତିହାସରେ ବିଭିନ୍ନ କାଳରେ କଳିଙ୍ଗ, ଉତ୍କଳ ଓ ଉଡ୍ରମଣ୍ଡଳ ନାମରେ, ଓଡ଼ିଶା ପରିଚିତ ଲାଭ କରି ଆସିଥିଲେ ହେଁ, ଏହି ସମସ୍ତ ଭୂମି, ଐତିହାସିକ କଳିଙ୍ଗ ନାମରେ ବିଦିତ ଥିଲା । ଏହି ସୁପ୍ରାଚୀନ, ଐତିହାସିକ କାଳରୁ ମୋଗଲକାଳ ପର୍ଯ୍ୟନ୍ତ, ଉତ୍ତରରେ ହୁଗୁଳୀ ନଦୀଠାରୁ ଦକ୍ଷିଣରେ ଗୋଦାବରୀ ମଧ୍ୟରେ ଓଡ଼ିଶାର ବ୍ୟାପ୍ତି ବିସ୍ତୃତ ରହିଥିଲା ।"

ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ· ୧୬, ୧୯୭୧ ।

Digitized by srujanika@gmail.com

ପଶ୍ଚିମ-ବଙ୍ଗ ସରକାର ମେଦନୀପୁର ଅଞ୍ଚଳରେ ବଙ୍ଗଳା ଭାଷା ଶିକ୍ଷା ଦେବାରେ ଯଥେଷ୍ଟ ଉଦ୍ୟମ କରିଛନ୍ତି । ପୂର୍ବରୁ ଏ ଅଞ୍ଚଳରେ ଓଡ଼ିଆ ଭାଷାର ପୂର୍ଣ୍ଣ ପ୍ରଚଳନ ଥିଲା । ଅବଧାନମାନେ ଚଟ୍ଟଶାଳୀମାନ ବସାଇ ଚଟ୍ଟମାନଙ୍କୁ ପଢ଼ାଉଥିଲେ । ଇଂରେଜ ସରକାରଙ୍କ ସମୟରେ ଓଡ଼ିଆ ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇ ଓଡ଼ିଆ ଶିକ୍ଷା ଦିଆ ଯାଉଥିଲା । ଇଂରେଜ ସରକାରଙ୍କ ଶିକ୍ଷା ରିପୋର୍ଟ ଅନୁସାରେ ଊନବିଂଶ ଶତକରେ ମେଦନୀପୁରରେ ଅନେକ ଗୁଡ଼ିଏ ଓଡ଼ିଆ ବିଦ୍ୟାଳୟ ଗଢ଼ି ଉଠିଥିଲା । ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପର୍ଯ୍ୟନ୍ତ ଓଡ଼ିଆ ବିଦ୍ୟାଳୟମାନ ଏ ଜିଲ୍ଲାରେ ରହିଥିଲା । ସ୍ୱର୍ଗତଃ ରମେଶ ଚନ୍ଦ୍ର ଦତ୍ତ, ଜଣେ କୃତୀ ଶିକ୍ଷକଙ୍କ ଉକ୍ତି ଏଠାରେ ଉଦ୍ଧାର କରାଗଲା । "ଏ ଅଞ୍ଚଳର ବାଲେଶ୍ୱର ଓ ମେଦନୀପୁର ସୀମାରେ ବାଲେଶ୍ୱର ଜିଲ୍ଲାର ଆଡ଼ିନଗା ଓ ମେଦନୀପୁରର ଧୋଇପଡ଼ା ନାମକ ଦୁଇଟି ଗ୍ରାମ ଅବସ୍ଥିତ । ପ୍ରାୟ ୩୦ ବର୍ଷ ତଳେ ଉକ୍ତ ଆଡ଼ିନଗା ଗ୍ରାମରେ ଗୋଟିଏ ଓଡ଼ିଆ ·ଉ: ପ୍ରା: ବିଦ୍ୟାଳୟ ଥିଲା । ସେଠାରେ ସେ ଅଞ୍ଚଳର ମେଦନୀପୁର ତଥା ବାଲେଶ୍ୱର ଜିଲ୍ଲାର ସମସ୍ତ ଗ୍ରାମର ପିଲା କେବଳ ଓଡ଼ିଆ ହିଁ ପଢ଼ୁଥିଲେ । କାରଣ ନିକଟବର୍ତ୍ତୀ ୪।୫ ମାଇଲ ମଧ୍ୟରେ କୌଣସି ବଙ୍ଗଳା ସ୍କୁଲ ନଥିଲା । ମାତ୍ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାପରେ ସୀମାନ୍ତର ଏହି ଆଡ଼ିନଗା ଗ୍ରାମଟିରୁ ଓଡ଼ିଆ ଉ: ପ୍ରା: ସ୍କୁଲ ଏକାବେଳକେ ଉଠିଗଲା । କିନ୍ତୁ ଧୋଇପଡ଼ା ଗ୍ରାମରେ ବଙ୍ଗଳା ମାଇନର ତଥା ଇଂରାଜୀ ସ୍କୁଲ ଖୋଲା ହେଲା । ନିକଟବର୍ତ୍ତୀ କେତେକ ଓଡ଼ିଆ ଗ୍ରାମର ପିଲାମାନେ ସେହି ବଙ୍ଗଳା ସ୍କୁଲରେ ପଢ଼ିବାକୁ ବାଧ୍ୟ ହେଲେ ।" ଏଥିରୁ ସ୍ପଷ୍ଟ ବୁଝା ପଡ଼ୁଛି ଯେ ୧୯୩୬ ମସିହା ଅପ୍ରେଲ ପହିଲା ପରେ ମେଦନୀପୁରରୁ ଓଡ଼ିଆ ଭାଷା ଶିକ୍ଷାର ସମସ୍ତ ସୁଯୋଗ ଓ ସୁବିଧା ପୂର୍ଣ୍ଣ ରୂପେ ଲୋପ ପାଇଥିଲା ।

ପଶ୍ଚିମ ବଙ୍ଗଳାରେ କେବଳ ହାଓଡ଼ା ଜିଲ୍ଲା ବ୍ୟତୀତ ଅନ୍ୟ ଜିଲ୍ଲା ମାନଙ୍କ ତୁଳନାରେ ମେଦନୀପୁରରେ ପ୍ରାଥମିକ ଶିକ୍ଷା ବ୍ୟାପକ ଭାବେ ପ୍ରସାରିତ ହୋଇଥିଲା । ଏହା ବିଂଶ ଶତକର ପ୍ରଥମ ଭାଗର ଏକ ପରି ସଂଖ୍ୟାନ ରିପୋର୍ଟରୁ ଜଣାଯାଏ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାପରେ ମେଦନୀପୁରର ସମସ୍ତ ଓଡ଼ିଆ ସରକାରୀ ବିଦ୍ୟାଳୟ ଲୋପ ହେଲା । ବହୁ ପୂର୍ବରୁ ମେଦନୀପୁରର ବିସ୍ତୃତ ଅଞ୍ଚଳର ଗ୍ରାମ ମାନଙ୍କରେ ଥିବା ଚଟ୍ଟଶାଳୀମାନ ବି ନଷ୍ଟ ହୋଇଥିଲା । ଅବଧାନମାନେ ବାରମ୍ବାର ଓ ବହୁ ଦିଗରୁ ନିର୍ଯ୍ୟାତିତ ହୋଇ ବିତାଡ଼ିତ ହୋଇଥିଲେ । ଫକୀରମୋହନ ତାଙ୍କ ଆତ୍ମ ଜୀବନରେ ଏ ସମ୍ପର୍କରେ ଲେଖିଛନ୍ତି, "ମେଦନୀପୁର ଦକ୍ଷିଣାଞ୍ଚଳରୁ ଚଟ୍ଟଶାଳୀ ଏକା-ବେଳକେ ଉଠିଯିବା ଗୋଟିଏ ରହସ୍ୟମୟ, ଦାରୁଣ, ଶୋଚନୀୟ ବିଷୟ ଅଟେ । ୧୮୬୫—୧୮୭୦ ଖ୍ରୀ: ଅ:ରେ ମେଦନୀପୁର ଜିଲ୍ଲା ଦକ୍ଷିଣାଞ୍ଚଳରେ ସ୍କୁଲ ସ୍ଥାପନ କରିବା ନିମନ୍ତେ ଜଣେ ବଙ୍ଗାଳୀ ସବ୍‌ଇନସ୍‌ପେକ୍ଟର ପଦରେ ନିଯୁକ୍ତ ହୋଇ ଆସିଥିଲେ । ସେ ବଙ୍ଗଳା ସ୍କୁଲ ବସାଇବାକୁ ଚେଷ୍ଟା କଲେ; ମାତ୍ର ଲୋକେ ପିଲାମାନଙ୍କୁ ବଙ୍ଗଳା

Digitized by srujanika@gmail.com

ପଢ଼ାଇବାକୁ ଅସ୍ୱୀକୃତ ହେଲେ; ଅନେକ ଚେଷ୍ଟା କରି ମଧ୍ୟ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ସେ କେବଳ ଦକ୍ଷିଣାଞ୍ଚଳରେ ସ୍କୁଲ ବସାଇବାକୁ ସ୍ୱତନ୍ତ୍ର ରୂପେ ନିଯୁକ୍ତ ହୋଇ ଆସିଅଛନ୍ତି; ସ୍କୁଲ ବସାଇ ନ ପାରିଲେ ତାହାଙ୍କର ଗୃହକର୍ତ୍ତା ରହିବା ଅସମ୍ଭବ । ଉପରସ୍ଥ କର୍ମଚାରୀଙ୍କୁ ଆପଣାର ଅକୃତକାର୍ଯ୍ୟତା ଜଣାଇ ଏଡ଼େ ସୁନ୍ଦର ଗୃହକର୍ତ୍ତା ଖଣ୍ଡ କ'ଣ ହରାଇବେ ?

କାର୍ଯ୍ୟ ଅଟକିଲେ ବୁଦ୍ଧି ଦିଶେ । ବାବୁଙ୍କ ମୁଣ୍ଡରୁ ଚଞ୍ଚଳ ଗୋଟିଏ ବୁଦ୍ଧି ବାହାରିପଡ଼ିଲା । ଗୋଟାଏ ଗୋଟାଏ ଥାନାରେ ବସି ସେହି ଥାନା ଇଲାକାରେ ଗୃହାଳିଆ ଅବଧାନ ଯେତେ ଥିଲେ, ଗୋଟାଏ ଦିନ ଧାର୍ଯ୍ୟକରି, ଥାନା ଦାରୋଗା ଦ୍ୱାରା ସେହି ଅବଧାନଙ୍କୁ ଏକା ସଙ୍ଗରେ ଡକାଇ ଆଣିଲେ । ଇଂରେଜୀ ଲେଖା ମୋହର ମାରି ଖଣ୍ଡିଏ କୃତ୍ରିମ ପରବାନା ଅବଧାନମାନଙ୍କୁ ଦେଖାଇ, ସେମାନଙ୍କୁ କହିଲେ, ଏହି ଦେଖ, ମେଦିନୀପୁର ଜିଲ୍ଲାର କଲେକ୍ଟର ସାହେବଙ୍କ ହୁକୁମ୍ । ଏହି ଥାନା ଇଲାକାରେ ଯେତେ ଗୃହାଳୀ ଅଛି ସମସ୍ତ ଉଠାଇ ଦିଆଯିବ ଏବଂ ଏହି ଥାନା ଇଲାକାରେ ଯେତେ ଅବଧାନ ଅଛନ୍ତି ଏହି ପରବାନା ତାରିଖ ଶୁଣିବା ତାରିଖଠାରୁ ସାତଦିନ ମଧ୍ୟରେ ଆପଣା ଆପଣା ଦେଶକୁ ଚାଲିଯିବେ । ନିରୂପିତ ଦିବସର ପରଦିନ ଯେଉଁ ଅବଧାନକୁ ମେଦିନୀପୁର ଇଲାକାରେ ଦେଖାଯିବ, ସେ ଓ୍ୱାରେଣ୍ଟରେ ଧରାଯାଇ ସଦର କଚେରୀକୁ ଯିବ ଏବଂ ତାହାକୁ ଜରିମାନା ଓ ଜେଲ ଦୁଇପ୍ରକାର ଦଣ୍ଡ ଦିଆଯିବ ।'' ସବ୍‌ଇନ୍‌ସ-ପେକ୍ଟରବାବୁ ଥାନା ଥାନା ବୁଲି ଅବଧାନମାନଙ୍କୁ ହୁକୁମ ଶୁଣାଇବାକୁ ଲାଗିଲେ । କ୍ଷୁଦ୍ର ପ୍ରାଣୀ ବିଚାରା ଅବଧାନଙ୍କର ସିନ୍ଧି କେତେ ? ଜିଲ୍ଲା କଲେକ୍ଟର ସାହେବଙ୍କ ହୁକୁମ୍, ପୁଣି ଥାନାରୁ ବାହାରିଛି । ଯେ ଯେତେ ଚଞ୍ଚଳ ପାରିଲା ଚିରକାଳ ସକାଶେ ଗୃହାଳୀ ଛାଡ଼ି ଦେଶ ମୁହାଁ ପଳାଇ ଆସିଲା ।''

ମେଦିନୀପୁର ଜିଲ୍ଲା ବଙ୍ଗଳା ସହିତ ମିଶିବାରେ ବୀରେନ୍ଦ୍ରନାଥ ଶାସମଲଙ୍କ ପ୍ରଚେଷ୍ଟା ଅନସ୍ୱୀକାର୍ଯ୍ୟ । ସେ ୧୮୮୧ ମସିହାରେ କଣ୍ଟାଇରେ ଜନ୍ମଗ୍ରହଣ କରିଥିଲେ । ଭାରତରେ ନିଜର ଶିକ୍ଷା ଶେଷ କରି ଓକିଲାତି ପଢ଼ିବା ନିମନ୍ତେ ବିଲାତ ଯାଇଥିଲେ । ସେଠାରୁ ଫେରି ସେ ପ୍ରଥମେ କଲିକତା ହାଇକୋର୍ଟ ଏବଂ ପରେ ମେଦିନୀପୁରରେ ନିଜର ବ୍ୟବସାୟ ଆରମ୍ଭ କରିଥିଲେ । ୧୯୨୧ ମସିହା ବେଳକୁ ବୀରେନ୍ଦ୍ରନାଥ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଅଂଶଗ୍ରହଣ କରି ନିଜର ସାଙ୍ଗଠନିକ କ୍ଷମତା ଦୃଢ଼ୀଭୂତ କରିଥିଲେ । ୧୯୨୨ ମସିହା ବେଳକୁ ବୀରେନ୍ଦ୍ରନାଥ ସର୍ବଭାରତୀୟ ନେତୃମଣ୍ଡଳୀ ମଧ୍ୟରେ ନିଜର ଏକ ଅନ୍ତରଙ୍ଗ ଓ ଦୃଢ଼ ଆସନ ପ୍ରତିଷ୍ଠା କରି ପାରିଥିଲେ ।

Digitized by srujanika@gmail.com

୧୯୧୯ ମସିହାରେ ଭାଷା ସୂତ୍ରରେ ମେଦିନୀପୁର ଓଡ଼ିଶା ସହିତ ମିଶିବାର କଥା ନେଇ ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ଗୋଦାବରୀଶ ଯେତେବେଳେ ବୀରେନ୍ଦ୍ରନାଥଙ୍କ ସହିତ କଥାବାର୍ତ୍ତା କରିବାକୁ ଯାନ୍ତି, ସେତେବେଳେ ମେଦିନୀପୁର ଅଞ୍ଚଳ ଓଡ଼ିଶା ସହିତ ମିଶିବାର ଆଶା ପରିତ୍ୟାଗ କରିବା ନିମନ୍ତେ ବୀରେନ୍ଦ୍ରନାଥ ସ୍ପଷ୍ଟ ଭାବେ ସୂଚାଇ ଦେଇଥିଲେ । ପୁଣି ପଣ୍ଡିତ ଗୋଦାବରୀଶ ଓ ଯଦୁମଣି ମଙ୍ଗରାଜ ବୀରେନ୍ଦ୍ରନାଥଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ମେଦିନୀପୁରରେ ସଭା କରୁଥିବା ସମୟରେ ବଙ୍ଗାଳୀ ଗୁଣ୍ଡାମାନଙ୍କ ଦ୍ୱାରା ଟେକାମାଡ଼ ଖାଇଥିଲେ । ରାଧାଶ୍ୟାମ ଦାସଙ୍କୁ ଆଘାତ କରିଥିବା ପଥରରେ ଗୋଡ଼ା ହୋଇଥିବା କାଗଜରେ ଲେଖାଥିଲା,—"Goback, donot court danger, we shall kill you and Mishra." ବୀରେନ୍ଦ୍ରନାଥ ସାଧାରଣ ସଭା ମାନଙ୍କରେ ଓଡ଼ିଆ ମାନଙ୍କ ବିରୁଦ୍ଧରେ କହୁଥିବାର ସେତେବେଳକାର ସମ୍ବାଦପତ୍ର ମାନଙ୍କରୁ ଜଣାପଡ଼େ ।

ବୀରେନ୍ଦ୍ରନାଥ ନାନା ଉପାୟରେ ମେଦିନୀପୁର ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ନିଜର ପ୍ରତିପତ୍ତି ବଢ଼ାଇଥିଲେ ଓ ସେହି ସୂତ୍ରରେ, ଓଡ଼ିଶାରେ ମିଶିବା ନ ମିଶିବା ବିଷୟରେ ନିଜ ମତ ପ୍ରତି ସେମାନଙ୍କୁ ଆକୃଷ୍ଟ କରାଇଥିଲେ । ଶୁଣାଯାଏ, ମେଦିନୀପୁରର ଦାନ୍ତନ ଥାନାରେ ଯେତେବେଳେ ବୀରେନ୍ଦ୍ରନାଥ 'ଟକି' (ସିନେମା) ଆଣି ଚଳାଉ-ଥିଲେ । ତାକୁ ଦେଖିବାକୁ ଲୋକେ ଏତେ ଆଗ୍ରହାନ୍ୱିତ ହୋଇ ଯାଇଥିଲେ ଯେ, ଘରର ବାସନ କୁସନ ବିକ୍ରି କରି ତାହା ଦେଖିବା ନିମନ୍ତେ ଆସୁଥିଲେ ।

ଓଡ଼ିଶାର ତତ୍କାଳୀନ ନେତାମାନଙ୍କର ସବୁ ଚେଷ୍ଟା ବିଫଳ ହୋଇଥିଲା । ଏବଂ ମେଦିନୀପୁର ଜିଲ୍ଲା ବଙ୍ଗଳା ସହିତ ମିଶିଗଲା । ମେଦିନୀପୁରର ଓଡ଼ିଆମାନେ ବଙ୍ଗାଳୀ ପାଲଟି ଗଲେ, ବଙ୍ଗଳା ପଢ଼ିଲେ, ଲେଖିଲେ ଯଦିଚ ତାଙ୍କ ଭାଷା ଓ ସଂସ୍କୃତିରେ ଅତୀତର ଶହ ଶହ ବର୍ଷର ଓଡ଼ିଆ ଭାଷା ଓ ସଂସ୍କୃତିର ଚିହ୍ନ ଅଦ୍ୟାପି ନାନା ପ୍ରକାରେ ରହିଯାଇଛି । ଅବଶ୍ୟ, ୧୯୩୬ ମସିହା ପରେ ମେଦିନୀପୁରବାସୀ କେତେକ ବିଶିଷ୍ଟ ଓଡ଼ିଆ ସମୟ ସମୟରେ ଅଶ୍ରୁପ୍ତି ଓ ଓଡ଼ିଆ ଜାତୀୟତା ପ୍ରକାଶ କରିଛନ୍ତି । ସେମାନେ ସେ ଦିଗରେ କିଛି କାର୍ଯ୍ୟାନୁଷ୍ଠାନ ମଧ୍ୟ ଗ୍ରହଣ କରିଥିଲେ । 'ଆଧୁନିକ ବାଂଲା ଦେଶବାସୀ ଉତ୍କଳୀୟ ଜାତି ମହା ସମ୍ମିଲନ୍' ନାମରେ ଗୋଟିଏ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇ ଓଡ଼ିଆମାନେ"...ବାଂଲା ଦେଶେ ରାଜନୈତିକ କ୍ଷେତ୍ରେ ଯେରୂପ ବିଧିମତେ ଆଦୃତ ହୋଇବ ତାହାର ବ୍ୟବସ୍ଥା..."କରିବାର ଉଦ୍ୟମ ହୋଇଥିଲା । ମେଦିନୀପୁରରେ ଓଡ଼ିଆ ଶିକ୍ଷାଦେବା ନିମନ୍ତେ ମଧ୍ୟ ଚେଷ୍ଟା କରାଯାଇଥିଲା । ସ୍ୱର୍ଗୀୟ ବୈଧନାଥ ପତିଙ୍କ ଅକ୍ଲାନ୍ତ ଚେଷ୍ଟା ଫଳରେ ଦକ୍ଷିଣ ମେଦିନୀପୁରରେ ଓଡ଼ିଆ ଅଧିବାସୀମାନଙ୍କ ନିମନ୍ତେ କେତେକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଓଡ଼ିଆ ଭାଷା ଶିକ୍ଷାର ବ୍ୟବସ୍ଥା ହୋଇଥିଲା ।

Digitized by srujanika@gmail.com

ସାର୍ ଆଶୁତୋଷ ମୁଖାର୍ଜୀ ଏଥିପାଇଁ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ନିଯୁକ୍ତ ଦେଇଥିଲେ । କାଳକ୍ରମେ ମେଦିନୀପୁର ଅଞ୍ଚଳରେ ଓଡ଼ିଆ ପଠନ ପାଠନ ରୀତି ଲୁପ୍ତ ହୋଇଅଛି । ବର୍ତ୍ତମାନ ଅତ୍ୟନ୍ତ କୌତୁହଳର ସହିତ ଲକ୍ଷ୍ୟ କରାଯାଇ ପାରେ ଯେ, ମେଦିନୀପୁର ଅଞ୍ଚଳରେ ବଙ୍ଗଳାଭାଷା ଶିକ୍ଷାର ସମସ୍ତ ପ୍ରକାର ଚେଷ୍ଟାସତ୍ତ୍ୱେ ଏହି ଅଞ୍ଚଳରେ ଏବେ ବି ଓଡ଼ିଆ ଭାଷାରେ କଥାବାର୍ତ୍ତା ହେଉଅଛି ଏବଂ ଓଡ଼ିଆ ସାହିତ୍ୟର ଚର୍ଚ୍ଚା ଏକ ମୁଖ୍ୟ ଅଂଶ ଗ୍ରହଣ କରିଅଛି । ମେଦିନୀପୁର ଅଧିବାସୀ ଗଣ ଓଡ଼ିଆ ଶିକ୍ଷା ଓ ପଠନର ସମସ୍ତ ପ୍ରକାର ସୁବିଧାରୁ ବଞ୍ଚିତ ହୋଇ ମଧ୍ୟ ଓଡ଼ିଆ-ଭାଷା ଓ ସାହିତ୍ୟ ପ୍ରତି ସେମାନଙ୍କର ଶ୍ରଦ୍ଧା କମିଯାଇ ନାହିଁ । ବଂଗଳାରେ ମୁଦ୍ରିତ ଓଡ଼ିଆ କାବ୍ୟ, ପୁରାଣ ସାହିତ୍ୟ ଏ ଅଞ୍ଚଳରେ ପ୍ରାୟ ପ୍ରତ୍ୟେକ ଘରେ ଦେଖିବାକୁ ମିଳେ । ପ୍ରାୟ ପ୍ରତିଗ୍ରାମରେ ଓଡ଼ିଆ ଓ ବଙ୍ଗଳାରେ ଲିଖିତ ଓଡ଼ିଆ ଭାଷାର ଭାଗବତ, ରାମାୟଣ, ମହାଭାରତ ଏବଂ ଅନ୍ୟାନ୍ୟ କାବ୍ୟର ତାଳପତ୍ର ପୋଥିମାନ ରକ୍ଷିତ ଅଛି । କେତେକ ସ୍ଥାନରେ ଓଡ଼ିଆ ଭାଷାରେ ଦଲିଲ, କୋଷ୍ଠୀ ଆଦି ରହିଥିବାର ଜଣାଯାଏ । ବଙ୍ଗାକ୍ଷରେ ମୁଦ୍ରିତ କେତୋଟି ପୁସ୍ତକର ଫଟୋଚିତ୍ର ଶ୍ରୀ ସୁରେନ୍ଦ୍ର ମହାନ୍ତି ତାଙ୍କ ଲିଖିତ ଓଡ଼ିଆ ସାହିତ୍ୟର ମଧ୍ୟପର୍ବ' ଓ ଡଃ ମାୟାଧର ମାନସିଂହ ତାଙ୍କର "The Saga of the lord of Jagannatha" ପୁସ୍ତକରେ ସନ୍ନିବେଶିତ କରିଅଛନ୍ତି ।

ଆମର ଆଲୋଚ୍ୟ ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳ ମେଦିନୀପୁର ଓ ମୟୂରଭଞ୍ଜ ଜିଲ୍ଲା ସଂଲଗ୍ନ ଧଳଭୂମିର ବାହାଡ଼ା ଗୋଡ଼ା ପ୍ରଭୃତି ସ୍ଥାନର ଭାଷା ସଂପର୍କରେ ବର୍ତ୍ତମାନ ଆଲୋକପାତ କରାଯାଉଛି ।

ଧଳଭୂମି ଅଞ୍ଚଳ ଆବୁଲ୍‌ଫାଜଲଙ୍କ ଆଇନ୍-ଇ ଆକବରୀରେ ଲିଖିତ ଜଲେଶ୍ୱର ସରକାରର ଅନ୍ତର୍ଭୁକ୍ତ ଥିଲା । ୧୭୫୧ ଖ୍ରୀ:ରେ ବଙ୍ଗଳାର ନବାବ ଆଲିବର୍ଦ୍ଦି ଖାଁ ନାଗପୁରର ମରହଟ୍ଟା ଶାସକଙ୍କ ଏକ ଚୁକ୍ତିରେ ଓଡ଼ିଶାର ଧଳଭୂମି ଓ ମେଦିନୀପୁର ଅଞ୍ଚଳ ବ୍ୟତୀତ କେତେକାଂଶ ନିଜ ଅଧିକାରରୁ ଛାଡ଼ି ଦେଇଥିଲେ । ୧୭୬୫ ଖ୍ରୀ:ରେ କ୍ଲାଇବ ଦିଲ୍ଲୀ ଦରବାର ପକ୍ଷରୁ ବଂଗବିହାର ଓଡ଼ିଶାର ଦେଓ୍ୱାନୀ ପ୍ରାପ୍ତି ବେଳେ ଓଡ଼ିଶାର ରୂପନାରାୟଣ ନଦୀ ଓ ସୁବର୍ଣ୍ଣରେଖା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ଅର୍ଥାତ୍ ଧଳଭୂମି ଓ ମେଦିନୀପୁର ଅଞ୍ଚଳକୁ କେବଳ ଅନ୍ତର୍ଭୁକ୍ତ କରାଯାଇଥିଲା । ୧୮୦୩ ଖ୍ରୀ:ରେ ଇଂରେଜ ଓଡ଼ିଶା ଅଧିକାର କରିବା ପୂର୍ବରୁ ୧୭୯୩ ଖ୍ରୀ:ର ପ୍ରଥମ ପ୍ରବିଧାନ (Frist Regulation)ରେ ଓଡ଼ିଶା ବିଷୟ ଉଲ୍ଲେଖ କରାଯାଇ ଥିବାରୁ ଧଳଭୂମି ଓ ମେଦିନୀପୁର ଅଞ୍ଚଳ ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା । ଏପରିକି ଏ ଅଞ୍ଚଳ ଇଂରେଜ ଶାସକମାନଙ୍କ ଦ୍ୱାରା ୧୮୦୩ ଖ୍ରୀ· ପୂର୍ବରୁ ସ୍ଥାପିତ 'ଜଙ୍ଗଲ—ମାହାଲ'ର ଅନ୍ତର୍ଭୁକ୍ତ ହୋଇଥିଲା । ୧୮୩୨ ଖ୍ରୀ·

Digitized by srujanika@gmail.com

ପର୍ଯ୍ୟନ୍ତ ମେଦନୀପୁର ସହିତ ଧଳଭୂମି ସଂଯୁକ୍ତ ଥିଲା । ଖ୍ରୀ: ୧୮୩୩ରେ ଏହା ମାନଭୂମ ସହିତ ଓ ଖ୍ରୀ: ୧୮୪୬ ମସିହାରେ ଧଳଭୂମ ମହକୁମା ସିଂହଭୂମ ଜିଲ୍ଲା ସହିତ ସଂଯୁକ୍ତ ହେଲା ଓ ବର୍ତ୍ତମାନ ପର୍ଯ୍ୟନ୍ତ ଏହା ସିଂହଭୂମ ଜିଲ୍ଲାର ଏକ ମହକୁମା ରୂପେ ପରିଗଣିତ । ଧଳଭୂମର ରାଜା ଚିତ୍ରେଶ୍ୱର ଧଳ (ତାଙ୍କ ପୂର୍ବବର୍ତ୍ତୀ ରାଜାଗଣ ମଧ୍ୟ) ୧୯୨୯ ମସିହାରେ ବ୍ରିଟିଶ ସରକାରଙ୍କୁ ଦେଇଥିବା କବୁଲିୟତ ନାମାରେ ଧଳଭୂମି ଓଡ଼ିଶାର ଏକ ଅଂଶ ରୂପେ ଉଲ୍ଲେଖ ରହିଅଛି । *

ଧଳଭୂମି ଅଞ୍ଚଳରେ ପ୍ରଚଳିତ ଭାଷା ମୁଖ୍ୟତଃ ଓଡ଼ିଆ । ଊନବିଂଶ ଶତାବ୍ଦୀର ଶେଷ ଦଶକ ପର୍ଯ୍ୟନ୍ତ ଏଠାର ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଭାଷା ଶିକ୍ଷା ଦିଆ ଯାଉଥିଲା । ବହଡ଼ା ଗୋଡ଼ା ବଙ୍ଗଳା ମଧ୍ୟ ଇଂରାଜୀ ବିଦ୍ୟାଳୟର ଲଗ୍‌ବୁକ୍‌ରେ ୧୮୭୨ ମସିହା ପୂର୍ବରୁ ଏଠି ବଙ୍ଗଳା ଭାଷା ସଂପୂର୍ଣ୍ଣ ଭାବରେ ଅଜଣା ଥିବା ବିଷୟ ଲେଖା-ଥିବାର ଜଣାଯାଇଅଛି । ଏଠାକାର ଲୋକେ ଗୃହଶାଳୀ (ପାଠ ଶାଳା)ରେ ଓଡ଼ିଆ ପଢ଼ୁଥିଲେ ଓ ଲେଖୁଥିଲେ । ଓଡ଼ିଆ ଭାଷାରେ କଥା ହେଉଥିଲେ । ୧୮୭୫ ଖ୍ରୀ:ରେ ଏଠାରେ ପ୍ରଥମେ ବଙ୍ଗଳା ପାଠଶାଳା ସ୍ଥାପିତ ହୋଇଥିଲା ।

ଧଳଭୂମିର ରାଜାମାନେ ୧୮୭୩ ମସିହା ପର୍ଯ୍ୟନ୍ତ ତାଳପତ୍ରରେ ଓଡ଼ିଆ ଭାଷାରେ ଲିଖିତ ସନନ୍ଦ ଓ ପଟ୍ଟା ପ୍ରଦାନ କରୁଥିଲେ । ପୁନଃଆଁ ଦିନ ପ୍ରଥମ ରାଜସ୍ୱ ଆଦାୟ ଓଡ଼ିଆ ଅକ୍ଷରରେ 'ରେକଡ଼' ବହିରେ ଲେଖା ଯାଉଥିଲା । ରାଜା ଶତ୍ରୁଘ୍ନ ଧଳ ୧୮୮୬ ମସିହାରେ ଏକ ଜମିଜମା ସଂକ୍ରାନ୍ତ ମୋକଦ୍ଦମାରେ ଇଜାହାର ଦେଇ ସ୍ପଷ୍ଟ ମତ ବ୍ୟକ୍ତ କରିଥିଲେ । "ଧଳଭୂମି ବଙ୍ଗଳାର କୌଣସି ଅଞ୍ଚଳ ନୁହେଁ, ଏହା ଓଡ଼ିଶାର ଏକ ଅଂଶ ବିଶେଷ ।" ଧଳଭୂମିରେ ଓଡ଼ିଆ ଦିନ ପଞ୍ଜି ଓ 'ମିତାକ୍ଷରା' ହିନ୍ଦୁ ଆଇନ ପ୍ରଚଳିତ ଥିଲା । ଏଠାରେ ଜଣେ ମୈଥିଳୀ ବ୍ରାହ୍ମଣ ବାବୁ ତ୍ରିଭୁବନ ଓଝା ୧୯୨୧ ସାଲରେ ଅନ୍ୟ ଏକ ମୋକଦ୍ଦମାରେ ସାକ୍ଷୀ ପ୍ରଦାନ କରି କହିଥିଲେ. "ମୁଁ ବଙ୍ଗଳା ଓ ସଂସ୍କୃତ ଲେଖି ବା ପଢ଼ି ଜାଣେ ନାହିଁ । ମୁଁ ଓଡ଼ିଆ ଜାଣେ । ମୁଁ ଓଡ଼ିଆ ଲେଖି ଓ ପଢ଼ିପାରେ ।

*"I Raja Chitreswar Dhal (deceased) Zemindar of Pragana Ghatsila in the thanadari of Balarampur Zilla. Midnapur Province Orissa having attained majority petitioned that a settlement might be made with me on which a report on 21st may 1829 made to the Local Commissioner of Cuttack who in his letter dated 4 th June 1829 ordered the required sottlement to be made ... " (ଚରୈବେତି-(୧୯୮୪-୮୫)—ଧଳଭୂମି ଇତିହାସ ଓ ସଂସ୍କୃତି-ଏକ ପର୍ଯ୍ୟାଲୋଚନା ପ୍ରଫେସର ଦୀପକ ଷଡ଼ଙ୍ଗୀ)

Digitized by srujanika@gmail.com

ମୁଁ ଶମ୍ଭୁକର ବାଜପେୟୀଙ୍କ 'କର୍ମକାଣ୍ଡ' ପଢ଼ିଛୁ । ମୁଁ ଓଡ଼ିଆ ପାଠଶାଳାରେ ପଢ଼ିଛୁ ।''

ଶ୍ୟାମସୁନ୍ଦର ପୁରଠାରେ ଶ୍ୟାମାନନ୍ଦ ଗୋସ୍ୱାମୀଙ୍କ ଦ୍ୱାରା ପ୍ରତିଷ୍ଠିତ ଗୌଡ଼ୀୟ ମଠ ଓ ମନ୍ଦିରରେ ଥିବା ତାଳପତ୍ର ପୋଥି ସମୂହ ଓଡ଼ିଆ ଅକ୍ଷର ଓ ବଙ୍ଗ ଭାଷାରେ ଲେଖା ଯାଇଅଛୁ । ବଙ୍ଗଳାର ନଦୀଆ ନବଦ୍ୱୀପରୁ ଆଗତ ଗୌଡ଼ୀୟ ସାଧୁସନ୍ଥଙ୍କ ନିର୍ଦ୍ଦେଶ ମତେ ପ୍ରାଚୀନ ବୈଷ୍ଣବ ଧର୍ମୀୟ ସାହିତ୍ୟ ସବୁ ଓଡ଼ିଆ ଲିପିକାର ଗଣ ଓଡ଼ିଆ ହରଫରେ ନକଲ କରିଥିଲେ ।

ଉତ୍ତର ପୂର୍ବାଞ୍ଚଳୀୟ ଓଡ଼ିଆ ଉପଭାଷା ଅଧ୍ୟୟନ କାଳରେ ମୟୂରଭଞ୍ଜ-ଝାଡ଼ଗ୍ରାମ ଅଞ୍ଚଳରେ ପ୍ରଚଳିତ କୁଡ଼ୁମାଲୀ ଭାଷାର ସ୍ଥିତି ଉପଲବ୍‌ଧ ହୁଏ । ଗ୍ରୀୟରସନ ଏହାକୁ ଏକ ଉପଭାଷା ରୂପେ ଚିହ୍ନଟ କରିଥିଲେ ।

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର କେତେକ ସ୍ଥାନର ଓଡ଼ିଆ ଓ କୁଡ଼ୁମାଲୀ ଉପଭାଷାର କେତେଗୋଟି ନମୁନା ପରିଶିଷ୍ଟରେ ସଂଯୋଗ କରାଯାଇଛୁ ।

## ଉତ୍ତରାଞ୍ଚଳ ଓଡ଼ିଆ ଭାଷାର ଧ୍ୱନି ପରିବର୍ତ୍ତନ ପ୍ରକ୍ରିୟା

ଏହା ମଧ୍ୟରେ ଧ୍ୱନି, ରୂପରଚନା ଓ ଶବ୍ଦ ସମ୍ଭାର ଅନ୍ତର୍ଭୁକ୍ତ । *

**ଧ୍ୱନି :—ପ୍ରକ୍ରିୟାଗତ ବୈଶିଷ୍ଟ୍ୟ :**

(କ) ଶବ୍ଦର ଆରମ୍ଭରେ ବ୍ୟଞ୍ଜନ ସନ୍ନିହିତ ଅର୍ଦ୍ଧ ସଂବୃତ ସ୍ୱର ଧ୍ୱନି ଉତ୍ତରା-ଞ୍ଚଳୀୟ ଓଡ଼ିଆରେ ପ୍ରାୟ ସର୍ବତ୍ର ସଂବୃତ ସ୍ୱରରେ ପରିଣତ ହୁଏ । ଏହା ଏହି ଉପଭାଷାର ଗୋଟିଏ ପ୍ରଧାନ ଲକ୍ଷଣ ।

ଯଥା—ଗୋଇଁଠା>ଗୁଇଁଠା, ଗୋରୁ>ଗୁରୁ, ଘୋଡ଼ା>ଘୁଡ଼ା, ଚୋର>ଚୁର, ଦୋଷ>ଦୁଷ, ଶୋଇବା>ଶୁଇବା ଇତ୍ୟାଦି ।

ଶବ୍ଦର ମଧ୍ୟରେ ଥିବା ବ୍ୟଞ୍ଜନ ସନ୍ନିହିତ ବିବୃତ ସ୍ୱରଧ୍ୱନି କେତେକ ସ୍ଥାନରେ ସଂବୃତ ସ୍ୱରରେ ପରିଣତ ହୁଏ । ଏହା ଆଦ୍ୟ ସ୍ୱରର ସାଦୃଶ୍ୟର ପ୍ରଭାବ । ଯଥା— ପୋଖରୀ>ପୁଖୁରୀ, ଗୋବର>ଗୁବୁର, ଗୋଝର>ଗୁଝୁର ପ୍ରଭୃତି ।

(ଖ) ଶବ୍ଦର ଆଦ୍ୟ ସ୍ଥିତିରେ ବ୍ୟଞ୍ଜନ ସନ୍ନିହିତ ଅର୍ଦ୍ଧସଂବୃତ ସ୍ୱରଧ୍ୱନି କେତେକ ସ୍ଥଳରେ ବିବୃତ ସ୍ୱରଧ୍ୱନିରେ ପରିଣତ ହୁଏ । ଯଥା—ଗୋଟେ>ଗାଟେ, ବୋହୂ>ବହୁ, ମୋର>ମର୍, ତୋର>ତର, ଏଉ>ଅଉ ଇତ୍ୟାଦି ।

---

* ଝଙ୍କାର ୧୯୭୧ ନଭେମ୍ବର ଶ୍ରୀମତୀ ବୀଣା ଗିରିଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

(ଗ) ଓଡ଼ିଆ ଭାଷାରେ (କେତେକ ତତ୍ସମ, ଯାବନିକ ଓ ଇଂରାଜୀ ଶବ୍ଦ ବ୍ୟତୀତ) ଉଚ୍ଚାରଣ ସାଧାରଣତଃ ସ୍ୱରାନ୍ତ । ମାତ୍ର ଉତ୍ତରାଞ୍ଚଳୀୟ ଉପଭାଷାରେ କେତେକ ଶବ୍ଦର ବ୍ୟଞ୍ଜନାନ୍ତ ଉଚ୍ଚାରଣ ଲକ୍ଷ୍ୟ କରାଯାଏ । ସମ୍ଭବତଃ ଏହା ବଙ୍ଗଳା ଉଚ୍ଚାରଣ ଶୈଳୀର ପ୍ରଭାବ । ଯଥା—ଡର, ମର, କର, ବତର ପ୍ରଭୃତି ।

(ଘ) ଅନେକ ସ୍ଥାନରେ ଶବ୍ଦ ମଧ୍ୟସ୍ଥିତ ବ୍ୟଞ୍ଜନ ସନ୍ନିହିତ ସ୍ୱରଧ୍ୱନି ଲୋପ ପାଇଥାଏ । ଯଥା—ପାଖରେ>ପାଖ୍ରେ, ଉତ୍ତରମୁହାଁ>ଉତ୍ତ୍ରମୁହାଁ, ଶୁଖିଲ>ଶୁଖ୍ଲ, ମଣିଷ>ମଣ୍ଷ, କଅଁର>କଅଁ୍ର ଇତ୍ୟାଦି ।

(ଙ) ଆଲୋଚ୍ୟ ଉପଭାଷାରେ ବହୁଳ ଭାବରେ ଲ>ନରେ ପରିଣତ ହୋଇ ଥାଏ । ଯଥା ଲୁଣ>ନୁଣ, କଲ୍>କନ, ଲାଉ>ନାଉ, ଲଙ୍କା>ନଙ୍କା, ଲଟା>ନଟା, ଲକ୍ଷେ>ନକ୍ଷେ, ଲାଗିବା>ନାଗିବା, ଲେଖା>ନେଖା, ଗଲ୍>ଗନ, ଶୋଇଲ୍> ଶୁଇନ, ଖାଇଲ>ଖାଇନ, ଆସିଲ୍>ଆସିନ ଇତ୍ୟାଦି ।

(ଚ) ଭବିଷ୍ୟତ କାଳିକ ପ୍ରଥମ ପୁରୁଷ କ୍ରିୟାସୂଚକ 'ଇବ' 'ଇମି'ରେ ପରିଣତ ହୋଇଥାଏ । ଯା—ଯିବ>ଯିମି, କରିବ>କରିମି, ବସିବ>ବସିମି, ଖାଇବ>ଖାଇମି, କାଟିବ>କାଟିମି ଇତ୍ୟାଦି ।

(ଛ) ପୂର୍ବ ଓ ପୃଷ୍ଠଗାମୀ ସମୀଭବନ ଦ୍ୱାରା ବିଭିନ୍ନ ଶବ୍ଦର ଉଚ୍ଚାରଣରେ ବୈଚିତ୍ର୍ୟ ଦୃଷ୍ଟି ଗୋଚର ହୁଏ । ଯଥା—ଯାଇଥିଲ>ଯାଇନ୍ନ, ମନରେ>ମନ୍ଲ, ଭଲରେ>ଭଲ୍ଲ, କରିଥିଲ>କରିଲ୍ଲା, ବସିଥିଲ>ବସିଲ୍ଲା ଇତ୍ୟାଦି ।

(ଜ) 'ମାନେ ଓ ମାନଙ୍କୁ' ପ୍ରଭୃତି ବଚନ ନିର୍ଦ୍ଦେଶକ ପଦ ଉଚ୍ଚାରଣରେ ଏହି ଉପଭାଷାରେ ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ । ଯଥା—ଆମ୍ଭେମାନେ>ଆମ୍ମାନେ, ତୁମ୍ଭେମାନେ>ତୁମ୍ମାନେ, ଆମ୍ଭମାନଙ୍କୁ>ଆମ୍ମାନଙ୍କୁ ଇତ୍ୟାଦି ।

(ଝ) କେତେକ ସ୍ଥଳରେ 'ଘ' ଲୋପ ହୋଇ 'ହ' ଉଚ୍ଚାରିତ ହୋଇଥାଏ । ଯଥା—ଆମଘର>ଆମହର, ତୁମଘର>ତୁମହର, କାହାଘର>କାହାହର, ଘିନିଏ>ହିନିଏ ଇତ୍ୟାଦି । କେତେକ ସ୍ଥଳରେ 'ବ' 'ଉ' ହୁଏ । ଯଥା—ତବୁକା> ତଉକା (ତମାଖୁ) ।

(ଞ) କେତେକ ସ୍ଥଳରେ 'ହ' ଲୋପ ହୋଇ ଇ ହୁଏ । ଯଥା—ନାହାକ> ନାଇକ, ବହି>ବଇ ଇତ୍ୟାଦି ।

Digitized by srujanika@gmail.com

(ଟ) ସ୍ୱରଲୋପ—ପଦର କୌଣସି ଅକ୍ଷରରେ ପ୍ରବଳ ଶ୍ୱାସାଘାତ ଫଳରେ ଅନେକ ସମୟରେ ଶ୍ୱାସଘାତ ସ୍ଥାନ ଅକ୍ଷରରେ ସ୍ୱରଧ୍ୱନି କ୍ଷୀଣ ହୋଇ ଲୋପ ପାଏ । ଏହା ଆଦ୍ୟ, ମଧ୍ୟ ଓ ଅନ୍ତ୍ୟ ଏହିପରି ତିନିପ୍ରକାର । ଉତ୍ତରାଞ୍ଚଳୀୟ ଉପଭାଷାରେ ଏହା ଲକ୍ଷ୍ୟ କରାଯାଇପାରେ । ଯଥା—ଖାଇବ>ଖାମି, ହୁଅ>ହ, ଗୁଲ>ଗ୍ଲ, ନିଅ>ନେ (କନିଷ୍ଠ ମାନଙ୍କୁ), ଆଲୁଅ>ଆଲ, କମିତ>କନ୍ତ, ସିମିତ>ସିନ୍ତ ଇତ୍ୟାଦି ।

## ରୂପ ରଚନା—ପ୍ରକ୍ରିୟାଗତ ବୈଶିଷ୍ଟ୍ୟ

(କ) **ଲିଙ୍ଗ** : ଓଡ଼ିଆ ଭାଷା ଓ ଉତ୍ତର ବାଲେଶ୍ୱରୀ ଉପଭାଷାରେ ଲିଙ୍ଗର ବ୍ୟାକରଣିକ ରୂପ ସମାନ ।

(ଖ) **ବଚନ** :

| ଏକବଚନ | ବହୁବଚନ (ଓଡ଼ିଆ) | ଉ. ବାଲେଶ୍ୱରୀ |
|---|---|---|
| ମୁଁ | ଆମ୍ଭେ, ଆମ୍ଭେମାନେ | ଆମ୍‌ମାନେ |
| ତୁ | ତୁମ୍ଭେ, ତୁମ୍ଭେମାନେ | ତୁମ୍‌ମେନେ |
| ସେ | ସେମାନେ | ସେମ୍‌ନେ |

ଓଡ଼ିଆ ଭାଷାରେ ନିର୍ଦ୍ଦେଶକ 'ଟା' ୨ୟ ଓ ୩ୟ ପୁରୁଷ, ଏକ ବଚନରେ ବ୍ୟବହୃତ ହୁଏ । ମାତ୍ର ପ୍ରଥମ ପୁରୁଷ ଏକ ବଚନରେ କ୍ୱଚିତ୍ ବ୍ୟବହୃତ ହୁଏ । ଉତ୍ତର ବାଲେଶ୍ୱରୀରେ ୧ମ ପୁରୁଷ ଏକ ବଚନରେ 'ଟା', କ୍ରୋଧ, ଥଟ୍ଟା, ପରିହାସ, ଅସମ୍ମାନ ପ୍ରଦର୍ଶନ ସମୟରେ ବହୁଳ ବ୍ୟବହୃତ ହୋଇଥାଏ ।

ଓଡ଼ିଆ ଭାଷାରେ ଏକ ବଚନ ରୂପ ଉତ୍ତର ବାଲେଶ୍ୱରୀ ଉପଭାଷାର ରୂପ ସହିତ ସମାନ । ବହୁ ବଚନରେ ଆମେ, ତୁମେ ଏବଂ ସେ କ୍ଷେତ୍ରରେ 'ମାନେ' ଯୋଗ ହେଉଥିବା ସ୍ଥଳରେ ଉତ୍ତର ବାଲେଶ୍ୱରୀରେ 'ମେନେ' ପ୍ରତ୍ୟୟ ଯୋଗ ହୁଏ । 'ମେନେ' ହେଉଛି ଏକ ବହୁବଚନ ସୂଚକ ପ୍ରତ୍ୟୟ ।

ବହୁବଚନ ପ୍ରକାଶ କରିବାରେ ଉତ୍ତର ବାଲେଶ୍ୱରୀ ଭାଷାରେ କେତେକ ସ୍ୱତନ୍ତ୍ର ଶବ୍ଦ ପ୍ରୟୋଗ କରାଯାଏ । ଯାହା ଓଡ଼ିଆ ଭାଷାରେ ବ୍ୟବହୃତ ହୁଏ ନାହିଁ ।

(ଗ) **କାରକ** .

| | ଓଡ଼ିଆ | ବାଲେଶ୍ୱରୀ |
|---|---|---|
| କର୍ତ୍ତା | | |
| କର୍ମ | ସମାନ | ସମାନ |
| କରଣ | କୁ | କୁ |
| ସମ୍ପ୍ରଦାନ | — | — |
| * ଅପାଦାନ | (ଠାରୁ) ପାଖରୁ | ପାଖ୍‌ରୁ, ପାଖୁରୁ, ଠାରୁ, |
| * ସମ୍ବନ୍ଧ | ର | କ୍ଲି |
| * ଅଧିକରଣ | ରେ ଠାରେ | ର, କ୍ଲି |

Digitized by srujanika@gmail.com

※ ସମ୍ବନ୍ଧ    ଗୁହାଲ ର > ଗୁହାଲ୍ର

※ ଅପାଦାନ କାରକରେ ଠାରୁ ସ୍ୱଳ୍ପ ବ୍ୟବହୃତ ହୁଏ ।

※ ଅଧିକରଣ କାରକରେ ପୁରୁଷ ବାଚକ ବିଶେଷ୍ୟ ପଦରେ ପାଖ୍ର/କତ୍ର ବ୍ୟବହୃତ ହେଉଥିବା ସ୍ଥଳେ ଅନ୍ୟ ସମସ୍ତ କ୍ଷେତ୍ରରେ 'ର' ବ୍ୟବହୃତ ହୁଏ । ଓଡ଼ିଆର ଅଧିକରଣ କାରକର ଚିହ୍ନ ହେଉଛି ରେ/ଠାରେ/ଏଠି, ଉ. ପୂ.ରେ ଲ/ର ହୁଏ ।

(ଘ) **ସର୍ବନାମ** : ଓଡ଼ିଆ ଓ ଉ. ବାଲେଶ୍ୱରୀ ଭାଷାର ପୁରୁଷ ବାଚକ ସର୍ବନାମ ପଦର ବ୍ୟାକରଣିକ ରୂପ ସମାନ ।

| | ଅ— ପୁରୁଷବାଚକ | ଓଡ଼ିଆ | ବାଲେଶ୍ୱରୀ |
|---|---|---|---|
| ଦୂର ଓ ନିକଟ | ଏ ଓ ସେ ପ୍ରାଣୀଏ | ଏ, ଏ,ଇଟା | ଏ, ଇଟା |
| ନିର୍ଦ୍ଦେଶକ | ବସ୍ତୁପାଇଁ ବ୍ୟବହୃତ ହେଉଛି | ସେ, ସେଇଟା, | ସେ, ସେଟା, ସିଟା । |

ଅପୁରୁଷ ବାଚକରେ ପ୍ରଶ୍ନବାଚକ—

| ଓଡ଼ିଆ | ଉତ୍ତର ପୂର୍ବାଞ୍ଚଳୀୟ |
|---|---|
| କିଏ | କେ, କିଏ |
| କ'ଣ | କିସ; କି |
| କାହିଁକି | କେନେ |
| କେଉଁଠି | କେଠି |
| କୁଆଡ଼େ | କା'ଡ଼େ |
| କେତେ | କେତେ |
| କେମିତି | କିନ୍ତି |
| କେଜାଣି | କେଜାଣ୍ ଇତ୍ୟାଦି । |

ସମ୍ବନ୍ଧ ବାଚକ—

| ଓଡ଼ିଆ | ଉତ୍ତର ବାଲେଶ୍ୱରୀ |
|---|---|
| କିଏ | କେ |
| ଯିଏ | ଯେ |
| ଯେଉଁଠି | ଯେଠି |
| ଯୁଆଡ଼େ | ଯାଆଡ଼େ |
| କୁଆଡ଼େ | କାଆଡ଼େ |
| ଯିମିତି | ଯିମତି; ଯିନ୍ତି । |

Digitized by srujanika@gmail.com

ଓଡ଼ିଆ ଭାଷାରେ ବିଶେଷ୍ୟ ପଦର ବିଭକ୍ତି ପ୍ରତ୍ୟୟ ଏବଂ ସର୍ବନାମ ପଦର ବିଭକ୍ତି ପ୍ରତ୍ୟୟ ପ୍ରାୟତଃ ସମାନ ହେଲେ ମଧ୍ୟ ସର୍ବନାମ ପଦର ତିର୍ଯ୍ୟକ୍ ରୂପ ସହିତ ବିଭକ୍ତି ପ୍ରତ୍ୟୟ ଯୋଗ ହୁଏ । (ତିର୍ଯ୍ୟକ୍‌ରୂପ-ମୁଁ=ମୋ; ତୁ=ତୋ; ସେ=ତା) । ଓଡ଼ିଆ ଭାଷା ଓ ଉ· ପୂର୍ବାଞ୍ଚଳୀୟ ଭାଷାର ୧ମ; ୨ୟ ଓ ୩ୟ ପୁରୁଷର ସର୍ବନାମ ପଦ ସମାନ । କିନ୍ତୁ ସର୍ବନାମ ପଦରେ ବିଭକ୍ତି ପ୍ରତ୍ୟୟ ସଂଯୁକ୍ତ ହେଲା ପରେ ଏହାର ରୂପ ଓ ଓଡ଼ିଆ ଭାଷା ରୂପଠାରୁ ଭିନ୍ନ ହୁଏ ।

| ଉଦାହରଣ— ମୁଁ; | ଓଡ଼ିଆ | ଉ· ପୂର୍ବାଞ୍ଚଳୀୟ |
|---|---|---|
| କର୍ତ୍ତା | ମୁଁ | ମୁଁ |
| କର୍ମ | ମୋତେ | ମତେ |
| କରଣ | ମୋଦେଇ/ମୋଦ୍ୱାରା | ମ ଦିଆର |
| ସମ୍ପ୍ରଦାନ | ମୋତେ | ମତେ |
| ଅପାଦାନ | ମୋଠାରୁ; ପାଖରୁ | ମପାଖ୍‌ରୁ/ପାଖୁରୁ |
| ସମ୍ବନ୍ଧ | ମୋର | ମର୍ |
| ଅଧିକରଣ | ମୋଠାରେ/ମୋଠି | ମ ପାଖ୍‌ରେ/କଡ଼୍‌ର ମ ପାଖ୍‌ର୍ । |

**ସର୍ବନାମିକ ବ୍ୟୁତ୍ପାଦିତ ପଦାବଳୀ :**

| | ଓଡ଼ିଆ | ଉ· ବାଲେଶ୍ୱର | ଉ· ପୂ· ମୟୂରଭଞ୍ଜ |
|---|---|---|---|
| ପରିମାଣ | ସେତେ | ସେତେଗା; ସେତେଗାକ— | |
| | ଏତେ | ଏତେଗା; ଏତେଗାକ— | |
| | ଏତିକି | ଏତିକ; ଏତ୍‌କ | |
| | ସେତିକି | ସେତିକ; ସେତ୍‌କ | |
| ଆକାର | ଏଡ଼େ; ସେଡ଼ | | |
| ଢଗ | ଏଣେ; ତେଣେ | | |
| ସ୍ଥାନ | ଏଠି; ସେଠି | | ଏଠେ; ସେଠେ |
| ରୀତି | ଏମିତି; ସେମିତି | ଇମତି; ସିମ୍‌ତି; ଇନ୍ତ, ସିନ୍ତ | |

(ଙ) ଆଲୋଚ୍ୟ ଉପଭାଷାରେ ସର୍ବନାମିକ ବ୍ୟୁତ୍ପାଦିତ କେତେକ ପଦରେ ବ୍ୟତିକ୍ରମ ଲକ୍ଷ୍ୟ କରାଯାଏ । ଯଥା—ଏଟା; ଏଇଟା ଇଟା (ଅନାଦରାର୍ଥକ); କେଉଁଠି>କେଇଠି; କେଠି; ଏଥିରୁ>ଏହିରୁ ଇତ୍ୟାଦି ।

Digitized by srujanika@gmail.com

(ଚ) ଉତ୍ତରାଞ୍ଚଳୀୟ ଉପଭାଷାରେ କେତେକ ବିଶିଷ୍ଟ ପ୍ରକାର୍ଯ୍ୟାତ୍ମକ ଶବ୍ଦର ବହୁଳ ବ୍ୟବହାର ପରିଲକ୍ଷିତ ହୁଏ ।

ବେ / —ସମ୍ବୋଧନାତ୍ମକ (ସମବୟସ୍କ ଓ କନିଷ୍ଠମାନଙ୍କୁ ଏବଂ କେତେକ କ୍ଷେତ୍ରରେ ଅନାଦରାର୍ଥକ ଓ ଅସମ୍ମାନ ସୂଚକ) ଏହା ବାକ୍ୟର ପ୍ରଥମେ, ମଧ୍ୟରେ ଓ ଶେଷରେ ବ୍ୟବହୃତ ହୋଇଥାଏ ।

ଉଦାହରଣ — ବେ ଆଉ ଖାଆନା !
ବେ ଆଉ ସେ ଜଳରେ ଗାଧାନା !
ସେତେ ବେଳେ ତୁ କଣ କରୁଥିଲୁ ବେ !
ତୁ କଣ ଜାଣିଚୁ ବେ ।
ବେ ଶଳା; କେଣିତ ବଡ଼ ବଡ଼୍ ବଡ଼୍ କରୁଚୁ ବେ ।
କାହିଁବେ ବାଛୁଚୁ, ମୁଁତ ସବୁ ବାଛୁଚ ।

ବେ / — ବିସ୍ମୟ ସୂଚକ ! ଉଦାହରଣ—କେତେ ବଡ଼ ମାଛଟା; ଦେଖିଛୁନା ବେ :

ନକ / —ପ୍ରଶ୍ନାତ୍ମକ, ଉଦାହରଣ—ତୁମେ ହାଟ୍‌କୁ ଯିବ ନକ ?

ହଁ / — ପ୍ରଶ୍ନାତ୍ମକ, ଉଦାହରଣ—ତୁମେ ଯିବ ହଁ ? ତୁମେ ଲେଖିବ ହଁ ?

ପିନ/—ସାଦୃଶ୍ୟ ସୂଚକ, ଉଦାହରଣ—"ତପିନ ଲୁକ ମୁଁ ଜୀବନ୍‌ଲ ଦେଖିନ ।"
(ଅର୍ଥ-ତୋ ପରି ଲୋକ ମୁଁ ଜୀବନରେ ଦେଖିନାହିଁ)

କ/—ପରିମାଣାତ୍ମକ, ଉଦାହରଣ—ସେଠକ, ଏଠକ ।

ଗା/—ବହୁ ବଚନାତ୍ମକ ,, —ଏତେଗା, ସେତେଗା ।

ଗାକ/ବହୁ ବଚନାତ୍ମକ ,, —ଏତେଗାକ, ସେତେଗାକ ।

କାତେ/କାନ୍ତେ—ପରିମାଣାତ୍ମକ—ଉଦାହରଣ—ସେର କାତେ, କାନ୍ତ୍‌ରେ, ପାସୁକାନ୍ତ୍‌ରେ ।

ଗା/'ଗୋ' ସଦୃଶ—ଓଡ଼ିଆ ଭାଷାରେ—ଆଦରାର୍ଥକ ।

ସମ୍ମାନ ସୂଚକ—ଉଦାହରଣ—ହଁଗ ଯାଉଛୁ । ମାଗ, କେନେ ଗ-
ମତେ ତୁମେ ଗାଳିଦେଲ କେନେ । ଶୁଣ ଗ ଟିକେ ।
ବାକ୍ୟ ଆରମ୍ଭ, ମଧ୍ୟ ଓ ଶେଷରେ ବ୍ୟବହୃତ ହୋଇଥାଏ ।

Digitized by srujanika@gmail.com

ଇଲା/(ଇଲୋ)—ଅନାଦାରାର୍ଥକ । ସ୍ତ୍ରୀ ଲିଙ୍ଗ ସମ୍ବୋଧନାର୍ଥକ ଶବ୍ଦ ।

ଉଦାହରଣ—ଇଲ, ତର୍ ମୁଁ କଷ କର୍ଥିବନକ ତୁ ମତେ ଏତେ ଗାଳି ଦେଉଚୁ ।

ଇରେ/ଅନାଦାରାର୍ଥକ, ବସ୍ମୟ ସୂଚକ—ଇରେ, ତୁ ମ କଥା ଟିକେ ମାନ୍ ।

ଇରେ ତ ଯୁଗୁରୁ ତ ପାଣହବନ ଦେଖୁଚ ।

ଇଏ/ସିଏ/—କୌଣସି ନର୍ଦ୍ଦିଷ୍ଟ ଅର୍ଥରେ—ଇଏ ନୁକଟା ଆଦ୍ଧୁ ଭଲ ନୁହେଁ । ସିଏ ନୁକଟା ଭଲ୍ । ଅଲପ୍ ଖାଏ । ତା'ର ଖାଆଣି କମ୍ ।

ନା/ପ୍ରଶ୍ନାତ୍ମକ—ତୁ ମତେ ମାରବୁନା ?, ମାର ଦେଖି ?

ଏ/ସମ୍ବୋଧନାର୍ଥକ (ସ୍ନେହ/ଆଦରାର୍ଥକ)—ସାଧାରଣତଃ କନଷ୍ଠ ଓ ଆତ୍ମୀୟମାନଙ୍କୁ—

ଏ ମା, ଟିକେ ତଉକା ଦେ ।

ଏ ଝମା, ଡାଦାରୁ ଜାଲ ଘିନ ଏତ ।

(ଛ) ସପ୍ତମୀ ବଭକ୍ତ ଚହ୍ନ 'ରେ' ସ୍ଥାନରେ ଆଲୋଚ୍ୟ ଉପଭାଷାରେ ଷଷ୍ଠୀ ବଭକ୍ତ ରୂପ 'ର' ଓ 'ଲ' ବ୍ୟବହୃତ ହୋଇଥାଏ ।

ଏହା ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ।

ଉଦାହରଣ—ଘରେ>ଘର, ବଲରେ>ବଲଲ, ପଦାରେ>ପଦାର, ବାଡ଼ରେ> ବାଡ଼ର, ପାଂରେ>ପାଙ୍ର, କଲସୀରେ>କଲ୍ସୀର, ହାଣ୍ଡିରେ→ହାଣ୍ଡିର ଇତ୍ୟାଦ ।

(ଜ) ମାନକ ଓଡ଼ିଆ ଓ ଉତ୍ତର ପୂର୍ବାଞ୍ଚଳ ଉପଭାଷାର ଅସମାପିକା କ୍ରିୟାପଦର ରୂପ ସମାନ । ଏଥିରେ ବ୍ୟବହୃତ ଅସମାପିକା କ୍ରିୟାପଦର ଅନ୍ୟ ଏକ ରୂପ ରହିଛି । ଯଥା— ଯାଇତେ, ଖାଇତେ, ଶୁଇତେ, ପଢ଼ିତେ ଇତ୍ୟାଦ ।

ତେ—(ଅସମ୍ପୂର୍ଣ୍ଣତା ସୂଚକ ସଂଯୋଜକ) ଉଦାହରଣ—ମୁଁ ଖାଇତେ ଯିମି, ମୁଁ, ଖାଇବାକୁ ଯିବ (ଓଡ଼ିଆ ରୂପ) ।

କେତେକ ସ୍ଥଳରେ ଅସମାପିକା କ୍ରିୟାପଦ ସ୍ୱରାନ୍ତ 'ଇ' ସ୍ଥାନରେ 'ଉ' ହୁଏ । ଯଥା—ଯାଉଁଚ>ଯାଉଚୁ, ଖାଉଚ>ଖାଉଚୁ, ଇତ୍ୟାଦ । କେତେକ ସ୍ଥଳରେ ସ୍ୱରାନ୍ତ 'ଇ' ସ୍ଥାନରେ 'ଏ' ହୋଇ ଅନୁନାସିକ ଧ୍ୱନରେ ପରଣତ ହୁଏ । ଯଥା—ଖାଉଚ> ଖାଉଚେଁ ।

ସମାପିକା କ୍ରିୟାପଦ—ଆଲୋଚ୍ୟ ଉପଭାଷାରେ ସମାପିକା କ୍ରିୟାର କୌଣସି ବୈଶିଷ୍ଟ୍ୟ/ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରାଯାଏ ନାହିଁ ।

Digitized by srujanika@gmail.com

**(୯) ଅର୍ଥପରିବର୍ତ୍ତିକ**—ଉତ୍ତର ପୂର୍ବାଞ୍ଚଳୀୟ ଓଡ଼ିଆ ଭାଷାରେ ବହୁଶବ୍ଦ ରହିଛି । ଯା'ର ପ୍ରୟୋଗରେ ଅର୍ଥ ସଂକୋଚନ, ଅର୍ଥପ୍ରସାରଣ, ଅର୍ଥୋନ୍ନତି ଓ ଅର୍ଥାବନତି ଘଟିଥାଏ । ରୀତି ପ୍ରୟୋଗ ଦ୍ୱାରା କାହାକୁ ସମାଲୋଚନା/ବିଦ୍ରୂପ କରାଯାଇଥାଏ । ଯଥା—ବିଷ୍ଣୁପ୍ରିୟର ପରିଦାନ୍ତ—ଦାନ୍ତର ସଙ୍କୀ ଓ ଝଣାଲତା ଅର୍ଥରେ ବ୍ୟବହୃତ ହୋଇଥାଏ । ସେହିପରି ଟିକରାଚଢ଼ୀ, ହାଣ୍ଡିମୁହାଁ ଇତ୍ୟାଦି ।

**(୭) ନିପାତ**—ହୁଁ/ମାନକ ଓଡ଼ିଆରେ ପ୍ରଶ୍ନସୂଚକ 'କି' ସଦୃଶ) ତୁମେ ଯିବ ହୁଁ ? କାଲେ/କାଲ୍ରେ—('ପରି' 'ଭଳି' ସଦୃଶ) ସେରକାଲେ ଗୃଜଲ ଦିଅ । ପାଗ୍‌କାଲ୍‌ରେ/ କାଲ୍‌ରମାଛିଦେ ।

ଦେଇକା/କରି (ତାପରେ ସଦୃଶ) ମୁଁ ଖାଇକି ଦେଇକ ଶୁଇନି ।
ଥିନି/('ପରି' ଅର୍ଥସୂଚକ)—ତପିନିଲୁକ ମୁଁ ଜୀବନ୍‌ର ଦେଖିନି ।

**ଐତିହାସିକ ଭାଷାତତ୍ତ୍ୱ** : ଏ ଉପଭାଷାର ଶବ୍ଦଭଣ୍ଡାରରେ ଏପରି ଅସଂଖ୍ୟ ଶବ୍ଦ ପ୍ରଚଳିତ । ସେଗୁଡ଼ିକର ଅର୍ଥ ତାତ୍ତ୍ୱିକ ମୂଳ ଉତ୍ସ ଓ ମୂଳ ପରିବର୍ତ୍ତନ ଐତିହାସିକ ଦୃଷ୍ଟିକୋଣରୁ ବିଚାର କରାଯିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ'ସମ୍ପର୍କରେ ଦୃଷ୍ଟାନ୍ତ ସ୍ୱରୂପ କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା । ଉଦାହରଣ—

| | |
|---|---|
| ଉ: ପୂ: ଓଡ଼ିଆ | ଇଂରାଜୀ |
| ନମ୍ପ > ନେମ୍ପ | ଲ୍ୟାମ୍ପ |
| ଗିଲାସ | ଗ୍ଲାସ |
| ଇଲେଟିରି | ଇଲେକ୍ଟ୍ରି ପ୍ରଭୃତି । |
| ଇନସିନ୍ | ଇନ୍‌ଜେକସନ ପ୍ରଭୃତି |

**କେତେକ ବ୍ୟତିକ୍ରମ** : ଗରମ ମସଲ୍ > ଗରମ ମସଲା ଓ ଦେଉଲ୍ । ମେଦିନୀପୁର ଅଞ୍ଚଳରେ ଅନେକ ଦ୍ରବ୍ୟ ସଲଗ୍ନ ପରିଚୟ ପତ୍ର (Label) ଏପରି ହୋଇଥିବାର ଦେଖାଯାଏ ।

ଓଡ଼ିଶାର ଦେଉଳା (ଖେଳଗରାଇ) ସିନେମା ପ୍ରଗ୍ରାମ ପଟରେ ଦେଉଳା ସ୍ଥାନରେ ଦେଉଳ୍ ଲେଖାଯାଇ ଥିବାର ଦୃଷ୍ଟିଗୋଚର ହୁଏ ।

ଉତ୍ତର-ପୂର୍ବାଞ୍ଚଳରେ ପ୍ରଚଳିତ ଉପଭାଷାରେ କେତୋଟି ଉଦାହରଣ ଅପର ପୃଷ୍ଠାରେ ପ୍ରଦତ୍ତ ହେଲା ।

Digitized by srujanika@gmail.com

**ଉତ୍ତର ପୂର୍ବାଞ୍ଚଳରେ ପ୍ରଚଳିତ ଉପଭାଷାରେ କେତୋଟି ଉଦାହରଣ :**

| ଓଡ଼ିଆ | ଉତ୍ତର ପୂର୍ବ ବାଲେଶ୍ୱରୀ | ଉତ୍ତର-ପୂର୍ବ ମୟୂରଭଞ୍ଜ | କୁର୍ମାଳୀ |
|---|---|---|---|
| ୧-ମୁଁ ଘରକୁ ଯାଉଛି | ମୁଁ ଘରକୁ ଯାଉଚ | ମୁଇଁ ଘରକ୍ ଯାଉଛୁଁ | ହାମି ଘର ଯାଛି |
| ୨-ମୁଁ ବହି ପଢ଼ୁଥିଲି | ମୁଁ ବହି ପଢ଼ୁଥିନ | ମୁଇଁ ବଇ ପଢ଼ୁଥିନୁଁ | ହାମି ବହି ପଢ଼ିଂଛିଲି |
| ୩-ମୁଁ ଯାତ୍ରା ଦେଖିବାକୁ ଯାଇଥିଲି | ମୁଁ ଯାତ୍ରା ଦେଖିତେ ଯାଇଥିନ/ ଯାଇନ୍ନି | ମୁଇଁ ଯାତ୍ରା ଦେଖିକ ଯାଇଥିନୁଁ | ହାମି ଯାତ୍ରା ଦେଖ୍‌ତେ ଯାଇଛିଲି |
| ୪-ମୁଁ ନଦୀକୁ ଗାଧୋଇବାକୁ ଯିବି | ମୁଁ ନଦୀକୁ ଗାଧିତେ/ ଗାଧେଇତେ ଯିମି | ମୁଇଁ ନଦୀକ ଗାଧିକ୍ ଯିବି | ହାମି ଖାଲ୍‌କେ ଗାଧୋତେ ଯାବ |
| ୫-ତୁମେ କ'ଣ କରୁଥିଲ ? | ତୁମେ କସ କରୁଥିଲ ? | ତୁଇ କ କରୁଥିଲୋ/ ତୁଇ କ କରୁଛତ ? | ତୁଇଂ କ କର୍‌ତେ ଛିଲେ |
| ୬-ତୁମେ ଭାତ ଖାଉଛ କି ? | ତୁମେ ଭାତ ଖାଉଚ ? | ତୁଇ ଭାତ୍ ଖାଉଛତ୍ ? | ତୁଇଂ ଭାତ୍ ଖାଛିଲେ ? |
| ୭-ତୁମେ ମାଛ ଧରି ଯିବ କି ? | ତୁମେ ମାଛ ଧରତେ ଯିବ ? | ତୁଇ ମାଛ୍ ଧରକ୍ ଯିବେ କ ? | ତଗ୍ ମାଛ୍ ଧର୍‌ତେ ଯାବେ |
| ୮-ସେ କ'ଣ ପାଇଁ ଆସିଲା ନାହିଁ ? | ସିଏ କ ପାଇଁ ଆସିଲନି/ ସିଏ କେନେ ଆଇଲନି ? | ସିଏ କ ଲାଗି ଆସ୍‌ଲାନ | ଅଗ୍ କ ଲାଇନେ ଆସିଲ ନାହ୍ୟଂ ? |
| ୯-ସେ ସବୁବେଳେ ଘରେ କ'ଣ କରୁଛି ? | ସିଏ ସବୁବେଳେ ଘରେ କସ କରୁଛି ? | ସିଏ ସବ୍‌ବେଳେ ଘରେ କ କରୁଚ ? | ଅଗ୍ ସବ୍‌ଖନ୍ ଘରେଂ କ କର୍‌ଛେ ? |
| ୧୦-ସେ ମୋତେ ପିଟିଲା | ସିଏ ମତେ ପିଟିଲା | ସିଏ ମକେ ପିଟ୍‌ଲା | ଅଗ୍ ହାମ୍‌କେ ପିଟିଲ |

Digitized by srujanika@gmail.com

| ବଙ୍ଗଳା | ଦକ୍ଷିଣ-ପୂର୍ବ ମେଦିନୀପୁର | ଦକ୍ଷିଣ-ପଶ୍ଚିମ ମେଦିନୀପୁର | ତଥ୍ୟ ସ ବିବରଣୀ |
|---|---|---|---|
| ଆମି ଘର ଯାଚ୍ଛି | ମୁଁ ଘରକୁ ଯାଉଚ | ମୁଁ ଘର୍ ଯାଉଚୁଁ | ୧-ଉ: ପୂ: ବାଲେଶ୍ୱର |
| ଆମି ବଇ ପଢ଼ଛିଲାମ | ମୁଁ ବଇ ପଢ଼ୁଥିନ | ମୁଁ ବଇ ପଢ଼ୁଚୁଁ | ଶ୍ରୀ କୃତ୍ତିବାସ ଦାଶ, ବ:-୬୯<br>ଗ୍ରା:-ବାଣିଦା, ଜି-ବାଲେଶ୍ୱର |
| ଆମି ଯାତ୍ରା ଦେଖ୍‌ତେ ଗିୟେଛିଲାମ | ମୁଁ ଯାତ୍ରା ଦେଖିତେ ଯାଇଥିନ/ଯାଇନ୍ଥି | ମୁଁ ଯାତ୍ରା ଦେଖିତେ ଯାଇଚ | ୨-ଉ: ପୂ: ମୟୂରଭଞ୍ଜ<br>ଶ୍ରୀ ଦୀପକକୁମାର ସର୍ଦ୍ଦାର<br>ବ-୨୮, ଗ୍ରାମ-ଧରମପୁର<br>ମୟୂରଭଞ୍ଜ |
| ଆମି ନଦୀକେ ସ୍ନାନ କର୍‌ତେ ଯାବ | ମୁଁ ନଦୀକୁ ଗାଧିତେ/ଗାଧେଇତେ ଯିମି | ମୁଁ ନଦୀକୁ ଗାଧେଇତେ ଯିମି | ୩-କୁମ୍ମୀଲୀ |
| ତୁମି କି କର୍‌ଛିଲେ ? | ତୁମେ କଣ କରୁଥିଲ ? | ତୁମେ କଣ କରୁଥିଲ ? | ଶ୍ରୀ ବିମଳକୁମାର ମହାନ୍ତି<br>ବ-୬୧, ଗ୍ରାମ-ନାର୍‌ଦା<br>ଥା-ନନ୍ଦୀଗ୍ରାମ |
| ତୁମି ଭାତ ଖାଚ୍ଛ ? | ତୁମେ ଭାତ ଖାଉଛ ? | ତୁମେ ଭାତ ଖାଉଛ କି ? | ମେଦିନୀପୁର |
| ତୁମି ମାଛ ଧରତେ ଯାବେ ? | ତୁମେ ମାଛ ଧରତେ ଯିବ ? | ତୁମେ ମାଛ ଧର୍‌ତେ ଯିବ ? | ୪-ଦକ୍ଷିଣ ପଶ୍ଚିମ |
| ସେ କେନ ଏଲୋନା ? | ସେ କେନେ ଆଇଲାନି ? | ସେ କେନେ ଆଇଲାନି ? | ମେଦିନୀପୁର<br>ଶ୍ରୀ ସନ୍ତୋଷକୁମାର ନାୟକ |
| ସେ ସବ୍ ସମୟ ଘରେ କି କର୍‌ଛେ | ସିଏ ସବୁବେଳେ ଘରେ ବସି କିସ କରୁଛ ? | ସବ୍ ସମୟେ ଘରେ କିସ କରୁଛ | ବ-୩୯, ଗ୍ରା-ଧନ୍ତାଈ<br>ଥା-ବେଲ୍‌ଆ ବେଡ଼ା<br>ମେଦିନୀପୁର |
| ସେ ଆମାକେ ପିଟ୍‌ଲ | ସିଏ ମତେ ମାଇଲା | ସେ ମକେ ମାର୍‌ଲା | ୫-ଦ: ପୂ: ମେଦିନୀପୁର<br>ଶ୍ରୀ ଗୋବିନ୍ଦ ମାଇତି<br>ବ-୩୫, ଗ୍ରା-ବଇଁଚ<br>ଥା-ଦାନ୍ତନ, ମେଦିନୀପୁର |

Digitized by srujanika@gmail.com

**ଶବ୍ଦ ସମ୍ଭାର :**

ଉତ୍ତରାଞ୍ଚଳୀୟ ଓଡ଼ିଆ ଭାଷାର ଶବ୍ଦ ସମ୍ଭାର ବହୁ ବୈଚିତ୍ର୍ୟ ପୂର୍ଣ୍ଣ । ଏ ପର୍ଯ୍ୟନ୍ତ ଏ ସମସ୍ତ ସଂଗୃହୀତ କିମ୍ବା ସଂକଳିତ ହୋଇ ପାରିନାହିଁ । ଶିକ୍ଷା ବିସ୍ତାର ସଙ୍ଗେ ସଙ୍ଗେ ଏହାର ଶବ୍ଦ ଭଣ୍ଡାର କ୍ରମେ ସଙ୍କୁଚିତ ହୋଇ ପଡ଼ୁଅଛି । ଏହି ଉପଭାଷାର ଆଭିଧାନିକ ମୂଲ୍ୟ ବ୍ୟତୀତ ଧ୍ୱନି ଓ ରୂପ ରଚନା ପ୍ରକ୍ରିୟାର ବିଶ୍ଳେଷଣ ଦାଗରେ ମଧ୍ୟ ବହୁ ଉପ-ଯୋଗିତା ରହିଅଛି ।

ଉତ୍ତରାଞ୍ଚଳୀୟ ଓଡ଼ିଆ ସାହିତ୍ୟିକମାନେ ଏ ଉପଭାଷା ଦ୍ୱାରା ବେଶ ପ୍ରଭାବିତ । ଆଧୁନିକ ଓଡ଼ିଆ ଗଦ୍ୟ ଶୈଳୀର ପ୍ରାଣ ପ୍ରତିଷ୍ଠାତା ଫକୀର ମୋହନଙ୍କ ଭାଷା ଆଲୋ-ଚନାରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରି ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ଦେବା ସଙ୍ଗେ ସଙ୍ଗେ "ଓଡ଼ିଆ ସାହିତ୍ୟରେ ଏ ଲୋକ ଭାଷାକୁ ଦେଲେ ପ୍ରଥମ ହୋଇ ଅପୂର୍ବ ବିନ୍ୟାସ" * ଓ "ସାହିତ୍ୟ କୌଳିନ୍ୟ" * * ପରବର୍ତ୍ତୀ କାଳରେ ବହୁ ସାହିତ୍ୟିକ ଫକୀରମୋହନଙ୍କ ଗଦ୍ୟଶୈଳୀରେ ଅର୍ଥାତ୍ ଲୋକ ପ୍ରଚଳିତ ଭାଷାରେ ଉଚିମାନର ସର୍ଜନାତ୍ମକ-ସାହିତ୍ୟ ସୃଷ୍ଟିର ସଫଳ ପରୀକ୍ଷାରେ, ଅନୁପ୍ରେରିତ ହୋଇ, ଅନୁପ୍ରାଣିତ ହୋଇ ଓ ପ୍ରଭାବିତ ହୋଇ ସେହିପରି ଶୈଳୀକୁ ଅନୁସରଣ ଓ ଅନୁକରଣ କରିବାର ଚେଷ୍ଟା ତ କରିଥିଲେ, ପୁଣି କେତେକ ପରିମାଣରେ ସଫଳତା ମଧ୍ୟ ହାସଲ କରିଥିଲେ । ଓଡ଼ିଶାର ସ୍ୱନାମଧନ୍ୟ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଗାଳ୍ପିକ ଅଧ୍ୟାପକ ମନୋଜ ଦାସଙ୍କ ଗଳ୍ପରେ ସାମ୍ପ୍ରତିକ କାଳରେ ଏହା ଅଧିକ ଉପଲବ୍ଧ ହେଉଅଛି । ଏତଦ୍ ବ୍ୟତୀତ ଆଲୋଚ୍ୟ ଉପଭାଷା ମିଶ୍ରିତ ବହୁ କାବ୍ୟ, କବିତା ବଙ୍ଗ ଭାଷାରେ ରଚିତ ହୋଇ ଥିବାର ଦୃଷ୍ଟିଗୋଚର ହୁଏ । ଏପରି କେତେକ ସାହିତ୍ୟ ରଚନା, ପ୍ରଚଳିତ ଓ କଥିତ ଭାଷାର ସଂଗୃହୀତ କେତେକ ଶବ୍ଦ ତାଲିକା ପରିଶିଷ୍ଟରେ ଯୋଗ କରାଯାଇଛି ।

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳୀୟ ସମାଜରେ ଜାତି ଜାତି ମଧ୍ୟରେ ପ୍ରଚଳିତ ସମ୍ପର୍କଗତ ଶବ୍ଦ, ବିଶେଷତଃ ପୁରୋହିତ ବ୍ରାହ୍ମଣ ଓ ବ୍ରାହ୍ମଣେତର ଜାତି ମଧ୍ୟରେ ପ୍ରଚଳିତ ସମ୍ପର୍କଗତ ଶବ୍ଦର ରୂପ :

| ବ୍ରାହ୍ମଣ | ଅବ୍ରାହ୍ମଣ | ଅର୍ଥ |
|---|---|---|
| ବାପା | ବାପ | |

---

* ସାମନ୍ତରାୟ, ନଟବର ୧୯୬୪, ପୃ-୪୦୪ ଓ ମହାନ୍ତି, ସୁରେନ୍ଦ୍ର ୧୯୭୮ ପୃ-୩୦୩ ।
* * ଦାଶ, ଗଗନେନ୍ଦ୍ର ନାଥ-ଝଙ୍କାର, ଜାନୁୟାରୀ : ୧୯୧୬ , ପୃ-୯୦୬ ।

Digitized by srujanika@gmail.com

| | | |
|---|---|---|
| ଢଢେଇ | ଜେଠା | ବାପାଙ୍କର ବଡ଼ଭାଇ |
| କକା/କାକା | ଦାଦା | ବାପାଙ୍କର ସାନଭାଇ |
| ଜେଜେ/ଜେଜେବାପା | ଠାକବାପା | ବାପାଙ୍କର ବାପା |
| ନନା/ନାନା | ବଡ଼ଭାଇ | |
| ଗଁଇ | ଭେଣିଁ, ଭେଣ୍ଇ | ବଡ଼ଭଉଣୀଙ୍କ ସ୍ୱାମୀ |
| ଅପା | ନାନୀ | ବଡ଼ ଭଉଣୀ |

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳୀୟ ଭାଷାରେ ଆହୁରି ଅନେକ ସମ୍ପର୍କଗତ ଶବ୍ଦ ପ୍ରଚଳିତ । ସେ ଗୁଡ଼ିକ ବ୍ରାହ୍ମଣ ଓ ବ୍ରାହ୍ମଣେତର ଜାତିର ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ହେଉଥିଲେ ହେଁ ଭଙ୍ଗିରେ କୌଣସି ପାର୍ଥକ୍ୟ ସୃଷ୍ଟ ନାହିଁ ।

ମାନକ ଓଡ଼ିଆ ଓ ମାନକ ବଙ୍ଗଳା ଭାଷାର ପ୍ରଭାବ ପ୍ରାଦେଶିକ ସୀମାରେଖାର ଦୁଇପଟରେ ଥିବା ଶିକ୍ଷିତ ଲୋକଙ୍କ କଥା ଭାଷାରେ ପରିଲକ୍ଷିତ ହୁଏ ।

ଫର୍ମାର ସ୍ତରରେ ସବୁ କ୍ଷେତ୍ରରେ ମାନକ ଭାଷାର ପୂର୍ଣ୍ଣ ବ୍ୟବହାର ହୁଏ ।

ଦ୍ୱିତୀୟ ପୁରୁଷ ସର୍ବନାମ ଯଥା—ସମ୍ମାନ ସୂଚକ ଆପଣ ଶବ୍ଦର ସାଧାରଣତଃ ପ୍ରଚଳିତ ରୂପ 'ତୁମେ' ଅନାଦର ସୂଚକ ରୂପ 'ତୁ'। ଏସବୁ ଜାତି ଜାତି ମଧ୍ୟରେ ଉଚ୍ଚନୀଚ, ଶିକ୍ଷିତ ଓ ଅଶିକ୍ଷିତ, ବ୍ୟକ୍ତିଗତ ସମ୍ପର୍କିତ ସ୍ଥଳ ବିଶେଷର ରୂପ ।

| ଯଥା—ସେଟ୍-୧ | ଉଚ୍ଚ : | ନୀଚ | |
|---|---|---|---|
| ଦ୍ୱିତୀୟ ପୁରୁଷ ସର୍ବନାମ | ଜାତି | ଜାତି | କଥୋପକଥନକାରୀ ମଧ୍ୟରେ ସମ୍ପର୍କ |
| ଆପଣ୍ (ଣ) | ଉଚ୍ଚ ← — — | → ଉଚ୍ଚ | ଅଣ ଅନ୍ତରଙ୍ଗ |
| ସମ୍ମାନ ସୂଚକ | ନୀଚ ← — | → ଉଚ୍ଚ | ଅଣ ଅନ୍ତରଙ୍ଗ |
| ତୁମେ | ଉଚ୍ଚ ←—— | → ଉଚ୍ଚ | ଅନ୍ତରଙ୍ଗ |
| ଘରୁଆ/ପରଶତ | ଉଚ୍ଚ ←—— | → ନୀଚ | ଅଣ ଅନ୍ତରଙ୍ଗ |
| | ନୀଚ ←—— | → ଉଚ୍ଚ | ଆଧା ଅନ୍ତରଙ୍ଗ |
| | ନୀଚ ←—— | → ନୀଚ | ଅଣ ଅନ୍ତରଙ୍ଗ |
| ତୁ | ଉଚ୍ଚ ←—— | → ନୀଚ | ଅନ୍ତରଙ୍ଗ |
| ଅନାଦର ସୂଚକ | ଉଚ୍ଚ ←—— | → ନୀଚ | (କ୍ୱଚିତ୍) ଅଣ ଅନ୍ତରଙ୍ଗ |
| | ନୀଚ ←—— | → ନୀଚ | ଅନ୍ତରଙ୍ଗ |

Digitized by srujanika@gmail.com

ସେଟ୍ ୨ ଶିକ୍ଷିତ : ଅଶିକ୍ଷିତ

ବୟସ ବୟସ ଦ୍ୱିତୀୟ ପୁରୁଷ ସର୍ବନାମ, କଥୋପକଥନକାରୀଙ୍କ ସହ ସମ୍ପର୍କ

ଶ୍ରେଣୀ ବହିର୍ଗତ

| | | |
|---|---|---|
| ବୟସ୍କ←→ବୟସ୍କ | ଆପଣ (ଣ) | ଅଣଅନ୍ତରଙ୍ଗ |
| ବୟସ୍କ←→ବୟସ୍କ | ତୁମେ | ଅନ୍ତରଙ୍ଗ |
| ବଡ଼←→ସାନ | ତୁମେ | ଅଣଅନ୍ତରଙ୍ଗ |

ଶିକ୍ଷିତ

| | | |
|---|---|---|
| ବଡ଼←→ସାନ | ତୁ | ଅନ୍ତରଙ୍ଗ |
| ସାନ←—ବଡ଼ | ଆପଣ (ଣ) | ଅଣଅନ୍ତରଙ୍ଗ |
| ସାନ←→ବଡ଼ | ତୁମେ | ଅନ୍ତରଙ୍ଗ |

ଅଶିକ୍ଷିତ

| | | |
|---|---|---|
| ବୟସ୍କ←→ବୟସ୍କ | ତୁମେ | ଅଣ-ଅନ୍ତରଙ୍ଗ |
| ବୟସ୍କ←→ବୟସ୍କ | ତୁ | ଅନ୍ତରଙ୍ଗ |
| ବଡ଼←→ସାନ | ତୁ | [ଅନ୍ତରଙ୍ଗ |
| ସାନ←→ବଡ଼ | ତୁମେ | [ଅଣଅନ୍ତରଙ୍ଗ |
| | | ଅଣଅନ୍ତରଙ୍ଗ |
| ସାନ←→ବଡ଼ | ତୁ | ଅନ୍ତରଙ୍ଗ |

ଉପରୋକ୍ତ ସେଟ୍ ଗୁଡ଼ିକରେ ୨ୟ ପୁରୁଷ ସର୍ବନାମ ବ୍ୟବହାର କାଳରେ ପରସ୍ପର ବ୍ୟକ୍ତିଗତ ସମ୍ବନ୍ଧର ଏକ ସାଧାରଣ ରୂପ ପ୍ରଦର୍ଶିତ । କେତେକ କ୍ଷେତ୍ରରେ ପାର୍ଥକ୍ୟ ରହିଥିଲେ ବି ତାହା ସାଧାରଣ କ୍ଷେତ୍ରରେ ପ୍ରଯୋଜ୍ୟ ନୁହେଁ । ତାହା ବ୍ୟକ୍ତିଗତ ସମ୍ପର୍କ ସୂଚକ ପାର୍ଥକ୍ୟ । ଏଥିରେ ଗ୍ରାମାଞ୍ଚଳରେ ଭିନ୍ନ ଭିନ୍ନ ଜାତି ମଧ୍ୟରେ ପ୍ରଚଳିତ ସମ୍ପର୍କରେ ସାଧାରଣ ସୂଚନା ପ୍ରଦାନ କରାଯାଇଛି । ଉପରୋକ୍ତ ସେଟ୍ ଦୁଇଟିରୁ ଆହୁରି ପ୍ରମାଣିତ ହେବ ଯେ, 'ସମ୍ମାନସୂଚକ' ରୂପ ନିମ୍ନ ପ୍ରକାରେ ପାରସ୍ପରିକ ବିସ୍ତାର ଧାରାରେ ସଙ୍ଘଟିତ ହୁଏ ନାହିଁ ।

ଉଚ୍ଚ←→ନୀଚ

ନୀଚ←→ନୀଚ

ଅଶିକ୍ଷିତ←→ଅଶିକ୍ଷିତ

Digitized by srujanika@gmail.com

ପୁନର୍ବାର ସମ୍ମାନ ସୂଚକ, ଅସମ୍ମାନ ସୂଚକ ଦ୍ୱିତୀୟ ପୁରୁଷ ସର୍ବନାମ ବ୍ୟବହାରର ପାରସ୍ପରିକ ପ୍ରକ୍ରିୟା ମଧ୍ୟରେ ଆମେ ଦେଖିବା ଯେ, ଉଚ୍ଚନୀଚ ପରିମାପରେ ଏକ ବର୍ଗରେ ଉଚ୍ଚବର୍ଣ୍ଣ ( ବ୍ରାହ୍ମଣ, କରଣ, ଖଣ୍ଡାୟତ, ରାଜୁ, ମାହାନ୍ତି) ଲୋକେ ଓ ଅନ୍ୟବର୍ଗରେ ନିମ୍ନ ବର୍ଣ୍ଣର (ବଢ଼େଇ, କଣ୍ଡରା, ମହାକୁଲ, ସାନ୍ତାଳ, ମାହାଲି) ଲୋକେ ଅନ୍ତର୍ଭୁକ୍ତ । ଏହା ସାଧାରଣତଃ ସମାଜରେ ସବଳ ଓ ଦୁର୍ବଳ ଶ୍ରେଣୀର ସୂଚନା ପ୍ରଦାନ କରେ ।

କଥିତ ଭାଷା ସାଧାରଣତଃ 'ଇନ୍‌ଫର୍ମାଲ' ସ୍ତରରେ ବ୍ୟବହୃତ ହୋଇଥାଏ । ମାନକ ଓଡ଼ିଆ ଓ ମାନକ ବଙ୍ଗଳା ଫର୍ମାଲ ସ୍ତରରେ ପ୍ରୟୋଗ ହୁଏ । ସୀମା ରେଖାର ଉଭୟ ପଟରେ ମାନକ ଭାଷାର ରୂପ ନିର୍ଦ୍ଧାରଣରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଧ୍ୱନିତାତ୍ତ୍ୱିକ ଓ ରୂପରଚନାଗତ ତୁଳନା ନିମନ୍ତେ ନିମ୍ନରେ ପ୍ରଦତ୍ତ ମାନକ ଓଡ଼ିଆ, ମାନକ ବଙ୍ଗଳା ଓ କଥିତ ଭାଷାର ଧ୍ୱନି ସମୂହର ବିକାଶ ଦ୍ରଷ୍ଟବ୍ୟ ।

## ମାନକ ଓଡ଼ିଆ

| ବ୍ୟଞ୍ଜନ ଧ୍ୱନି | ଓଷ୍ଠ୍ୟ | ଦନ୍ତ୍ୟ | ବର୍ତ୍ସ୍ୟ | ମୂର୍ଦ୍ଧନ୍ୟ | ତାଲବ୍ୟ | କଣ୍ଠ୍ୟ | କାକଲ୍ୟ |
|---|---|---|---|---|---|---|---|
| ସ୍ପର୍ଶ | ପ ଫ | ତ ଥ | | ଟ ଠ | | କ ଖ | |
| | ବ ଭ | ଦ ଧ | | ଡ ଢ | | ଗ ଘ | |
| ସ୍ପର୍ଶ ସଂଘର୍ଷୀ | | | | | ଚ ଛ | | |
| | | | | | ଜ ଝ | | |
| ସଂଘର୍ଷୀ | | | ସ | | | | ହ |
| ଅନୁନାସିକ | ମ | | ନ | ଣ | | | |
| ପାର୍ଶ୍ୱିକ | | | ଲ | ଳ | | | |
| ଲୋଡ଼ିତ | | | ର | | | | |
| ତାଡ଼ିତ | | | | ଡ଼ ଢ଼ | | | |
| ଅର୍ଦ୍ଧସ୍ୱର | | | | | ୟ | | |

Digitized by srujanika@gmail.com

## ସ୍ୱର ଧ୍ୱନି

ମାନକ ଓଡ଼ିଆରେ /ଅ, ଆ, ଇ, ଉ, ଏ, ଓ / ଏପରି ଛ'ଟି ସ୍ୱର ସ୍ୱନିମ୍ ଅଛି । ଉଚ୍ଚାରଣ ଦୃଷ୍ଟିରୁ ଏଗୁଡ଼ିକ ନିମ୍ନମତେ ସଜ୍ଜିତ କରାଯାଇ ପାରେ ।

| | ଅଗ୍ରସ୍ୱର | ମଧ୍ୟସ୍ୱର | ପଶ୍ଚସ୍ୱର |
|---|---|---|---|
| ସଂବୃତ | ଇ | | ଉ |
| ଅର୍ଦ୍ଧ ସଂବୃତ | ଏ | | ଓ |
| ଅର୍ଦ୍ଧ ବିବୃତ | | | ଅ |
| ବିବୃତ | | ଆ | |

## ମାନକ ବର୍ଣ୍ଣମାଳା

**ବ୍ୟଞ୍ଜନ ବର୍ଣ୍ଣ :**

ପ ଫ    ତ ଥ    ଟ ଠ    କ ଖ

ବ ଭ    ଦ ଧ    ଡ ଢ    ଗ ଘ

ଚ ଛ

ଜ ଝ

(ଯ)    ଣ    ହ

ମ    ନ

ଙ

ଲ

ର    ଡ଼

**ସ୍ୱର ବର୍ଣ୍ଣ ବ୍ୟବସ୍ଥାର ରୂପ ନିମ୍ନ ପରି :**

ଇ    ଉ

ଏ    ଓ

ଅ

ଅର୍ଥାତ୍    ଆ

**କଥିତ ଭାଷା**

**ସ୍ୱର ବର୍ଣ୍ଣ :** ଇ    ଉ

ଏ    ଅ

ଆ

**କଥିତ ଭାଷା ରୂପ :**

ଆଲୋଚ୍ୟ ଅଞ୍ଚଳରେ କଥିତ ଭାଷାର ବ୍ୟଞ୍ଜନ ମାନକ ଓଡ଼ିଆ ବ୍ୟଞ୍ଜନ ସଙ୍ଗେ ସମାନ ହେଲେହେଁ କେତେକ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଯଥା :—

Digitized by srujanika@gmail.com

୧ । ଅଳ୍ପ ପ୍ରାଣ ସଘୋଷ କଣ୍ଠ୍ୟ ନାସିକ୍ୟ ଧ୍ୱନି [ଙ]ର କ୍ୱଚିତ୍ ଆଗମନ ଘଟେ ।

୨ । ବ୍ୟଞ୍ଜନ ମଧ୍ୟରେ ଅବସ୍ଥିତ ୱ୍ ଓ ଯ୍ ର ଉପସ୍ଥିତ ଉଲ୍ଲେଖଯୋଗ୍ୟ ନୁହେଁ ।

୩ । କଥିତ ଭାଷାର ଡ଼ ଓ ଢ଼ ସ୍ୱନିମ୍‌ର ଉପସ୍ଥିତ ଘଟୁଥିଲେହେଁ କାର୍ଯ୍ୟକାରୀ ରୂପ ଅଳ୍ପ ।

କଥିତ ଭାଷାର ସ୍ୱରଧ୍ୱନି ମାନକ ଓଡ଼ିଆର ସ୍ୱରଧ୍ୱନି ସହ ସମାନ ନୁହେଁ । ଉପର ବର୍ଣ୍ଣିତ ସ୍ୱର ସ୍ୱନିମ୍‌ରୁ ପ୍ରମାଣିତ ହେଉଅଛି ଯେ 'କଥିତ ଭାଷା' ମାନକ ବଙ୍ଗଳା ଠାରୁ ନିମ୍ନଲିଖିତ କ୍ଷେତ୍ରରେ ପ୍ରଭେଦ ସୂଚାଏ ।

୧ । କଥିତ ଭାଷାରେ ପାଞ୍ଚଗୋଟି ସ୍ୱର ଧ୍ୱନି ଥିଲାବେଳେ ମାନକ ବଙ୍ଗଳାରେ ସାତଗୋଟି ସ୍ୱର ରହିଅଛି ।

୨ । ଣ ଏବଂ ଳ ର ଅବସ୍ଥିତି ମାନକ ବଙ୍ଗଳାରେ ନାହିଁ ।

୩ । କଥିତ ଭାଷାରେ ମୂର୍ଦ୍ଧନ୍ୟ ଅଘୋଷୀ 'ଷ'ର ପ୍ରଚଳନ ନାହିଁ ।

୪ । ମାନକ ବଙ୍ଗଳାରେ ମହାପ୍ରାଣ ଢ଼ ର ପ୍ରଚଳନ ନାହିଁ ।

୫ । କଥିତ ଭାଷାରେ ଅଳ୍ପ ପ୍ରାଣ ସଘୋଷ କଣ୍ଠ୍ୟ ନାସିକ୍ୟ ଧ୍ୱନି 'ଙ'ର ଉପସ୍ଥିତ କ୍ୱଚିତ ଘଟେ ।

ମାନକ ଓଡ଼ିଆ, ମାନକ ବଙ୍ଗଳା ଓ ଆଞ୍ଚଳିକ କଥିତ ଭାଷାର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହେଲା :—

( କଥିତ ଭାଷା ଏଣିକି କ· ଭା·, ମାନକ ଓଡ଼ିଆ ଏଣିକି ମା· ଓ· ଓ ମାନକ ବଙ୍ଗଳା ଏଣିକି ମା· ବ· ରୂପେ ଉଲ୍ଲେଖ କରାଯିବ । )

## (କ) ଧ୍ୱନି ପ୍ରକ୍ରିୟା :—

ମାନକ ଓଡ଼ିଆ ଓ ମାନକ ବଙ୍ଗଳାରେ ସାଧାରଣତଃ ଶବ୍ଦର ଆଦ୍ୟରେ ବ୍ୟବହୃତ/ଓ/ସ୍ୱର କଥିତ ଭାଷାରେ/ଉ/ହୁଏ । ମା· ବ·ରେ କେତେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ହୁଏ ।

| ଉଦାହରଣ | ଉଦାହରଣ | ଉଦାହରଣ |
|---|---|---|
| କ· ଭା· | ମା· ଓ· | ମା· ବ· |
| ଘୁଡ଼ା | ଘୋଡ଼ା | ଘୋଡ଼ା |
| ଧୁବା | ଧୋବା | ଧୋବା |

Digitized by srujanika@gmail.com

| | | | |
|---|---|---|---|
| | ମୁଡ଼ା | ଘୋଡ଼ା | ଘୋଡ଼ା |
| | ଗୁଡ଼ | ଗୋଡ଼ | ପା |
| | ବୃଷ | ଦୋଷ | ଦୋଷ୍ |
| | ଲୁକ | ଶ୍ଳୋକ | ଶ୍ଳୋକ୍ |
| | ଭଲ | ଓଲୁଅ/ଓଲ | ଓଲ୍ |

କଥିତ ଭାଷାର କେତେକ ଶବ୍ଦରେ ଅଘୋଷ ଦେ୍ୟାଷ୍ଠ୍ୟ ସଂଘର୍ଷୀ ଧ୍ୱନି ଇ ରେ ପରିଣତ ହୁଏ ।

| | | | |
|---|---|---|---|
| θ ±←→ଇ± | ଇନ୍‌ଫର୍ମାଲ | ଫର୍ମାଲ୍ | ଫର୍ମାଲ |
| | କ· ସ୍ଥ· | ମା· ଓ· | ମା· ବ· |
| | ଆଜ୍/ଆଜି | ଆଜି | ଆଜ୍ |
| ±ସଂକ୍ଷୀକରଣ | କାଲ୍/କାଲି | କାଲି | କାଲ୍ (ଆଗାମୀ କାଲି ଅର୍ଥରେ) |
| | ଢନ୍ | ଢନ | ଢନ୍ |
| | ଘୃର୍ | ଘୃଣ | ଘୃର୍ |
| Δ ଅଁ←→ଅନ | ବେଁଗ | ବେଙ୍ଗ | ବେଙ୍ଗ୍ |
| | ରଁଗ | ରଙ୍ଗ | ରଙ୍ଗ୍ |
| | ଆଁଠୁ | ଆଣ୍ଠୁ | ହାଁଣ୍ଟୁ |
| | ଅଁଡ଼ିଆ | ଅଣ୍ଡିଆ | — |
| | ପିଁପୁଡ଼ି | ପିମ୍ପୁଡ଼ି | ପିଁପୁଡ଼େ |
| | ଆଁବ | ଆମ୍ବ | ଆମ୍ବ |
| | କାଁନ୍ଦ୍ | କାନ୍ଦ | କାଁନ୍ଦ୍ |
| | ରାଂଧ୍ | ରାନ୍ଧ | ରାଁଧ୍ |
| ଲ←→ନ କେତେକ ଶବ୍ଦରେ ଲ୍ ସ୍ଥାନରେ ନ ହୁଏ । | ଲଈ/ନଈ/ଲଦୀ/ନଦୀ | ନଦୀ/ନଈ | ନଘା |
| | ଲାଢ/ନାଢ | ନାଢ | ନାଢ |
| | ଲେଜ/ନେଜ | ନେଜ | ଢଳୁମ୍/ଢଳାମ୍ |
| | ଲାଭି/ନାଭି | ନାଭି/ନାଇ | ନାଭି |
| ଅ←→ଅହ = ହ ସର୍ବନାମ କ୍ଷେତ୍ରରେ କେବଳ | କାର୍/କାହାର୍ | କାହାର | କାର୍ |
| | ଯାର୍/ଯାହାର୍ | ଯାହାର | ଯାର୍ |

Digitized by srujanika@gmail.com

| | | |
|---|---|---|
| ଡାକ୍/ଡାହ୍ଵାର୍ | ଡାହ୍ଵାର | ଡାର୍ |
| ଶୁଳ/ଶୁହ୍ଵଲ | ଶୋହ୍ଵଲ | ଶୋଲ |

**(ଖ) ପଦ ରଚନା :** ଇନ୍‌ଟମୀଲ — ଟମୀଲ — ଟମୀଲ

| | | | |
|---|---|---|---|
| ବ୍ୟକ୍ତିକ ସର୍ବନାମ | କ· ସ୍ୱ· | ମା· ଓ· | ୪ା· ବ· |
| ପ୍ରଥମ ପୁରୁଷ ମୁଁ | ମୁଁ | ମୁଁ | ଆମି |
| ଆମ-ଅର୍-ନେ / ଆମ-ଅର୍-ମେନେ ] | ଆମ୍ମେନେ / ଅମେ | ଅମେ/ ଆମ୍ମେମାନେ | ଆମ-ର୍ |

| | | | |
|---|---|---|---|
| ଦ୍ୱିତୀୟ ପୁରୁଷ ଏକ ବଚନ, ଅନାଦରର୍ଥକ ] | ତୁ | ତୁ/ତୁଇ | ତୁ/ତୁଇ |

| | | | |
|---|---|---|---|
| ଏକବଚନ | ତୁମେ | ତୁମେ | ତୁମେ |
| ତ-ର-ନେ / ଅନାଦର ସୂଚକ ] | ତୁମେ-ମାନେ | ତ-ର୍ / ଅନାଦର ] ବହୁବଚନ | |
| ତୁମ-ଅର-ନେ / ତୁମ-ଅର-ମେନେ ] | | ତୁମ-ର୍ ] | |

(ଏକବଚନ row, last column: ତୁମି)

| | | | |
|---|---|---|---|
| ଏକ ବଚନ ସମ୍ମାନ ସୂଚକ | ଆପଣ୍ | ଆପଣ | ଆପ୍ନି |
| ବହୁବଚନ ସମ୍ମାନ ସୂଚକ | ଆପଣ୍-ନେ / ଆପଣ୍-ମେନେ ] | ଆପଣ-ମେନେ | ଆପନା-ର୍ |

| | | | |
|---|---|---|---|
| ତୃତୀୟ ପୁରୁଷ ଏକବଚନ ସମ୍ମାନ/ଅସମ୍ମାନ ସୂଚକ ] | ସିଏ | ସେ | ସେ |

---

△ ଅ ସ୍ୱରବର୍ଣ୍ଣ ନିର୍ଦ୍ଦେଶକ ।

Digitized by srujanika@gmail.com

| | | | |
|---|---|---|---|
| ସେ-ମ୍ନେ (ସେ ମେନେ)<br>ତା-ର-ନେ<br>ତା-ର-ମେନେ (ସମ୍ମାନ/ଅସମ୍ମାନସୂଚକ)<br>ତାଁ-କର-ମେନେ (ସମ୍ମାନ ସୂଚକ) | ସେମାନେ (ସମ୍ମାନ/ଅସମ୍ମାନ ସୂଚକ) | ତା-ଘ ଅସମ୍ମାନ ସୂଚକ<br>ତାଁ-ଘ (ସମ୍ମାନ ସୂଚକ) | ବହୁବଚନ |

**କ୍ରିୟା :** ଉଦାହରଣ—କର୍ ଧାତୁ

କାଳ—ବର୍ତ୍ତମାନ ଅଭ୍ୟାସିକ

| ପୁରୁଷ—ବଚନ | ପ୍ରତ୍ୟୟ : | ଧାତୁ : କର୍—କର | | କର~କର୍ |
|---|---|---|---|---|
| ୧ମ ଏକ ବଚନ | | କରେଁ | କରେଁ | କଣେଁ |
| ୧ମ ବହୁ ବଚନ | ଇ↔ଉଁ | କର | କରୁଁ | କଣ |
| ୨ୟ ଏକ ବଚନ | | କରୁ | କରୁ | କଣସ୍ (ଅନାଦର ସୂଚକ) |
| ୨ୟ ଏକ/ବହୁବଚନ | | କର | କର | କର |
| ୨ୟ ଏକ/ବହୁବଚନ | ଅନ↔ଅନ୍ତ | କର- କରନ | କରନ୍ତ | କରେନ୍ (ସମ୍ମାନାର୍ଥ) |
| ୩ୟ ଏକ ବଚନ | | କରେ | କରେ | କରେ (ଅସମ୍ମାନ ସୂଚକ) |
| ୩ୟ ବହୁ ବଚନ | ଅନ↔ଅନ୍ତ | କରନ୍ (ସମ୍ମାନ/ ଅସମ୍ମାନ ସୂଚକ) | କରନ୍ତ (ସମ୍ମାନ/ ଅସମ୍ମାନ ସୂଚକ) | କରେ (ଅସମ୍ମାନ ସୂଚକ) କରେନ୍ ସମ୍ମାନ ସୂଚକ) |

(୩ୟ ଏକ ବଚନ ସମ୍ମାନ ସୂଚକ ୩ୟ ବହୁ ବଚନ ସମ୍ମାନ ସୂଚକ ରୂପ ପରି)

**ଅସମାପ୍ତ ବର୍ତ୍ତମାନ (Present Continuous) :**

ଧାତୁ କରୁଚ କରୁଚ କରୁଚ/କରୁଛ

Digitized by srujanika@gmail.com

ପୁରୁଷ—ବଚନ ପ୍ରତ୍ୟୟ

୧ମା ଏକ ବଚନ    କରୁଚ    କରୁଚ    କରୁଚ (ଛୁ)

•( ଅନ୍ୟ ବିଭକ୍ତିରେ ବର୍ତ୍ତମାନ ଅଭ୍ୟାସିକ ରୂପ ପରି ସମାନ )

**ସମ୍ପନ୍ନ ବର୍ତ୍ତମାନ**

ଧାତୁ    କରିଚ/    କରିଛ    କରେଚ (ଛ)

ପୁରୁଷ—ବଚନ ପ୍ରତ୍ୟୟ    କର୍ଚ    କରିଅଛ

( ବିଭକ୍ତି ସମୂହର ରୂପ ଅସମ୍ପନ୍ନ ବର୍ତ୍ତମାନ ପରି ସମାନ )

**ସାମାନ୍ୟ ଅତୀତ**

ଧାତୁ :    କର୍-ନ- (ଏକ ବଚନରେ)/ କର୍-ଲ (କେବେକେବେ)    କଲ    କର୍ଲ

ପୁରୁଷ—ବଚନ୍ ପ୍ରତ୍ୟୟ :

| | | | |
|---|---|---|---|
| ୧ମା ଏକ ବଚନ | କର୍ନ | ଛରି | କର୍ଲୁମ୍/କର୍ଲମ୍ |
| ୧ମା —ଇ ⇔ ଉଁ | କର୍ଲି | କଲୁ | କର୍ଲୁମ୍/କର୍ଲମ୍ |
| ୨ୟା ଏକ ବଚନ | କର୍ଲୁ | କଲ୍ | କର୍ଲି (ଅନାଦରାର୍ଥକ) |
| ୨ୟା ଏକ/ବହୁବଚନ | କର୍ଲ | କର୍ଲ | କର୍ଲେ |
| ୨ୟା ଏକ/ବହୁବଚନ | କର୍ଲେ | କଲେ | କର୍ଲେନ (ସମ୍ମାନ ସୂଚକ) |
| ୩ୟା ଏକ/ବହୁବଚନ | କର୍ଲା | କଲା | କର୍ଲ (ଅସମ୍ମାନ ସୂଚକ) |
| ୩ୟା ବହୁବଚନ | କର୍ଲେ (ସମ୍ମାନ/ ଅସମ୍ମାନ ସୂଚକ) | କଲେ (ସମ୍ମାନ/ ଅସମ୍ମାନ ସୂଚକ) | କର୍ଲ (ଅସମ୍ମାନ ସୂଚକ) କର୍ଲେନ (ସମ୍ମାନ ସୂଚକ) |

(୩ୟା ବିଭକ୍ତି ଏକ ବଚନ ସମ୍ମାନ ସୂଚକ ରୂପ ୩ୟା ବହୁବଚନ ରୂପ ସହିତ ସମାନ)

Digitized by srujanika@gmail.com

**ଅସମାପ୍ତ ଅତୀତ** (Past Continuous) :

ଧାତୁ : କରୁଥିନ୍ କରୁଥିଲ୍ କରୁଥିଲ୍

(ଏକ ବଚନରେ)

କରୁଥିଲ୍

(ଅନ୍ୟ କେତେକ ସ୍ଥାନରେ)

( ସମସ୍ତ ବିଭକ୍ତିର ରୂପ ଅଭ୍ୟାସିକ ଅତୀତର ରୂପ ସହିତ ସମାନ )

**ସମାପ୍ତ ଅତୀତ** (Past Perfect) :

ଧାତୁ : କର୍-(ଇ)-ଥ-ଇନ୍-
(ପ୍ରଥମ ପୁରୁଷ ଏକ ବଚନ)
କର-(ଇ)-ଥ-ଇଲ-
(ଅନ୍ୟ ସ୍ଥାନରେ)

କର୍-ଇ-ଥ-ଇଲ- କର-ଏ-ଛି-ଇଲ-

( ବିଭକ୍ତିର ରୂପ ଅସମାପ୍ତ ଅତୀତର ରୂପ ସହିତ ସମାନ )

**ସାମାନ୍ୟ ଭବିଷ୍ୟତ** (Future Indefinite) :

ଧାତୁ : କର-(ଇ)-ମ-
(୧ମ ପୁରୁଷ ଏକ ବଚନ)
କର-(ଇ) ବ-
(ଅନ୍ୟ ସ୍ଥାନରେ)

କର୍-ଇବ- କର୍-ବ-

ପୁରୁଷ—ବଚନ ପ୍ରତ୍ୟୟ :

| | | | | |
|---|---|---|---|---|
| ୧ମ ପୁରୁଷ ଏକବଚନ | କରିମି | | | |
| | (କର-(ଇ) ମ-ଇ) | କରିବ | କର୍‌ବ |
| | ଆ←→ଉଁ | | |
| ୧ମ ପୁରୁଷ ବହୁ ବଚନ | | କରିବା | କରିବୁ | କର୍‌ବ |
| ୨ୟ ପୁରୁଷ ଏକ ବଚନ | କର-(ଇ) ବ-ଉ | | କରିବୁ | କରିବ (ଅନାଦରାର୍ଥକ) |
| ୨ୟ ପୁରୁଷ ଏକ/ବହୁ ବଚନ | କର-(ଇ)ବ-ଅ | | କରିବ | କର୍‌ବେ |
| ୨ୟ ପୁରୁଷ ଏକ/ବହୁ ବଚନ | କର-(ଇ)ବ-ଏ | | କରିବେ | କରବେନ୍ (ସମ୍ମାନାର୍ଥ) |

Digitized by srujanika@gmail.com

| | | | |
|---|---|---|---|
| ୩ୟ ପୁରୁଷ ଏକ ବଚନ | କର-(ଇ)ବ-ଅ | କରିବ | କରିବେ (ଅସମ୍ମାନାର୍ଥ) |
| ୩ୟ ପୁରୁଷ | କର-(ଇ)ବ-ଏ (ସମ୍ମାନାର୍ଥ/ଅସମ୍ମାନାର୍ଥ ବୋଧକ) | କରିବେ (ସମ୍ମାନାର୍ଥ/ ଅସମ୍ମାନାର୍ଥ ବୋଧକ) | କରିବେ (ଅସମ୍ମାନାର୍ଥ) କରିବେନ (ସମ୍ମାନାର୍ଥ) |

( ୩ୟ ପୁରୁଷ ଏକ ବଚନ ସମ୍ମାନାର୍ଥ ରୂପ ୩ୟ ପୁରୁଷ ବହୁବଚନ ରୂପ ସହିତ ସମାନ । )

## ଅସମ୍ପନ୍ନ ଭବିଷ୍ୟତ (Future Continuous)

ଧାତୁ : କର-ଉ-ଥ-ଇମ- (ପ୍ରଥମ ପୁରୁଷ ଏକ ବଚନ) | କର-ଉ-ଥ-ଇବ- | କର-ଟେ + ଥାକ-ବ—

କର-ଉ-ଥ-ଇବ- (ଅନ୍ୟତ୍ର)

(ବିଭକ୍ତିର ରୂପ ସାମାନ୍ୟ ଭବିଷ୍ୟତର ରୂପ ପରି)

## ସମ୍ପନ୍ନ ଭବିଷ୍ୟତ (Future Perfect)

ଧାତୁ : କର-ଇ-ଥ-ଇମ- (୧ମ ପୁରୁଷ ୧ ବଚନ | କର-ଇ-ଥ-ଇତ | କର-ଏ + ଥାକ-ବ-

କର-(ଇ)-ଥ-ଇବ- (ଅନ୍ୟତ୍ର)

( ବିଭକ୍ତିର ରୂପ ସାମାନ୍ୟ ଭବିଷ୍ୟତର ରୂପ ପରି । )

ପୁରୁଷ-ବଚନ ପ୍ରତ୍ୟୟ :

| | | |
|---|---|---|
| ୨ୟ ଏକ ବଚନ କର୍ | କର୍ | କର୍ (ଅନାଦରାର୍ଥକ) |
| ୨ୟ ଏକ ବହୁବଚନ କର | କର | କର |
| ୨ୟ ଏକ, ବହୁ ବଚନ | | |
| —ଉନ—ଅନ୍ତୁ—ଉ କର-ଉନ | କରନ୍ତୁ | କରୁନ୍ (ସମ୍ମାନ ସୂଚକ) |

Digitized by srujanika@gmail.com

| | | | |
|---|---|---|---|
| ଆଜ୍ଞା ଏକ | କର-ଉ | କରୁ | କରୁକ୍ (ଅସମ୍ମାନାର୍ଥ) |
| ଆଜ୍ଞା ଏକ—ଉନ⟷ଅନ୍ତ-ଉ | କରୁ-ଉନ | କରନ୍ତୁ | କରୁନ୍ (ଅସମ୍ମାନ ସୂଚକ) |

(ଗ) କୋଷଗତ :

କୋଷଗତ ପର୍ଯ୍ୟାୟରେ କଥିତ ଭାଷା ଓ ମାନକ ଓଡ଼ିଆ ମଧ୍ୟରେ ମୁଖ୍ୟତଃ ଧ୍ୱନି ପ୍ରକ୍ରିୟାଗତ ବୈଷମ୍ୟ ପରିଲକ୍ଷିତ ହୁଏ । ଏପରି ଅନେକ ଶବ୍ଦ ଅଛି (ଅଶ୍ରାବ୍ୟ ବାଚକ) ଯେଉଁ ଗୁଡ଼ିକ କଥିତ ଭାଷା କିମ୍ବା ମାନକ ଓଡ଼ିଆରେ ବ୍ୟବହାର ନମିଛି । ନିମ୍ନରେ କେତେଗୋଟି ଉଦାହରଣ ପ୍ରଦତ୍ତ ହେଲା :

| କଥିତ ଭାଷା | ମା·ଓ· | ମା·ବ· |
|---|---|---|
| ଛୁଆ | ପିଲା | ଛେଲେ |
| ଛୁଟ/ କଟିଆ | ସାନ | ଛୋଟ |
| କଟିଆ | — | — ସାଧାରଣତଃ ପୁରୁଷ ପିଲାଙ୍କ ଡାକନାମ ଭାବରେ ବ୍ୟବହୃତ ହୁଏ । |
| ପଖୀ/ ଚଡ଼ି-ଇ | ଚଢ଼େଇ | ପକ୍ଷୀ |
| ଜଲ | ପାଣି | ଜଲ୍ |
| ଚୁଲ | ବାଲ | ଚୁଲ୍ |
| ସୁପାରି | ଗୁଆ | ସୁପାରି/ସୁପୁରି |
| ବତାସ୍ | ପବନ | ବାତାସ୍/ହାଓ୍ୱା |
| ଟକ | ଖଟା | ଟକ୍ |
| ହାଲ | ଶାଗୁଆ | ସବୁଜ୍ |
| ପେହେରା/ ପେଡ଼ା | ପିଜୁଳି | ପିଆରା |

Digitized by srujanika@gmail.com

| | | |
|---|---|---|
| ମାଙ୍କଡ଼ସା | ବୃଢ଼ୀଆଣୀ | ମାକଡ଼୍ସା |
| ବାଁନ୍ଦ୍ର/ ବାଁଦର୍ | ମାଙ୍କଡ଼ | ବାଁଦର୍ |

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳୀୟ ଓଡ଼ିଆ ଭାଷା ବିଷୟକ ଏହା ଏକ ସଂକ୍ଷିପ୍ତ ବିବରଣୀ । ଏଥିରେ ମାନକ ବଂଗଳା ଓ ମାନକ ଓଡ଼ିଆ ଭାଷାର ସମସ୍ତ ବ୍ୟାକରଣିକ ଓ ଆଭିଧାନିକ ବିଭବ ଆଲୋଚିତ ହୋଇନାହିଁ । ଏହା ସତ୍ତ୍ୱେ, ଉଲ୍ଲିଖିତ ବିବରଣୀରୁ ସ୍ପଷ୍ଟ ପ୍ରତୀୟମାନ ହେବ ଯେ, କଥିତ ଭାଷା ସହିତ ମାନକ ଓଡ଼ିଆ ଭାଷାର ସମ୍ପର୍କ ମାନକ ବଂଗଳା ଭାଷା ଅପେକ୍ଷା ଅଧିକ ଘନିଷ୍ଠ ।

ଉପରୋକ୍ତ ଅଞ୍ଚଳରେ ରାଜନୈତିକ ସୀମାରେଖାର ଭୂମିକା ଭାଷାଗତ ଯୋଗାଯୋଗ କ୍ଷେତ୍ରରେ ବିଶେଷ ପ୍ରତିବନ୍ଧକ ସୃଷ୍ଟି କରୁ ନ ଥିଲେହେଁ, ସୀମାରେଖାର ଦୁଇପଟ ଜନ ସମାଜରେ 'ଫର୍ମାଲ' ସ୍ତରରେ ପ୍ରଚଳିତ ମାନକ ଭାଷାର (ମା·ଓ· ଓ ମା·ବ·) ପ୍ରୟୋଗ ହେତୁ କଥିତ ଭାଷା ଉପରେ ଏହାର ପ୍ରଭାବ ପଡ଼ିବା ସ୍ୱାଭାବିକ ।



Digitized by srujanika@gmail.com

# ପରିଶିଷ୍ଟ-୧

ଉତ୍ତର ପୂର୍ବ ବାଲେଶ୍ୱର କଥିତ ଭାଷାର ନିଦର୍ଶନ :

(କ) "ଏଁ ମାଁ । ତେତେ ବେନ୍‌କାର କଥା କେନେ କହୁଚୁ । ସେତେବେଲେ କଷ ଇନ୍ତ ମୁଣ୍ଡୁ ଲୁଗା କାଢ଼ି ଦେଇ ଘଇତା ଆଗ୍‌ର ନାଚ ଯାଉଥାନ୍ତି, ନାଁ ଶଶୁର ଆଗର୍ ଇନ୍ତ ହିଁ ହିଁ ଫିଁ ଫିଁ ହଉଥାନ୍ତ । ଆମର୍ ସେତେବେଲେ କେତେ ଭୟ । ଇଛୁଣିକା କିକ୍ ନାଜ ଅଛୁନାଁ ଭୟ୍ ଅଛୁ । ପାଠ ପଢ଼ିଛନ୍ ପରି; ମଣିଷ୍ ମାନ୍‌ତେ ନାହିଁ ।"

ଆମର ସେତେବେଲେ କଲ ଥିଲ ନାଁ କଲ୍‌ଜଲ ଥିଲ । ନୁଆ ପୁଖ୍‌ରିକ ଆମ ଗାଁରୁ ସମସ୍ତେ ଯାଉଥାନ୍ତ । ଏଠୁ ଢକୁଣ୍ ଦୂର୍‌ର । ସେହିଁରୁ ଜଲ ଆଣି ଆଣି କ ଆମ୍ଭର୍ କମ୍‌ର ବର୍ଙ୍କି ଯାଇଚ । ଇଛୁଣ୍‌କାତ ହାଣ୍ଡିଶାଳ କଲ । ତେବେ ବ ଏତେ ଦେଉ । ଗଣ୍ଡେ ଫୁଟିଇ ପକଉଚନ୍ । ସେହିଁକ ଆଜ ହୁଁ ହୁଁ କାଲକ କମ୍‌ର ବନ୍ଧା ।" *

(ଖ) ୧—ଆଇ ଆଇରେ ନଁଦ ମାଉସୀ
ନଁଦ ଦେଇ ଯିବୁ ଦୂଲରେ ବସି
ବୁଆ ଶାଶୁଘର କେନ୍ଦଡ଼ା ପଡ଼ା-(କେନ୍ଦରାପଡ଼ା)
ବାଜା ବାଜି ଯିବ ଧଡ଼ାକୁ ମଡ଼ା ।

୨—ଆଇ ଆଇରେ କଜଲ ପାଢ
ଗାଇ ମଣିତେ ଯିବା
ବାପା ମାଆ ଗାଲ ଦେନେ
ଯୁଗି ଭେଶ ହବା
ଭୁକ କନେ ଖାଇବା କଷ (ନାଁ)
ଅଷାଢ଼ିଆ ଫଲ
ଶୁଷ କନେ ପିଇବା କଷ
କାଇଁସି ଗଡଆ ଜଲ

---

* ଶ୍ରୀମତୀ ତାରାମଣି ଦାସ, ସ୍ୱା-ଝାଡ଼େଶ୍ୱର ଦାସ (ଝାଣ୍ଟୁ), ବୟସ ୭୨ ବର୍ଷ, ଗ୍ରାମ-ବାଣିଦା, ଥାନା-ଜଳେଶ୍ୱର ।

Digitized by srujanika@gmail.com

କଦ ମାଡ଼୍‌ନେ ଶୁଭବା କେଏଠି
ଗାଈ ପେଟତଳେ
ଶୀତ କର୍‌ନେ ଘୁଷ୍‌ବା କଷ
ଗଛର ବକଲ । *

## ପରିଶିଷ୍ଟ-୨ କୁଡ଼ମାଳୀ ବୋଲିର ନମୁନା

(କ) "ପୁଷ୍ପ ରଜାର ଘରେ ଡନ୍‌ଦନ୍ ରଇଲାଂ । କାହାକ୍ କେ ଅଥାରବଢ୍ କଣ ଦଲାଂ । ତାପର୍ ପୁଷ୍ପ ରଜାର ଘର ଗେଲ, ସେଥା ଢନ୍ ବନ୍ ରହଲଂ । ବିଦାୟ ହବା ବେଲେଂ ତାର ଶଶୁର୍ କଇଛେ, "ହାମିତ ବେଟି ଦେହା ଦଲାଂ, ଯାହା କଛୁ ହାମାର୍ ଛଲ, କ ଜିନସ୍ ଦବ ।" ତଖନ ତାର ଜ୍ୱାଇଁ ବଲ୍‌ଲ, "ତମହାର୍ ବାଁଶିଟା ଆର ବସ୍ତ୍ର (ବନ୍ଧ)ଟା ଦରକାର ଛୁଲ, ଆର କଛୁ ଦରକାର୍ ନାୟ ।" ଅଥା ଲୟା କଣ ବିଦାୟ ହଲେଂ ।" ଏ ଗଳ୍ପ ଗଦ୍ୟର ରୂପ-ପଦ୍ୟର ରୂପ ନିମ୍ନରେ ପ୍ରଦତ୍ତ ହେଲା ।

(ଖ) "ଭୁଇ ଯଦ୍ୱ ଆମାର୍ ହଥି
ଶାଙ୍ଖା ଶାଡ଼ୀ ସକଲ ଦଥି
ଘରେ ବସି ପାନ ଖାଓ୍ୱାଥି
ବଲେର୍ କାମେ କରୁ ନା ପାଠାଥି ।" * *

(ଗ) ବର୍ଗିରେ ତର ଲମ୍ବା ଠେଙ୍ଗ୍
ଅଡ୍‌ନା ଲାଲେ ଥେଟେଙ୍ଗ୍ ଠେଙ୍ଗ୍ ଗମର ହାସ୍ୟ ହାସ୍ୟ,
ଆର୍, ଛଳ୍ ଛଳାୟ ଫର୍ ଫର୍ୟେ
ଡାଙ୍ଗାୟ ବନ୍ଧୁ ଛଲ କେରେ ଫର୍‌କେ
ବାଘ୍ ଢେଲେ ପାଡ଼ା ମହକେ
ବାଣ ପଡ଼ିଆ ମାଛ ଯେମନ୍

---

* ଏ ଶିଶୁ ଗୀତ ଦୁଇଟି ୮ ଆହ୍ଲାଦମଣି ମହାପାତ୍ର, ସ୍ୱା ସ୍ୱର୍ଗତ ଚନ୍ଦ୍ରମୋହନ ମହାପାତ୍ର, ଗ୍ରାମ-ବାଣିଦାଙ୍କ ଠାରୁ ସଂଗୃହୀତ ହୋଇ ଥିଲା । ଶ୍ରୀମତୀ ବୀଣା ଗିରି ମଧ୍ୟ ଏହି ଗୀତଟି ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ।

* * ଶ୍ରୀ ସୁରେନ୍ଦ୍ର ମହାନ୍ତ, ବୟସ ୪୭
ଘର/ପୋ:ଅ:—ଆଶୁଆଁ, ଥାନା—ମୁରୁଡ଼ା, ଜି:-ମୟୂରଭଞ୍ଜ ।

Digitized by srujanika@gmail.com

ହାମାର ବନ୍ଧୁର ଗତର ତେମନ୍
ଛଲ ଛଲ୍ୟେ ଫର୍ ଫର୍ୟେ···*

## ପରିଶିଷ୍ଟ-୩

ମେଦନୀପୁର କଣ୍ଟାଇ ଅଞ୍ଚଳରେ ପ୍ରଚଳିତ ଗଦ୍ୟ ଓ ପଦ୍ୟ ରୂପର ଉଦାହରଣ ନିମ୍ନରେ ଦିଆଗଲା ।

(କ)···"ହଜୁର୍ ଆମର୍ ଦୁଇ ମାଇପ, ଆମର୍ ଗଟେ ନିୟମ ଥାଏ ଶୁବାର୍ ସମୟ ଆମି ମଧ୍ୟଣାୟ ଶୁବା, ଦୁଇ ମାଇପ ଦୁପାଶେ ଶୁବେ, ଦୁଟା ହାତ ଦୁଇ ଲୋକେର ଉପରେ ଲାଦ ଶୁଇତେ ହବେ । ହାତ ଉଠିଇ ଲମ୍ବା ଚଲିବେନି । ବାର-ମାସିଆ ଉଡ଼୍ ଭୁଡ଼୍ ହୁକାରେ ନିଆଁ ତୁଲିକ ଦିଲା । ନଲିଟା ଆମାର ମୁଖେ ଲଗେଇ ଦିଗେଲ୍ । ଆସି ଝପ୍‌କା (ତମାକୁ) ଗଟେ କାଶ୍ ଉଠିଲା, କାଶି ପକେଇତେ ଟିକ ନିଆଁ ଉଡ଼ିକ କପାଳେ ପଡ଼ିଗେଲ୍ । ଆମାର କପାଲ ପୁଡ଼ିଗେଲ୍ । ଆମାର ଦୁହାତ ଉଠ୍‌ବାର କୋନ ଉପାୟ ନାଇଁ, ହଜୁର, ବିଧାନ ଗାଡ୍ ହଛେ । ଆମି ସବଚେୟେ ବଡ଼ ବେକୁବ୍ ।"

ଏ ଅଞ୍ଚଳରେ ପ୍ରଚଳିତ ଗଦ୍ୟ ଉପରେ ଓଡ଼ିଆ ଓ ବଙ୍ଗଳା ଭାଷାର ପ୍ରଭାବ ପରିଲକ୍ଷିତ ।

"ତାଇ ସର, ତାଇ ସର
ବାବୁ ଜବେ ତାର୍ ମାମୁଁ ଘର
ମା ବଲିବେ ଏ ଟିକେ ?
ମାମୁଁ ବଲବେ ଭନ୍ କାଟିଏ
ଧୁଇ ପୁଛି କରି ଘରକୁ ନିଅ
ଦୁଧ ଭାତ କରି ଥାଳିଏ ଦିଅ ।" **

ଏଠା ଲୋକ ଗୀତରେ ବଙ୍ଗ ଭାଷା ପ୍ରଭାବ ଅତି ଅଳ୍ପ ।

ମେଦନୀପୁର ଜିଲ୍ଲାର ଏଗ୍ରା ଅଞ୍ଚଳର ଲୋକ କଥିତ ଗଦ୍ୟ ଓ ପଦ୍ୟ ରୂପର ନମୁନା—

* ଶ୍ରୀ ବିମଳକୁମାର ମହାନ୍ତି, ବୟସ-୬୧
ପୋ-ନାରଦା, ଥାନା-ନନ୍ଦୀଗ୍ରାମ, ଜି:-ମେଦନୀପୁର ।

** ଉପରୋକ୍ତ ଉଦାହରଣ ଦୁଇଟି ଅଧ୍ୟାପକ ଡଃ: କୁଞ୍ଜବିହାରୀ ଦାସଙ୍କ ସଂକଳିତ ପଲ୍ଲୀଗୀତ ସଂଚୟନ ୩ୟ ଭାଗ ପୃ-୩୬ ଓ ପୃ-୩୪ ରୁ ଉଦ୍ଧାର କରାଯାଇଛି ।

୧୯୬୦

Digitized by srujanika@gmail.com

(କ) "ଝାଇ ଲ, ଘର୍ କଚନୁ ଆଠ୍ ଦନ୍ ହେଲା ଆଇନକ, କ କରମି, ଘର କଚ୍ର କ ହଉଥ‌ିବ । ଗନେ ଛୁଆ କଇବ, ମାଁ କେତେ ଦନ୍‌ନୁ ଯାଇଚ, ଘର୍ କଚର କାଳ୍ କନ୍ତ ହବ ?" *

(ଖ) "ଉଠେ ବ୍ରୃନ୍ଦାବନ ଟେକେ ଦେଉଲ,
ତା ଜଲ ପଡ଼ୁଚ ଗୟା ଗଙ୍ଗାର
ଗୟା ଗଙ୍ଗାର ଯେ ଗଡ଼ୁର ଗାଈ
ସୀତା ଦୁହତା ଯେ ମହର ଝାଇ
ଗୁପ ଦୁଅ ଘଜା ମହର ପିତା
ସୀତା ଠାକୁରାଣୀ ମହର ମାତା" । ଇତ୍ୟାଦ । * *

ମେଦନୀପୁର ଜିଲ୍ଲାର ଦାନ୍ତନ ଥାନା ଅଞ୍ଚଳର ଲୋକକଥିତ ଗଦ୍ୟ ଓ ପଦ୍ୟ ରୂପର ନମୁନା :

(କ) "ଝାଉ ଘାନ୍ତେ ଦେର ହେଲା । ଅନେକ କାଜ୍ ଘର୍‌ର ପଡ଼ିଚ, କ କରମି । ଦାଦା, କାବୁ ଏତେବେଳେ ଗଲେ । ଏଠ୍‌ନୁ ଘ୍ଲ ଘ୍ଲ ଯିବେ ।"
"ହଉ ଟିକେ ଟିପୁ କଥା କହ ।"

"କଇଲାଶ୍ ଦାସ୍ ତ ମାସ୍ ଯାଇଚ, ତାହାର କତ୍‌ର ଟିଉସନ୍ କରୁଚ । ମହଲା ସମିତର ସେକେଟ୍‌ଟାରୀ ହେଉଚ । ସେଥ‌ିର ଟାକା ପାସ୍ । ହଉ, ମୁଁ ଯାଁସ୍ । ମାଉସୀ ଗ, ତରକାର୍‌ର ଝାଳ କମ୍ କର ଦବ । ଦାଦା'ଙ୍କୁ ବେଶି ଝାଳ ଖାଆନ୍ତ୍ନ ।" ☐ ☐ ☐

(ଖ) "କୁଇଲଲ କହରୁ ଶ୍ରୀରାମ ବାରତା
ଭଲେ ଆସିବେ ରାମ ଲଇଖଣ ସୀତାଲ କୁଇଲା ।

---

* ଶ୍ରୀମତୀ ପଦ୍ମାବତୀ ମାଇତ, ବୟସ ୪୫
ଗ୍ରା: କଥା, ପୋ: ବର୍ତ୍ତିନା, ଥାନା : ଏଗ୍ରା, ଜି: ମେଦନୀପୁର ।

* *— ଶ୍ରୀମତୀ ସ୍ୱର୍ଣ୍ଣଲତା ପଟ୍ଟନାୟକ, ବୟସ ୪୭,
ଗ୍ରା:-ସିଂପୁରଗୃଟଦା, ଥାନା-ଏଗ୍ରା, ଜି:-ମେଦନୀପୁର ।

☐ ☐ ☐—କୁମାରୀ କନକତାରଣୀ ଦାସ, ବଲଭଦ୍ରପୁର, ଥାନା-ଦାନ୍ତନ,
ଜି:-ମେଦନୀପୁର, ବୟସ ୧୭ ବର୍ଷ ।

Digitized by srujanika@gmail.com

ମଗ୍‌ଶିର ମାସରେ କୁଇଲ ମୁକୁନ୍ଦ ମୁରାର
ପଶିଗଲ କାଳନ୍ଦୀ ଜଳେ ମାର ହେଲ କାଳୀ । ଧୁଘା ।
ପୁଷ ମାସରେ କୁଇଲ ଅନନ୍ତ ମୁରତା,
ନାନା ପୁଷ୍ପ ଶେଯ୍ୟା କଲେ ଫାଙ୍କୁଡ଼ା ସେବତା । ଧୁଘା ।
······ଇତ୍ୟାଦ ।" *

## ପରଶିଷ୍ଟ-୪ । ଉତ୍ତରାଞ୍ଚଳୀୟ ଶବ୍ଦ ସମ୍ଭାର

(କ) ଚଣ୍ଡୀ ମଙ୍ଗଳ-କବ କଙ୍କଣ ଚଣ୍ଡୀ (ମୁକୁନ୍ଦ ରାମ ଚକ୍ରବର୍ତ୍ତୀ
୧୩୭୦ ବଙ୍ଗାବ୍ଦ) ।

ଗାଁ—ଗ୍ରାମ
ପାଇକ—ପାଇକ ସେନା
ଠାଇଁ—ସ୍ଥାନ
ପୁନ (ଶି)—ପୁନର୍ବାର
ଭୋକ—କ୍ଷୁଧା
ହାଇ—ଆଳସ୍ୟରେ ହାଇ ମାରବା
ଉଷଧ୍—ଔଷଧ
ଅବଧାନ—ଗୁରୁ ଇତ୍ୟାଦ ବହୁ ଓଡ଼ିଆ ଶବ୍ଦ ।

(ଖ) ଫକୀର ମୋହନ ସାହିତ୍ୟ—
ଅଣ—ତରକାରୀ—
ଅଙ୍ଗା—ଜାମା
ଅଭଡ଼ା—ଅବବାହିତ
ଆଳ—ଆଳୁଅ
ଆଣ୍ଡିବା—ଶାସନ କରବା
ଉକା—ବାନ୍ତ
ଉହାଡ଼—ଆଡ଼ୁଆଳ
ଉଗାଡ଼ବା—ଓଲଟାଇବା
ଉତ୍ତୁଣି—ବର୍ତ୍ତମାନ

*— ୮ ଜାନକୀ ବଲ୍ଲଭ ଦାସ, ଲଗ୍‌ଭଗ ୮୦ ବର୍ଷଙ୍କ ଠାରୁ ସଂଗୃହୀତ ହୋଇ-ଥିଲ । ଗ୍ରା:—ବଳଭଦ୍ରପୁର, ଥାନା:-ଦାନ୍ତନ, ଜି:-ମେଦନୀପୁର ।

Digitized by srujanika@gmail.com

ଉଭୁଡ଼ା ପଡ଼—ପ୍ରତଯୋଗିତା କର
କବଟା—କପଡ଼ା, ଲୁଗା
କଚ୍ଛମ—କଇଁଛ
କାଦ—କାଦୁଅ
କାଡେ—ପରମାଣ ବାଚକ ଶବ୍ଦ
କସ—କ'ଣ
କେନେ—କାହିଁକି
କେହ୍ନ—କୌଣସି
ଖସ୍‌ଲତ୍—ଅଭ୍ୟାସ
ଖରକଣା—ଘରଝଡ଼ା ମଇଳା
ଖାବ୍‌ଲେ—ଘୂଳାଏ
ଘାଉଡ଼୍—କ୍ଷତ
ଡାବ—ଡାଲକା
ଡାଟଙ୍ଗା—ଆଶ୍ଚର୍ଯ୍ୟ
ଘାର୍ଲା—ସ୍ତ୍ରୀ
ତେଜବର—ତୃତୀୟ ବାର ପରିଗ୍ରହ କରୁଥିବା ବ୍ୟକ୍ତି
ପତ୍‌ର୍—ଶୁଖିଲ୍ ପତ୍ର
ପଲ୍ଲଣ—ବଳଦ ପିଠିରେ ପଡ଼ୁଥିବା ଗଦି
ବଡ଼ବା—ହୃଦୟଙ୍ଗମ୍ କରିବା ।

(ଗ) ବସନ୍ତକୁମାର ଶତପଥୀ—(ଆଉବୁଢ଼ୀ) :—

କାମରୂଣୀ—ସ୍ତ୍ରୀକବଣୀ
କହ୍ନଥନ—କହ୍ନଥିଲ
ଆସିମି—ଆସିବ
ବେଇଛ—ଜନ୍ମ ଦେଇଛ
ଘୂଆଙ୍ଗ—ବଳ, ବୃଦ୍ଧି
ଠୁକୁରୁ ମୁରୁର୍—ପ୍ରୟୋଜନୀୟ କାର୍ଯ୍ୟ

ଗତର—ଶକ୍ତି
ଫେଚେକା—ରଙ୍ଗରସିଆ, ଖଲବୁଦ୍ଧିଆ ସମ୍ପନ୍ନ ।
ମୁରୁ ମୁରୁ—ଅସନ୍ତୁଷ୍ଟ ହୋଇ ମନକୁ ମନ ଅସ୍ପଷ୍ଟ ସ୍ୱରେ ଧୀରେ ଧୀରେ କହିବା ।
ପିଲେଟ୍—ପ୍ଲେଟ
ଖଟିମି—କାମ କରିବ ।

ମଗୁଶିର-ମାର୍ଗଶିର | ଠାପେଇ-ମଠେଇ | ପର୍ଚ୍ଛିତ-ପ୍ରାୟଶ୍ଚିତ
କଣାକଣି-ପ୍ରବଳ | ଅଦ୍ଦକନ୍ଦ-କୋଣ ଅନୁକୋଣ | ବନ୍ଧୁଦାସ-ବନ୍ଧୁ କୁଟୁମ୍ବ

Digitized by srujanika@gmail.com

ଲୁକ—ଲେକ
ବଡ଼ରୋଗୀ-କୁଷ୍ଠ ରୋଗୀ
ଜୁଡ଼ା-ତେଲ
ପୁଆଡ଼-ପ୍ରସୂତ
କାଠ-ଆଶ୍ଚର୍ଯ୍ୟ ଚକିତ/ ନିସ୍ପନ୍ଦ ଭାବ ।

(ଘ) ମନୋଜ ଦାସଙ୍କ କଥା ଓ କାହାଣୀ :
ପିଠା ପଡ଼ା—ଶୁଖି ଯାଇଥିବା
ଆବାକାବା—ଆଶ୍ଚର୍ଯ୍ୟ
ହାଉ ହାଉ—ଖୁବ୍ ବଡ଼ ପାଟିରେ (ଉଚ୍ଚ ସ୍ୱରରେ)
ଗଂଗା ଜଳିଆ—ମିଛୁଆ ଅର୍ଥରେ
ବଡ଼ ରୋଗ—କୁଷ୍ଠ ରୋଗ
ଭୂଆ—ଅଣ୍ଡିରି
କାଠେଇ ଖିଆ—କାଠଖିଆ
ସାଇବ—ସାହେବ
କସ—କ'ଣ

※ ପେଟ୍ରୁଲ—ପେଟ୍ରୋଲ
ହାଁଶାଳ—ହାଣ୍ଡିଶାଳ
ମୁ୍ୱଁମ୍—ଅମଳ ସମସ୍ତ
ରକମାର—ବିଭିନ୍ନ ପ୍ରକାର
ପିମିଳ ସାରଜନ୍—ସିଭିଲ ସର୍ଜନ
ରେଂଗାମ୍—ରେଂଗୁନ୍
କେନେ—କାହିଁକି ଇତ୍ୟାଦି ।

(ଙ) ନୀହାର ରଞ୍ଜନ ହୋତା : ( ଅସ୍ତି ଭାଗୀରଥୀ ତୀରେ )
ଗୋଠାଣୀ—ଗୋଚର ଭୂମି
ଦୁଆ—ନଈ
ଫରକ—ଫେଣ୍ଟାଇ
ଧୂଳିଆ ଆଳୁଅ—ଫିକା ବା ଅଳ୍ପ ଆଳୁଅ
ଖାସ୍ତପ—ମନ୍ଦ
ଭଣ୍ଡି—ସୁଯୋଗ କର
ଟହଲ—ବୁଲିବା
ସାଙ୍ଗ—ସର୍ବାଂଗ

Digitized by srujanika@gmail.com

ମିନଟେ—ଗୋଟିଏ ମିନଟ୍
ଏକାଣିଆ—ଏକୁଟିଆ

(ଚ) ମୃଗାଙ୍କ ମୋହନ ସାହୁ :

(୧) ଶିଶିର୍ ବନ୍ଦୁ ;
ତଲାସ—ଖୋଜିବା
ଘୁମ୍—ନିଦ
ଏକଲା—ଏକା
ଆସ—ରହିବା (ଭରସା)

(୨) ଶାନ୍ତିର ଉପାନ୍ତେ;
ଟହଲ—ବୁଲିବା
ଅଜର୍ଛା—ପ୍ରାଣମୂର୍ଚ୍ଛା
ମୁର୍କି ହସ—ସ୍ମିତ ହସ
ଫସକି ଯିବା—ବିନଷ୍ଟ ହେବା
ଚଟିବା—ରାଗିବା
ଜଇଁ—ଜ୍ୱାଇଁ
ଉଲୁଗୁଣା—ଶେଷୁଣା, ଗୋଡ଼, ଦୁର୍ଗୁଣ ମିଶ୍ର ଓ ଗାଳି
ଛେପୀ—ରାଗି
ଗୋସାପ—ଗୋସେଇଁ ବାପ
ସାବାଡ଼—ବିନଷ୍ଟ
ଖିଜ୍‌ମତ—ହେପାଜତ୍
ଫାଲ୍‌ତୁ—ମୂଲ୍ୟହୀନ
ଭୁଇଁ ଫୋଡ଼—ଜବର୍‌ଦସ୍ତ
ଦଇବାତ୍—ଦୈବ ଯୋଗରୁ

(ଛ) ମଧୁସୂଦନ ଦାସ :—(ନିମଗ୍ନ ବନ୍ଧି)
ଇଲେଟିର—ଇଲେକ୍ଟ୍ରି
ଲଟ ପଟ—ବ୍ୟସ୍ତ
ହାଲ ଯିବା—ଶୁଖିଯିବା (ଦୁର୍ବଳ ଅର୍ଥରେ)
ଗିଲାସ—ଗ୍ଲାସ
ଲୁଖୁରା—ତେଲ ଲାଗି ନଥିବା

Digitized by srujanika@gmail.com

(ଜ) ରମାକାନ୍ତ ବେହେରା : (ଅନେକ ଇଚ୍ଛାର ପରେ)

ବେଜାଏ—ବହୁତ
ଫଟ୍‌କିନା—ହଠାତ୍
ବକ୍ ବକ୍—ବିରକ୍ତିରେ କଥାବାର୍ତ୍ତା କରିବା
ସିନ୍ତ—ସେମିତ
ବଟେଇ—ବଳେଇ ଦେବା
ଗମ୍—ଚଳନ୍ତା
ଟିଟ୍‌କାରି—ବିଦ୍ରୂପ
ଆଭଣ୍ଡିବା—ଘାଣ୍ଟିବା
କୁନ୍ଥ କୁନ୍ଥ—ଅସନ୍ତୁଷ୍ଟ
ଏ କ୍ଷୁଣି—ବର୍ତ୍ତମାନ
ଠଣ୍ଡା—ଥଣ୍ଡା
ଣିପା—ଘରବାଡ଼ି
ଜୁଆଣ—ଯୁବକ
ଆକ୍‌ପାକା—ବ୍ୟସ୍ତ
ବେଳସୁଁ—ଶୀଘ୍ର
ପେଯୀ—ପିଉସୀ

(ଝ) ଗିରିବାଳା ମହାନ୍ତି (ଗଳ୍ପ : ପକ୍ଷୀଡିଭର ପ୍ରଥମ ପଦ୍ମାଜଣ୍ଟ-ଦଶନ୍ତ ପ୍ରକାଶନ)।

ଭୁସ୍‌କିନା—ହଠାତ୍
ଝଟ୍—ଶୀଘ୍ର
ଚୁଲି—ବାଳ
ଫପ୍‌ଳା—ଧୀର ଓ ଶବ୍ଦହୀନ ଭାବରେ
ତାନ—ଝଗଡ଼ା/କଳି
ବେବସ୍ଥା—ବ୍ୟବସ୍ଥା
ଧେର—ଦେହର
ମେନ୍‌ଙ୍କା—ମାନଙ୍କ
ଇଠ—ଇମିତ
ଝାଂପି—ଶୀଘ୍ର ଧରିନେବା
ଯୁର—ଶକ୍ତ
ଝେର—ସଙ୍କୁଚିତ କେଶ

Digitized by srujanika@gmail.com

ଖାଲିଟାର—ଉଦ୍ଦେଶ୍ୟ ବିହୀନ ଭାବରେ
ହେର୍‌କା—ପ୍ରଲୁବ୍ଧ
ଏ ସନ—ଏ ବର୍ଷ
ସିଂଠି—ଯେମିତି
ଝଂକର—ଅଝଟ
ଏକଦମ୍—ଏକାବେଳକେ
ପିନ୍ଧ—ପଣ
ଭେଣ—ବେଣ
ହ୍ୱାବା—ହ୍ୱାଓ୍ୱା
ଅଟ୍‌କ—ଅଟକ
ନୁକ—ଲୋକ
ସୁନ୍ଦୁର—ସିନ୍ଦୁର
ବିଲିକ—କାରଣ ଅର୍ଥରେ
ବଇ—ବହି
କିଂତା—କେମିତିକା

**ବ୍ୟକ୍ତିଗତ ସଂଗ୍ରହ :**

ଅକଥା—କହିବା ଅନୁପଯୋଗୀ (ଗାଳି ଓ ଅଶ୍ଳୀଳ ସୂଚକ) କଥା ।
ଅକ୍ତିଆର—ଆୟତ୍ତ ।
ଅଖା—ଭୁଗ୍ ଜାତୀୟ ଛଣ ବାଣିରେ ତିଆରି ଥଳି ବିଶେଷ ।
ଅଗଣି—ନାମ ବାଚକ ଶବ୍ଦ । ଯାହାର ନାମ ଜନ୍ମବେଳେ ଗଣାପଢ଼ି ହୋଇ ନଥାଏ ।
ଅଘା—ଲକ୍ଷ୍ୟ ।
ଅଟଙ୍ଗା—ଶକ୍ତ ନଡ଼ା ଗୁଚ୍ଛ ।
ଅଟକେଇବା—ଆକଟ କରିବା/ବନ୍ଧୁବାନ୍ଧବଙ୍କୁ ରହିବା ପାଇଁ ଅନୁରୋଧ କରିବା ।
ଅଞ୍ଚେଇବା—ମୁହଁ ଧୋଇବା ।
ଅଣବାବୁଆ—ପିତୃହୀନ ।
ଅଣ୍ଡା ପର୍ଚିତ—ଅଣ୍ଡା ଯୂତା ।
ଅଣ୍ଟେ ସଣ୍ଟେ—ଆକା ପାକା ।
ଅଧରସିବା—ତଳକୁ ଖସିଆସିବା ।

Digitized by srujanika@gmail.com

ଅନ/ଅଣ— ତରକାରୀ/ଝୋଳ ।
ଅର୍ତ୍ତ—ଦେବୀ ମୂର୍ତ୍ତିର ଅଂଶ ବିଶେଷ ।
ଅବାଗିଆ—ଚପଳ ।
ଅବାହୁଲା—ଅଭିଆଡ଼ ।
ଅମଳ/ଅମୂଳ—ଲବନକାଳ ।
ଅଲେଇଷା—(ଗାଳି ଅର୍ଥରେ) ଅଳ୍ପ ଆୟୁ ।
ଅଶୁକ— ରୋଗୀ ।
ଅଶୁଦ୍ଧଆ—ଅଶୌଚ ।
ଅଶୁଦ୍—ଔଷଧ ।
ଅଷ୍ଟୁଘଡ଼ି—ସର୍ବଦା ।
ଅସ୍‌ଲ— ଅସରପା ।
ଅସା—ଅଗାଡ଼ି/ନିଷ୍ଫଳ ।
ଅହଲ୍ୟା—ପ୍ରତିହିଂସା ।
ଅହ୍ଣବେଳ—ଉପରଓଳି ।
ଅଡ଼ାଦିଆ—ଗୃହ ନିର୍ମାଣ ନିମନ୍ତେ ପ୍ରାରମ୍ଭିକ କାର୍ଯ୍ୟାନୁଷ୍ଠାନ ।
ଅଢ଼େଇ ଆଣିବା—ଖେଦ ଆଣିବା ।
ଆଇବାସ—ଅଭ୍ୟାସ ।
ଆକ—ଆଲୁଅ ।
ଆଙ୍କ—କାଟି ।
ଆଗ୍‌ଲ—ଆଗରେ ।
ଆଘର—ଆଗର ।
ଆଟ/ଆଟୁ—ମାଟି ଘରର ଭିତ ।
ଅଣ୍ଡାଳିବା—ଖୋଜିବା ।
ଆଢ଼ଆ—ଉଚ୍ଚ ଭୂମି ।
ଆହାଟା—କୌଣସି ବସ୍ତୁକୁ ନିର୍ଦ୍ଦେଶ ସୂଚକ ଶବ୍ଦ ।
ଇଖୁଣି—ବର୍ତ୍ତମାନ ।
ଇଷଡ଼— କଷ୍ଟା ।
ଇହୁଣ୍ଟ୍—ବର୍ତ୍ତମାନ ।
ଇଲଶ—ଔଷଧ ।
ଉକା—ବାନ୍ତି କରିବାର ପୂର୍ବ ଉପକ୍ରମ ।

Digitized by srujanika@gmail.com

ଇଷ୍‌ଣି—ବର୍ତ୍ତମାନ ।
ଇଷ୍ଟୁଣି—ନଡ଼ା ପଗୁଳ ପକାଭେ ସହାୟକ ଉପକରଣ ବିଶେଷ ।
ଉଗାଳିବା—ଆକର୍ଷ କରିବା ।
ଉଚ୍ଛୁଣିକା—ବର୍ତ୍ତମାନ ।
ଉଜାଡ଼ିବା—ପାଲଟିବା ।
ଉତା—ଓଳି । ଦିବା ରାତ୍ରିର ଅଂଶ ବିଶେଷ ।
ଉଦ୍‌କୁଟୁଲୀ—ଅଧୈର୍ଯ୍ୟ ହେବା ।
ଉଦୁଆଁ—ମେଲା ।
ଉଭା—ଠିଆ ।
ଉମର/ଉମ୍ବର—ଜୀବନକାଳ ।
ଉଗ୍ରଇବା—ଅଣ୍ଟିବା ।
ଉଡ଼ାହେବା—ଉପରେ ଝୁଲିବା ।
ଉଲର—ବାଦଲ ।
ଉଲିବା—କାଢ଼ିବା ।
ଉଲୁଗୁଣି/ଉଲଗୁଣ୍ଡି—ଲୁଗାଦି ରଖିବା ଲାଗି ଘରେ ଟଙ୍ଗା ବାଉଁଶ ଖଣ୍ଡ ।
ଏଇନାଗ  ବର୍ତ୍ତମାନ ।
ଏକ୍‌ଲା—ଏକା ।
ଏଙ୍ଗ୍ରା—ଅଙ୍ଗାର ।
ଏଛୁଣ୍ଡ୍‌କା— ବର୍ତ୍ତମାନ ।
ଏଣ୍ଡି—ଦୁଆର ମୁହଁ ।
ଏରକନ୍‌—ଏପଟ ।
ଏସନ—ଏବର୍ଷ ।
ଏଛୁଣ୍‌— ବର୍ତ୍ତମାନ ।
ଓଡ଼—ହାକୁଟି ।
କକରଧନ—ହଇବ୍ରାଣ ।
କଙ୍କୁରୁ—କଙ୍କାରୁ ।
କଟେ—ଟିକେ/ଟିକିଏ ।
କଠା—ବେତରେ ନିର୍ମିତ ଶସ୍ୟ ସାମଗ୍ରୀ ମାପିବାର ଉପକରଣ ।
କତା/କାତାନ—କଟୁସ୍ୱ ।
କଢ—ପାଖ/ନିକଟ ।
କଦ୍ୱୋଲ—କଦଳୀ ।

Digitized by srujanika@gmail.com

କରେଇ—ଧାନ୍ୟାଦ ଶସ୍ୟ ସାମଗ୍ରୀ ସଂରକ୍ଷଣ ନିମନ୍ତେ ବାଉଁଶ ନିର୍ମିତ ଗୋଲାକାର କୋଠି । ଲୌହ ନିର୍ମିତ ରନ୍ଧନ ପାତ୍ର ବିଶେଷ ।

କବ୍ଜ—କବାଟ ।

କମାଣିଦ୍ୱାର—ଦ୍ୱେଜଗାରଆ ।

କାକର—ଅଣ୍ଡା ।

କାଙ୍କେଇ—କାଠ ପାନିଆ ।

କାକ୍—କାମ ।

କାଢ଼େ—କୁଆଡ଼େ ।

କାରେ—ପର ।

କାଲେଇ—ଝିଙ୍କିପୋକ ।

କିଆଣ୍/କେସ୍ୱାଣ୍—କେଜାଣି ।

କିନ୍ତ—କେମିତ ।

କୁମ୍ଭକାଠି—ଗୁବ୍‌କାଠି ।

କୁନ୍ଦୁରୁଖାଇ—କାନ୍ଥରେ ନିର୍ମିତ ଠଣା ।

କୁନ୍ଥା—ଦାଢ଼ ନ ଥିବା ଯନ୍ତ/ଅଳସୁଆ/ଦୀର୍ଘସୂତ୍ରୀ ।

କୁନ୍ଥୁ—କୃପଣ ।

କୁର୍କୁଟୀ—କାଇପୋକ ।

କେଉଠି/କେଏଠି—କେଉଁଠାରେ ।

କେମ୍ପିବା—କଣ୍ଢଇବା ।

କେନ—କୌଣସି ।

କେଭ—କେବେ ।

କେସଣ୍ଡି—ତେଲୁଣି ପୋକ ।

କେଁକଟ—ଏଣ୍ଡୁଅ ।

କେଁଠକ୍—କୁଆଡ଼େ ।

କେଁଠେ—କେଉଁଠି ।

କେଁଦ—କୁଆଡ଼େ ।

ଖଉର—ଭଜା/ଶୁଖାଇ ।

ଖପ୍—ଶୀଘ୍ର ।

ଖରସିବା—ଭଜା ଟାଣ ହେଇସିବା ।

ଖସରତ—ଅଭ୍ୟାସ ।

Digitized by srujanika@gmail.com

ଖାଣ୍ଟିବା—ଟାଙ୍ଗିବା ।
ଝୋଲ—ଖୋଲ ।
ଖୁଣ୍ଟି—ଡାଳଗଜା ।
ଖୁସୁରୁକାଣ୍ଡ—କୌଶଳ/ଉପାୟ ।
ଖେଁକ୍ରେଇବା—ବଦ୍‌ରୂପ କରିବା ।
ଖେଣ୍ଟେଇବା—ଥଟ୍ଟା କରିବା ।
ଖେଡ଼ୁଆ—ଠେଲୁଆ ।
ଗଇଁ—ଭଣେଇ ।
ଗଜର୍‌ଗଜର୍—ଅଧିକ କଥା ହେବା ।
ଗଡରକୁଡ଼ୀ—ଠକ/ଅଳସୁଆ ।
ଗମ୍—ଚନ୍ଦ୍ରା ।
ଗଡ଼ା—ହ୍ରଦ ।
ଗାଦେଇ—ପ୍ରଚୁର ।
ଗାଧିକ୍—ଗାଧୋଇବାକୁ ।
ଗାମ୍‌ଚ/ଘିମିରି—ଚର୍ମରୋଗ ବିଶେଷ ।
ଗିଳବା—ବେଶି କଥା କହିବାରେ ଅଭ୍ୟସ୍ତ ।
ଗିର୍ଦ୍ଦିମା—ଶାଗୁଣା ।
ଗିନା—ଷ୍ଟେଟ ପାତ୍ର ବିଶେଷ ।
ଗୁଜ ଗେଣ୍ଡା—ଷ୍ଟେଟ ଗେଣ୍ଡା ।
ଗୁଧୁଡ଼ି—କନ୍ଥା ।
ଗେଣ୍ଡୁଆ—ମିଛୁଆ ।
ଗେରଗେଡ଼ା ବର—ତନଥର ବାହା ହେବା ବର ।
ଗେଣ୍ଣା—ଅପଦାର୍ଥ ବାଚକ ଶବ୍ଦ ।
ଗେଣ୍ଠା—ଅପଦାର୍ଥ ବାଚକ ଶବ୍ଦ ।
ଗୋସାପ—ଗୋସାଇଁ ବାପ ।
ଘଟି—ଜଳ ରଖିବା ପାତ୍ର ବିଶେଷ ।
ଘାଉଡ଼—ସାପ କାମୁଡ଼ା ଅର୍ଥରେ ।
ଘିନିବା—ଧାରଣ କରିବା ।
ଘିମିରି—ଚର୍ମରୋଗ ବିଶେଷ ।
ଚହ୍—ହେୟଜ୍ଞାନ ସୂଚକ ଶବ୍ଦ ।

Digitized by srujanika@gmail.com

ଚଟ୍‌କନା—ଶୀଘ୍ର ।
ଚରକଟିବା—ଚକଟିବା ।
ଗୃହ—ମଷିଣା ।
ଗ୍ରହ୍ନ—ଚନ୍ଦ୍ର ।
ଗୃଡ଼—ଗ୍ରଗ/ଅଭିମାନ ।
ଗୃଲଣ—ଗୃଲୁଣୀ ।
ଚୁର୍ଜି ତେଲ - କେରୋସିନ ତେଲ ।
ଚୁମୂଳା—ନଡ଼ା, ନଳିତା କମ୍ବା କନାରେ ମୋଡ଼ା ହୋଇ ନିର୍ମିତ ଉପକରଣ ବିଶେଷ ।
ଚୂଆ—କୂଅ ।
ଚଙ୍ଗାଚଲ - ଖଳୁଆ ।
ଛଯ୍ୟଗୃଡ଼—ସରଳ ବୁଦ୍ଧି, ଲମ୍ବ ।
ଗ୍ରୁମ୍ଡା—ଗ୍ରୁମୂଡ଼ଆ ।
ଛୁଆ—ପୁଅ ।
ଛୁଆଳୀ—ପ୍ରସୂତି ।
ଛୁଇ—ଝିଅ ।
ଛୁଞ୍ଚେଇବା—ପାଣି ପେନିବା ।
ଛୁଡକା—ସୂଡକା ।
ଛେଳବା—ବାଧା ଦେବା ।
ଝକ୍‌ମାର—(ଦୁଃଖରେ) ପ୍ରତିଜ୍ଞା କଣ ।
ଜବ—ବଡ଼ରେଇବା ।
ଜଳପେଣ୍ଡେଇ—ଗୁଜ ଗେଣ୍ଡା ।
ଜହଙ୍ଗ—ନିପୁଣ ଅର୍ଥସୂଚକ ।
ଜୁର୍ଦ୍ଧି—ଜ୍ୱାର୍ଦ୍ଧି ।
ଜୁଗ୍‌ବଣିଆ—ଅପରିଚ୍ଛନ୍ନ ଅର୍ଥରେ ।
ଜୁଲୁମ—ଜବରଦସ୍ତି ।
ଜନ୍‌ଲ—ଝରକା ।
ଝାଟେଇବା—ପରିଷ୍କାର କରିବା ।
ଝାଳ—ଲଙ୍କା/ସ୍ୱେଦ ।
ଝି—ଝିଅ ।
ଝିଙ୍ଗା—ଜହ୍ନି ।

Digitized by srujanika@gmail.com

ଝୁଙ୍କ୍—କଦ୍ ।
ଝୁଲ ମାରବା—ଅତ୍ୟଧିକ ଭୋକ ହେବା ।
ଝଙ୍କ—ବାପି/ଝଟା ।
ଝିଙ୍ଗା—ବଦ୍‌ଗ୍ରଗି ।
ଝୁଲୁଘ—ସ୍ୱେଛ ଭୂମି ଖଣ୍ଡ ।
ଠାପୁଆ—ମଠୁଆ ।
ଠାଣ୍ଡା—ଥଣ୍ଡା ।
ଡ଼ର୍ଗି—ଡାଢୁଆ ।
ଡାବ—ଚାଙ୍କି ।
ଡାହୁ—ପଡ଼ୁଆ ।
ଡ଼ୁଙ୍ଗି ଦେବା—ଡାକଦେବା ।
ଡୁଣ୍ଡୁ—ବାଜା ।
ଡୁବ୍‌ର—ଝଣ୍ଡିଆ/ବାଙ୍ଗ୍‌ର ।
ଡାମା—ଡାଡୁଆ ।
ଢେବୁଆ—ଗୁଡ ।
ଡର୍‌କା—ଡରବା ।
ଡାଟକା—ଆଶ୍ଚର୍ଯ୍ୟ ।
ଡାଟିଆ—ପାନ ବିଶେଷ ।
ଢଅଣ୍—ଡରକାଘ ।
ତୁନେ ତୁନେ—ତୁନ ତୁନ/ଆସ୍ତେ ଆସ୍ତେ ।
ତୁରୁତୁରିଆ—ଚଞ୍ଚଳ ପ୍ରକୃତିକ ।
ତୁମ୍‌ହେ—ତୁମ୍ଭେ ।
ଥାନ—କପଡ଼ା/ସ୍ଥାନ ।
ଥାରୁଆ—ଉଦ୍ୟୋକ୍ତା ।
ଦଉଡ଼ା—ଦଉଡ଼ି ।
ଦଦେଇ—ବଡ଼ବାପା ।
ଦଦା/ଦାଦା—କକେଇ/ଭାଇ/ଭଣୋଇ
ଦୂଜବେଇ—ଦ୍ୱିତୀୟ ଥର ବିବାହିତ/ବିବାହିତା ।
ଦହଗଣ୍—ହଇରାଣ ।
ଦାକୁ—ଘରକୁ ।

Digitized by srujanika@gmail.com

ଦାଢ —କକା/ଅଜା/ଗୋସେଇଁ ବାପ ।
ଦେଇକ—ତା’ପରେ ।
ଧକ୍‌ଲ—ହୁଗୁଲା ।
ଧର୍କିବା—ହାଲିଆ ହୋଇ ଶୀଘ୍ର ଶ୍ୱାସ ନେବା ।
ଧସିବା—ଭୁଷୁଡ଼ି ପଡ଼ିବା ।
ଧୁର୍କିବା—ଧୂଆଁ ଦେଇ ଫୁର୍କିବା ।
ଧୂବୁଣା ହାଡ଼—ଅନୁଜଂଘାସ୍ଥି ।
ଧୂରଆ—ଦୂର ।
ନକ—ପାଦବିଶେଷ ।
ନଦ୍/ନୋଦ୍—ନଦୀ ।
ନଦାଳ—ଗଡ଼ାଣିଆ ।
ନହଡ଼—ଢେଉ ।
ନହତା—କଡ୍ତେଇ ।
ନସ୍—ନଦୀ ।
ନଲଟାଇ—ଲେଉଟାଇ ।
ନାକାଲ—ହଇରାଣ ।
ନାକୁରୁ—ଅଳ୍ପ ବୋଧକ ଶବ୍ଦ ।
ନାଗିଣୀ କରବା—ଚୁକ୍ତିବଦ୍ଧ ହୋଇ ମନୁଷ୍ୟ ଘରରେ ରହିବା ।
ନାନୀ—ବଡ଼ ଭଉଣୀ/ଆଈ/ଗୋସେଇଁ ମାଆ ।
ନାହାଲିଆ—ଚିତ୍କାର କରି ଉଚ୍ଚ ସ୍ୱରରେ କଥା/କଳି କରିବା ।
ନାଲ୍‌ଟିଣି—ଲଶୁନ ।
ନିଘା—ଲକ୍ଷ୍ୟ ।
ନିହାଲ—କୃତାର୍ଥ ।
ନୁଆଁଣ—ନମ୍ର ହେବା ।
ନୁକ୍‌ସାନ—କ୍ଷତି ।
ନିର୍‌ଧୁମ୍—ଅତିଶୟ ।
ନୁଖୁରୁ—ତେଲ ଲଗିନ ଥିବା ।
ନେକା—ଲଙ୍ଗା ।
ନେଖା—ସମ୍ପର୍କ ।
ନେଣ୍ଡା—ବାମ ହାତ ।

Digitized by srujanika@gmail.com

ନେଠା—ଖେଳ ଅର୍ଥସୂଚକ ।
ନେପ—ରେଜେଇ
ନେମ୍ପୁ/ନମ୍ପ—ଲ୍ୟାମ୍ପ
ପଖାଡ଼ି—ଛଣକାଠି
ପହଁରୁ—ଝରକା/ପହଁରିବା
ପହ୍ନେଇବା—ପହ୍ନାକୁ କ୍ଷୀର ଆସିବା/ଆଗରୁସ୍ତ କୌଣସି ବିଷୟକୁ କହି ପକାଇବା ।
ପାନ୍ଥୁ—ଠକ/ଅଲସୁଆ/ଲଢ଼େଇରେ ହାରିଥିବା କୁକୁଡ଼ା ।
ପାଣିହଗ୍ରୁ—କେଉଟ
ପାନ୍ଦାଲ—ଘର ସ୍ଥଳର ତଳ ଅଂଶ ଭୂମି (ଭଲ)
ପାଲ—ଭୂଇଁ ଖର୍ଜୁର
ପିଛଲା—ପିଚ୍ଛୁଡ଼ା
ପିନ—ପର/ଭଲ
ପିସିମାଁ—ପିଉସୀ ମାଆ
ପୁଡ଼ା—ଧାନ/ଚାଉଳ ରଖିବା ନିମନ୍ତେ ନଡ଼ାରେ ନିର୍ମିତ ଉପକରଣ ବିଶେଷ ।
ପେଡ଼ା—ପିଜୁଳି
ପୋଖରୁ—ପୋଖରୀ
ଫତେ—ଶେଷ
ଫାଙ୍କେଇବା—ପାଣି ଘେନିବା
ଫାନିଆ—ପାନିଆ
ଫାର୍ଣ୍ଣିଢଙ୍ଗା—ଅବାଗିଆ/ବାହାଘିଆ ଅର୍ଥସୂଚକ;
ନଳଫୁଙ୍କା—ଫୁଙ୍କନଳି
ଫୁଲ୍—ଠଣା
ବଇତାଲ୍—ବୋଇତାଳୁ
ବକ୍ବକ୍/ବଜ୍ବଜ୍—ଅଧିକ କଥା ହେବା
ବକିବା—ଗାଳି କରିବା
ବଚ୍ଚିବା—ବୋଲିବା ।
ବରେନ୍ଧି—ଦଉଡ଼ି
ବଚ୍ଚିବା—ବୋଲିବା
ବରେନ୍ଧି—ଦଉଡ଼ି

Digitized by srujanika@gmail.com

ବା—ବାପା

ବାଗ୍ସ୍—ବାକ୍ସ

ବାଟେଇ ଦେବା—ବଳେଇ ଦେବା

ବାଣ୍ଡିଆ—ଟଣ୍ଡିଆ

ବାତ୍‌ଫୁରୁସି—ହାଉହସି

ବାଭ୍ଣ/ବାହ୍ମୁଣ—ବ୍ରାହ୍ମଣ

ବାରଆଡ଼—ବିଭିନ୍ନଆଡ଼

ବାରମାସିଆ—ବର୍ଷସାରା ଚୁକ୍ତିରେ ରହିଥିବା ମଜୁରିଆ

ବାହ୍ୱାଲ—ପଜ

ବାଢ଼ଣ—ଝରକା

ବିତ୍‌ପାଠିଆ—ଦୁଷ୍ଟ

ବୃଗେଇବା—ବୋବାଇବା

ବେଗାବେଗ—ଶିଘ୍ରଶିଘ୍ର

ବେଜାସୁଁ—ପ୍ରଚୁର

ବେହି—ହିଅ

ବେଠ୍‌ଣା—ଚୁମୁଳା

ବେଢ଼େ—ବହୁତ

ବେଲ—ଖାଦ୍ୟପାତ୍ର ବିଶେଷ

ଭଉତ—ବହୁତ

ଭକୁଆ—ବୋକା

ଭିଲିକ—ଭେଳିକ

ଭୁଇଁ ନାହ୍‌କା—ଭୁଇଁରେ ଲାଗୁଥିବା

ଭୁଇଁଫୋଡ—ଜବରଦସ୍ତ।

ରେଣି—ଭଣୋଇ

ଭେଡ଼ିବା—ଭର୍ତ୍ତି କରିବା/ନଦ୍ଦେବା

ମନର—ମନରେ

ମସ୍ତେ ମସ୍ତେ—ସୁବିଧା ପାଣ୍ଡିକରି କହିବା

ମାତବର—ନିପୁଣ

ମୁଡକ—ପରିଶ୍ରା କରିବାକୁ

ମେଲବା—ଫିଟେଇ ଦେବା

Digitized by srujanika@gmail.com

ଯୁଗାଡ଼ିବା—ବନ୍ଦୋବସ୍ତ କରିବା ।
ଯୋଡ଼ ଲାଗିବା—ମୈଥୁନ କ୍ରିୟାରତ । (ମନୁଷ୍ୟେତର ପ୍ରାଣୀ କ୍ଷେତ୍ରରେ)
ରକମ—ପରି
ରକମ୍ବାରି—ବିଭିନ୍ନ ପ୍ରକାର
ରନ୍ଧା—ଧାର ବସ୍ଥାନ ଯନ୍ତ୍ର ବିଶେଷ
ରପ୍—ଶୀଘ୍ର
ରସ—ତେଲ
ରଡ଼ି—କାନ୍ଦ (ବଡ଼ ପାଟିରେ କାନ୍ଦିବା)
ରୁହା—ଡାକ/ଏକାଦିକ୍ରମେ
ଶୁକୁଟା—ପତଳା
ଶୁଝିବା—ପରିଶୋଧ/ଗାଳିଦେବା
ସଙ୍ଗଡ଼ିବା—ଯୋଚିବା/ଯୋଡ଼ି ବାନ୍ଧିଦେବା
ସଞ୍ଜେଇବା—ଯୋଗାଣ ଦେବା
ସଡ଼ପ—ସଡ଼କ
ସତାର—ଅପେକ୍ଷା
ସବର୍—ଅଣ୍ଟିବା
ସମ୍ଧା—ପୁଅ କିମ୍ବା ଝିଅର ଧର୍ମବାପ
ସଦ୍ଦୁର—ଠିକ୍
ସାଜ—ପ୍ରଥମ ଇନ୍ଦ୍ରାବର କିମ୍ବା କନ୍ୟା
ସାଦେଇବା—ଶୁଣିବା
ସାନ୍ତ୍ରର—ସାଙ୍ଗର
ସାବାଡ଼—ବିନଷ୍ଟ
ସିନ୍ତ୍ର—ସିମେଣ୍ଟ
ହଅ—ରହ/ଠିଆ ହୁଅ
ହଗିକ୍—ଝାଡ଼ାଯିବା
ହଠ୍—ହଠାତ୍
ହଲ୍କାର—କଟାଲି
ହର—ଘର
ହରଦଡ଼ି—ସର୍ବଦା
ହେରଫେର—ଏପଟ ସେପଟ/କାରସାଦ

Digitized by srujanika@gmail.com

ହସ୍କ—ହଁ
ହାଣ୍ଡ—ହାଣ୍ଡି
ହାମ୍ବାର - ଧାନ୍ୟ ସଂରକ୍ଷଣ ନିମନ୍ତେ ବାଉଁଶ ନିର୍ମିତ ଚତୁଷ୍କୋଣ ବୃହଦାକାର କୋଠି
ହାରକଣୀ—ହାରକେନ୍
ହିଁଠେ—ଏଇଠି/ସେଇଠି
ହିଁଦ—ଏପଟେ/ସେପଟେ
ହିଟ୍‌ପିଟିଆ—ଶିଘ୍ର, ତର୍‌ତର୍ ହୋଇ
ହୁର୍କି—ଗେଞ୍ଜିଦେବା/କାଢ଼ିବା
ହୁଡ଼ା—ଢେଲା
ହୁଣ୍ଡୁର ପଡ଼ିବା—ଝୁଣ୍ଟିବା
ହେକା—ହେଉକା/ପ୍ରକୃତ
ହେଙ୍ଗ୍ରିବା—ଦେଖିବା/ନିରେଖିବା
ହେଣ୍ଡେଇବା—ପ୍ରେରଣା ଦେବା ଅର୍ଥରେ
ହେଣ୍ଡା—ବୋକା
ହେଲୁରୁ—ସେଥିରୁ
ଲୁସେଇବା—ଶିଘ୍ର ଶେଷ କରିବା

**ସହାୟିକା ସୂଚୀ :**


୧ । ମହାପାତ୍ର ଖଗେଶ୍ୱର : ଦକ୍ଷିଣାଞ୍ଚଳ ଓଡ଼ିଆ, ପୃ-୨
ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ସଂସ୍ଥା, ଭୁବନେଶ୍ୱର

୨ । ତଦୈବ

୩ । ସେନାପତି ଫକୀର ମୋହନ : ଆତ୍ମ ଜୀବନ ଚରିତ, ପୃ-୧୦
ଗ୍ରନ୍ଥ ମନ୍ଦିର, ୧୯୮୮

୪ । ସେନାପତି ଫକୀର ମୋହନ : ଆତ୍ମଜୀବନ ଚରିତ, ପୃ-୧୦, ୧୯୮୮

୫ । Basu A. : Report (Ed.) P. 222
ମେଦିନୀପୁର, ତରୁଣଦେବ ଭଟ୍ଟାଚାର୍ଯ୍ୟ, ୧୯୭୯


Digitized by srujanika@gmail.com

୬। ଦତ୍ତ ରମେଶ ଚନ୍ଦ୍ର : ଆଜିର ବିକ୍ଷିପ୍ତ ଭାବନା, ପୃ ୨୩-୨୪
୧ମ ସଂ ୧୯୬୩

୭। ଭଟ୍ଟାଚାର୍ଯ୍ୟ ତରୁଣ ଦେବ : ମେଦିନୀପୁର-୧୯୭୯

୮। ସେନାପତି ଫକୀରମୋହନ : ଆତ୍ମଜୀବନ ଚରିତ; ପୃ ୧୧-୧୨, ୧୯୮୮

୯। Mohanty Nibedita : Oriya Nationalism, The quest for a United Orissa, 1866-1936 (Mss.) P.-184

୧୦। Pattnayak B. C. : The Prachi, P. 103-104, 1931

୧୧। Ibid, P.-104

୧୨। ପତି ମହେଶ୍ୱର : ଆଧୁନିକ ବାଂଲାର ଅଧିବାସୀ ଉତ୍କଳୀୟ ଭାଇଦେର ପ୍ରତି ନିବେଦନ, ୧୯୪୦

୧୩। ତତ୍ରୈବ

୧୪। ଷଡ଼ଙ୍ଗୀ ଦୀପକ : ଚରୈବେତି (୧୯୮୮-୮୯)
ବାରିପଦା ସାହିତ୍ୟ ସଂସଦ ମୁଖପତ୍ର (୧)।



Digitized by srujanika@gmail.com

# ତୃତୀୟ ଅଧ୍ୟାୟ

**ଉତ୍ତର-ପୂର୍ବାଞ୍ଚଳୀୟ ସାହିତ୍ୟ :**

ଶହ ଶହ ବର୍ଷ ଧରି ଓଡ଼ିଆ ସାହିତ୍ୟର ଯେଉଁ ଅଖଣ୍ଡ ପ୍ରଭାବ ସମଗ୍ର ଓଡ଼ିଶା ସାମ୍ରାଜ୍ୟରେ ବିସ୍ତାରିତ ହୋଇଥିଲା, ଉତ୍ତର-ପୂର୍ବାଞ୍ଚଳ ଏଥିରୁ ମୁକ୍ତ ନ ଥିଲା । ଏ ଅଞ୍ଚଳର ପ୍ରତି ଗ୍ରାମରେ ଭାଗବତ ଟୁଙ୍ଗୀରେ ଭାଗବତ ଗୋସାଇଁ ପୂଜା ପାଉଥିଲେ । ଓଡ଼ିଆ ରାମାୟଣ, ମହାଭାରତ, ଭାଗବତ, ହରିବଂଶ ସହିତ ଷୋଡ଼ଯୁଗୀୟ କବିମାନଙ୍କର କାବ୍ୟସମୂହ ନିତ୍ୟ ପଠିତ ହେଉଥିଲା । ଚଟଶାଳୀମାନଙ୍କରେ ଅବଧାନମାନେ ଓଡ଼ିଆ ଭାଷା, ସାହିତ୍ୟ ଓ ସଙ୍ଗୀତ ଶିକ୍ଷା ଦେଉଥିଲେ । ଆଜି ବି ଏ ଅଞ୍ଚଳର ଲୋକେ କଥା କଥାକେ 'ଭାଗବତ'ରୁ ପଦ କହି ଉଦାହରଣ ଦିଅନ୍ତି । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ସବୁଠି ଚର୍ଚ୍ଚା ହେଉଥିଲା । ବହୁ କବି କାବ୍ୟ, କବିତା, ଗୀତ, ଗ୍ରନ୍ଥ ଆଦି ରଚନା କରିଥିଲେ । ରସକଲ୍ଲୋଳ ଓ ରସବିନୋଦକାର ଦୀନକୃଷ୍ଣ ଦାସ ଏ ଅଞ୍ଚଳର ଶ୍ରେଷ୍ଠ କବି । ତାଙ୍କର କାବ୍ୟିକ ପ୍ରେରଣା ଓ ପ୍ରଭାବରେ ଏ ଅଞ୍ଚଳର ବହୁ ଓଡ଼ିଆ ପ୍ରାଚୀନ କାବ୍ୟ, ଚଉତିଶା ରଚିତ ହୋଇଥିବାର ଦେଖିବାକୁ ମିଳେ । ଏ ସବୁ ପ୍ରାୟ ଧର୍ମ ଭିତ୍ତିକ ରଚନା । ରାମ, ଚଣ୍ଡୀ, ଶୀତଳା, ଶିବ, ମନସା ଏବଂ ରାଧାକୃଷ୍ଣ ବିଷୟକ ବହୁ ଉତ୍କୃଷ୍ଟ ଲୌକିକ କାବ୍ୟ ଓ କୀର୍ତ୍ତନ ଏ ଅଞ୍ଚଳର କବିମାନଙ୍କ ଦ୍ୱାରା ରଚିତ ।

ଆଲୋଚ୍ୟ ଅଞ୍ଚଳର ବହୁ ପ୍ରାଚୀନ ସାରସ୍ୱତ ସାଧକ ଉଭୟ ବଙ୍ଗଳା ଓ ଓଡ଼ିଆ ଭାଷାରେ ସାହିତ୍ୟ ରଚନା କରିଥିବାର ଦେଖାଯାଏ । ସଂସ୍କୃତ ଭାଷାରେ ରଚିତ ସାହିତ୍ୟ ମଧ୍ୟ ଦୃଷ୍ଟିଗୋଚର ହୁଏ । ମୁଦ୍ରାଯନ୍ତ୍ର ଓ କାଗଜ ପ୍ରଭୃତି ପ୍ରଚଳନ ପୂର୍ବରୁ ଲେଖନ ଉପକରଣ ଭାବେ ତାଳପତ୍ର ବ୍ୟବହୃତ ହେଉଥିଲା । ଏ ଅଞ୍ଚଳରେ ଓଡ଼ିଆ ଲିପି ଓ ଭାଷା ସହିତ ଓଡ଼ିଆ ଭାଷା ଓ ବଙ୍ଗ ଲିପିରେ ଲିଖିତ ତାଳପତ୍ର ପୋଥିର ବହୁଳ ପ୍ରଚଳନ ଥିଲା । ଦିନୁଦିନ ଏ ସମସ୍ତ ବିନଷ୍ଟ ହେଉଅଛି । ଅନ୍ତତଃ ଗୋଟିଏ ଅପ୍ରକାଶିତ ତାଳପତ୍ର ପୋଥି 'ଧ୍ରୁବ ଚନ୍ଦ୍ରାମଣି' ମୁଁ ନିବନ୍ଧରେ ପୋଥି ତାଲିକାରେ ଉଲ୍ଲେଖ କରିଅଛି । ଆହୁରି ଅନେକ କାବ୍ୟ, ଚିକିତ୍ସା ଶାସ୍ତ୍ର, ଅଷ୍ଟକ, ଗୁଣିଗାରେଡ଼ି ପୋଥି ବି ଅପ୍ରକାଶିତ ଅବସ୍ଥାରେ ରହିଥିବାର ବିଶ୍ୱାସ ।

ସୀମା ସେପାରି ମେଦିନୀପୁର ଜିଲ୍ଲାର ଅଧିବାସୀମାନଙ୍କ ମଧ୍ୟରେ ଓଡ଼ିଆ ସାହିତ୍ୟ ପ୍ରୀତି ଏବେ ବି ପର୍ଯ୍ୟାପ୍ତ ପରିମାଣରେ ରହିଥିବାର ଦେଖାଯାଏ । ଅନେକ ପ୍ରାଚୀନ ଓ

Digitized by srujanika@gmail.com

ଓ ଲୌକିକ ସାହିତ୍ୟ ସବୁ ବଙ୍ଗ ଲିପି (ଓଡ଼ିଆ ଭାଷା)ରେ ପ୍ରକାଶିତ ହୋଇଅଛି । ଏହି ସବୁ ପୁସ୍ତକ ପ୍ରକାଶ କରିବାରେ କାହାର ପ୍ରେସ (କାନ୍ଥି)ର ଅବଦାନ ଉଲ୍ଲେଖ-ଯୋଗ୍ୟ । ଏତଦ୍‌ବ୍ୟତୀତ ଏଗ୍ରା, ମେଦିନୀପୁର, ଦାନ୍ତନ, ଜଲେଶ୍ୱର ଓ ଚନ୍ଦନେଶ୍ୱର ପ୍ରଭୃତି ସ୍ଥାନରେ କେତେକ ପ୍ରେସରେ ଓଡ଼ିଆ ସାହିତ୍ୟ ବଙ୍ଗ ଲିପିରେ ମୁଦ୍ରିତ ହୋଇ ପ୍ରକାଶିତ ହୋଇଅଛି । ଏପରି କେତେକ ମୁଦ୍ରିତ ପୁସ୍ତକ ସଂଗୃହୀତ ହୋଇ ନିମ୍ନରେ ତା'ର ଆଲୋଚନା କରାଯାଉଛି । ଏ ସବୁର ତାଲିକା ପରିଶିଷ୍ଟରେ ଯୋଗ କରିଅଛି । ସଂଗୃହୀତ ସାହିତ୍ୟ ସବୁ ନିମ୍ନ ପର୍ଯ୍ୟାୟରେ ବିଭକ୍ତ । ଯଥା :—

(କ) ଭକ୍ତି ସାହିତ୍ୟ, (ଖ) ବ୍ୟଙ୍ଗ ଓ ହାସ୍ୟରସ, (ଗ) ପାରିବାରିକ ଓ ସାମାଜିକ, (ଘ) ବିବିଧ ଭକ୍ତି ସାହିତ୍ୟରେ ରାମ ସୀତା, ରାଧାକୃଷ୍ଣ, ଶିବ ପାର୍ବତୀ, ଲକ୍ଷ୍ମୀ, ଶୀତଳା, ଗଙ୍ଗା, ମନସା, ସତ୍ୟପୀର (ସତ୍ୟନାରାୟଣ), ଧର୍ମ ପ୍ରଭୃତି ଦେବ ଦେବୀ-ମାନଙ୍କର ଶାସ୍ତ୍ରୀୟ ଓ ଲୌକିକ ମହିମା ଗାନ କରାଯାଇଅଛି । ଜନ୍ମାଷ୍ଟମୀ ବ୍ରତ କଥା, ଗଜସ୍ତୁତି, ହରିଣୀ ସ୍ତୁତି; ଭାଗବତ, ଟୀକା ଭାଗବତ, ଗୁପ୍ତ ଭାଗବତ, ଜଳକେଳି ଓ ବସ୍ତ୍ର ହରଣ, ଶ୍ରୀ ଶ୍ରୀ ରାଧାରାଣୀ ରୋଦନ, ଭଜନସାର, ବାମନ ଜନ୍ମ, ଦେଉଳ ତୋଳା, କାର୍ତ୍ତିକ ମହାତ୍ମ୍ୟ, ସତ୍ୟନାରାୟଣ ପାଲା, ତ୍ରିନାଥ ମେଳା, ପଞ୍ଚାନନ ମେଳା, ଲକ୍ଷ୍ମୀବ୍ରତ କଥା, ବା ଗୁରୁବାର ଓଷା, ଚନ୍ଦନେଶ୍ୱର ମହାତ୍ମ୍ୟ, ରାଧାଷ୍ଟମୀ ବ୍ରତ, ବ୍ରହ୍ମାଣ୍ଡ ଭୂଗୋଳ, ଝୁଲାଭଣା, ସୀତା ଗୋଇ, ଗଙ୍ଗା ମହାତ୍ମ୍ୟ, ଧ୍ରୁବ ଚରିତ ପ୍ରଭୃତି ରଚନା ଭକ୍ତି ସାହିତ୍ୟ ଭାବରେ ବେଶ୍ ଲୋକ ପ୍ରିୟ ।

ଆଧୁନିକ ଫାର୍ସ, ବହୁଆଣ ତାଳ ଓ ବାଇଡ଼ଙ୍କ ଫଳ, ଦହିବାଲୀ ଗୀତ, ପର୍ବୀ ଚନ୍ଦ୍ରା, ଟିଉସନ ମାଷ୍ଟର, ଚେଢ଼ିଆ ଚେଢ଼ିଆଣୀ (ଚଢ଼େଇ ଚଢ଼େଇଆଣୀ)ର ଝଗଡ଼ା, ବୁଢ଼ି ସମୁଦୁଣୀ କଳି ପ୍ରଭୃତି ବ୍ୟଙ୍ଗ ଓ ହାସ୍ୟ ରସାତ୍ମକ ରଚନା ।

କଣଦୀ ଲାଗି ଶାଳ ଭାଉଜର ବିଳାପ, ସୁନ ଶୀ ଝିଅ, ଆଦର୍ଶ ନାରୀ, ସୁନା ଝିଅ, ଗେହ୍ଲା ଝିଅ, ପରଶମଣି, ସଖି ସେନାର ଗାନ ବେହୁଲା ରୋଦନ, ତ ବିଭା ହରଣ ପ୍ରଭୃତି ପାରିବାରିକ ଓ ସାମାଜିକ ସାହିତ୍ୟର ନ ନ ।

କପଟ ପାଶା, କର୍ମଚନ୍ଦ୍ରା ଓ ସ୍ୱାମୀର ଶାକ ପର ବିବିଧ ଲୋକ କାବ୍ୟିକ ରଚନା ବେଶ୍ ଆଦୃତ । ଏଥିରୁ ଏ ଅଞ୍ଚଳ ଅଧିବାସୀମାନଙ୍କର ଓଡ଼ିଆ ଭାଷା ସାହିତ୍ୟ ପ୍ରୀତି ସ୍ପଷ୍ଟ ବୁଝା ପଡ଼ିବ ! ଦକ୍ଷିଣ ମେଦିନୀପୁରର ପ୍ରୀତି ରେ ଖୋଜିଲେ ଏପରି ପୁସ୍ତକ କେତେ ଖଣ୍ଡି ନିଶ୍ଚୟ ମିଳିବ । ଅ କ ଲୋକ-ସାହିତ୍ୟିକ ସେମାନଙ୍କ ରଚନା ନିମନ୍ତେ ପ୍ରତିଷ୍ଠା ସହିତ ଅର୍ଥ ଉପାର୍ଜନ କରିଛନ୍ତି ।

Digitized by srujanika@gmail.com

**ସଂସ୍କୃତ ସାହିତ୍ୟ :**

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ବହୁ ସ୍ଥାନରେ ସଂସ୍କୃତ ଚର୍ଚ୍ଚାର ପ୍ରାଚୀନ ପରମ୍ପରା* ରହିଅଛି । ବହୁ ଅଧ୍ୟାପକଗଣ ସେମାନଙ୍କର ପାଣ୍ଡିତ୍ୟ ନିମନ୍ତେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ଏମାନଙ୍କ ମଧ୍ୟରୁ ଅନେକ ପ୍ରାଚୀନ ବିଦ୍ୟାନଗରୀ ନବଦ୍ୱୀପ, ଯାଜପୁର, ପୁରୀ ଓ କାଶୀରେ ଅବସ୍ଥିତ ସର୍ବଶ୍ରେଷ୍ଠ ପ୍ରାଚୀନ ବିଦ୍ୟାପୀଠମାନଙ୍କରେ ଅଧ୍ୟୟନ କରି ଜ୍ଞାନ ଲାଭ କରିଥିଲେ । ମେଦିନୀପୁରର ବାଲିଚକ, ସବଂ, ଲେୟୁଦା, ଫିଲା, ମୟନା, ଏଗ୍ରା, ବାଳସାହି, ମୁଗବେଡ଼ିଆ, ଅମର୍ଷି, ଶ୍ରୀପୁର, ମୀରଗୋଦା, ମହିଷା ଦଲ, ଫତେହଗଡ଼, ବର୍ଦ୍ଧମାଣପୁର, ଝାଡ଼ଗ୍ରାମ ପ୍ରଭୃତି ସ୍ଥାନ ବାଲେଶ୍ୱର ଜିଲ୍ଲାର ଭୋଗରାଇ, ଝିଙ୍କୁଡ଼ା, ନାଂପୋ, ଶାଳକୋଠା, ବାଲେଶ୍ୱର, ରେମୁଣା ଓ ମୟୂରଭଞ୍ଜର ରାଜଧାନୀ ବାରିପଦା, ଜଗନ୍ନାଥ ଝୁଣ୍ଟା ପ୍ରଭୃତି ପ୍ରସିଦ୍ଧ ସ୍ଥାନମାନଙ୍କରେ ସଂସ୍କୃତ ଶିକ୍ଷା ଓ ଚର୍ଚ୍ଚାର ଉଚ୍ଚ ପରମ୍ପରା ରହିଛି । ମୟନାର ମୂର୍ଦ୍ଧ ନାରାୟଣ ତର୍କ ତୀର୍ଥ, ଫିଲାର ରାଖାଲ ଦାସ ନ୍ୟାୟ ରତ୍ନ ଓ ରାମଲାଲ ତର୍କତୀର୍ଥ, ତେମୁଆର ରାମହର୍ଷ ସ୍ମୃତିଭୂଷଣ, ରାମେଶ୍ୱର ତର୍କ ସିଦ୍ଧାନ୍ତ, କାନ୍ଥୀର କାଳିକିଙ୍କର ସପ୍ତତୀର୍ଥ, ଜ୍ୟୋତିର୍ମୟ ନନ୍ଦ, ରାଜେନ୍ଦ୍ରନାଥ ତୀର୍ଥ ବାଲେଶ୍ୱରର ରୁଦ୍ରନାରାୟଣ ଷଡ଼ଙ୍ଗୀ, ରାମନାରାୟଣ ପଣ୍ଡା, ଗଙ୍ଗାଧର ମହାପାତ୍ର, ପୁଣ୍ଡରୀକାକ୍ଷ ମିଶ୍ର, ନରନାରାୟଣ ଷଡ଼ଙ୍ଗୀ, ମାଧବଚନ୍ଦ୍ର ପାଢ଼ୀ, ବିଶ୍ୱେଶ୍ୱର ପଣ୍ଡା, ବାରିପଦାର ବୃନ୍ଦିନାଥ ବିଦ୍ୟାସାଗର, ନବକିଶୋର କରଶାସ୍ତ୍ରୀ, ପୂର୍ଣ୍ଣଚନ୍ଦ୍ର ମିଶ୍ର, କରୁଣାକର ଦାଶ, ସିଂହଭୂମର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ପରି ବିଶିଷ୍ଟ ବିଦ୍ୱାନ୍‌ଗଣ ସଂସ୍କୃତ କାବ୍ୟ, ଦର୍ଶନ, ସ୍ମୃତି, ବ୍ୟାକରଣ ପ୍ରଭୃତି ଶାସ୍ତ୍ରରେ ଧୁରୀଣ ଓ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଏମାନେ ଏ ଅଞ୍ଚଳର ସଂସ୍କୃତ ଶିକ୍ଷା ଓ ଚର୍ଚ୍ଚାର ଦିଗ୍‌ଗଜ ସ୍ୱରୂପ ଥିଲେ ।

ଏ ଅଞ୍ଚଳର ଅନେକ କବି ସଂସ୍କୃତ ଭାଷା ଓ ସାହିତ୍ୟରେ ବହୁ ଉଚ୍ଚ କୋଟିର କାବ୍ୟ, ଟୀକା, ଅଷ୍ଟକ ସ୍ତୁତି ଓ ବ୍ୟବହାର ଶାସ୍ତ୍ର, ପ୍ରବନ୍ଧମାନ ରଚନା କରିଥିବାର ଜଣାଯାଏ । ଶ୍ରୀମଦ୍ ଭାଗବତରେ ସୁବିଖ୍ୟାତ ଟୀକାକାର ଶ୍ରୀଧର ସ୍ୱାମୀ, ଭାଷ୍ୟକାର ବଳଦେବ ବିଦ୍ୟାଭୂଷଣ; ଭକ୍ତକବି ଶ୍ୟାମାନନ୍ଦ ଓ ରସିକା ନନ୍ଦଙ୍କ ସଂସ୍କୃତ ରଚନାବଳି, ରୁଦ୍ରନାରାୟଣ ଷଡ଼ଙ୍ଗୀଙ୍କ ରଚିତ ସ୍ତବ, ସ୍ତୋତ୍ର ଅଷ୍ଟକ, ପ୍ରବନ୍ଧ, ବ୍ୟବହାର ଶାସ୍ତ୍ର ପ୍ରଭୃତି ସଂସ୍କୃତ ରଚନା, ଜାନକୀବଲ୍ଲଭ କରଙ୍କର ସଂସ୍କୃତ ରଚନା, ନବକିଶୋର କର ଶାସ୍ତ୍ରୀଙ୍କର (ଅଭିଜ୍ଞାନ ଶାକୁନ୍ତଲମ୍‌ର କିଶୋର କେଳିଟୀକା) ଟୀକା, କରୁଣାକର ଦାଶଙ୍କର

* ଖ୍ରୀଷ୍ଟୀୟ ତେର ଶତକରେ ମେଦିନୀପୁର ସହରର ପ୍ରତିଷ୍ଠାତା, ଓଡ଼ିଶାର ସାମନ୍ତ ରାଜା ପ୍ରାଣ କରଙ୍କ ପୁତ୍ର ମେଦିନୀ କର ସୁବିଖ୍ୟାତ ସଂସ୍କୃତ ଅଭିଧାନ 'ମେଦିନୀ କୋଷ' ପ୍ରଣୟନ କରିଥିବାର ଜଣାଯାଏ ।
(ମେଦିନୀପୁର—ତରୁଣଦେବ ଭଟ୍ଟାଚାର୍ଯ୍ୟ ୧୯୬୯, ପୃ-୪)

Digitized by srujanika@gmail.com

କାବ୍ୟ, ନାଟିକା, ଅଷ୍ଟକ ଓ ପ୍ରବନ୍ଧ ପ୍ରଭୃତି ଉଲ୍ଲେଖଯୋଗ୍ୟ ରଚନା ।

**ପ୍ରାଚୀନ ସାହିତ୍ୟ :**

ଆଲୋଚ୍ୟ ଅଞ୍ଚଳର ବହୁ ପ୍ରାଚୀନ କାବ୍ୟ, କବିତା ରଚିତ ହୋଇଥିବାର ଦେଖିବାକୁ ମିଳେ । ଏ ସମସ୍ତ ପ୍ରାୟ ଧର୍ମଭିତ୍ତିକ ରଚନା । ରାମ, ଚଣ୍ଡୀ, ଶୀତଳା, ଶିବ, ମନସା, ଧର୍ମ ଏବଂ ରାଧାକୃଷ୍ଣ ବିଷୟକ ବହୁ ଶ୍ରେଷ୍ଠ ଲୌକିକ କାବ୍ୟ ଓ କୀର୍ତ୍ତନ ଆଦି ଏ ଅଞ୍ଚଳର କବିମାନଙ୍କ ଦ୍ୱାରା ରଚିତ । କବି କଙ୍କଣ ମୁକୁନ୍ଦରାମଙ୍କର 'ଚଣ୍ଡୀ ମଙ୍ଗଳ', ବଡ଼ୁ ଚଣ୍ଡୀଦାସଙ୍କର 'ଶ୍ରୀକୃଷ୍ଣ କୀର୍ତ୍ତନ', ଦୁଃଖୀଶ୍ୟାମ ଦାସଙ୍କ 'ଗୋବିନ୍ଦ ମଙ୍ଗଳ' କାବ୍ୟ, ରାମେଶ୍ୱରଙ୍କର 'ଶିବାୟନ' କାବ୍ୟ, କବି କର୍ଣ୍ଣଙ୍କ 'ଷୋଳ ପାଲା', ଶ୍ୟାମାନନ୍ଦ ଓ ରସିକାନନ୍ଦଙ୍କ କୀର୍ତ୍ତନ ଆଦି ଆଞ୍ଚଳିକ ଭାଷା ପ୍ରଭାବିତ ରଚନା । ଏଠାରେ କେତେଜଣ ପ୍ରାଚୀନ କାଳର ସାରସ୍ୱତ ସାଧକଙ୍କ ସାଧନାକୃତି ସମ୍ପର୍କରେ ସଂକ୍ଷେପରେ ଆଲୋଚନା କରୁଅଛୁ ।

**କଣୋଗ୍ରନନ୍ଦ :**

ଶ୍ରୀ ରସିକାନନ୍ଦ ଦେବ ଗୋସ୍ୱାମୀଙ୍କର ଅନ୍ୟତମ ଶିଷ୍ୟ କଣୋଗ୍ରନନ୍ଦ 'ଶୃଙ୍ଗାରସାର' ନାମକ ଓଡ଼ିଆ ପଦ୍ୟ ଗ୍ରନ୍ଥ ରଚନା କରିଥିଲେ । ଏହା ତାଳ ପତ୍ରରେ ଲିଖିତ ଏକ ଅପ୍ରକାଶିତ ଗ୍ରନ୍ଥ ।

**କେଶବ ଚନ୍ଦ୍ର ଚଣ୍ଡ :**

ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନାନ୍ତର୍ଗତ ଝୁଲୁଡ଼ା ଗ୍ରାମରେ ସ୍ୱର୍ଗତଃ କବି କେଶବ ଚନ୍ଦ୍ର ଚଣ୍ଡ ରାଜୁ କୁଳରେ ଆଜକୁ ଆନୁମାନିକ ଦୁଇଶହ ବର୍ଷ ପୂର୍ବେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ରଚିତ ବିଭିନ୍ନ କାବ୍ୟ ଅତ୍ୟନ୍ତ ଲୋକପ୍ରିୟ ହୋଇଥିବାର ଜଣାଯାଏ । ତାଙ୍କର ରଚନାବଳି ଦୁର୍ଲ୍ଲଭ ହୋଇଥିବାରୁ ସେ ସମ୍ପର୍କରେ କିଛି ଲେଖିବା ସମ୍ଭବ ହେଉନାହିଁ । 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'କାର ତାଙ୍କ ସମ୍ପର୍କରେ କବିଙ୍କ ରଚିତ ପଦ୍ୟାବଳିରୁ କେବଳ ଗୋଟିଏ ପଂକ୍ତି ଉଦ୍ଧାର କରିବନ୍ତି । ତାହାହିଁ ନିମ୍ନରେ ଉଦ୍ଧାର ପୂର୍ବକ କବିଙ୍କ ପ୍ରତି ସମ୍ମାନ ଜଣାଉଛୁ ମାତ୍ର ।

ପଦ୍ୟଟି ଏହିପରି—

"ରାଜନ୍ୟ କୁଳରେ ଜନମ । କେଶବ ଚନ୍ଦ୍ର ଚଣ୍ଡ ନାମ ।"

ତାଙ୍କର ବଂଶଧର ମାନଙ୍କ ନିକଟରେ କବିଙ୍କର କୌଣସି ରଚନା ବର୍ତ୍ତମାନ ଉପଲବ୍ଧ ନୁହେଁ ।

Digitized by srujanika@gmail.com

**ଗୋପୀଜନ ବଲ୍ଲଭ ଦାସ :**

ଗୋପୀଜନ ବଲ୍ଲଭ ମହାତ୍ମା ରସିକାନନ୍ଦଙ୍କର ଶିଷ୍ୟ ଥିଲେ । ଆଗ୍ରହି ଶ୍ୟାମାନନ୍ଦଙ୍କ ଅନ୍ୟତମ ଶିଷ୍ୟ ରସମୟ ଦାସ ଗୋପୀଜନବଲ୍ଲଭଙ୍କର ପିତା । ଜନ୍ମସ୍ଥାନ ମେଦିନୀପୁର ଜିଲ୍ଲାନ୍ତର୍ଗତ ଧାରେନ୍ଦା ଗ୍ରାମ । ଏହା ନାରାୟଣଗଡ଼ ଥାନାରେ ଅବସ୍ଥିତ । ଗୋପୀଜନବଲ୍ଲଭ 'ରସିକ ମଙ୍ଗଳ' କାବ୍ୟ ରଚନା କରି ପ୍ରସିଦ୍ଧି ଅର୍ଜନ କରିଛନ୍ତି । ବୈଷ୍ଣବ ସାହିତ୍ୟରେ ଗ୍ରନ୍ଥଟିର ବିଶେଷ ଖ୍ୟାତି ରହିଅଛି ।

**ଜାନକୀବଲ୍ଲଭ କର :**

ଶ୍ରୀମଦ୍‌ଭଗବତ ଗୀତାର ଓଡ଼ିଆ ଅନୁବାଦକ । ଏହାଙ୍କ ସମ୍ପର୍କରେ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ ଲେଖିଛନ୍ତି,"ପରେ ଭୋଗରାଇ ନିବାସୀ ଜାନକୀବଲ୍ଲଭ କର ଶର୍ମା ଏହାର ଅନୁବାଦ କରି ଆଉ ଖଣ୍ଡିଏ ପୁସ୍ତକ ଥୋଇ ଯାଇଛନ୍ତି । ଏ ମହାଶୟ ଯେ, ସୁବର୍ଣ୍ଣରେଖା ଓ କପିଶା ନଦୀର ମଧ୍ୟବର୍ତ୍ତୀ ସ୍ଥାନର ବୈଜୟନ୍ତୀ ପତାକା ଥିଲେ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ, ଏହି ସ୍ଥାନମାନଙ୍କରୁ ଓଡ଼ିଆ ଭାଷାର ଲୋପ ସହିତ ଉକ୍ତ ମହାତ୍ମାଙ୍କର ନାମ ମଧ୍ୟ ଲୋପ ପାଇବାକୁ ବସିଅଛି ।''

"ଏ ସମ୍ବନ୍ଧରେ ଉତ୍କଳ ବର୍ଗର ମହିମା ଅକଥନୀୟ ଏହି ମାତ୍ର ଲେଖିଲେ ଯଥେଷ୍ଟ ହେବ । ତତ୍‌ର୍ଦ୍ଧ୍ୱେ ଷଣ ସୁପ୍ରମାଣ ଶ୍ରୀଯୁକ୍ତ ଗୋପେନ୍ଦ୍ର ନନ୍ଦନ ଦାସମହାପାତ୍ର ଏହି ଅନୁବାଦର ସମ୍ପୂର୍ଣ୍ଣ ସ୍ୱତ୍ୱାଧିକାରୀ ଅଟନ୍ତି ।'' ଜାନକୀବଲ୍ଲଭ ଶ୍ରୀମଦ୍ ଭଗବତ ଗୀତା ବ୍ୟତୀତ ଓଡ଼ିଆରେ ଭାଗବତ ଅନୁବାଦ କରିଥିଲେ । ପଣ୍ଡିତ ନୀଳମଣି ମିଶ୍ର ତାଙ୍କର ସମ୍ପୂର୍ଣ୍ଣ କଥା ଭାଗବତରେ ନିମ୍ନମତେ ଲେଖିଅଛନ୍ତି । "ଜାନକୀବଲ୍ଲଭଙ୍କର ଉକ୍ତିରୁ ଜଣାଯାଏ—ଜଗନ୍ନାଥ ଦାସଙ୍କ ଭାଗବତ ଲୋକ ମୁଖରେ ଅଶୁଦ୍ଧ ହୋଇଯାଇଥିବାରୁ ତାହା ସେ ପରିଶୁଦ୍ଧ କରି ଆଉ ଖଣ୍ଡିଏ ଭାଗବତ ଖ୍ରୀ: ଅ: ୧୬୫୬ରେ ରଚନା କରିଥିଲେ । ତତ୍ ସମ୍ପର୍କୀୟ ଉକ୍ତିଟି ହେଉଛି :—

"ଏବେ ହୋ ଶୁଣ ସାଧୁ ଜନ । କହୁଛି ତୁମ୍ଭର ଚରଣ ।।
ବ୍ୟାସ ଭଣିତ ଜଗନ୍ନାଥ । ଭାଷାରେ ବର୍ଣ୍ଣିଲେ ସମସ୍ତ ।।
ସେ ଭାଷା ଲେଖକ ଦୋଷରେ । ଅନ୍ୟଥା ହେଲା ଏ ସଂସାରେ ।।
ସେ ବ୍ୟାସ ଜଗନ୍ନାଥ ବାଣୀ । ଯେ ରୂପେ ରୁକ୍ମେ ପରିମାଣି ।।
ଏ ରୂପେ ବିଗୃହ କରଣ । ଜାନକୀ ବଲ୍ଲଭ ବ୍ରାହ୍ମଣ ।।
ଗୁଣିଙ୍କ ବାକ୍ୟ ଅନୁସରି । ଶୋଧି ଲେଖିଲେ ଅନୁସରି ।।

× × × ×

Digitized by srujanika@gmail.com

ଶକାବ୍ଦ ଗୁଣ ସାତ ନେଇ । ତା ବାମେ ଷୋଳ ସଂଖ୍ୟା ଦେଇ ॥
ଏତେ ଶକାବ୍ଦ ବର୍ଷ ଧାର୍ଯ୍ୟି । ଗୁଣ୍ଡିଚ୍ଚ ବାକ୍ୟେ ବଦ୍ଧ ହୋଇ ॥
ଲେଖିଲେ ଭାଗବତ କଥା । ଶୁଣନ୍ତେ ଛୁଟେ ଭବ ବ୍ୟଥା ॥

ଜାନକୀ ବଲ୍ଲଭଙ୍କ ଭାଗବତର ପଞ୍ଚମ ସ୍କନ୍ଧରୁ ଏହି ପୁଷ୍ପିକା ମିଳୁଥିବାରୁ ସେ ୧୬୭୪ ଶକାବ୍ଦ ବା ଖ୍ରୀ ଅ. ୧୭୫୨ରେ ତାହା ଶେଷ କରିଥିବାର ଜଣାଯାଏ ଏବଂ ଏକାଦଶ ସ୍କନ୍ଧର ପୁଷ୍ପିକାରୁ ଆହୁରି ମଧ୍ୟ ଜଣାଯାଏ ଯେ, ସେ ସେହି ସ୍କନ୍ଧଟିକୁ ଖ୍ରୀ. ଅ. ୧୭୫୩ରେ ସମ୍ପୂର୍ଣ୍ଣ କରିଥିଲେ । ତେଣୁ ଖ୍ରୀ. ଅ. ୧୭୫୧ରୁ ସେ ଭାଗବତ ସଂଶୋଧନ କାର୍ଯ୍ୟ ଆରମ୍ଭ କରି ଖ୍ରୀ. ଅ. ୧୭୫୪ରେ ତାହା ଶେଷ କରିଥିବେ ବୋଲି ଅନୁମାନ କରାଯାଏ ।

ଜାନକୀ ବଲ୍ଲଭ ପ୍ରତ୍ୟେକ ସ୍କନ୍ଧର ଅଧ୍ୟାୟ ଗୁଡ଼ିକରେ ଜଗନ୍ନାଥ ଦାସଙ୍କ ନାମ ଭଣିତାରେ ଉଲ୍ଲେଖ କରି କେତେକ ଅଧ୍ୟାୟରେ ପୂର୍ବୋକ୍ତ ପ୍ରକାରେ ଭଣିତା ସନ୍ନିବେଶିତ କରିଛନ୍ତି । ତାଙ୍କ ଦ୍ୱାରା ସଂଶୋଧିତ ଭାଗବତ କେବଳ ବାଲେଶ୍ୱର ଓ ମୟୂରଭଞ୍ଜ ଅଞ୍ଚଳରୁ ମିଳୁଛି ।

ଜାନକୀବଲ୍ଲଭଙ୍କର ବାଲେଶ୍ୱର ଜିଲ୍ଲାର ଖେଗରାଇ ଗ୍ରାମର ଅଧିବାସୀ ଥିଲେ । ତାଙ୍କ ଲେଖାରେ ବର୍ଣ୍ଣିତ ଗୁଣ୍ଡିଚ୍ଚ ଦେବୀ ଥିଲେ ମେଦିନୀପୁର ଜିଲ୍ଲା ପଟାସପୁର ପ୍ରଗଣାର ଜମିଦାରଙ୍କ ରାଣୀ । ଖୁବ୍ ସମ୍ଭବତଃ ଜାନକୀ ବଲ୍ଲଭ ପଟାସପୁର ପ୍ରଗଣାର ଜମିଦାର ଦାସମହାପାତ୍ରଙ୍କ ବଂଶର ପୁରୋହିତ ଥିଲେ ଏବଂ ରାଣୀ ଗୁଣ୍ଡିଚ୍ଚ ଦେବୀଙ୍କୁ ଭାଗବତ ଶୁଣାଇବାକୁ ଯାଇ ଜଗନ୍ନାଥଙ୍କ ଭାଗବତକୁ ସ୍ଥଳ ବିଶେଷରେ ସଂଶୋଧନ କରିଥିବେ ।''

**ଦୀନକୃଷ୍ଣ ଦାସ :**

କବି ଦୀନକୃଷ୍ଣ ଦାସ ଜାତିରେ ରାଜପୁତ । ପିତାଙ୍କ ନାମ ମଧୁସୂଦନ ଦାସ । ସୁବର୍ଣ୍ଣରେଖା ନଦୀ ତୀରବର୍ତ୍ତୀ ଜଳେଶ୍ୱର ଅଞ୍ଚଳର ସ୍ଥାୟୀ ବାସିନ୍ଦା । ତାଙ୍କ ରଚିତ 'ରସ ବିନୋଦ' କାବ୍ୟରେ କବି ନିମ୍ନମତେ ଆତ୍ମ ପରିଚୟ ପ୍ରଦାନ କରିଛନ୍ତି ।

ସଙ୍କନାଶ ଆଦିମୂଳେ, ଜନମ ରାଜପୁତ୍ର କୋଳେ ।
ସୁବର୍ଣ୍ଣରେଖା ନଦୀ ତୀର, କଟକ ନାମେ ଜଳେଶ୍ୱର ।
ସଗତ ପୁରୁଷ ମୋ ତହିଁ, ଗଲେ ଯେ ଏତେ କାଳ ବହି ।
ବନ୍ଧୁ କୁଟୁମ୍ବ ତହିଁ ଯେତେ, ରହିଣ ଅଛନ୍ତି ସମସ୍ତେ ।
ଦଣୀଆ ରାଜ୍ୟର ନିକଟେ, ଷୋଳ ଚଉଦ ଦଣ୍ଡପାଟେ ॥

(ରସ କଲ୍ଲୋଳ—୨୪ ଅଧ୍ୟାୟ—ତାଳପତ୍ର ପୋଥି)

Digitized by srujanika@gmail.com

ରସ ବିନୋଦ କାବ୍ୟର ପ୍ରଥମ ଅଧ୍ୟାୟରେ ସେ ତାଙ୍କ ରଚିତ ଗ୍ରନ୍ଥ ସମୂହର ନାମ ସହିତ ପଦ ସଂଖ୍ୟା ପ୍ରଦାନ କରିଛନ୍ତି । ତାଙ୍କ ରଚିତ ପ୍ରଥମ ଗ୍ରନ୍ଥ ହେଉଛି 'ଗୁଣ ସାଗର' । ପରେ ସେ 'ଭବ ସମୁଦ୍ର', 'ଭୂତକେଳି', 'ସଂସାର ବୋଧନ', 'ଅମୃତ ସାଗର', 'ମୁକ୍ତି ସାଗର', 'ପ୍ରସ୍ତାବ ସାଗର', ବା 'ପ୍ରସ୍ତାବ ସିନ୍ଧୁ', 'ତତ୍ତ୍ୱ ସାଗର', 'ଜଗମୋହନ ଛାନ୍ଦ', 'ଜମ୍ବୁବତୀ ବିଭା', 'ବୃନ୍ଦାବନ ରାସ', 'କଂସ ବଧ', 'ଜ୍ଞାନ ସାଗର', 'ଧର୍ମ ସାଗର', 'ସତ୍ୟବାଦୀ ବିଭା', 'ନାମରତ୍ନ ଗୀତା' ରଚନା କରିଥିଲେ । କବି 'ଭକ୍ତି ସାଗର' ଓ 'ମହିମା ସାଗର' ନାମକ ଅନ୍ୟ ଦୁଇଗୋଟି ଗ୍ରନ୍ଥ ରଚନା କରିଥିବାର ମଧ୍ୟ ଜଣାଯାଏ । ଉପରୋକ୍ତ ତାଲିକାରେ ସୁପ୍ରସିଦ୍ଧ ଆଳଂକାରିକ କାବ୍ୟ 'ରସକଲ୍ଲୋଳ' ନାମ ଉଲ୍ଲେଖ ନାହିଁ । ଏଣୁ ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ ଦାସ ନାମରେ ଦୁଇଜଣ କବି ଲେଖନୀ ଚାଳନା କରିଥିବାର ଅନୁମିତ ହୁଏ । 'ରସକଲ୍ଲୋଳ' କାବ୍ୟର କବିଙ୍କ ପିତାଙ୍କ ନାମ ଅନନ୍ତ ଦାସ, ସେ ପୁରୀ ଅଧିବାସୀ ଓ ଅତିବଡ଼ି ସମ୍ପ୍ରଦାୟଭୁକ୍ତ କୃଷ୍ଣ ବୈଷ୍ଣବ । ତାଙ୍କ ରଚିତ ଅନ୍ୟ ପ୍ରସିଦ୍ଧ ରଚନା ହେଉଛି 'ଆର୍ତ୍ତତ୍ରାଣ ଚଉତିଶା', 'ନାବକେଳି', 'ଜଗବନ୍ଧୁ ଛାନ୍ଦ' ପ୍ରଭୃତି । ଓଡ଼ିଆ ସାହିତ୍ୟର କେତେଜଣ ପଣ୍ଡିତ କବି ଦୀନକୃଷ୍ଣ ଦାସ ସମକାଳର ଭିନ୍ନ ଭିନ୍ନ ବ୍ୟକ୍ତି ଭାବେ ଉଲ୍ଲେଖ କରୁଥିବା ବେଳେ ଅନ୍ୟ କେତେକ ବିଜ୍ଞ ଆଲୋଚକ ତୁଳନାତ୍ମକ ଅଧ୍ୟୟନପୂର୍ବକ 'ରସକଲ୍ଲୋଳ' ଓ 'ରସବିନୋଦ' କାବ୍ୟର କବି ଏକ ଓ ଅଭିନ୍ନ ବ୍ୟକ୍ତି ବୋଲି ମତପୋଷଣ କରନ୍ତି ।

ଉଭୟ କବି ପୁରୀ ଶ୍ରୀ କ୍ଷେତ୍ରରେ ବହୁକାଳ ଧରି ବାସ କରିଥିବା ବିଷୟ ରଚିତ କାବ୍ୟ ମାନଙ୍କରେ ବର୍ଣ୍ଣିତ । ଜଣକଙ୍କ ଭାଷା, ଶବ୍ଦଚୟନ, ବର୍ଣ୍ଣନା ଚାତୁରୀ ସହଜ ଓ ସରଳ ରୀତି ସମ୍ପନ୍ନ ହୋଇଥିବା ବେଳେ 'ରସକଲ୍ଲୋଳ' କାବ୍ୟର ସରସ ଲଳିତ ପଦାବଳି ଓ ଆଳଙ୍କାରିକ ରୀତି ରଚନା ଅନ୍ୟ ଜଣଙ୍କର ପରିଣତ ବୟସ, ପରିପକ୍ୱ ଜ୍ଞାନ ଓ ଭକ୍ତିପୂର୍ଣ୍ଣ ହୃଦୟର ସ୍ୱତଃସ୍ଫୂର୍ତ୍ତି ପ୍ରକାଶର ପରିଚୟ ପ୍ରଦାନ କରିଥାଏ ।

**ଦୁଃଖୀଶ୍ୟାମ ଦାସ :**

ବୈଷ୍ଣବାଗ୍ରଣୀ ଶ୍ୟାମାନନ୍ଦଙ୍କର ପ୍ରିୟଶିଷ୍ୟ ଦୁଃଖୀଶ୍ୟାମ ଦାସଙ୍କ ଜନ୍ମସ୍ଥାନ କେଦାରକୁଣ୍ଡ ପ୍ରଗଣା ଅନ୍ତର୍ଗତ ହରିହରପୁର ଗ୍ରାମ । ପିତାଙ୍କର ନାମ ଶ୍ରୀମୁଖ ଓ ମାତାଙ୍କର ନାମ ଭବାନୀ । ସୁପ୍ରସିଦ୍ଧ 'ଗୋବିନ୍ଦ ମଙ୍ଗଳ' କାବ୍ୟ ଏହାଙ୍କ ରଚନା । ଏତଦ୍‌ବ୍ୟତୀତ କବି 'ଏକାଦଶୀବ୍ରତ କଥା' ରଚନା କରିଥିବାର ଜଣାଯାଏ ।

**ନିତ୍ୟାନନ୍ଦ ଚକ୍ରବର୍ତ୍ତୀ :**

ନିତ୍ୟାନନ୍ଦଙ୍କର ପିତାଙ୍କର ନାମ ମହାମିଶ୍ର । କାଶୀଯୋଡ଼ାର କାନାଇଚକ ଗ୍ରାମରେ କବିଙ୍କର ବାସସ୍ଥାନ । କବି ନିତ୍ୟାନନ୍ଦ 'ଶୀତଳା ମଙ୍ଗଳ' ପାଲି-କାବ୍ୟ ଲେଖି ପ୍ରସିଦ୍ଧି ଅର୍ଜନ କରିଥିଲେ ।

Digitized by srujanika@gmail.com

**ବଳଦେବ ବିଦ୍ୟାଭୂଷଣ :**

ଗୌଡ଼ୀୟ ବୈଷ୍ଣବ ପରମ୍ପରାର ଜଣେ ପରମ ବିଦ୍ୱାନ୍ ବେଦାନ୍ତ ଭାଷ୍ୟକାର ଓ ଦାର୍ଶନିକ ଉକ୍ତ ବଳଦେବ ବିଦ୍ୟାଭୂଷଣ ରେମୁଣା ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ । ସେ ବୈଷ୍ଣବ ସମ୍ପ୍ରଦାୟର ଶ୍ରୀ ଶ୍ୟାମାନନ୍ଦଙ୍କ ଶ୍ରୀ ରସିକାନନ୍ଦ ଶାଖାର ପଞ୍ଚମ ଅଧସ୍ତନ ଶିଷ୍ୟ ଥିଲେ । ଜୟପୁର ରାଜ ଦରବାରରେ ଏକ ଆହ୍ୱାନ ସ୍ୱରୂପ ସେ 'ଶ୍ରୀ ଗୋବିନ୍ଦ ଭାଷ୍ୟ' ରଚନା କରିଥିଲେ । ସେ ଶ୍ରୀ ଚୈତନ୍ୟଙ୍କ ପ୍ରବର୍ତ୍ତିତ ଅଚିନ୍ତ୍ୟଭେଦାଭେଦ ବାଦ' ଦର୍ଶନର ବାଖ୍ୟାକାର ଭାବରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ । ସନ୍ୟାସ ଦୀକ୍ଷା ଗ୍ରହଣ ପରେ ସେ ଏକାନ୍ତୀ ଗୋବିନ୍ଦ ଦାସ ନାମରେ ପରିଚିତ ହୋଇ ବୃନ୍ଦାବନ ଧାମରେ ଶ୍ରୀ ଶ୍ୟାମସୁନ୍ଦର ମନ୍ଦିରରେ ସେବାଧିକାର ଲାଭ କରିଥିଲେ ।

**ମୁକୁନ୍ଦରାମ କବି କଙ୍କଣ :**

ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ କବିଙ୍କର ଆବିର୍ଭାବ ଘଟେ । କବିଙ୍କର ଆଦି ନିବାସ ଭୂମି ବର୍ଦ୍ଧମାନ ଜିଲ୍ଲାର ଦାମୁନ୍ୟା ଗ୍ରାମରେ ଥିଲା । ପରେ ସେ ମେଦିନୀପୁରର ଘାଣ୍ଟାଲ ଥାନାନ୍ତର୍ଗତ ଅରଡ଼ା ଗ୍ରାମରେ ବାସ କରୁଥିବାର ବିଷୟ ଆତ୍ମକାହାଣୀରୁ ଜଣାଯାଏ । ସେ ପ୍ରସିଦ୍ଧ 'ଚଣ୍ଡୀମଙ୍ଗଳ' କାବ୍ୟର ପ୍ରଣେତା । ଚଣ୍ଡୀମଙ୍ଗଳ କାବ୍ୟର ପୁରୋଧା ଅଥବା ଗୁରୁ ଭାବେ ମୁକୁନ୍ଦରାମ ବଳରାମ କବିକଙ୍କଣଙ୍କ ନାମ ଉଲ୍ଲେଖ କରିଛନ୍ତି । ବଳରାମ ମେଦିନୀପୁର ଅଞ୍ଚଳର ଜଣେ କବି ଥିଲେ । ଓଡ଼ିଶାରେ ମଧ୍ୟ ତାଙ୍କ ରଚନାର ପ୍ରସିଦ୍ଧି ରହିଥିବାର ଜଣାଯାଏ । ଏହି ବଳରାମଙ୍କ ବିଷୟରେ କୌଣସି ତଥ୍ୟ ଏ ପର୍ଯ୍ୟନ୍ତ ଉଦ୍‌ଘାଟିତ ହୋଇନାହିଁ ।

**ରଘୁନାଥ ଭଞ୍ଜ :**

ମୟୂରଭଞ୍ଜର ମହାରାଜା ରଘୁନାଥ ଭଞ୍ଜ (ଖ୍ରୀ: ୧୬୨୮-୫୦ ଖ୍ରୀ:) ଜଣେ ସୁକବି ଥିଲେ । ସେ ପ୍ରଖ୍ୟାତ 'ରସଲହରୀ' କାବ୍ୟ ରଚନା କରିଥିଲେ । ଉକ୍ତ କାବ୍ୟର ଉପସଂହାରରେ କବି ରଘୁନାଥ ନିଜ ବଂଶର ପରିଚୟ ଏହିପରି ଲେଖିଅଛନ୍ତି ।

"ଉତ୍କଳ ମଧ୍ୟ ଦେଶର ହରିହର ପୁରବର
ମଧ୍ୟରେ ଅବନୀଶ୍ୱର ସେ ଭଞ୍ଜ ବର ଏ ।
କୃଷ୍ଣଭଞ୍ଜ ନୃପନାମ ତାଙ୍କ ପୁତ୍ର ତ୍ରିବିକ୍ରମ
ପରାକ୍ରମେ ତ୍ରିବିକ୍ରମ ସେ ଅନୁପମ ଏ ।
ତାଙ୍କ ସୁତ ସର୍ବେଶ୍ୱର ବିଷ୍ଣୁଭକ୍ତ ମଧ୍ୟେ ସାର
ସେ ବୀର ବିକ୍ରମ ତାତ ତାହାଙ୍କ ସୁତ ଏ ।
ଗୁରୁ ଅଙ୍ଗଦେ ଶୋଭିତ କାଳିକାକାନ୍ତ ପୂଜିତ
ସତ୍ୟଭାମାରେ ସଯୁତ ଅତି ରାଜିତ ଏ ।

Digitized by srujanika@gmail.com

ରାମକୃଷ୍ଣ ପଦକଞ୍ଜ ଭାବ ରଘୁନାଥ ଭଞ୍ଜ
ନୃପଚନ୍ଦ୍ର ତ୍ରୟୋଦଶ କଲେକ ଶେଷ ହେ ।"

କବି ଉଲ୍ଲେଖ କରିଥିବା ହରିହରପୁର (ବର୍ତ୍ତମାନର ହରିପୁର) ବାରିପଦା ସହରର ୧୮ କି. ମି. ଦୂରକୁ ଦକ୍ଷିଣ-ପୂର୍ବ ଦିଗରେ ଅବସ୍ଥିତ । ହରିହରପୁର ତତ୍କାଳୀନ ମୟୂରଭଞ୍ଜ ରାଜଧାନୀ ଥିଲା ।

'ରସଲହରୀ' କାବ୍ୟଟି ତେରଗୋଟି ଛାନ୍ଦରେ ରଚିତ । ଛାନ୍ଦ ଗୁଡ଼ିକ ବହୁ ରାଗରାଗିଣୀଯୁକ୍ତ ଓ ନାନା ଅଳଙ୍କାର ବିମଣ୍ଡିତ । କାବ୍ୟର ନାୟକ ପୁଷ୍ପତିଳକ ଓ ନାୟିକା ରସଲହରୀ । ନାୟିକାର ନାମାନୁସାରେ କାବ୍ୟର ନାମ କରଣ ହୋଇଛି । କବିଙ୍କ ଭାଷାରେ—"ଯେଣୁ ରସରେ ପ୍ରଧାନ ପୋଷିତ, ତାର ନାମେ ଏ ଗୀତ ହେବ ଖ୍ୟାତ ।" କାବ୍ୟଟିରେ ଏହି ରାଜା କବିଙ୍କର ଗଭୀର ପାଣ୍ଡିତ୍ୟ, ରସାନୁଭୂତି ଓ ଭକ୍ତି ପ୍ରାଣତାର ମଧୁର ସମନ୍ୱୟ ଘଟିଅଛି ।

**ରସିକାନନ୍ଦ ଦେବ ଗୋସ୍ୱାମୀ :**

ଶ୍ରୀ ରସିକାନନ୍ଦ ଦେବ (ରସିକ ମୁରାରି) ସୁବର୍ଣ୍ଣରେଖା ତୀରବର୍ତ୍ତୀ ରୋହିଣୀର ଜମିଦାର ଅଚ୍ୟୁତାନନ୍ଦଙ୍କର ପୁତ୍ର । ମାଆ ଭବାନୀ ଦେବୀ । ବର୍ଣ୍ଣଶିଷ୍ଟ କରଣ । ଖ୍ରୀ. ୧୫୯୬ (ଶକାବ୍ଦ ୧୫୧୯) କାର୍ତ୍ତିକ ମାସ ଅଠର ଦିନ ରବିବାର ଶୁକ୍ଳ ପ୍ରତିପଦା ତିଥିରେ ଜନ୍ମଗ୍ରହଣ କରିଥିଲେ । କଥିତ ଅଛି ଅଠର ବର୍ଷ ବୟସରେ ଶ୍ରୀ ଶ୍ୟାମାନନ୍ଦଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ଉଣେଇଶ ବର୍ଷ ସାତ ମାସରେ ଶ୍ୟାମାନନ୍ଦଙ୍କ ସହ ପ୍ରେମଭକ୍ତି ଧର୍ମ ସାରା ଗୌଡ଼ ଓ ଉତ୍କଳରେ ପ୍ରଚାର କରିଥିଲେ । ତାଙ୍କର ପ୍ରଚେଷ୍ଟାରେ ଓଡ଼ିଶାରେ ଆଚଣ୍ଡାଳ ବ୍ରାହ୍ମଣ, ରାଜା, ପ୍ରଜା, ଜମିଦାର ନିର୍ବିଶେଷରେ ଲକ୍ଷଲକ୍ଷ ନରନାରୀ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ଧାର୍ମିକ ଜୀବନ ଯାପନ କରିଥିଲେ । ଗୋସ୍ୱାମୀ ରସିକାନନ୍ଦ ବହୁ କୀର୍ତ୍ତନର ସ୍ରଷ୍ଟାରୂପେ ବୈଷ୍ଣବ ଧର୍ମୀୟ ସାହିତ୍ୟରେ ଅମର ହୋଇଛନ୍ତି । ସେ ରେମୁଣାର କ୍ଷୀରଚୋରା ମନ୍ଦିରରେ ଦେହରକ୍ଷା କରିଥିଲେ । ତାଙ୍କ ରଚିତ ଗ୍ରନ୍ଥ ଦୁଇଟିର ନାମ 'ଶାଖା ବର୍ଣ୍ଣନ' ଓ 'ରତିବିଳାସ' ।

**ରାଧାକୃଷ୍ଣ ଦାସ :**

ଧ୍ରୁବ ଚିନ୍ତାମଣି ଗ୍ରନ୍ଥର ରଚୟିତା ରାଧାକୃଷ୍ଣ ଦାସ ସମ୍ଭବତଃ ଜଳେଶ୍ୱର ଅଞ୍ଚଳର ଜଣେ ପ୍ରତିଭାଧର କବି । କବିଙ୍କର ପିତାମାତା, ଜନ୍ମସ୍ଥାନ ଓ ସାରସ୍ୱତ ସାଧନା ସମ୍ପର୍କରେ ଅଦ୍ୟାବଧି ଅଧିକ ଜଣାଯାଇ ନାହିଁ । ଗ୍ରନ୍ଥଟି ୩୦ ଅଧ୍ୟାୟ ବିଶିଷ୍ଟ ଓ ଏହା ସନ ୧୮୮୩ ସାଲରେ ସମ୍ପୂର୍ଣ୍ଣ ହୋଇଥିବାର ଜଣାଯାଏ । କାବ୍ୟର ଶେଷ ଅଧ୍ୟାୟରେ କବି ଲେଖିଛନ୍ତି—

Digitized by srujanika@gmail.com

"ଏ ଧ୍ରୁବ ଚିନ୍ତାମଣି ରସ । କହଇ ରାଧାକୃଷ୍ଣ ଦାସ ।।
ଏ ଶାସ୍ତ୍ର ହେଲେ ସମାପତ । ଏ ଅଣାଅସି ପଦ ଗ୍ରନ୍ଥ ।।"

**ରାମେଶ୍ୱର ଭଟ୍ଟାଚାର୍ଯ୍ୟ :**

କବି ରାମେଶ୍ୱର ଶିବାୟନ କାବ୍ୟ (୧୬୧୦ ଖ୍ରୀ:ରେ ରଚିତ) ରଚନା କରି ସୁଖ୍ୟାତି ଅର୍ଜ୍ଜନ କରିଛନ୍ତି । ତାଙ୍କ ପିତାଙ୍କର ନାମ ଲକ୍ଷ୍ମଣ ଓ ମାତା ରୂପବତୀ ଦେବୀ । ମୂଳ ବାସସ୍ଥାନ ମେଦିନୀପୁରର ଘାଣ୍ଟାଲ ମହକୁମାର ଯଦୁପୁର ଗ୍ରାମ । ବରଦା ପ୍ରଗଣାର ଜମିଦାରଙ୍କ ଅତ୍ୟାଚାରରେ ସେ ବାସସ୍ଥାନ ତ୍ୟାଗକରି କର୍ଣ୍ଣଗଡ଼ର ରାଜା ରାମସିଂହଙ୍କ ଆଶ୍ରୟରେ ରହିଥିଲେ । କବି ରାମେଶ୍ୱର 'ସତ୍ୟନାରାୟଣଙ୍କର' ନାମରେ ଖଣ୍ଡିଏ ଲୌକିକ କାବ୍ୟ ରଚନା କରିଥିଲେ । ତାଙ୍କ ରଚିତ 'ଶିବାୟନ' କାବ୍ୟ ଆଠ ପାଲାରେ ବିଭକ୍ତ । କବି ଏଥିରେ ଶିବଙ୍କ ମହିମା 'କୀର୍ତ୍ତିନ କରିଛନ୍ତି ।

**ଶ୍ୟାମାନନ୍ଦ ଦେବଗୋସ୍ୱାମୀ :**

ମେଦିନୀପୁର ଜିଲ୍ଲାର ଦଣ୍ଡେଶ୍ୱର ଗ୍ରାମରେ (ମୂଳ ନିବାସ ଧାରେନ୍ଦା) ସଦଗୋପ କୂଳରେ ଚୈତ୍ର ପୂର୍ଣ୍ଣିମା ତିଥିରେ ଶ୍ୟାମାନନ୍ଦ ଗୋସ୍ୱାମୀ ଜନ୍ମ ଗ୍ରହଣ କରିଥିଲେ ଓ ଆନୁମାନିକ ଖ୍ରୀ. ୧୬୩୦ ସ୍ନାନ ପୂର୍ଣ୍ଣିମା ପରଦିନ ଇହଲୀଳା ସମାପନ କରିଥିଲେ । ପିତାଙ୍କ ନାମ ଶ୍ରୀକୃଷ୍ଣ ମଣ୍ଡଳ ଓ ମାତା ଦ୍ୱାରିକା ଦେବୀ । ଶ୍ୟାମାନନ୍ଦଙ୍କର ପିଲା ଦିନର ନାମ 'ଦୁଃଖୀ' ଥିଲା । ଭକ୍ତିଭାବାପନ୍ନ ପିତାମାତାଙ୍କର ଅନେକ ପୁତ୍ର କନ୍ୟା ଅକାଳରେ ମୃତ୍ୟୁ ବରଣ କରିଥିବାରୁ ଏଇ ଶିଶୁଟିର ନାମ 'ଦୁଃଖୀ' ଦିଆ ହୋଇଥିଲା । ପରବର୍ତ୍ତୀ କାଳରେ ସେ କୃଷ୍ଣ ମନ୍ତ୍ରରେ ଦୀକ୍ଷିତ ହୋଇଥିବାରୁ ତାଙ୍କର ନାମ ଦୁଃଖୀକୃଷ୍ଣ ଦାସ ହୋଇଥିଲା । ଦୁଃଖୀକୃଷ୍ଣ ଦାସ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଶ୍ରୀ ଚୈତନ୍ୟ ଦେବଙ୍କର ଜଣେ ପ୍ରଧାନ ଭକ୍ତ ରୂପେ ପ୍ରସିଦ୍ଧି ହୋଇଥିଲେ । ତାଙ୍କର ଅଲୌକିକ ଭକ୍ତି ଭାବରେ ପ୍ରୀତ ହୋଇ ପରମାରାଧ୍ୟା ଶ୍ରୀ ରାଧାରାଣୀ ଶ୍ୟାମପ୍ରିୟା ତାଙ୍କୁ ଦର୍ଶନ ଦେଇଥିଲେ । ତାଙ୍କର ଏପରି ଦୁର୍ଲ୍ଲଭ କୃପାନୁଭୂତିରେ ବିମୁଗ୍ଧ ଆଚାର୍ଯ୍ୟ ଜୀବଗୋସ୍ୱାମୀ ତାଙ୍କୁ 'ଗୋସ୍ୱାମୀ ଶ୍ୟାମାନନ୍ଦ' ରୂପେ ଅଭିହିତ କରିଥିଲେ । ଗୁରୁଙ୍କ ଦ୍ୱାରା ଆଦିଷ୍ଟ ହୋଇ ଗୋସ୍ୱାମୀ ଶ୍ୟାମାନନ୍ଦ ଉତ୍କଳରେ ଭକ୍ତି ଧର୍ମ ପ୍ରଚାର କରି ଅଶେଷ ସାଫଲ୍ୟ ଅର୍ଜ୍ଜନ କରିଥିଲେ । ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଓଡ଼ିଶୀ କୀର୍ତ୍ତନ 'ରାଣୀହାଟି' ସଙ୍କୀର୍ତ୍ତନ ରୂପେ ପ୍ରସିଦ୍ଧ । ସେ ବହୁ ଓଡ଼ିଶୀ କୀର୍ତ୍ତନର ସ୍ରଷ୍ଟା । ତାଙ୍କ ରଚିତ 'ଅଦ୍ୱୈତ ତତ୍ତ୍ୱ', 'ଉପାସନା ସାର ସଂଗ୍ରହ' ଓ 'ବୃନ୍ଦାବନ ପରିକ୍ରମା' ପ୍ରଭୃତି ଗ୍ରନ୍ଥ ବିଖ୍ୟାତ ।

**ସନାତନ ବିଦ୍ୟାବାଗୀଶ :**

ବଙ୍ଗଳା ଭାଷାରେ ଶ୍ରୀମଦ୍ ଭାଗବତର ପ୍ରଥମ ଅନୁବାଦକ ରୂପେ ବିପ୍ର ସନାତନ ପ୍ରଖ୍ୟାତି ଅର୍ଜ୍ଜନ କରିଛନ୍ତି । ସେ ଭାଗବତ ଗ୍ରନ୍ଥର ଅନୁବାଦ କାଳରେ ଅନନ୍ୟୋପାୟ

Digitized by srujanika@gmail.com

ହୋଇ 'ଶ୍ରୀ ଜଗନ୍ନାଥ ଦାସ କୃତ ଭାଗବତର ଅପୂର୍ବ ବର୍ଣ୍ଣନ'ର ସାହାଯ୍ୟ ଗ୍ରହଣ କରିଥିଲେ । ତାଙ୍କର ସ୍ୱୀକାରୋକ୍ତିରୁ ଏହାର ପ୍ରମାଣ ମିଳେ ।

"ଏ ହେତୁ ଉତ୍କଳ ଭାଷା କରିଲି ଲଙ୍ଘନ ।
ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣ୍ଣନ ।।
ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହୋଇଯା ।
ବଙ୍ଗଜ ଭାଷାୟ ଉତ୍କଲ ମିଶାଇଯା ।।" ଇତ୍ୟାଦି । (ଭାଷାବନ୍ଧ ଭାଗବତ)

ବଙ୍ଗୀୟ କବି ସନାତନ ବିଦ୍ୟାବାଗୀଶ ଦଶମ ସ୍କନ୍ଧର ଶେଷ ଛ' ଅଧ୍ୟାୟରେ କବି ଜଗନ୍ନାଥ ଦାସଙ୍କ ଭାଗବତର ନବାକ୍ଷ ପଦାବଳୀକୁ ବଙ୍ଗଳା ଅକ୍ଷରରେ ଲେଖି ନିଜ ପୁସ୍ତକରେ ସଂଲଗ୍ନ କରିଥିବାର ପ୍ରମାଣ ଭାଷାବନ୍ଧ ଭାଗବତରୁ ମିଳେ । ଓଡ଼ିଆ ଭାଗବତର ରଚୟିତା ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଅନୁବାଦ ଯେ ପଡ଼ୋଶୀ ରାଜ୍ୟର ଅଧିବାସୀ ଓ ଅନୁବାଦକଙ୍କୁ ବିଶେଷ ପ୍ରଭାବିତ କରିଥିଲା ଏହା ହେଉଛି ତାହାର ଜ୍ୱଳନ୍ତ ନିଦର୍ଶନ ।

ଉପରଲିଖିତ କତିପୟ ସାରସ୍ୱତ ସାଧକଙ୍କ ବ୍ୟତୀତ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ରଚିତ 'ଧର୍ମ ମଙ୍ଗଳ'; 'ଅନାଦି ମଙ୍ଗଳ' ପ୍ରଭୃତି କାବ୍ୟ ଆଲୋଚ୍ୟ ଅଞ୍ଚଳର ମିଶ୍ରିତ ଭାଷା ପ୍ରଭାବିତ ରଚନା । ସେହି ଶତକର ଶେଷ ଭାଗରେ ମାଧବଲତା ନାମ୍ନୀ ଜଣେ ନାରୀକବି ସୁବଚନୀ ନାମ୍ନୀ ଦେବୀଙ୍କର ମହିମା ଗାନ କରିଥିବାର ଦେଖାଯାଏ ।

ଗଦାଧର ତର୍କବାଗୀଶ ସମ୍ଭବତଃ ୧୮୨୧-୨୨ ମସିହାରେ ଓଡ଼ିଆ ଭାଷାର ପ୍ରଥମ ବ୍ୟାକରଣ ରଚନା କରିଥିଲେ । ଏଥିରେ ନାମି ଲୋ, ଝୁଡ଼ି ଲୋ, କୁଣ୍ଟା କେରାୟୁ ଓ ଗଜପତି ପ୍ରଭୃତି ଉଦାହରଣ ଦିଆଯାଇଥିବାରୁ ପ୍ରଥମ ଓଡ଼ିଆ ବ୍ୟାକରଣ ରଚୟିତା ଗଦାଧର ମେଦିନୀପୁର ଅଧିବାସୀ ଥିବାର ମନେ କରାଯାଇପାରେ ।

ଉତ୍ତର-ପୂର୍ବାଞ୍ଚଳର ସାହିତ୍ୟିକମାନଙ୍କ ମଧ୍ୟରୁ ଅନେକ ଉଭୟ ଓଡ଼ିଆ ଓ ବଙ୍ଗଳା ସାହିତ୍ୟରେ କାବ୍ୟ କବିତାମାନ ରଚନା କରିଥିବାର ଦେଖାଯାଏ । ସେମାନଙ୍କ ମଧ୍ୟରେ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ, ନାଟ୍ୟକାର କୃପାସିନ୍ଧୁ ମିଶ୍ର, କବି ନିତ୍ୟାନନ୍ଦ ପାଣିଗ୍ରାହୀ, ନାଟ୍ୟକାର ଆଦ୍ୟାଚରଣ ପଣ୍ଡା, କବି ହରିଧନ ଭକ୍ତ ପ୍ରଭୃତି ଉଲ୍ଲେଖ-ଯୋଗ୍ୟ । ଏମାନଙ୍କ ରଚନା ସମସ୍ତ ଲୋକଙ୍କ ମଧ୍ୟରେ ବିଶେଷ ଆଦୃତ ହୋଇଥିବାର ଦେଖୁଁ । ଏତଦ୍‌ବ୍ୟତୀତ ଏ ଅଞ୍ଚଳର ଅନେକ ତରୁଣ ସାହିତ୍ୟିକ ଉଭୟ ଭାଷାରେ ଲେଖନୀ ଚାଳନା କରୁଥିବାର ଜଣାଯାଏ । ଦାନ୍ତନ ଅଞ୍ଚଳର ଶ୍ରୀ ରାମେଶ୍ୱର ପାଣିଗ୍ରାହୀ ଜଣେ ଉଭୟ ଭାଷାର କବି ଭାବରେ ସୁପରିଚିତ ।

Digitized by srujanika@gmail.com

## ଆଧୁନିକ ଓଡ଼ିଆ ସାହିତ୍ୟ ଓ ତା'ର ଭିତ୍ତିଭୂମି :

### ବାଲେଶ୍ୱର ଓ ବାରିପଦା :

ଖ୍ରୀ· ୧୮୫୩ ସାଲରେ ବାଲେଶ୍ୱର ସହରରେ ଇଂରାଜୀ ସ୍କୁଲ ପ୍ରତିଷ୍ଠା କରା-ଯାଇଥିଲା । ଖ୍ରୀ. ୧୮୬୯-୭୦ ସାଲରେ ଉତ୍ତର ବାଲେଶ୍ୱରରେ ତିନୋଟି ବିଦ୍ୟାଳୟ ସ୍ଥାପିତ ହୋଇ ଆଧୁନିକ ଶିକ୍ଷାର ପ୍ରସାର ଘଟିଥିଲା । ଲକ୍ଷ୍ମଣ ନାଥ ମଧ୍ୟ ଇଂରାଜୀ ସ୍କୁଲ, ଗଡ଼ପଦା ମଧ୍ୟମ ଶ୍ରେଣୀ ଭର୍ଣ୍ଣାକୁଲାର ସ୍କୁଲ, ଦେହୁଡ଼ଦାର ନିମ୍ନ ଭର୍ଣ୍ଣାକୁଲାର ସ୍କୁଲ ପ୍ରଭୃତି ଦେଶୀୟ ଲୋକଙ୍କ ଦ୍ୱାରା ପରିଚାଳିତ ଅନୁଷ୍ଠାନ, ମିସନାରୀ ପରିଚାଳିତ ବାଲେଶ୍ୱର ବାଳିକା ଭର୍ଣ୍ଣାକୁଲାର ସ୍କୁଲ ପ୍ରଭୃତି ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା ।

ଓଡ଼ିଶାରେ ଆଧୁନିକ ଓଡ଼ିଆ ସାହିତ୍ୟ ଓ ଶିକ୍ଷାର ବିକାଶ ହିଁ ବାଲେଶ୍ୱର ସହରକୁ କେନ୍ଦ୍ର କରି ଗଢ଼ି ଉଠିଥିଲା । ଊନବିଂଶ ଶତକର ଶେଷ ତିରିଶ ବର୍ଷ ଭିତରେ ବାଲେଶ୍ୱର ସହରରେ ପ୍ରେସ୍ ପ୍ରତିଷ୍ଠା, ପତ୍ରିକା ସମ୍ପାଦନା ଓ ସାହିତ୍ୟ ସଙ୍ଗଠନ ଠାରୁ ପାଠ୍ୟ ପୁସ୍ତକ ରଚନା—ସବୁ ଦୃଷ୍ଟିରୁ ବାଲେଶ୍ୱର ସହରର ଅବଦାନ ଉଲ୍ଲେଖନୀୟ । ଯେଉଁ କେତେଗୋଟି ପତ୍ରିକାମାନଙ୍କରେ ତତ୍କାଳୀନ ବାଲେଶ୍ୱର ଓ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ·ଅବଦାନ ଗୁରୁତ୍ୱପୂର୍ଣ୍ଣ; ସେହିପରି ପତ୍ରପତ୍ରିକା ଓ ସଂଗଠନକୁ ଏଠାରେ ଉଲ୍ଲେଖ କରି ସମ୍ମାନ ପ୍ରଦର୍ଶନ କରୁଛୁ ମାତ୍ର ।

ଫକୀରମୋହନ ସେନାପତି ବାଲେଶ୍ୱରର ପ୍ରଥମେ (୧୮୬୮ ମସିହା ଜୁଲାଇ ମାସରେ) ଉତ୍କଳ ପିଣ୍ଟିଂ ପ୍ରେସ୍ ସ୍ଥାପନ କରି ବୋଧ ଦାୟିନୀ ଓ ସମ୍ବାଦ ବାହିକା ପତ୍ରିକା ପ୍ରକାଶ କରିଥିଲେ । ବୋଧଦାୟିନୀ ୧୮୬୮ ଜୁଲାଇ ମାସରୁ ୧୮୭୧ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ମାସିକ ପତ୍ର ଭାବେ, ୧୮୭୧ ମସିହା ଜୁଲାଇ ମାସରୁ 'ବାଲେଶ୍ୱର ସମ୍ବାଦ ବାହିକା' ନାମରେ ୧୮୭୩ ମସିହା ସେପ୍‌ଟେମ୍ବର ମାସ ପର୍ଯ୍ୟନ୍ତ ନିୟମିତ ପ୍ରକାଶ ପାଇଥିଲା । ୧୮୭୪ ମସିହା ଅଗଷ୍ଟ ମାସରୁ ସାପ୍ତାହିକ ରୂପରେ ୧୮୭୭ ମସିହା ଡ଼ିସେମ୍ବର ପର୍ଯ୍ୟନ୍ତ ପ୍ରକାଶ ପାଇଥିଲା । ଫକୀରମୋହନଙ୍କ ପତ୍ରିକା ସହିତ ମେଦିନୀପୁର ଜିଲ୍ଲା ମହିଷା ଦଳର ଭୋଳାନାଥ ସାମନ୍ତରାୟ ସଂଶ୍ଳିଷ୍ଟ ଥିଲେ । ୧୮୭୩ ମସିହାରେ ରାଜା ବୈକୁଣ୍ଠନାଥ ଦେବଙ୍କ ପ୍ରେରଣା ଓ ସାହାଯ୍ୟରେ ବାଲେଶ୍ୱରର ଉତ୍କଳ ପ୍ରେସରୁ ଛପା ହୋଇ 'ଉତ୍କଳ ଦର୍ପଣ' ପ୍ରକାଶିତ ହେଲା । ଏଥିରେ ରାଧାନାଥଙ୍କ ମେଘଦୂତ, ଇତାଲୀୟ ଯୁବା, ବିବେକୀ, ମଧୁସୂଦନ ରାଓଙ୍କ ଶ୍ମଶାନ, ନିଶୀଥ ଚିନ୍ତା, ନିର୍ବାସିତର ବିଳାପ, ଅଯୋଧ୍ୟା ପ୍ରତ୍ୟାଗମନ ପ୍ରଭୃତି କବିତା ଓ ପ୍ରବନ୍ଧମାନ ପ୍ରକାଶିତ ହୋଇଥିଲା । ଏହା ମାସିକ ରୂପେ ଦୁଇ ବର୍ଷ, ୧୮୭୫ ମସିହା ଜାନୁୟାରୀ ମାସରୁ ପାକ୍ଷିକ ଭାବେ ଓ ୧୮୭୭ ମସିହାରୁ ସାପ୍ତାହିକୀ ସମ୍ବାଦପତ୍ର ରୂପେ ୧୮୮୫ ମସିହା ପର୍ଯ୍ୟନ୍ତ ପ୍ରକାଶ ଲାଭ କରିଥିଲା । ଓଡ଼ିଆ ସାହିତ୍ୟର ପ୍ରାଥମିକ ସାହିତ୍ୟରଥୀମାନଙ୍କର ସୃଷ୍ଟି ସମ୍ଭାର ଏଥିରେ ସ୍ଥାନିତ

Digitized by srujanika@gmail.com

ହୋଇଥିଲା, ୧୮୭୩ ମସିହାରେ ମଧୁସୂଦନ ରାଓଙ୍କ ପ୍ରେରଣାରେ 'ଶିକ୍ଷକ' ବ୍ରାହ୍ମସମାଜ ପକ୍ଷରୁ ୧୮୭୪ ଅଗଷ୍ଟ ମାସରେ 'ଉତ୍କଳ ସଂସ୍କାର' ୧୮୮୬, ମସିହାରେ 'ପ୍ରଜାବନ୍ଧୁ' ପ୍ରକାଶିତ ହେଲା । ଏଥିରେ ବଙ୍ଗଳା ଲେଖା ମଧ୍ୟ ପ୍ରକାଶିତ ହେଉଥିଲା । ଏତଦ୍‌ବ୍ୟତୀତ 'ତାରକା' (୧୮୮୩) 'ଧର୍ମବନ୍ଧୁ' (୧୮୮୪), 'ନବବିଧାନ' (୧୮୮୪), ହରିଭକ୍ତି ପ୍ରଦର୍ଶନୀ (୧୮୮୫) ପ୍ରଭୃତି ପତ୍ରିକା ପ୍ରକାଶିତ ହୋଇଥିଲା । ଏ ଭିତରେ 'ନବ ସମ୍ବାଦ' ପତ୍ରିକା ଭୂପତି ନାଥ ବସୁଙ୍କ ସମ୍ପାଦନାରେ ମାତ୍ର ଏକ ବର୍ଷ ପାଇଁ ପ୍ରକାଶ ପାଇ ବନ୍ଦ ହୋଇ-ଥିଲା । 'ସାମ୍ୟବାଦୀ' ଏପ୍ରିଲ (୧୮୮୭) ଓ 'ଓଡ଼ିଆ' ଅକ୍ଟୋବର (୧୮୮୭) ମାସରେ ପ୍ରକାଶିତ ହୋଇଥିଲା । "ଓଡ଼ିଆ ଓ ନବ ସମ୍ବାଦ" ଦୁଇଟି ପତ୍ରିକାର ମିଳିତ ଉଦ୍ୟୋଗରେ ଗୋଟିଏ ପତ୍ରିକା ଭାବରେ ୧୮୮୮ ମସିହା ଜାନୁୟାରୀ ମାସରେ ପ୍ରକାଶିତ ହେଲା । ଜାତୀୟ ଚେତନା ଅଭିବୃଦ୍ଧିରେ ଏ ସବୁ ପତ୍ରପତ୍ରିକାର ଭୂମିକା ଅଭିନନ୍ଦନୀୟ ଥିଲା । ପ୍ରଚାର (୧୯୧୬/୧୪) ଫକୀରମୋହନଙ୍କ ପ୍ରେରଣାରେ ବାଲେଶ୍ୱରରୁ ପ୍ରକାଶିତ ହୋଇଥିଲା ।

ଡଗର (୧୯୩୭) କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସଂପାଦନାରେ ପ୍ରକାଶିତ ହେଲା । ହରେକୃଷ୍ଣ ମହତାବଙ୍କ ସଂପାଦନାରେ ପ୍ରଜାତନ୍ତ୍ର, ପ୍ରଥମେ ସାପ୍ତାହିକା ରୂପେ ବାଲେଶ୍ୱରରୁ (୧୯୪୭ ଠାରୁ ଦୈନିକ ରୂପେ କଟକରୁ) ପ୍ରକାଶିତ ହେଲା । ଏହାହିଁ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ବାଲେଶ୍ୱର ସହରରେ ଗଢ଼ି ଉଠିଥିବା ଭାଷା-ସାହିତ୍ୟକ-ସାଂସ୍କୃତିକ ଚେତନା ପ୍ରକାଶନ କ୍ଷେତ୍ରରେ ପ୍ରତିଷ୍ଠିତ ମାଧ୍ୟମର ସଂକ୍ଷିପ୍ତ ପରିଚୟ । ଏହା ପରେ ଆଶୁତୋଷ ରାୟଙ୍କ ସପାଦନାରେ 'ହିତବାଦୀ' (୧୯୪୮-୪୯), ମନୋଜଦାସଙ୍କ ସଂପାଦନାରେ 'ଦିଗନ୍ତ' (୧୯୫୦) ପ୍ରଥମେ ବାଲେଶ୍ୱରରୁ ପରେ କଟକରୁ ପ୍ରକାଶିତ ହୋଇଥିଲା । ଏପରି ବହୁ ପତ୍ରପତ୍ରିକା ବାଲେଶ୍ୱରରୁ ସଂପାଦିତ ଓ ପ୍ରକାଶିତ ହୋଇ ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ବୁଦ୍ଧିମନ୍ତ ଓ ସମୃଦ୍ଧ କରିଅଛି ଓ କରୁଅଛି । ତା'ର ଉଲ୍ଲେଖ ଏଠାରେ କରୁନାହିଁ । ଉପାନ୍ତରେଖାର ନିକଟବର୍ତ୍ତୀ ଜଳେଶ୍ୱର ସହରରୁ ପ୍ରକାଶିତ କେତୋଟି ପତ୍ରିକା ସମ୍ପର୍କରେ ଅବଶ୍ୟ ଉଲ୍ଲେଖ କରିବା ପ୍ରୟୋଜନ । ଜଳେଶ୍ୱରର ଶାଳକୋଠାରୁ ରାମଚନ୍ଦ୍ର ସିଂହଙ୍କ ସଂପାଦନାରେ 'ପ୍ରଭା' (୧୯୭୭) ଅଧ୍ୟାପକ ବିପିନବିହାରୀ ବଶ୍ୱାଳଙ୍କ ସଂପାଦନାରେ କ, ଖ, ଗ—(୧୯୭୬) ସଙ୍କଳ୍ପ (୧୯୭୩), ସ୍ମରଣିକା (୧୯୮୪) ଶୀତାଂଶୁରଞ୍ଜନ ସେନାପତିଙ୍କ ସଂପାଦନାରେ ବହ୍ନିଶିଖା (୧୯୮୧, ବାଲିଆ ପାଳର ଜାମୁକୋଣ୍ଡାରୁ ନିବାରଣ ଜେନାଙ୍କ ସଂପା-ଦନାରେ ସବୁଜିମା (୧୯୮୧), ରୁପ୍‌ସାରୁ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ସଂପାଦନାରେ ସାଂପ୍ରତିକ (୧୯୮୧), ଗୀତକୃଷ୍ଣ ମୂର୍ତ୍ତି ପରିଷଦ-(ମୁଣ୍ଡଡଣିଆ-ଜଳେଶ୍ୱର) ମୁଖପତ୍ର ରୂପେ 'ସମକାଳୀନ ସାହିତ୍ୟ' (୧୮୮୪ ବିଷୁବ ସଂଖ୍ୟା) ଭାବରେ ପ୍ରକାଶ ପାଇଛି ।

Digitized by srujanika@gmail.com

ଉପର ଲିଖିତ ପତ୍ରପତ୍ରିକା ମାନଙ୍କ ମଧ୍ୟରୁ ଖୁବ୍ କମ୍ ପତ୍ରିକା ଜନ୍ମ ପରେ ବାଲ୍ୟ ଓ କୈଶୋର ଅବସ୍ଥା ଅତିକ୍ରମ କରି ଯୌବନରେ ପଦାର୍ପଣ କରିଅଛନ୍ତି । କେହି କେହି ଆର୍ଥିକ ଦୁରବସ୍ଥା, ପରିଚାଳନାଗତ ତ୍ରୁଟି, ଏକଗୁଁଆ ମନୋଭାବ, ସାଂଗଠନିକ ଅକ୍ଷମତା ହେତୁ ଅକାଳ ମୃତ୍ୟୁବରଣ କରିଛନ୍ତି । ଆଲୋଚ୍ୟ ଅଞ୍ଚଳର ଭାଷା ସାହିତ୍ୟ ଓ ସଂସ୍କୃତିକୁ ଉପରୋକ୍ତ ପତ୍ରିକା ଗୁଡ଼ିକର ଅବଦାନ ଅବଶ୍ୟ ସ୍ୱୀକାର୍ଯ୍ୟ । ଏତଦ୍‌ବ୍ୟତୀତ ଏ ଅଞ୍ଚଳରେ ବିଭିନ୍ନ ବିଦ୍ୟାଳୟ ଓ ମହାବିଦ୍ୟାଳୟର ମୁଖପତ୍ର ରୂପେ ପ୍ରକାଶ ପାଇଥିବା ପତ୍ରିକାଗୁଡ଼ିକରେ ବହୁ ଛାତ୍ର, ଶିକ୍ଷକ/ଅଧ୍ୟାପକ ନିଜକୁ ସାରସ୍ୱତ ସାଧକ ଭାବରେ ପ୍ରତିଷ୍ଠିତ ହେବାରେ ପ୍ରୟାସୀ ଓ ଯତ୍ନଶୀଳ ।

ବାଲେଶ୍ୱରରେ ପ୍ରେସ ପ୍ରତିଷ୍ଠା ଓ ପତ୍ର ପତ୍ରିକା ପ୍ରକାଶିତ ହେବାରୁ ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ଅନେକ ଲେଖକ ଓଡ଼ିଆରେ-ସାହିତ୍ୟିକ ରଚନାମାନ ଲେଖି ଆତ୍ମ ପ୍ରକାଶ କରିବାର ସୁଯୋଗ ପାଇଥିଲେ । ସେମାନଙ୍କ ମଧ୍ୟରୁ ରୁଦ୍ରନାରାୟଣ ଷଡ଼ଙ୍ଗୀ କାବ୍ୟତୀର୍ଥ (ନାଂପୋ) ମେଦିନୀପୁରର ଭୋଳାନାଥ ସାମନ୍ତରାୟ (ମହିଷାଦଳ) ପ୍ରିୟନାଥ ମହାନ୍ତି (କାନ୍ଥୀ) କଣ୍ଟାଡ଼ାର ଜଗନ୍ନାଥ ସିଂହ ଓ ଦେହୁଡ଼ଦା ସ୍କୁଲର ଭୂତପୂର୍ବ ଛାତ୍ର ରୁଦ୍ରନାରାୟଣ ପଟ୍ଟନାୟକ, ନରେନ୍ଦ୍ରନାଥ ଦାସ ମହାପାତ୍ର (ଅଲଳପୁର) ପ୍ରଭୃତି ଉଲ୍ଲେଖ୍ୟ ଯୋଗ୍ୟ ବ୍ୟକ୍ତି । ଉତ୍ତର ବାଲେଶ୍ୱର ଅଞ୍ଚଳରେ କେତେକ ହସ୍ତ ଲିଖିତ ପତ୍ରିକା ପ୍ରକାଶ କରାଯାଇଥିବାର ଦେଖାଯାଏ । ସାହିତ୍ୟ ସଂସଦ ପ୍ରଭୃତି ଗଠନ କରାଯାଇ ବହୁ ଲେଖକ ବହୁ କବିତା, ଗଳ୍ପ, ଉପନ୍ୟାସ, ଆଲୋଚନାମାନ ଲେଖି ଏହି ସମସ୍ତ ପତ୍ରିକାମାନଙ୍କରେ ପ୍ରକାଶ କରୁଥିଲେ । *

ଊନବିଂଶ ଶତକରେ ଘଟିଥିବା ଦୁଇଗୋଟି ମୁଖ୍ୟ ଘଟଣା, ନ'ଅଙ୍କ ଦୁର୍ଭିକ୍ଷ ଓ ଭାଷା ଆନ୍ଦୋଳନର ପ୍ରବଳ ଧକ୍‌କା ଅର୍ଦ୍ଧସୁପ୍ତ ଓଡ଼ିଆ ଜାତିର ପ୍ରାଣରେ ନୂତନ ଚେତନା ପ୍ରବାହ ସୃଷ୍ଟି କଲା । ଖ୍ରୀ. ୧୮୬୫-୬୬ରେ ଓଡ଼ିଶାରେ ଏକ ପ୍ରଳୟଙ୍କରୀ ଦୁର୍ଭିକ୍ଷ ଦେଖା ଦେଇଥିଲା । ଏହି ଦୁର୍ଭିକ୍ଷରେ ପ୍ରାୟ ୪୫ ହଜାର ପର୍ଯ୍ୟନ୍ତ ଲୋକ ମୃତ୍ୟୁବରଣ କରିଥିଲେ । ପୁରୀ ଗଜପତି ରାଜାଙ୍କର ନ'ଅଙ୍କରେ ଦୁର୍ଭିକ୍ଷ ସଂଘଟିତ ହୋଇଥିବାରୁ ଏହାକୁ ନ'ଅଙ୍କ ଦୁର୍ଭିକ୍ଷ କୁହାଯାଏ । ଦୁର୍ଭିକ୍ଷ ପରେ ଏତେ ବିପୁଳ ସଂଖ୍ୟକ ଲୋକଙ୍କର ମୃତ୍ୟୁ ଘଟିବାରୁ ଇଂରେଜ ସରକାରଙ୍କ ଅପାରଗତା ପ୍ରମାଣିତ ହେଲା । ସେତେବେଳେ କମିଶନର ଥିବା

* ନାଂପରୁ ପ୍ରକାଶିତ 'ପଲ୍ଲୀବାଣୀ' '(୧୩୪୪ ସାଲ)' 'ମାତୃବାଣୀ' (୧୩୪୪ ସାଲ) ଂ ରମାକାନ୍ତ ରଣା ଓ ଶ୍ରୀ ଯୋଗେଶଚନ୍ଦ୍ର ଜେନାଙ୍କ ସମ୍ପାଦନାରେ ପ୍ରକାଶିତ । ରାଧାମାଧବ ଗିରିଙ୍କ ଉଦ୍ୟମରେ ଝାଲିନାଗ୍ରାମରେ 'ସୁବର୍ଣ୍ଣରେଖା' ସାହିତ୍ୟ ସଂସଦ ଗଠିତ ହୋଇଥିଲା ।

Digitized by srujanika@gmail.com

ରେଭେନ୍‌ସା ସାହେବ ଦୁର୍ଭିକ୍ଷ ପରବର୍ତ୍ତୀ ଓଡ଼ିଶାରେ ବହୁତ ବିକାଶମୂଳକ ଯୋଜନା ଆରମ୍ଭ କଲେ । ଓଡ଼ିଶାର ଶିକ୍ଷା ବିସ୍ତାର ସେହି ଯୋଜନାର ଏକ ଅପରିହାର୍ଯ୍ୟ ଅଙ୍ଗ ଥିଲା । ଓଡ଼ିଶାର ପ୍ରାଚୀନ ଇତିହାସ, ସଂସ୍କୃତି ଓ ସାହିତ୍ୟର ଆଲୋଚନା ଆରମ୍ଭ ହେଲା । ଏହି ପ୍ରସଙ୍ଗରେ ହଣ୍ଟର, ଷ୍ଟାର୍ଲିଂ ଓ ବିମସ୍ ସାହେବଙ୍କ ନାମ ସ୍ମରଣୀୟ । ଏ ତିନହେଁ ଥିଲେ ଉଚ୍ଚମାନର ଗବେଷକ ପଣ୍ଡିତ । ହଣ୍ଟର ସାହେବଙ୍କ ଇଂରେଜୀରେ ଓଡ଼ିଶା ଇତିହାସ (୧୮୭୧) ଓ ଷ୍ଟାର୍ଲିଂ ସାହେବଙ୍କ ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ପ୍ରବନ୍ଧ ପ୍ରକାଶ ପାଇବାରୁ ଓଡ଼ିଶାର ପ୍ରାଚୀନ ଗୌରବ ପ୍ରତିଷ୍ଠିତ ହେଲା । ପରବର୍ତ୍ତୀ ସମୟରେ ୧୮୬୮ ଓ ୭୦ ମଧ୍ୟରେ ଭାଷା ଆନ୍ଦୋଳନ ସେହିପରି ଏକ ଜାତୀୟ ଚେତନା ସୃଷ୍ଟିକାରୀ ଘଟଣା । ଓଡ଼ିଶାରେ ଓଡ଼ିଆ ଭାଷାକୁ ଲୋପ କରି ବଙ୍ଗଳା ଭାଷା ପ୍ରବର୍ତ୍ତନ କରିବା ଲାଗି ଓଡ଼ିଶାରେ ନିଯୁକ୍ତ ଥିବା ବଙ୍ଗୀୟ କର୍ମଚାରୀମାନେ ଗୋଟାଏ ହୀନ ଷଡ଼ଯନ୍ତ୍ର ଆରମ୍ଭ କଲେ । ମାତ୍ର ସେତେବେଳେ ଓଡ଼ିଶାରେ ଏକ ମଧ୍ୟବିତ୍ତ ଶିକ୍ଷିତ ଗୋଷ୍ଠୀ ସୃଷ୍ଟିହୋଇ ସାରିଥିଲେ । ଓଡ଼ିଶାର ରାଜନ୍ୟଗଣ ଓଡ଼ିଆ ଭାଷା ସମ୍ପର୍କରେ ଆତ୍ମ ସଚେତନ ହୋଇ ଉଠିଥିଲେ । ଏମାନଙ୍କ ସହିତ ତତ୍‌କାଳୀନ ବାଲେଶ୍ୱର କଲେକ୍ଟର ସାର୍ ଜନ୍ ବିମସ୍ ମିଳିତ ହୋଇ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନକୁ ପ୍ରତିହତ କଲେ । ଓଡ଼ିଶାର ବିଦ୍ୟାଳୟ ଗୁଡ଼ିକରେ ଓଡ଼ିଆ ଭାଷା ପ୍ରଚଳନ ନିମନ୍ତେ ସରକାରୀ ଆଦେଶ ପ୍ରବର୍ତ୍ତନ ହେଲା । ଏସବୁ ଦୃଷ୍ଟିରୁ ନ'ଅଙ୍କ ଦୁର୍ଭିକ୍ଷ ଓ ଭାଷା ଆନ୍ଦୋଳନ ପ୍ରକୃତରେ ପରବର୍ତ୍ତୀ ସମୟରେ ଓଡ଼ିଶାର ପ୍ରକୃଷ୍ଟ କଲ୍ୟାଣ ସାଧନ କରିଅଛି । ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି ଲାଗି ଓଡ଼ିଶାର ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ସ୍ରଷ୍ଟାଗଣ ଆବିର୍ଭୂତ ହେବା ସଙ୍ଗେ ସଙ୍ଗେ ଏହି ନବୀନ ସ୍ରଷ୍ଟା ମାନଙ୍କର ସାହିତ୍ୟର ବିଭିନ୍ନ ବିଭବର ସୃଷ୍ଟି ସମ୍ଭାରକୁ ଅଭିନନ୍ଦିତ କରିବା ସହିତ ପ୍ରକାଶନ ଓ ପରିପ୍ରଚାର ମାଧ୍ୟମ ସବୁ ସୃଷ୍ଟି ହେଲା । ରାଧାନାଥ, ଫକୀରମୋହନ, ଭକ୍ତକବି ମଧୁସୂଦନ ପ୍ରଭୃତି ପ୍ରମୁଖ ଓଡ଼ିଆ କବି ଓ ମହାତ୍ମା ଜନ୍ ବିମସ୍‌ଙ୍କ ପରି ଗୁଣଗ୍ରାହୀ ସୁପଣ୍ଡିତ ଓ ଓଡ଼ିଶା ହିତୈଷୀ ଦକ୍ଷ ପ୍ରଶାସକଙ୍କର ସାରସ୍ୱତ ସାଧନାର କ୍ଷେତ୍ର ରୂପେ ବାଲେଶ୍ୱର ସହର ପରିଚିତ ହୋଇଥିଲା । ସ୍ୱନାମଧନ୍ୟ ପ୍ରଜାବତ୍ସଳ ଜାତିପ୍ରେମୀ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେବଙ୍କ ପ୍ରଗାଢ଼ ପ୍ରଚେଷ୍ଟା ଫଳରେ ବାରିପଦାରେ ଓଡ଼ିଆ ଭାଷା ସାହିତ୍ୟର ପରିପ୍ରଚାର ନିମନ୍ତେ ପ୍ରଗାଢ଼ ଉଦ୍ୟମ-ଏସବୁ ପରି ପ୍ରେକ୍ଷୀରେ ଉଲ୍ଲିଖିତ ଦୁଇଗୋଟି ସହର ବାଲେଶ୍ୱର ଓ ବାରିପଦାରେ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି କର୍ମ ପରିଚାଳିତ ହୋଇଥିବାର ଦେଖାଯାଏ ।

**ବାରିପଦା :**

ମୟୂରଭଞ୍ଜର ଭଞ୍ଜ ରାଜାଗଣ କଳା ସାଧନା ଓ ସଂସ୍କୃତିର ପୃଷ୍ଠପୋଷକତା କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିଲେ । ମହାରାଜା ରଘୁନାଥ ଭଞ୍ଜ (୧୬୨୮-୫୦ ଖ୍ରୀ:)

Digitized by srujanika@gmail.com

'ରସଲହରୀ', କାବ୍ୟ ରଚନା କରିଥିଲେ । ଭଞ୍ଜବଂଶୀୟ କୌଣସି ଜଣେ ରାଜାଙ୍କ ଦ୍ୱାରା 'ମୁଗ୍ଧବୋଧ ଅଭିଧାନ' ସଂକଳିତ ହୋଇଥିଲା ।

ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ (୧୮୬୭-୧୮୮୨ ଖ୍ରୀ.)ଙ୍କ ସମୟରେ ବାରିପଦାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ ଆରମ୍ଭ ହେଲା । ତାଙ୍କ ସମୟରେ ଗୋଟିଏ ମ. ଇ. ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ୧୮୮୩ ଖ୍ରୀ.ରେ ଏହି ମ. ଇ. ବିଦ୍ୟାଳୟ ହାଇସ୍କୁଲକୁ ଉନ୍ନୀତ ହୋଇ ୧୮୯୩ ବେଳକୁ ପୂର୍ଣ୍ଣ ବିକଶିତ ଉଚ୍ଚ ବିଦ୍ୟାଳୟରେ ପରିଣତ ହୋଇଥିଲା । ତତ୍କାଳୀନ ମୟୂରଭଞ୍ଜ ରାଜ ହାଇସ୍କୁଲ ପରବର୍ତ୍ତୀ ସମୟରେ ବାରିପଦା ହାଇସ୍କୁଲ ଭାବରେ ନାମିତ ହୋଇଥିଲା । ୧୯୫୧ ମସିହାରେ ପୁଣି ଏହା ମହାରାଜା କୃଷ୍ଣଚନ୍ଦ୍ରଙ୍କ ନାମାନୁସାରେ ନାମିତ ହୋଇଥିଲା ।

ଚଳିତ ଶତକର ଆରମ୍ଭ ବେଳକୁ ବାରିପଦାରେ ପାଞ୍ଚଗୋଟି ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ଏସବୁ ବିଦ୍ୟାଳୟମାନଙ୍କରୁ ଅନେକ ଛାତ୍ର ମାଟ୍ରିକୁଲେଟ୍ ଭାବରେ ଉନ୍ନୀତ ହୋଇପାରିଥିଲେ । ଉଚ୍ଚତର ଶିକ୍ଷାଲାଭ ନିମନ୍ତେ ଅନେକ ଯୁବକ ବାହାରକୁ ଯାଇ ଶିକ୍ଷା ଲାଭ କରିଥିଲେ । ଏତଦ୍ବ୍ୟତୀତ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଓ ବଙ୍ଗଳାରୁ ଅନେକ ଶିକ୍ଷିତ ଲୋକେ ଏ ରାଜ୍ୟକୁ ଚାକିରି ଉଦ୍ଦେଶ୍ୟରେ ଆସି ବିଭିନ୍ନ ସ୍ଥାନରେ ବସବାସ କରି ରହିଥିଲେ ।

ନାରୀ ଶିକ୍ଷା ନିମନ୍ତେ ୧୯୦୧ ମସିହା ମଧ୍ୟରେ ଦୁଇଗୋଟି ଏଲ୍. ପି. ସ୍କୁଲ ବାରିପଦାରେ ପ୍ରତିଷ୍ଠିତ ହୋଇଥିଲା । ୧୯୨୦ ମସିହା ବେଳକୁ ଏହା ସାତ ଗୋଟିକୁ ବୃଦ୍ଧି ପାଇଥିଲା । ୧୯୫୧ ଖ୍ରୀ. ବେଳକୁ ମହାରାଣୀ ପ୍ରେମକୁମାରୀଙ୍କ ନାମାନୁସାରେ ବାଳିକା ଉଚ୍ଚ ବିଦ୍ୟାଳୟ ନାମିତ ହୋଇଥିଲା । ୧୯୪୯ ମସିହା ଜାନୁୟାରୀ ପହିଲାରେ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ନାମାନୁସାରେ ବାରିପଦାରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଆନୁକୂଲ୍ୟରେ ପ୍ରଥମ କଲେଜ ପ୍ରତିଷ୍ଠିତ ହୋଇଥିଲା ।

'ଉତ୍କଳ-ଅଜ୍ଞାନ-ତମ-ଧ୍ୱଂସକାରୀ, ପ୍ରଥିତଯଶା ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓଙ୍କ ପୃଷ୍ଠପୋଷକତାରେ ରାଜଧାନୀ ବାରିପଦାର ସାହିତ୍ୟ ଓ ସାଂସ୍କୃତିକ ବାତାବରଣ ମାର୍ଜିତ ଓ ଉନ୍ନତ ହୋଇଥିଲା । ମହାରାଜାଙ୍କ ପୋଷକତା ଫଳରେ ଗୋବିନ୍ଦ ଚନ୍ଦ୍ର ମହାପାତ୍ର 'ମହାଭାରତର ଗଦ୍ୟାନୁବାଦ' ଓ କନ୍ହାଇଲାଲ ବୋଷଙ୍କର 'ଗୀତା' ପ୍ରକାଶିତ ହୋଇଥିଲା । 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ନିମନ୍ତେ ମହାରାଜା ପୂର୍ଣ୍ଣଚନ୍ଦ୍ର ଅକୁଣ୍ଠ ଆର୍ଥିକ ସାହାଯ୍ୟ ଓ ସହଯୋଗ ପ୍ରଦାନ କରିଥିଲେ ।

## ସାଂସ୍କୃତିକ ସଂଗଠନ :

୧୯୩୪ ମସିହାରେ ପୂର୍ବତନ ରାଜ୍ୟର କେତେଜଣ ରାଜକର୍ମଚାରୀ ବାରିପଦା ସାହିତ୍ୟ ସମାଜ ଗଠନ କରିଥିଲେ । ଏହା ୧୯୪୪ ମସିହାଯାଏ ଶିକ୍ଷା ଓ ସାଂସ୍କୃତିକ

Digitized by srujanika@gmail.com

ଚେତନା ପ୍ରତିଷ୍ଠା ଦିଗରେ ଯତ୍ନଶୀଳ ଥିଲା । ପରବର୍ତ୍ତୀ ସମୟରେ ଏହାର କାର୍ଯ୍ୟଧାରା ମାନ୍ଦା ପଡ଼ିଯାଇଥିଲା ।

**ଲାଇବ୍ରେରୀ ଓ ଯାଦୁଘର :**

ବାରିପଦାରେ ୧୮୯୪ ମସିହାରେ ପ୍ରତିଷ୍ଠିତ ମହାରାଜା ଶ୍ରୀରାମଚନ୍ଦ୍ର ପାଠାଗାର (ଭିକ୍ଟୋରିଆ ଡାଇମଣ୍ଡ ଜୁବୁଲି ପାବ୍ଲିକ ଲାଇବ୍ରେରୀ) ସମଗ୍ର ଓଡ଼ିଶାରେ ବୃହତ୍ତମ ସାଧାରଣ ପାଠାଗାର ଅଟେ ।

୧୯୨୩ରେ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ସମୟରେ ବାରିପଦା ମ୍ୟୁଜିୟମ୍ ପ୍ରତିଷ୍ଠିତ ହୋଇଛି । ଏଠାରେ ବହୁ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ଦଲିଲ, ତାମ୍ର ଫଳକ, ସ୍ୱର୍ଣ୍ଣ, ରୌପ୍ୟ, ତାମ୍ର ମୁଦ୍ରା, ଶିଳାଲେଖ, ରାଜକୀୟ ସନନ୍ଦ, ଚିତ୍ରିତ ତାଳପତ୍ର ପାଣ୍ଡୁଲିପି ଓ ମୋହର ପ୍ରଭୃତି ସଂରକ୍ଷିତ ।

**ବାରିପଦାରେ ଛାପାଖାନା, ଖବର କାଗଜ ଓ ପତ୍ରିକା :**

ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଦେଓଙ୍କ ସମୟରେ ଛାପାଖାନା ପ୍ରଥମେ ସ୍ଥାପିତ ହୋଇଥିଲା । 'ମୟୂରଭଞ୍ଜ ପାକ୍ଷିକ ପତ୍ରିକା' ନାମରେ ପ୍ରଥମେ ଏକ ପତ୍ରିକା ବାରିପଦାରୁ ହରପ୍ରସାଦ ଦାସଙ୍କ ସମ୍ପାଦନାରେ ୧୮୭୯ ମସିହା ଏପ୍ରିଲ ମାସରେ ପ୍ରକାଶିତ ହୋଇ-ଥିଲା । ମୟୂରଭଞ୍ଜ ରାଜ୍ୟର ରାଜନୈତିକ ଓ ଶିଳ୍ପ ବିଷୟସମୂହ ଓଡ଼ିଆ ଭାଷାରେ ପ୍ରକାଶ କରିବା ମୂଳ ଲକ୍ଷ୍ୟ ରଖାଯାଇ ଏ ପତ୍ରିକା ପ୍ରକାଶ କରାଯାଇଥିଲା । ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ ଶାସନଭାର ଗ୍ରହଣ କଲା ପରେ ବାରିପଦାରେ ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ପ୍ରେସ୍ ପ୍ରତିଷ୍ଠା କଲେ । ତହିଁରୁ 'ଉତ୍କଳ ପ୍ରଭା' ନାମରେ ମାସିକ ସାହିତ୍ୟ ପତ୍ରିକା ୧୮୯୧ ଅପ୍ରେଲ ମାସରେ ପ୍ରକାଶ ପାଇଲା । ଏହା ପାଞ୍ଚ ବର୍ଷ ନିୟମିତ ଭାବରେ ପ୍ରକାଶିତ ହୋଇଥିଲା । ଶିକ୍ଷିତ ଗୋଷ୍ଠୀ ମଧ୍ୟରେ ଓଡ଼ିଆ ଭାଷାକୁ ପ୍ରିୟ ଓ ସମୃଦ୍ଧ କରି ଓଡ଼ିଆ ଭାଷାରେ ପ୍ରବନ୍ଧମାନ ରଚନା କରିବା ଲକ୍ଷ୍ୟ ନେଇ ଏ ପତ୍ରିକାର ଜନ୍ମ । ଏଥିରେ ନିୟମିତ ଭାବରେ ବିଜ୍ଞାନ, ଦର୍ଶନ, ଧର୍ମ, ରାଜନୀତି ପ୍ରଭୃତି ବିଷୟରେ ପ୍ରବନ୍ଧ-ମାନ ପ୍ରକାଶିତ ହୋଇଥିଲା ଓ ବହୁ ତରୁଣ ଲେଖକ ଉଚ୍ଚକୋଟୀର ଲେଖା ପାଇଁ ପୁରସ୍କୃତ ହେଉଥିଲେ । ୧୯୦୫ ଖ୍ରୀ. ଅକ୍ଟୋବର ମାସରେ 'ବାରିପଦା ସମ୍ମିଲନୀ ପ୍ରିଣ୍ଟିଂ କମ୍ପାନୀ' ନାମରେ ଗୋଟିଏ ପ୍ରାଇଭେଟ ପ୍ରେସରୁ 'ମନୋରମା' ସାପ୍ତାହିକୀ ପ୍ରକାଶିତ ହୋଇ ଗୃହ ବର୍ଷ ପରିଚାଳିତ ହୋଇଥିଲା । ୧୯୩୧-୩୨ ମସିହାରେ 'ମୟୂରଭଞ୍ଜ ଗେଜେଟ' ନାମରେ ଓଡ଼ିଆ ଓ ଇଂରାଜୀ ଭାଷାରେ ଏକ ତ୍ରୈମାସିକୀ ପ୍ରକାଶିତ ହୋଇଥିଲା । ଗେଜେଟ୍‌ରେ ଓଡ଼ିଆ 'ସଂସ୍କରଣ ଭଞ୍ଜ ପ୍ରଦୀପ' ନାମରେ ୧୯୩୬ ଅକ୍ଟୋବର ମାସରେ ଓ ଇଂରାଜୀ ସଂସ୍କରଣ 'ମୟୂରଭଞ୍ଜ କ୍ରନିକ୍ଲ' ନାମରେ ଅକ୍ଟୋବର

Digitized by srujanika@gmail.com

୧୯୦୬ ମସିହାରୁ ପ୍ରକାଶିତ ହେଲା । 'ଦ ମୟୁରଭଞ୍ଜ ଷ୍ଟେଟ ଗେଜେଟ' ପାକ୍ଷିକ (ସରକାରୀ ନିୟନ୍ତ୍ରିତ) ୧୯୩୭ ମସିହା ଜାନୁୟାରୀ ମାସଠାରୁ ୧୯୪୯ ମସିହା ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ମୟୂରଭଞ୍ଜ ଇନ୍‌ଫରମେସନ ବୁଲେଟିନ ୧୯୪୩ ମସିହା ଜୁଲାଇ ୨୨ ତାରିଖରେ ପ୍ରକାଶିତ ହେଲା ।

ମୟୁରଭଞ୍ଜ ଷ୍ଟେଟ ପ୍ରେସରୁ ମହାରାଜା ପ୍ରତାପ ଚନ୍ଦ୍ରଙ୍କ ସାହାଯ୍ୟରେ ୰ରାଧାଗୋବିନ୍ଦ ଦାସଙ୍କ ସମ୍ପାଦନାରେ 'ଭଞ୍ଜ ପ୍ରଦୀପ' ପ୍ରକାଶିତ ହୋଇଥିଲା । ଏଥିରେ ଓଡ଼ିଶା ସମେତ ଭାରତର ବହୁ ବିଦ୍ୱାନ୍ ଓ ଗବେଷକମାନଙ୍କର ଲେଖା ପ୍ରକାଶିତ ହୋଇଥିଲା । ଏତଦ୍‌ବ୍ୟତୀତ ବିମ୍ବାଧର ବର୍ମା ଓ ଗୋପାଳ କାନୁନ୍‌ଗୋଙ୍କର ବିଭିନ୍ନ ଚିତ୍ର ଉନ୍ନତ ମୁଦ୍ରଣଶିଳ୍ପ ଭାବରେ ପ୍ରକାଶିତ ହେଉଥିଲା ।

ମହେଶଚନ୍ଦ୍ର ମହାପାତ୍ରଙ୍କ ସମ୍ପାଦନାରେ 'ଚନ୍ଦ୍ରିକା' ୧୯୫୧-୫୨ ମସିହାରେ ଏକ ବର୍ଷ ପାଇଁ ପ୍ରକାଶିତ ହୋଇ ଅର୍ଥାଭାବରୁ ବନ୍ଦ ହୋଇଗଲା । ପ୍ରଦେଶ ମିଶ୍ରଣ ପରେ 'ମୟୁରଭଞ୍ଜ ଜାଗରଣ' ୧୯୬୩ ମସିହାରେ ଅଳ୍ପ ସମୟ ପାଇଁ ପ୍ରକାଶିତ ହୋଇଥିଲା । ଏ ଭିତରେ ବାରିପଦାରୁ 'ଜନତା' ନାମରେ ଏକ ପତ୍ରିକା ମଧ୍ୟ ପ୍ରକାଶିତ ହୋଇଥିଲା ।

ଏତଦ୍‌ବ୍ୟତୀତ ବିଭିନ୍ନ ସମୟରେ ବାଲେଶ୍ୱର ଓ ବାରିପଦାରୁ ପ୍ରକାଶ ପାଉଥିବା ଅନେକ ପତ୍ର ପତ୍ରିକା ସବୁର ଅବଦାନ ଅବଶ୍ୟ ସ୍ମରଣୀୟ ହେଲେହେଁ ବର୍ତ୍ତମାନ ସଂକ୍ଷିପ୍ତ ଆଲୋଚନାର ପରିସର ମଧ୍ୟରେ ସେ ସବୁର ନାମ ଉଲ୍ଲେଖ କରାଯାଇ ନାହିଁ । ସ୍ୱାଧୀନତା ପୂର୍ବ ଓ ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟ, ସଙ୍ଗୀତ ଓ ସାଂସ୍କୃତିକ ଚେତନାର ବିକାଶ ନିମନ୍ତେ ବାଲେଶ୍ୱର ଓ ମୟୁରଭଞ୍ଜର ଆଲୋଚ୍ୟ ଅଞ୍ଚଳରେ ବିଶେଷ କରି ବାଲେଶ୍ୱର ଓ ବାରିପଦା ସହରରେ ମଧ୍ୟ ଅନେକ ଅନୁଷ୍ଠାନ ଗଠିତ ହୋଇଅଛୁ । ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରସାର କ୍ଷେତ୍ରରେ ସେ ସବୁ ଅନୁଷ୍ଠାନର ଭୂମିକା ଉଲ୍ଲେଖନୀୟ ।

## କେତେଜଣ ଅନାଲୋଚିତ ଓ ଅଲୋଚିତ ସାହିତ୍ୟିକ :

**ଈଶ୍ୱରଚନ୍ଦ୍ର ମହାପାତ୍ର :** ବାହାଡ଼ାଗୋଡ଼ା (ସିଂଭୂଇଁ)ର ପଞ୍ଚବୁଳିଆଠାରେ ବିଂଶ ଶତକର ପ୍ରଥମ ପାଦରେ ଜନ୍ମ ଗ୍ରହଣ କରି ସତୁରି ଦଶକରେ ଇହଧାମ ତ୍ୟାଗ କରିଛନ୍ତି । ହରିଶ୍ଚନ୍ଦ୍ର, ପ୍ରବୀର ଓ ଜନା, ସାବିତ୍ରୀ ସତ୍ୟବାନ, ରାମ ବନବାସ ପ୍ରଭୃତି ତାଙ୍କର ଉଲ୍ଲେଖନୀୟ ରଚନା । ସେ ଅନ୍ୟତଃ କୋଡ଼ିଏ/ବାଇଶ ଖଣ୍ଡ ନାଟକ ଓ ଗୀତି ନାଟ୍ୟ ରଚନା କରିଥିବାର ଜଣାଯାଏ ।

Digitized by srujanika@gmail.com

**ଈଶ୍ୱର ଚନ୍ଦ୍ର ହୋତା** : ଊନବିଂଶ ଶତକର ଶେଷ ଦଶକରେ ସିଂଭୂଇଁରେ ଜନ୍ମ ଗ୍ରହଣ କରି ଚଳିତ ଶତକର ସତୁରି ଦଶକରେ ଇହଧାମ ତ୍ୟାଗ କରିଛନ୍ତି । ଜଣେ ନିଷ୍ଠାପର ସ୍ୱାଧୀନତା ସଂଗ୍ରାମୀ, ସୁଦକ୍ଷ ସଂଗଠକ, ସାରସ୍ୱତ ସାଧକ ଓ ଈଶ୍ୱରପ୍ରାଣ ବ୍ୟକ୍ତି ରୂପେ ସୁପରିଚିତ ଥିଲେ । ସେ ଲକ୍ଷ୍ମୀ ପୁରାଣ; ଶ୍ରୀ ଶ୍ରୀ ଚଣ୍ଡୀ (ଓଡ଼ିଆ ପଦ୍ୟାନୁବାଦ), ପ୍ରେମଲତା କାବ୍ୟ ବ୍ୟତୀତ କୋଡ଼ିଏ/ପଚିଶ ଖଣ୍ଡ ନାଟକ ରଚନା କରିଛନ୍ତି । ସେ ସିଂଭୂଇଁରେ ଛାପାଖାନା ପ୍ରତିଷ୍ଠା କରିଥିଲେ । ୧୯୫୦ ମସିହା ବେଳକୁ ମୟୂରଭଞ୍ଜର ବାଂଗ୍ରୀପୋଷିଠାରେ ଶିବ ମନ୍ଦିର ପ୍ରତିଷ୍ଠା ଓ ଆଶ୍ରମ ସ୍ଥାପନ କରି ରହିଥିଲେ । ପରବର୍ତ୍ତୀ ଜୀବନରେ ସନ୍ୟାସ ଆଶ୍ରମରେ ସେ ମାଧବାନନ୍ଦ ତୀର୍ଥସ୍ୱାମୀ ନାମରେ ପରିଚିତ ହୋଇ ପୁରୀର ଗୋବର୍ଦ୍ଧନ ମଠରେ ଈଶ୍ୱରୋପାସନାରେ ଅବଶିଷ୍ଟ ଜୀବନ ଅତିବାହିତ କରିଥିଲେ ।

**କାଳୀପ୍ରସନ୍ନ ଚୌଧୁରୀ** : ସୁପ୍ରସିଦ୍ଧ ଗୀତିକବି ରାଘବ ଚୌଧୁରୀଙ୍କ ମୃତ୍ୟୁ ପରେ ତାଙ୍କର ସୁଯୋଗ୍ୟ ସନ୍ତାନ କାଳୀପ୍ରସନ୍ନ ପିତାଙ୍କ ଅସମ୍ପୂର୍ଣ୍ଣ 'ଲଙ୍କାକାଣ୍ଡ' ସମ୍ପୂର୍ଣ୍ଣ କରିବା ସହ 'ଉତ୍ତରାକାଣ୍ଡ' ମଧ୍ୟ ରଚନା କରିଛନ୍ତି ।

**କାଳୀପ୍ରସନ୍ନ ଶତପଥୀ** : ସିଂଭୂଇଁର ଶାସନ ଗ୍ରାମର ପଣ୍ଡିତ କାଳୀପ୍ରସନ୍ନ ବହୁ ଗୀତିନାଟ୍ୟ ଓ ନାଟକ ରଚନା କରି ସୁଖ୍ୟାତି ଅର୍ଜ୍ଜନ କରିଛନ୍ତି । କର୍ଣ୍ଣାର୍ଜ୍ଜୁନ, ବକାସୁର ବଧ, ପଞ୍ଚବଟୀ, ଦକ୍ଷ ଯଜ୍ଞ ପ୍ରଭୃତି ଗୀତିନାଟ୍ୟ ତନ୍ମଧ୍ୟରେ ପ୍ରସିଦ୍ଧ । ଯାତ୍ରା ନାଟକ ମଧ୍ୟରେ ଦେବାସୁର, ମାହିଷ୍ମତୀ, ଶିଖିବାହନ ବା ଅମର ଗୌରବ; ଶଙ୍ଖଗ୍ରୀବ, ମଥୁରେଶ୍ୱର, ମୁକ୍ତ ମାନବ, ନରନାରାୟଣ, ବିଦର୍ଭନନ୍ଦନୀ, ଚନ୍ଦ୍ରେଶ୍ୱର ବା ମହାକାଳ, ସତିପାହାଡ଼ୀ ବା କାଳନାଗୁଣୀ, ଜୟ ତ୍ରିନାଥ ବା ତ୍ରିଦେବ ପ୍ରଭୃତି ଉଲ୍ଲେଖଯୋଗ୍ୟ ରଚନା । "ଏହାଙ୍କ ରଚିତ ଗୀତିନାଟ୍ୟ ଗୁଡ଼ିକ ଧଳଭୂମିର ବହୁଗ୍ରାମରେ, ମୟୂରଭଞ୍ଜର ଉତ୍ତରାଂଶରେ ଏବଂ ମେଦିନୀପୁର ଜିଲ୍ଲାର ପଶ୍ଚିମାଞ୍ଚଳରେ ଏବେ ମଧ୍ୟ ଅଭିନୀତ ହେଉଛି"—(ଓଡ଼ିଆ ଲୋକନାଟ୍ୟ, ପୃ ୧୯୩, ୧୯୭୬, କ. ଏ.) ।

**ଚନ୍ଦ୍ରମୋହନ ମହାରଣା** : ପିତାଙ୍କ ନାମ ଅନାଦି ମହାରଣା । ବାଲେଶ୍ୱର ଜିଲ୍ଲାର ରେମୁଣା ନିକଟବର୍ତ୍ତୀ ପୁରୁଷୋତ୍ତମପୁର ଗ୍ରାମରେ ଜଣେ ସ୍ୱର୍ଣ୍ଣକାର ପରିବାରରେ ଖ୍ରୀ. ୧୮୬୯ରେ ଜନ୍ମ ଗ୍ରହଣ କରିଥିଲେ । ରେମୁଣାର ଦେଶୀୟ ଭାଷା ବିଦ୍ୟାଳୟରେ ଶିକ୍ଷା ଆରମ୍ଭ । ବୃତ୍ତି ଲାଭ କରି ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ । କଲିକତା ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ପଞ୍ଚମ ସ୍ଥାନ ଅଧିକାର କରି ପ୍ରାଦେଶିକ ବୃତ୍ତି ଲାଭ କରି ଏଫ୍. ଏ. ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର । ମାତ୍ର କୋଡ଼ିଏ ବର୍ଷ ବୟସରେ ୧୮୮୯ରେ ରେଭେନ୍‌ସା କଲେଜରୁ ବି. ଏ. ପାଶ୍ କରି-ଥିଲେ । ସେ ବାଲେଶ୍ୱର, ପୁରୀ ଜିଲ୍ଲା ସ୍କୁଲରେ ପ୍ରଧାନ ଶିକ୍ଷକ, ଶିକ୍ଷା ବିଭାଗୀୟ

Digitized by srujanika@gmail.com

ପରିଦର୍ଶନ ଏବଂ କଟକ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରିଥିଲେ । ସେ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ଶିକ୍ଷାବିତ୍, କବି ଓ ଆଲୋଚକ ଭାବରେ ସୁପ୍ରତିଷ୍ଠିତ ।

ଚନ୍ଦ୍ରମୋହନଙ୍କ ପ୍ରଥମ କବିତା ପୁସ୍ତକ 'ନବୋଦ୍ୟମ' (୧୮୮୮) ପ୍ରକାଶ ପାଇ-ଥିଲା । ଛାତ୍ରାବସ୍ଥାରେ ରଚିତ କବିତା ସମୂହ ଉତ୍କଳ ସାହିତ୍ୟ ଓ ସମ୍ବାଦିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଶିକ୍ଷକ ଜୀବନରେ 'କଥାବଳୀ' ପାଠ୍ୟପୁସ୍ତକ (ମ୍ୟାକ୍‌ମିଲାନ) ପ୍ରକାଶ ପାଇଥିଲା । କବିତା ରଚନା କ୍ଷେତ୍ରରେ ବିଷୟ ନିର୍ବାଚନରେ ବିଶେଷତ୍ୱ ରକ୍ଷା ସହିତ ସୁନ୍ଦର ରୂପକଳ୍ପ ଓ ଉପମା ପ୍ରୟୋଗ କରିଥିବାର ଦେଖାଯାଏ । ପ୍ରକୃତି କବିତା ରଚନାରେ ଚନ୍ଦ୍ରମୋହନ ମଧ୍ୟ ବିଶେଷ ପଟୁତା ପ୍ରଦର୍ଶନ କରିଛନ୍ତି । କବିଙ୍କର କାବ୍ୟ-ଧାରା ସମ୍ପର୍କରେ ବିଶିଷ୍ଟ ଆଲୋଚକ ଡଃ ନରେନ୍ଦ୍ରନାଥ ମିଶ୍ର ଲେଖିଛନ୍ତି । "ବିଂଶ ଶତକର ପ୍ରଥମ ପାଦରେ ସତ୍ୟବାଦୀ ଯୁଗକୁ କେନ୍ଦ୍ର କରି ଯେଉଁ ନବଧାରା ଓଡ଼ିଆ ସାହିତ୍ୟରେ ପ୍ରବାହିତ ହୋଇଥିଲା ତାହାର ପ୍ରଥମ ସ୍ରଷ୍ଟା ଥିଲେ ଚନ୍ଦ୍ରମୋହନ । କୁନ୍ତଳକୁମାରୀଙ୍କ ଭାବ କ୍ଷେତ୍ରରେ ସେ ଥିଲେ ଯଥାର୍ଥ ସଂଯୋଗ ସେତୁ ।"

ଜଣେ ନିଷ୍ଠାପର ଶିକ୍ଷାବିତ୍ ରୂପେ ଭାଷା ଶିକ୍ଷା ଓ ସାହିତ୍ୟ ରଚନାରେ ସେ ବିଶେଷ ଧ୍ୟାନ ଦେଉଥିଲେ । ସେ ଜଣେ ଅଭିଜ୍ଞ ବୈୟାକରଣିକ ଥିଲେ । ସମସାମୟିକ ସାହିତ୍ୟ ରଚନାରେ 'ଭାଷାଗତ ଅପସର୍ଜନା' ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଓ ତୀବ୍ର ସମାଲୋଚନା ଫଳରେ ଓଡ଼ିଆ ସାହିତ୍ୟର ଗତି ନିୟନ୍ତ୍ରିତ ହୋଇଥିଲା । ସେ ଜଣେ ବାସ୍ତବବାଦୀ, ସ୍ୱାଧୀନ ଚେତା ଓ ଜାତିପ୍ରାଣ ଥିଲେ । ସେ ୧୯୨୪ ମସିହାରେ ପରଲୋକ ଗମନ କରିଥିଲେ ।

**ପ୍ରସନ୍ନ କୁମାର ଶତପଥୀ :**

"ଅମର ବାଂଛିତ ପୁରୀ ଅମରଦା
ଆକର୍ଷିଲା ପ୍ରଭୁ ଚୈତନ୍ୟ ଶରଧା"
କିମ୍ବା
"ଆମେ ଦହି ଚୁଡ଼ା ଗୁଡ଼
ଲଙ୍କା ଲୁଣ ମିଶିଲେ କାଣ
ଯୁବେଇ ଯାଏ ବୁଢ଼ ।" ଆଦି ସରସ ପଂକ୍ତି * ପ୍ରସନ୍ନକୁମାର

ଶତପଥୀଙ୍କର କବି ପ୍ରତିଭାର ପରିଚୟ ପ୍ରଦାନ କରେ । ରଚନା : (୧) ଭକ୍ତଭୂମି । (୨) କିମ୍ବା କଲି ** ଇତ୍ୟାଦି ପ୍ରସିଦ୍ଧ ।

---

* କବି ବନମାଳି ସେନାପତିଙ୍କ ନିକଟରୁ ଶୁଣିଅଛୁ ।

** ସାମନ୍ତରାୟ ନଟବର, ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି, ପୃ.୫୧୭, ୧୯୬୪ ।

Digitized by srujanika@gmail.com

**ପ୍ରିୟନାଥ ମହାନ୍ତି** : ପିତାଙ୍କ ନାମ ବ୍ରଜମୋହନ ଓ ମାତା ସାବିତ୍ରୀ ଦେବୀ ମେଦିନୀପୁର ଜିଲ୍ଲାର କାନ୍ଥୀ ଅଞ୍ଚଳର ବସନ୍ତିଆ ଗ୍ରାମରେ ୧୮୮୧ ମସିହା ଜୁଲାଇ ୨୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ସେ ୧୯୬୪ ମସିହା ଜାନୁଆରୀ ୬ ତାରିଖରେ ଇହଧାମ ତ୍ୟାଗ କରିଛନ୍ତି ।

ପ୍ରିୟନାଥ ଜଣେ ସଫଳ ଗୀତିକବି ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ । କବିବର ରାଧାନାଥ, ବ୍ୟାସକବି ଫକୀରମୋହନ, ଭକ୍ତକବି ମଧୁସୂଦନ ପ୍ରଭୃତିଙ୍କ ନିକଟରୁ ପ୍ରେରଣା ଲାଭ କରି ସେ ଅନେକ ଗୀତିକବିତା ରଚନା କରିଥିଲେ । ତାଙ୍କର କେତେକ ଗୀତ କବିତା 'ଉତ୍କଳ ସାହିତ୍ୟରେ' ପ୍ରକାଶିତ ହୋଇଥିଲା । ତାଙ୍କ ରଚିତ ଗୀତ କବିତା ଗୁଚ୍ଛ "ପ୍ରୀତିମାଳ୍ୟ" ରୂପରେ ୧୯୫୪ ମସିହାରେ ପ୍ରକାଶ ପାଇଥିଲା । ଏହି କବିତା ସଙ୍କଳନଟି 'କଳିକା', 'ମୁକୁଳିକା' ଓ 'କୁସୁମିକା' ଏପରି ତିନିଭାଗରେ ବିଭକ୍ତ । ତାଙ୍କ ରଚନାରେ ବିମୁଗ୍ଧ କବିବର ରାଧାନାଥ ତରୁଣ କବି ପ୍ରିୟନାଥଙ୍କ ନିକଟକୁ ଅନେକ ପତ୍ର ଲେଖିଥିବାର ଜଣାଯାଏ । ରାଧାନାଥ ୧୯୦୭ ମସିହାରେ ଖଣ୍ଡିଏ ପତ୍ରରେ ଲେଖିଥିଲେ, "ପ୍ରିୟନାଥ ବାବୁଙ୍କ ପରି ଶକ୍ତିଧର ବ୍ୟକ୍ତି ଓଡ଼ିଶାରେ ବିରଳ । ବଡ଼ ଦୁଃଖର କଥା, ବଡ଼ ଆଶ୍ଚର୍ଯ୍ୟର କଥା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅଦ୍ୟାବଧି ଏପରିବ୍ୟକ୍ତିର ରେଖାପାତ ହୋଇନାହିଁ ।"

ପ୍ରିୟନାଥ ବାବୁ ବାଲେଶ୍ୱରରୁ ପ୍ରକାଶିତ ତତ୍କାଳୀନ ସାପ୍ତାହିକ ସାହିତ୍ୟ ପତ୍ରିକା 'ସମ୍ବାଦ ବାହିକା'ର କିଛିଦିନ ସମ୍ପାଦନା କରିଥିଲେ । ଏଥି ସହିତ 'ପ୍ରଭାକର' ନାମକ ଖଣ୍ଡିଏ ମାସିକ ପତ୍ର ମଧ୍ୟ ପ୍ରକାଶ କରିଥିବାର ଜଣାଯାଏ ।

ସାହିତ୍ୟ ଚର୍ଚ୍ଚା ନିମନ୍ତେ ପ୍ରିୟନାଥ ତତ୍କାଳୀନ ବୌଦ ଓ ପାଟନା ରାଜ୍ୟକୁ ଯାଇଥିଲେହେଁ ସେ ସବୁ ସ୍ଥାନରେ ସଫଳତା ଲାଭ କରି ପାରି ନଥିଲେ । ତାଙ୍କର କେତେକ ପ୍ରବନ୍ଧ ଓ କବିତା ବଙ୍ଗଳା ମାସିକ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ତାଙ୍କର ଜଣେ ପରମ ବନ୍ଧୁଥିଲେ । ସେ 'ପ୍ରୀତିମାଳ୍ୟ' କବିତା ଗ୍ରନ୍ଥରେ ନିଜର ଅଭିମତ ପ୍ରକାଶ କରିଛନ୍ତି ।

**ଭଗବାନଚନ୍ଦ୍ର ପାତ୍ର** କବିକଙ୍କର ଭଗବାନ ଚନ୍ଦ୍ର ପାତ୍ର ବାଲେଶ୍ୱର ଅଞ୍ଚଳର ଜଣେ ବିଖ୍ୟାତ ଯାତ୍ରା ନାଟକ ଲେଖକ ଭାବେ ପ୍ରତିଷ୍ଠା ଲାଭ କରିଥିଲେ । ତାଙ୍କ ଲିଖିତ ନାଟକ ଗୁଡ଼ିକ ପୌରାଣିକ ଓ ଐତିହାସିକ ବିଷୟ ବସ୍ତୁ ଆଧାରିତ । ଏଥି ମଧ୍ୟରେ ଶ୍ରୀ ଶ୍ରୀ ଶୀତଳା ମହାତ୍ମ୍ୟ, ତୀର୍ଥ ଯାତ୍ରା, ପୃଥ୍ୱୀରାଜ-ଜୟଚନ୍ଦ୍ର ପ୍ରଭୃତି ଉଲ୍ଲେଖ-ଯୋଗ୍ୟ । ବର୍ତ୍ତମାନ ଷୋହଳଖଣ୍ଡି ନାଟକର ପାଣ୍ଡୁଲିପି ଥିବାର ଦେଖାଯାଏ ।

Digitized by srujanika@gmail.com

ଭଗବାନ ପାଣି ଜଣେ କବି ରୂପେ ମଧ୍ୟ ପରିଚିତ । 'ଉଷା' (କାବ୍ୟ) ଓ 'କବିତା ରତ୍ନପେଡ଼ି' (ଗୀତି କବିତା ଗୁଚ୍ଛ)ର ପାଣ୍ଡୁଲିପି ଥିବାର ଦେଖାଯାଏ । 'କବିତା ରତ୍ନପେଡ଼ି'—ଦୁଇ ଭାଗରେ ବିଭକ୍ତ । ପ୍ରଥମ ରତ୍ନ 'ଅର୍ଘ୍ୟଥାଳି' ଓ ଦ୍ୱିତୀୟ ରତ୍ନ 'ବନ୍ଦାପନା' । କବି ଭଗବାନ ପାଣି ୧୩ ବର୍ଷ ବୟସରେ କବିତା ରଚନା କରିଥିବାର ଜଣାଯାଏ । ଅଳ୍ପ ଶିକ୍ଷା ଓ ତତ୍କାଳୀନ ପରିବେଶ ଦୃଷ୍ଟିରୁ ବିଚାର କଲେ ଭଗବାନ ଜଣେ ପ୍ରତିଭା ସମ୍ପନ୍ନ କବି ଓ ନାଟ୍ୟକାର ଥିବାର ସହଜରେ ଅନୁମେୟ ।

'ଗ୍ରୀଷ୍ମ ଯାତ୍ରା' ତାଙ୍କର ଖଣ୍ଡିଏ ଉଲ୍ଲେଖଯୋଗ୍ୟ କୃତି । ଏହାର ଭୂମିକାରେ କବି ଲେଖିଥିଲେ, "ପ୍ରାୟ ୩୦ ବର୍ଷ ତଳେ ଆମର ଏ ଅଞ୍ଚଳରେ ଅର୍ଥାତ୍ ବାଲେଶ୍ୱର ତଥା ଓଡ଼ିଶାର ଉତ୍ତରାଞ୍ଚଳରେ 'ଗ୍ରୀଷ୍ମ ଯାତ୍ରା' ମାନ ଅଭିନୀତ ହେଉଥିଲା । ପିଲାମାନେ ନୃତ୍ୟ ଅଭିନୟ ସହକାରେ ସ୍ୱରଯୋଜନା କରି ଗ୍ରୀଷ୍ମଗୀତ ଗୁଡ଼ିକ ଗାଉଥିଲେ ଏବଂ ତାଙ୍କର ଭାବକୁ ଲକ୍ଷ୍ୟକରି ଅଭିନେତାମାନେ ବକ୍ତୃତା ପ୍ରଦାନ କରି ଅଭିନୟ କାର୍ଯ୍ୟ ସମ୍ପାଦନ କରୁଥିଲେ । ତଦ୍ଦୃଷ୍ଟେ ମୁଁ କେତେକ ଗ୍ରୀଷ୍ମ ବିମିଶ୍ର ପାଲା ପୁସ୍ତିକା ରଚନା କରି ନାନା ସ୍ଥାନରେ ଅଭିନୟ କରାଇଥିଲି ।" (ପାଣ୍ଡୁଲିପି : 'ଗ୍ରୀଷ୍ମ ଯାତ୍ରା') ।

ଏହାଙ୍କ ପ୍ରଣୀତ ସମସ୍ତ ନାଟକ ଏ ଅଞ୍ଚଳର ବହୁ ସ୍ଥାନରେ ବହୁଥର ଅଭିନୀତ ହୋଇ ପ୍ରଶଂସା ଲାଭ କରିଥିଲା । ତାଙ୍କ ରଚିତ ଗୀତି କବିତା ସମୂହ ଉଚ୍ଚକୋଟୀର ସାହିତ୍ୟିକ ମର୍ଯ୍ୟାଦା ଲାଭ କରିଛି ।

**ଯଦୁନାଥ ଷଡ଼ପଥୀ** : ସିଂଭୂମ ଜିଲ୍ଲାର ବାହାଡ଼ା ଗୋଡ଼ା ଅନ୍ତର୍ଗତ ଶାସନ ଗ୍ରାମରେ ଜନ୍ମିତ ଏହି ଏକନିଷ୍ଠ ସାରସ୍ୱତ ସାଧକ ରୁକ୍ମଣୀ ହରଣ, ସୀତା ବନବାସ, ସୁଭଦ୍ରା ହରଣ, ଇନ୍ଦ୍ରଜିତ ବଧ, ରାବଣ ବଧ, ହରିଭକ୍ତି (ନହୁଷ ଉପାଖ୍ୟାନ), ହରିନାମ ମାହାତ୍ମ୍ୟ (ଚନ୍ଦ୍ରହଂସ ଉପାଖ୍ୟାନ), ତାରକାସୁର ବଧ ପ୍ରଭୃତି ବହୁ ଗୀତିନାଟ୍ୟ ଓ ନାଟକ ରଚନା କରିଥିଲେ । କବି ନିଜେ ଜଣେ ବିଚକ୍ଷଣ ସଙ୍ଗୀତଜ୍ଞ ଥିଲେ । ତାଙ୍କର ସାରସ୍ୱତ ସାଧନାରେ ବିମୁଗ୍ଧ ଧଳଭୂମର ରାଜା ଜଗଦୀଶଚନ୍ଦ୍ର ଦେବ ଧବଳଦେବ ଓ ମୟୂରଭଞ୍ଜର ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେବ ଯଥାକ୍ରମେ 'ନାଟ୍ୟାଗ୍ରଣୀ' ଓ 'କବିଭୂଷଣ ଉପାଧିରେ ଭୂଷିତ କରିଥିଲେ । (ଓଡ଼ିଆ ଲୋକନାଟ୍ୟ, ୧୯୭୭, କା. ଏ.)

କବି ଯଦୁନାଥଙ୍କର ପିତା ନାରାୟଣ ଷଡ଼ପଥୀ । କବି ସମ୍ଭବତଃ ୧୮୯୫ ମସିହାରେ ଜନ୍ମଲାଭ କରିଥିଲେ ଓ ୧୯୫୦ ମସିହାରେ ଇହଧାମ ତ୍ୟାଗ କରିଛନ୍ତି ।

**ରାଘବ ଚୌଧୁରୀ (ମହାନ୍ତି)** : ମେଦିନୀପୁର ଜିଲ୍ଲା ଗୋପୀବଲ୍ଲଭପୁର ଥାନାନ୍ତର୍ଗତ ଚୈତ୍ରଚଟା ମୌଜାର ରଣବିମଳପୁର ଗ୍ରାମରେ ରାଘବ ଚୌଧୁରୀ ବାସ କରୁଥିଲେ । ସେ ୧୮୬୫ ମସିହା (?) ଫାଲ୍‌ଗୁନ ମାସରେ ଯାଜପୁର ନିକଟବର୍ତ୍ତୀ

Digitized by srujanika@gmail.com

ଅହସ୍ଥାସ ଗ୍ରାମରେ ଜନ୍ମଗ୍ରହଣ କରିଥିବାର ଜଣାଯାଏ । ବାର/ତେର ବର୍ଷ ବୟସରେ ରାଘବ ବାବୁ ରଣବସନ୍ତପୁର ଗ୍ରାମକୁ ଆସିଥିଲେ । ସେ ସେଠାରେ ମୟୂରଭଞ୍ଜ ମହାରାଜାଙ୍କ ଅଧୀନରେ ଅନେକ କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିଥିଲେ ।

୰ ଚୌଧୁରୀ ସ୍ୱ ପ୍ରତଭା ବଳରେ ସାରସ୍ୱତ ସାଧନାରେ ବ୍ରତୀହୋଇ 'ଜଗମୋହନ ରାମାୟଣ' ଅବଲମ୍ବନରେ ସାତଖଣ୍ଡ ଗୀତନାଟ୍ୟ ରଚନା କରିଥିଲେ । 'ଲଙ୍କାକାଣ୍ଡ' ସମାପ୍ତ କରିବା ପୂର୍ବରୁ ୧୮୮୦ ମସିହାରେ ସେ ଇହଧାମ ତ୍ୟାଗ କରିଥିଲେ । 'ଲଙ୍କାକାଣ୍ଡ' ପୂର୍ବର ରଚନା 'ଅରଣ୍ୟ କାଣ୍ଡ'ରେ ତାଙ୍କର ଦେହ ଖରାପ ଥିବାର ସୂଚନା ମିଳେ । ସେତେବେଳକୁ ତାଙ୍କର ବୟସ ବର୍ଷ୪୯ ହୋଇଥିବାର ଜଣାଯାଏ ।

ତାଙ୍କ ରଚିତ ଗୀତନାଟ୍ୟ ସବୁର ଚରିତ୍ର ଚିତ୍ରଣ ଅତ୍ୟନ୍ତ ଉଚ୍ଚକୋଟୀର । ତହିଁରେ ଆଞ୍ଚଳିକ ଭାଷାର ପ୍ରଭାବ ପରିଲକ୍ଷିତ ହୁଏ । 'ସୁନ୍ଦରାକାଣ୍ଡ'ର ଆଦ୍ୟରେ ବର୍ଣ୍ଣିତ ତାଙ୍କ ଜନ୍ମ ସମ୍ବନ୍ଧୀୟ ପଂକ୍ତି ନିମ୍ନରେ ଉଦ୍ଧାର କରୁଅଛୁ ।

"ପାଣ୍ଡବ ଗଗନ ଘନ ଶବାଦ୍ୟ ମାଦ୍ୟବ ମାସକୁ ଆୟୂଷ ଭୋଗ
ଅନିଳ ପାଣ୍ଡବ କୃଷ ଅଠ ଯେ,
ଏ ଦେହ ତ୍ୟଜିବ ଜୀବ ଚିନ୍ତ ଯେ ।
ମନ କହେ, ତୁହି ରହିଥିବା ଯାଏ ଏଥ;
କ୍ଷମ କାହିଁ ଯିବୁ ତୁହିଁ,
ଶ୍ରୀରାମ ଚରଣ ଗହି ଶୁଣ ଯେ
ରାମ ନାମ ଯମ ଭୟ ଜିଣ ଯେ ।"

ସିଂଭୂମ ନିବାସୀ ଖୁଣ୍ଟିଆପାଳ ଗ୍ରାମର ଜଣେ ଗୁଣଗ୍ରାହୀ ତଥା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତ ପ୍ରେମୀ ଶ୍ରୀଯୁକ୍ତ ରାମଚନ୍ଦ୍ର ପଣ୍ଡା ୰ ରାଘବ ଚୌଧୁରୀଙ୍କ ରଚନା ସମ୍ପର୍କରେ କହନ୍ତି;

"ରାମାୟଣ ଆଦି କାବ୍ୟକୁ ଗୀତ ନାଟ୍ୟରେ ରୂପାୟିତ କରିବାରେ ଭାଷାର ଲାଳିତ୍ୟ ଛନ୍ଦ ମାଧ୍ୟମରେ ଯେଉଁ ଅଭିନବ ଶବ୍ଦ ରଚନା କରି ଗାଁ ଗଣ୍ଡାରେ ଶିକ୍ଷିତ-ଅଶିକ୍ଷିତ ଜନ ମାନସରେ ଓଡ଼ିଆ ଭାଷାକୁ ଚିରସ୍ଥିତି କରିଦେଇ ଗଲେ । ···ପରନ୍ତୁ କବିଙ୍କର ବଂଶ ପରିଚୟ ମଧ୍ୟ ସଠିକ ଜଣାଯାଇ ନାହିଁ । ···କାରଣ ଜାତିର ମାନ ମର୍ଯ୍ୟାଦାକୁ କରିଣ ପଣିଆରେ ସିଂହଭୂମି, ମୟୂରଭଞ୍ଜ, ମେଦିନୀପୁର ଜିଲ୍ଲାଗୁଡ଼ିକୁ ମାତୃଭାଷାର ସେବା ଯଜ୍ଞରେ ନିଜକୁ ଆହୂତି ଦେଇ ଯାଇଛନ୍ତି । ଏତଦ୍ ଅଞ୍ଚଳ ତଥା ଜିଲ୍ଲାର ପୁରପଲ୍ଲୀରେ ଘରେ ଘରେ ଯେଉଁ ଭାଷାର ସ୍ୱର ଲହରୀ ଅନୁରଣିତ ହେଉ-

Digitized by srujanika@gmail.com

ଥିଲି; ତାହା ଆଜି ବିଲୁପ୍ତ ପ୍ରାୟ ।'' * ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଦୀପକ କୁମାର ଷଡ଼ଙ୍ଗୀ ୰ ରାଘବ ଚୌଧୁରୀଙ୍କ ଗୀତ ନାଟ୍ୟ ସମ୍ପର୍କରେ କହନ୍ତି, "...ଆମେ ଯେତେବେଳେ ସ୍କୁଲରେ ପାଠ ପଢ଼ୁଥିଲୁ (୧୯୪୪-୫୬) ରାଘବ ଚୌଧୁରୀଙ୍କ ଗୀତନାଟ୍ୟ ଆମ ଅଞ୍ଚଳରେ ସବୁ ଯାନଯାତରା ମେଳାରେ ଅଭିନୀତ ହେଉଥିଲା । ପ୍ରାୟ ପ୍ରତ୍ୟେକ ଗାଁରେ ଗୋଟେ ଗୋଟେ ଗୀତନାଟ୍ୟ ଦଳ ଥିଲା । ଏସବୁ ଗୀତ ନାଟ୍ୟ ଅତ୍ୟନ୍ତ ଲୋକପ୍ରିୟ ଥିଲା । ଏବେ ମଧ୍ୟ ଅନେକ ଗ୍ରାମରେ ଏହାର ପ୍ରଚଳନ ଅଛି । ଏଥିରେ ବାଦ୍ୟଯନ୍ତ୍ର ମୁଖ୍ୟତଃ ପଙ୍ଖୱାଜ ବ୍ୟବହୃତ ହେଉଥିଲା ।''*

ରାଘବ ଚୌଧୁରୀଙ୍କ ରଚନାର ବୈଶିଷ୍ଟ୍ୟ ସମ୍ପର୍କରେ 'ସିଂହଭୂମିର ଓଡ଼ିଆ ନାଟକ ଓ ନାଟ୍ୟକାର' (ଓଡ଼ିଆ ଲୋକନାଟ୍ୟ-୧୯୭୭, କା· ଏ·) ପ୍ରବନ୍ଧରେ ଡଃ ଦେବୀଦତ୍ତ ପିନାକ ପାଣି—ପ୍ରସନ୍ନ ଶତପଥୀ ଲେଖିଛନ୍ତି, "ରାଘବଙ୍କର ନାଟକ ଗୀତ ବହୁଳ, ବକ୍ତୃତା ଅଳ୍ପ । ସେଥିରେ ଶ୍ରବ୍ୟ କାବ୍ୟ ପରି ବର୍ଣ୍ଣନାର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । କବିବର କେତେକ କବିତାର ବୈଶିଷ୍ଟ୍ୟ ରକ୍ଷା କରିଥିଲେ । ତାଙ୍କର କବିତାଗୁଡ଼ିକ ଶେଷରେ ବର୍ଣ୍ଣିତ ଅଛି; "ଗୀତେ କହେ ରାଘବ କରଣ'' ଇତ୍ୟାଦି । ରାଘବ କବି ତାଙ୍କର ଗୀତନାଟ୍ୟର ଉପକରଣ ଓଡ଼ିଆ ଭାଷାରେ ରଚିତ ବିବିଧ ପ୍ରକାର ରାମାୟଣରୁ ସଂଗ୍ରହ କରିଥିଲେ । ...ରାଘବଙ୍କ ନାଟକର ବୈଶିଷ୍ଟ୍ୟ ହେଉଛି ଯେ, ପ୍ରତ୍ୟେକ ଅଙ୍କ ବା କାଣ୍ଡରେ ରାବଣ ଥରେ ପ୍ରବେଶ କରିଛି ଏବଂ ପ୍ରଥମରେ ସେ ହିନ୍ଦୀରେ କିଛି ସଂଲାପ କହିଛି ।''

**ରାଧା ମାଧବ ଗିରି** : ବାଲେଶ୍ୱର ଜିଲ୍ଲା ବାଲିଆପାଳ ଥାନାନ୍ତର୍ଗତ ସୁନାରେହି ଗ୍ରାମରେ ତା ୧୬-୧-୧୮୯୭ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ଆଜୀବନ ସାରସ୍ୱତ ସାଧକ ଥିଲେ । ଲିଖିତ ଗ୍ରନ୍ଥ ନାଟକ—ମୁଚୁକୁନ୍ଦ, ପୁଣ୍ଡରିକ, କାବ୍ୟ—ଲିଙ୍ଗଲେଶ୍ୱର, ଉପନ୍ୟାସ—ଶୋଣିତ ତର୍ପଣ, ଅଙ୍ଗରାଣ୍ଡ, ଆଲୋଚନା—ବର୍ଣ୍ଣ ବିବେକ ବା ଜାତି ରହସ୍ୟ, ବାଲିଆପାଳ ଇତିହାସର ଛିନ୍ନ ପୃଷ୍ଠା ଓ ଆତ୍ମ ଜୀବନୀ—'ବଇଠା' ପ୍ରଭୃତି । ସମଗ୍ର ଉତ୍ତର ବାଲେଶ୍ୱର ଅଞ୍ଚଳରେ ଏ ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ । ସାରା ଜୀବନ ଧରି ବହୁ କାବ୍ୟ କବିତା, ପ୍ରବନ୍ଧ ଲେଖିଛନ୍ତି । ଲେଖାଗୁଡ଼ିକ ମଧ୍ୟରୁ କେତେଗୋଟି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା । ଲିଙ୍ଗଲେଶ୍ୱର ମହାଦେବଙ୍କ ସମ୍ପର୍କରେ ଲିଖିତ 'ଲିଙ୍ଗଲେଶ୍ୱର' କାବ୍ୟ 'ମୁକୁର' ପତ୍ରିକାରେ ପ୍ରକାଶିତ ହୋଇଥିଲା ।

କବି ରାଧାମାଧବ ଗିରି ସମଗ୍ର ଜୀବନ ବହୁ ଘାତ ପ୍ରତିଘାତ ମଧ୍ୟରେ ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ବହୁ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ପ୍ରତିଷ୍ଠା କରି ସାରସ୍ୱତ

* ଲିପିବଦ୍ଧ ଉକ୍ତି ।

Digitized by srujanika@gmail.com

ବାତାବରଣ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସାହିତ୍ୟ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

**ରାମକୃଷ୍ଣ ସାହୁ** : ଲଙ୍କେଶ୍ୱର ଅଞ୍ଚଳରେ ମାନ୍ଧାତା ବଜାର ସନ୍ନିହିତ ଚଢ଼ା ଗ୍ରାମରେ କବି ରାମକୃଷ୍ଣ ସାହୁ ଜନ୍ମ ଗ୍ରହଣ କରିଥିଲେ । ସେ କବିବର ରାଧାନାଥ ରାୟଙ୍କ ପ୍ରେରଣା ଲାଭ କରି 'ସୁଲୋଚନା' କାବ୍ୟ ଲେଖିଥିଲେ । ତାହା ତତ୍କାଳୀନ ମୟୂରଭଞ୍ଜ ରାଜ୍ୟରୁ ପ୍ରକାଶିତ 'ଉତ୍କଳ ପ୍ରଭା' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏତଦ୍‌ବ୍ୟତୀତ 'ଲକ୍ଷ୍ମୀ' କାବ୍ୟର ତିନିଗୋଟି ସର୍ଗ ମାତ୍ର 'ଉତ୍କଳ ପ୍ରଭା'ରେ ପ୍ରକାଶ ପାଇଥିଲା । ଏହାଙ୍କର କାବ୍ୟ ଗୀତ ରାଧାନାଥ ଶୈଳୀ ପ୍ରଭାବିତ । ଏହି ଲୋକ ବିସ୍ମୃତ କବି ଏକଦା ସମଗ୍ର ଉତ୍କଳରେ କବି ଭାବରେ ପ୍ରତିଷ୍ଠା ଲାଭ କରିଥିଲେ ।

**ରୁଦ୍ରନାରାୟଣ ପଟ୍ଟନାୟକ** : ବାଲେଶ୍ୱର ଜିଲ୍ଲା ଦେହୁଦୋ ସ୍କୁଲର ଭୂତପୂର୍ବ ଗ୍ରନ୍ଥ ରୁଦ୍ରନାରାୟଣ ପଟ୍ଟନାୟକ ୧୮୭୧ ସାଲରେ 'ଅଙ୍ଗଦ ବିଜୟ' କାବ୍ୟର ଏକ ଅଂଶ ପତ୍ରିକାରେ ପ୍ରକାଶ କରିଥିଲେ । ସେଥିରେ ବ୍ୟବହୃତ ଛନ୍ଦ ଉପରେ ପତ୍ରିକା ସମ୍ପାଦକ କହିଥିଲେ' "ଏହି କବିତାରେ ମାଇକେଲଙ୍କ ରଚିତ 'ମେଘନାଦ ବଧ' କାବ୍ୟର ଅଧିକାଂଶ ଶବ୍ଦ ଯୋଜିତ ହୋଇଅଛି । × × × ଭରସା କରୁ ଲେଖକ ଅମିତ୍ରା ଛନ୍ଦର କବିତା ଲେଖିବା ବିଷୟରେ ଜଣେ ସୁକବି ହେବେ । ଏପରି କବିତା ଲେଖିବା ପୂର୍ବେ ବୈଦେହୀଶ ବିଳାସ, ବିଦଗ୍ଧ ଚିନ୍ତାମଣି ପ୍ରଭୃତି ମିତ୍ରାକ୍ଷର ଛନ୍ଦର କାବ୍ୟମାନ ପଢ଼ି ଭାଷା ଶିଖିବା ଉଚିତ୍ ।" "ଦେହୁଦୋ ନିବାସୀ ରୁଦ୍ର ନାରାୟଣ ପଟ୍ଟନାୟକ ଯେ କେବଳ ଅମିତ୍ରାକ୍ଷର ଛନ୍ଦରେ ପ୍ରଥମେ ହାତ ଦେଇଥିଲେ ତାହା ନୁହେଁ; ଓଡ଼ିଆ ଚତୁର୍ଦ୍ଦଶପଦୀ କବିତା ରଚନାରେ ସେ ମଧ୍ୟ ପ୍ରଥମେ ଚେଷ୍ଟା କରିଥିବାର ଦେଖିବାକୁ ମିଳେ ।" ୧୮୮୦ ସାଲରେ ପ୍ରକାଶିତ 'ରାମ' କବିତା ଏହାର ଏକ ଉଦାହରଣ । ବସ୍ତୁତଃ, ରାମଶଙ୍କର ଓ ରାଧାନାଥ ରାୟଙ୍କ ପୂର୍ବରୁ ଉତ୍ତର ବାଲେଶ୍ୱରର ରୁଦ୍ରନାରାୟଣ ପଟ୍ଟନାୟକ ଓଡ଼ିଆ ସାହିତ୍ୟକୁ ଏକ ନୂତନ ଅବଦାନରେ ଋଦ୍ଧିମନ୍ତ କରାଇବାର ଗୌରବ ଲାଭ କରିଥିଲେ । "ଏହି ଲୋକ ବିସ୍ମୃତ କବିଙ୍କୁ ଏ ଦେଶର ସାଧାରଣ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପନ କରି ତାଙ୍କର ଅସୀମ ସାହସିକତା ପାଇଁ ତାଙ୍କୁ ଅନ୍ତରର ସମ୍ମାନ ପ୍ରଦର୍ଶନ କରୁଛୁ ମାତ୍ର ।"

**ରୁଦ୍ରନାରାୟଣ ଷଡ଼ଙ୍ଗୀ** : ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନାନ୍ତର୍ଗତ ନାଙ୍ଖୋ ଗ୍ରାମରେ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ ୧୮୬୪ ମସିହା ଅଗଷ୍ଟ ୧ ତାରିଖରେ ଜନ୍ମଲାଭ କରି ତା ୩।୩।୧୯୩୩ ଖ୍ରୀ:ରେ ଇହଧାମ ତ୍ୟାଗ କରିଅଛନ୍ତି ।

ପଣ୍ଡିତ ରୁଦ୍ରନାରାୟଣ କାବ୍ୟତୀର୍ଥ ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ, ସମାଜ ବ୍ୟବସ୍ଥାପକ ଓ କବି । ତାଙ୍କର ପ୍ରବନ୍ଧସମୂହ ତତ୍କାଳୀନ ପ୍ରତିଷ୍ଠିତ ପତ୍ରିକାମାନଙ୍କରେ

Digitized by srujanika@gmail.com

ପ୍ରକାଶିତ ହୋଇଥିଲା । କେତେକ ପୁସ୍ତକ ବିଦ୍ୟାନୁରାଗୀ ସାମନ୍ତମାନଙ୍କ ଦ୍ୱାରା ମଧ୍ୟ ପ୍ରକାଶିତ ହୋଇଥିଲା । ଲିଖିତ ପୁସ୍ତକ : ଯଯାତିକେଶରୀର ଆଲୋଚନା (୧୮୯୬), ସନ୍ଧ୍ୟା ବ୍ୟବସ୍ଥା ଓ ପ୍ରୟୋଗ (୧୮୯୬), ତର୍ପଣ ବ୍ୟବସ୍ଥା ଓ ପ୍ରୟୋଗ (୧୮୯୬), ଶ୍ରାଦ୍ଧ ବ୍ୟବସ୍ଥା ଓ ପ୍ରୟୋଗ (୧୮୯୯), ଷଷ୍ଠୀକା ପାର୍ବଣ ଶ୍ରାଦ୍ଧ କାରିକା (୧୯୦୦), ଶ୍ରୀମଦ୍ ଭାଗବତ ଗୀତା (୧୯୦୧), ବିଷ୍ଣୁ ସହସ୍ର ନାମ ସ୍ତବ (୧୯୧୬), ଗୁରୁବାର ଓଷା କଥା (୧୯୨୭), ଉତ୍କଳ ଅତି ପ୍ରାଚୀନ (୧୯୩୦), ଉତ୍କଳ ବ୍ରାହ୍ମଣର କୁଳ ସଙ୍କେ (୧୯୩୧), ବିରାଟ ନଗର ଓ ସ୍ୱର୍ଣ୍ଣରେଖା (୧୯୩୨), ଉପାସନାର ଆବଶ୍ୟକତା ଏବଂ ସାର୍ଥକତା, ଶ୍ରୀଚନ୍ଦନାଷ୍ଟକମ୍, ଭୂତଭାବି କାଳୟୋରଭ୍ୟୁଦୟ ହେତୁଃ (ସଂସ୍କୃତ) ପ୍ରଭୃତି ପ୍ରକାଶିତ ଗ୍ରନ୍ଥ ।

ପଣ୍ଡିତ ରୁଦ୍ରନାରାୟଣ ଜଣେ ସମାଜ ସଂସ୍କାରକ ଥିଲେ । ମାଳଗିରି ସ୍କୋଲର ସଂସ୍କୃତ ଶିକ୍ଷକ ଥିବା ସମୟରେ ଥରେ ଆର୍ଯ୍ୟ ହରିହରଙ୍କୁ ସଂସ୍କାର କାର୍ଯ୍ୟରେ ସହାୟତା କରିଥିବାର ଜଣାଯାଏ ।

**ଶ୍ରୀନାଥ ଚନ୍ଦ୍ର ମିଶ୍ର :** ବିରାଟ ବଂଶ (୧୯୧୩), ବନବିହାର (୧୯୩୦), କଳାବତୀ ଓ ମୟୂରଭଞ୍ଜ ତୀର୍ଥ ଦର୍ଶନ (୧୯୩୭) ପ୍ରଭୃତି ପ୍ରକାଶିତ ଗ୍ରନ୍ଥ । *

**କ୍ଷୀରୋଦ ଚନ୍ଦ୍ର ପାଳ :** ଜଣେ ଗଦ୍ୟ ଲେଖକଭାବେ ପରିଚିତ । ଲିଖିତ ପୁସ୍ତକ 'କ ଚ ଟ ତ ପ' (୧୯୪୪), 'ହରିତକୀହାର' ଓ 'କୃଷ୍ଣକୁମାରୀ' ପ୍ରଭୃତି ପ୍ରକାଶିତ । କଲିକତା ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ଅଧ୍ୟାପକ ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ "ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟରେ ଅକ୍ଷର ନିୟମରେ 'କ ଚ ଟ ତ ପ' ପ୍ରଥମ ରଚନା । ** ତାଙ୍କ ଲିଖିତ 'ବୃଦ୍ଧ ବୈଜୟନ୍ତୀ' ବଙ୍ଗଳା ଭାଷାରେ ଅନ୍ୟତମ ପ୍ରକାଶିତ ପୁସ୍ତକ ।

କ୍ଷୀରୋଦବାବୁଙ୍କର ପିତାଙ୍କର ନାମ ନନ୍ଦଲାଲ ଓ ମାତା ଅପର୍ଣ୍ଣା ଦେବୀ । ମୟୂରଭଞ୍ଜର ବହଳଦାଠାରେ ଊନବିଂଶ ଶତକର ଅନ୍ତିମ ଦଶକରେ ଜନ୍ମଲାଭ କରି ବିଂଶତି ଶତକର ଷଷ୍ଠ ଦଶକରେ ଇହଲୀଳା ସାଙ୍ଗ କରିଛନ୍ତି ।

---

* ସାମନ୍ତରାୟ ନଟବର, ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି, ପୃ-୫୯୬, ୧୯୬୪ ।

** ପରିଡ଼ା ଦ୍ୱିଜକିଶୋର ] ମୟୂରଭଞ୍ଜ ଦୃଷ୍ଟିପାତ, ପୃ ୪୪, ୧୯୮୮ ।
ଦଳବେହେରା ମନୋଜ ]

Digitized by srujanika@gmail.com

**ଲୋକ ସାହିତ୍ୟ :**

ଆମ ଓଡ଼ିଶାରେ ଲୋକ ସାହିତ୍ୟର ସଂଗ୍ରହ କିଛି ପରିମାଣରେ ହୋଇଛି । ୰ ଗୋପାଳଚନ୍ଦ୍ର ପ୍ରହରାଜ, ଚକ୍ରଧର ମହାପାତ୍ର ଓ ଡ଼ଃ· କୁଞ୍ଜବିହାରୀ ଦାସଙ୍କ ଅବଦାନ ସ୍ୱୀକାର୍ଯ୍ୟ । କୁଞ୍ଜବିହାରୀ ଦାସଙ୍କ ସଂଗ୍ରହ ଏ କ୍ଷେତ୍ରରେ ଉଲ୍ଲେଖ ଯୋଗ୍ୟ ।

ଆଲୋଚ୍ୟ ଅଞ୍ଚଳର ଲୋକ ସାହିତ୍ୟ, ଅତ୍ୟନ୍ତ ସମୃଦ୍ଧ । ରାସ୍ତାଘାଟ, ପୋଖରି ପୁଷ୍କରିଣୀ, ଦେବ ଦେବୀ ଓ ମନ୍ଦିର ମାନଙ୍କର ସୃଷ୍ଟିର ମୂଳରେ ବହୁ କାହାଣୀ ପ୍ରଚଳିତ । ଗ୍ରାମର ବୁଢ଼ା ବୁଢ଼ୀ ଲୋକମାନେ ଲୋକ କଥାର ଗୋଟିଏ ଗୋଟିଏ ଜୀବନ୍ତ କୋଷ । କଥା କଥାକେ ଢଗ ଢମାଳି, ଆପ୍ତ ବଚନ ଉଦ୍ଧାର । ଘରେ ଶାଶୁ ବୋହୂ କଳି ମଧ୍ୟରେ କେତେ ଢଗ, କେତେ କାନ୍ଦଣା ଗୀତ । ଦାଣ୍ଡରେ ପିଲା ଖେଳରେ କେତେ ଓଠ ଅଛଡ଼ା ଗୁଲୁଗୁଲିଆ ଗୀତ, ହସ କାନ୍ଦର ଗୀତ, କାମରେ ଗୀତ ଓ ଆମୋଦରେ ଗୀତ ଭରପୂର ।

ଏ ଅଞ୍ଚଳ ଲୋକ ସାହିତ୍ୟର ପରିସର ଅତି ବିଶାଳ । ନାନା ଧର୍ମ ଧାରଣାର ଇତିହାସ, ଉତ୍କଳର ବାଣିଜ୍ୟ ବ୍ୟବସାୟର ପୂର୍ବ ତତ୍ତ୍ୱ, ପ୍ରାଚୀନ ଉତ୍କଳର ବୈଭବ ଓ ଗୌରବମୟ ସଂସ୍କୃତିର ଏକ ଗନ୍ତାଘର । ପ୍ରଚଳିତ ଲୋକ ସାହିତ୍ୟରେ ଗୀତ, ଗପ (କାହାଣୀ) ତନ୍ତ୍ର, ମନ୍ତ୍ର ଅନ୍ତର୍ଭୁକ୍ତ ।

ଲୋକ କବି କେତେକ କାହାଣୀକୁ ଧର୍ମୀୟ କାବ୍ୟ ରୂପରେ ପରିବେଷଣ କରିଛି । ଏପରି କେତେକ କାହାଣୀ—କାବ୍ୟ ରୂପ ଏ ଅଞ୍ଚଳରେ ପ୍ରଚଳିତ । ଏଥିରେ ହିନ୍ଦୁ ସମାଜର ବିଭିନ୍ନ ଦେବଦେବୀଙ୍କର ଲୌକିକ ଉତ୍ପତ୍ତି ଓ ପ୍ରତିଷ୍ଠାର ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଅଛି ।

ଓଡ଼ିଶାର କୃଷକ ସମାଜ କେତେ ଦେବଦେବୀଙ୍କୁ ତା'ର ଏହି ପ୍ରିୟ ମାଟିର ଧୂଳି ଦାଣ୍ଡକୁ ନେଇ ଆସି ନିଜର ହସକାନ୍ଦ, ସୁଖଦୁଃଖ ମଧ୍ୟରେ ସ୍ଥାପନ କରିଛି । ନିଜେ କୃଷକ, ତେଣୁ; ଦେବତାଙ୍କୁ ସଜାଇଛି ନିଜ ପରି କୃଷକ । ଓଡ଼ିଆ ଲୋକ ସାହିତ୍ୟକ ଦେବ ଦେବ ମହାଦେବଙ୍କୁ ଜଣେ ନିପଟ କୃଷକ ଭାବେ ପ୍ରତିଷ୍ଠା କରାଇଛି । ଶିବ ନିଜେ ଚାଷ କରିଛନ୍ତି । ଷୋଳଷୀ ପାଣ୍ଠ, ଆଡ଼ ସାଢ଼େ ଷୋଳକୋଣ ଭୂମି ତାଙ୍କର ଚାଷ ଜମି । ବାସୁଆ, ପବନା ନାମରେ ଦୁଇଟି ବଳଦ, ଲୁହାର ଲଙ୍ଗଳ, ମଇ ପ୍ରଭୃତି ସମସ୍ତ କୃଷୋପକରଣ । କୃଷିକାର୍ଯ୍ୟରେ ସାହାଯ୍ୟ ପାଇଁ ଜଣେ 'ମୂଲିଆ' ରହିଛି । ବାରମାସିଆ ହେ ସେ ଲୋକ କୁହନ୍ତି । ଶିବଙ୍କ ପରି କୃଷକ, ତାଙ୍କର ସାହାଯ୍ୟକାରୀ ସେହିପରି ଜଣେ କରିତ୍

Digitized by srujanika@gmail.com

କର୍ମୀ ଲୋକ ହେବା ଦରକାର । ସୁତରାଂ ଓଡ଼ିଆ ଲୋକ ଶ୍ରମଙ୍କ ପରି ଜଣେ ଉତ୍ତମ କର୍ମୀଙ୍କୁ 'ବାରମାସିଆ' ରୂପେ ନିଯୁକ୍ତ ଦେବାରେ ବିଚକ୍ଷଣତା ନାହିଁ ।

ମହାଦେବ ଚାଷ କରିବା ପାଇଁ ଆସି କୈଳାସକୁ ଫେରିନାହାନ୍ତି । ସେ ଏକୁଲା ଲୋକ । ପାର୍ବତୀ ବାପ ଘରେ ଅଛନ୍ତି, ଥାଆନ୍ତୁ, ଏଣେ କୈଳାସରେ ପାର୍ବତୀ ବିରହରେ ଅସ୍ଥିର । ନନ୍ଦୀଭୃଙ୍ଗୀଙ୍କୁ ପଠାଇଲେ ମଧ୍ୟ ଶିବ କୈଳାସକୁ ଗଲେ ନାହିଁ । ଶିବଙ୍କୁ ଫେରାଇ ଆଣିବା ଲାଗି ପାର୍ବତୀ ସମସ୍ତ ପ୍ରକାର ଚେଷ୍ଟା ଚରିତ୍ର କଲେ । ମଶା, ଡାଁଆଶ, ମାଛି, ପତଙ୍ଗ, ଜୋକ, ଗେଣ୍ଡା ପ୍ରଭୃତି ସମସ୍ତ ସୃଷ୍ଟିକରି ଚାଷ କାର୍ଯ୍ୟରେ ଶିବଙ୍କୁ ବାଧା ଦେବାପାଇଁ ପାର୍ବତୀ ପଠାଇଲେ । ତଥାପି ଗୃହୀ ଶିବ ଘରକୁ ଫେରିଲେ ନାହିଁ । ଏ କଥାରେ କହନ୍ତି, "ଯାହାର ଅଛି ଚାଷ ବାସ, ତାହାର ନାହିଁ ବନ୍ଧୁବାସ ।" ଶିବ ଘରକୁ ନ ଯିବାର ଦେଖି ପାର୍ବତୀ ନିଜେ ଧାନ କ୍ଷେତକୁ ଆସିଲେ ବାଧ୍ୟ ହୋଇ । କାର୍ତ୍ତିକ ମାସ । ଧାନର 'କେଣ୍ଡା ସବୁ ପୁଷ୍ଟ ହୋଇଛି । ପାର୍ବତୀ ରାଗରେ ଜଣେ କାଳୀ କେଉଟୁଣୀ ବେଶରେ ମାଛ ଧରିବା ବାହାନାରେ ବିଲରେ ପଶି ଧାନ ଗଛ ସବୁ ଭାଙ୍ଗି, ଦଳି ମକଚି ମାଛ ଧରୁଥାନ୍ତି । ମହାଦେବ ଖବର ପାଇ ଗାଳି ଦେଉ ଦେଉ ଯଥା ସ୍ଥାନରେ ପହଞ୍ଚିଲେ । ଦୁଇଜଣଙ୍କ ମଧ୍ୟରେ ବେଶ୍ କିଛି ସମୟ କଳି ହେଲା । ଶିବ କ୍ରୋଧରେ ପାର୍ବତୀଙ୍କୁ ଚୂପୁଡ଼ା ମାରିଲେ । ଶେଷରେ ପରସ୍ପର ଚିହ୍ନା ଚହ୍ନି ହୋଇ ନିକଟବର୍ତ୍ତୀ ଲିଙ୍ଗଲେଶ୍ୱର ଘରକୁ ଫେରିଲେ । କିଛିଦିନ ରହିବା ପରେ ପାର୍ବତୀ ଶିବଙ୍କୁ ନେଇ କୈଳାଶକୁ ଫେରିଲେ । ଶ୍ରମ ଉପରେ ଦାୟିତ୍ୱ ରହିଲା । ଧାନ ପାଚିଲା ପରେ କାଟିକୁଟି ଅମଳ କରି ନେଇ ଯିବ ।

ଧାନ ପାଚିଲା । ଶ୍ରମ ବାଉଁଶ ଦେଲା । ଦାଆଧରି ଧାନ କାଟିବାକୁ ଗଲା । ସବୁ ବିଲ କାଟିବାରୁ ତାଙ୍କ ହାତରେ ମାତ୍ର "ହେଲାଏ" ନଡ଼ା ହେଲା । ଶ୍ରମ ମନ ଖୁବ୍ ଖରାପ ହୋଇଗଲା । ଏତେ ପରିଶ୍ରମ ବୃଥା ହେଲା । କୈଳାସକୁ ଯାଇ ଶିବଙ୍କୁ କ'ଣ କହିବେ ଭାବି, ସେହି ହେଲାକ ଧାନକୁ ପିଟିଲା । ପିଟିସାରି ଧାନ ଗୋଟାଇଲାରୁ ଶ୍ରମ ହାତରେ ହେଲା ମୁଠିଏ । ଶ୍ରମର ମନ ଆହୁରି ଖରାପ ହୋଇଗଲା । ସେ ସେଇ 'ମୁଠିକ' ଧାନ ଓ ନଡ଼ାରେ ନିଆଁ ଲଗେଇ ଦେଲେ' । ବାର ମାସର ଚାଷ ସବୁହେଲା ଶେଷ । ମନ ଦୁଃଖରେ ଶ୍ରମ କୈଳାସକୁ ଗଲେ ନାହିଁ । ପ୍ରବଳ ଶୀତରେ ନିଆଁ ପୋଇଁ ମଉଜ କରୁଛି ।

ଏଣେ ମହାଦେବ କୈଳାସରେ ଚିନ୍ତିତ ଥାଆନ୍ତି । ଧାନକଟା ସମସ୍ତ ଶେଷ ହେଲା । ମାଗୁଣିର ଯାଇ ପୁଷମାସ ସରିଲଣି । ଶ୍ରମ ଆସିଲା ନାହିଁ କାହିଁକି ? ହଠାତ୍ ବୁଲି ବୁଲି କୈଳାସ ଉପରୁ ଦକ୍ଷିଣ ଦିଗକୁ ଚାହିଁବାରୁ ଦୂରରୁ ଧୂଆଁ ର କୁଣ୍ଡଳୀ ଉଠୁଥିବାର ଦେଖାଗଲା । ମହାଦେବ ସମ୍ଭାଳି ନ ପାରି ସୋଲଣାପାଣ୍ଡୁକୁ ଦୌଡ଼ିଲେ ।

Digitized by srujanika@gmail.com

ଦେଖିବାକୁ-ଧାନ ଗଦାରେ ନିଆଁ । ମହାଦେବ ବ୍ୟସ୍ତହୋଇ ପାଣି ଛିଞ୍ଚି ଧାନବଡ଼ା ସବୁ ଟାଣିଟୁଣି ପକାଇ ନିଆଁ ଲିଭାଇ ଦେଲେ । ନିଆଁରେ ଯେଉଁ ଧାନ କଳା ହୋଇ ଯାଇଥିଲା, ତାର ନା ହେଲା ଭୂତିଆ, ଯେଉଁଟା ନାଲି ମାରି ଯାଇଥିଲା, ସେଟି ହେଲା 'ସୁନ୍ଦୁରିଶାଳି' ଇତ୍ୟାଦି । ସେଇଠୁ ଧାନର ବିଭିନ୍ନ ନାମ କରଣ ହେଲା ।

ଏଇ କାହାଣୀକୁ ଭିତ୍ତିକରି ଉତ୍ତର ବାଲେଶ୍ୱରର ଲିଙ୍ଗଲେଶ୍ୱରଠାରେ ପ୍ରତିଷ୍ଠା ହୋଇଛି ଶିବ ପାର୍ବତୀଙ୍କ ମନ୍ଦିର । ମନ୍ଦିରଟି ସୁନ୍ଦରଶ୍ୟ । ନିକଟରେ ପାର୍ବତୀ ନଈ । ପାର୍ବତୀ ମନ୍ଦିରରେ ପାର୍ବତୀ ମୂର୍ତ୍ତି ଅଷ୍ଟଭୂଜା ।

ଶିବଙ୍କ କୃଷି କାର୍ଯ୍ୟ ବିଷୟକୁ ନେଇ ରାମେଶ୍ୱରଙ୍କ 'ଶିବାୟନ' କାବ୍ୟ ରଚିତ । ଏ ଅଞ୍ଚଳରେ ବହୁ ପ୍ରଚଳିତ ଶିବେଇ ଖାଦନ ମଧ୍ୟ ମହାଦେବଙ୍କ କୃଷି କାର୍ଯ୍ୟର ବିବରଣୀ ପ୍ରଦାନ କରେ । ଉତ୍ତର ବାଲେଶ୍ୱର ଅଞ୍ଚଳରେ ଶିବଙ୍କ କୃଷିକାର୍ଯ୍ୟ ବିଷୟରେ ଲୋକଗୀତ ପ୍ରଚଳିତ ଅଛି । ପରବର୍ତ୍ତୀ ସମୟରେ କବି ରାଧାମାଧବ ଗିରି ଏହି ବିଷୟରେ 'ଲିଙ୍ଗଲେଶ୍ୱର' କାବ୍ୟ ରଚନା କରିଛନ୍ତି । ରାମେଶ୍ୱରଙ୍କର 'ଶିବାୟନ' କାବ୍ୟ ଉତ୍ତର-ପୂର୍ବାଞ୍ଚଳୀୟ ଉପଭାଷା ପ୍ରଭାବିତ ରଚନା । କବି ରାମେଶ୍ୱର ମେଦିନୀପୁର ଅଧିବାସୀ ହୋଇଥିବାରୁ ଲିଙ୍ଗଲେଶ୍ୱରର କାହାଣୀ ତାଙ୍କୁ କାବ୍ୟ ରଚନାରେ ସାହାଯ୍ୟ କରିଥିବ । ଏହାଛଡ଼ା ଚନ୍ଦନେଶ୍ୱର, ସ୍ୱପ୍ନେଶ୍ୱର ଓ ଆର୍ଦ୍ଦମଣ୍ଡଳମଣି ପ୍ରଭୃତି ମହାଦେବଙ୍କ ସମ୍ପର୍କରେ ବିଭିନ୍ନ ଲୋକକଥା ସମ୍ବଳିତ ଗୀତିକାବ୍ୟ ରଚିତ ହୋଇଥିବାର ଦେଖାଯାଏ ।

**ସତ୍ୟନାରାୟଣ ପାଲ :**

ସତ୍ୟନାରାୟଣ ପାଲି ଏ ଅଞ୍ଚଳରେ ବହୁ ପ୍ରଚଳିତ । ସାଧାରଣତଃ ଲୋକେ ନିଜ କାମନାର ସିଦ୍ଧି ନିମନ୍ତେ ଏ ପୂଜା କରିଥାନ୍ତି । କବି କର୍ଣ୍ଣଙ୍କ ଷୋଳ ପାଲି ଏହି ପୂଜାର ମାହାତ୍ମ୍ୟ ବର୍ଣ୍ଣନା କରେ । କବି କର୍ଣ୍ଣଙ୍କ ଷୋ'ଳ ପାଲିର ଭାଷା, ବଙ୍ଗଳା, ଓଡ଼ିଆ ଓ ପାର୍ଶୀ ଭାଷା ମିଶ୍ରିତ । ସରଳ ଓ ସାବଲୀଳ ପ୍ରକାଶ ହେତୁ ସାଧାରଣରେ ବୋଧଗମ୍ୟ । କବି କର୍ଣ୍ଣ ସମ୍ଭବତଃ ମେଦିନୀପୁରବାସୀ । ମୁସଲମାନ ଶାସନ କାଳରେ ହିନ୍ଦୁ ଓ ମୁସଲମାନ ଉଭୟ ଧର୍ମର ଲୋକମାନଙ୍କ ମଧ୍ୟରେ ଏକ ସାଂସ୍କୃତିକ ସମନ୍ୱୟ ଆଣିବା ନିମନ୍ତେ ଏହି ପାଲାର ସୃଷ୍ଟି । 'ସତ୍ୟବାଦୀ'ର ମୁସଲମାନ ଓ 'ସତ୍ୟନାରାୟଣ' ହିନ୍ଦୁମାନଙ୍କର ଆରାଧ ଦେବତା । ସତ୍ୟନାରାୟଣ ପୂଜା ଶାସ୍ତ୍ର ସମ୍ମତ । ସ୍କନ୍ଦ ପୁରାଣରେ ଏହାର ଉଲ୍ଲେଖ ଅଛି । ମୁସଲମାନ ଶାସନ କାଳରେ ଜଣେ ସଂସ୍କୃତ ସଚେତନ ଏହି ପାଲି ରଚନା କରି ହିନ୍ଦୁ ମୁସଲମାନ ମଧ୍ୟରେ ସୌହାର୍ଦ୍ଦ ଓ ଭ୍ରାତୃତ୍ୱ ପ୍ରତିଷ୍ଠା

Digitized by srujanika@gmail.com

କରବାର ଚେଷ୍ଟା କର ଅକ୍ଷୟ ଯଶର ଅଧିକାରୀ ହୋଇଛନ୍ତି । ଏହି ପାଲାର ଶ୍ରୁତିମଧୁର ଗୀତାବଳୀ ମଧ୍ୟରୁ ନିମ୍ନରେ କେତେ ପଦ ଉଦ୍ଧାର କରାଗଲା ।

"ପୂଜା ସାର ଶିରଣୀ ବାଣ୍ଟିଲ ଜନେ ଜନେ
ଦେଖିଯ୍ଯା ଆନନ୍ଦ ପ୍ରଭୁ ହଇଲେକ ମନେ ।
ଆଜକାର ମତ ପ୍ରଭୁ ରାଖ ଅବସର
ଆରଦିନେ ଗାଇବ ହେ ଗୀତେର ଉତ୍ତର ।
ଆମି ମୂଢ଼ ମତ ହୀନ କବୀ ନାମ ଜାନି
ଏହି ରୂପେ ଯତ ପାଲା ଅପୂର୍ବ କାହାଣୀ ।
ଯା'ର ଘରେ ହୁଏ ପୂଜା ସାହେବର ନାମ
ବଢ଼ାଅ ଦୌଲତ ତାର ଫତେ କର କାମ ।
ସଭା ମଧ୍ୟେ ଆର ବସିଆଛ ଯତ ଜନ
ସବାକାର ହବେ ସିଦ୍ଧ ମନେର ଖ୍ୱପନ ।
ଶ୍ରୀ କବି କର୍ଣ୍ଣେତେ ଗାଏ ନାରାୟନ ପାଏ ।
ହରି ହରି ବୋଲ ସବେ ପାଲା ହୈଲ ସାଙ୍ଗେ ।"

କବି କର୍ଣ୍ଣ ସତ୍ୟନାରାୟଣ ଓ ସତ୍ୟପୀରଙ୍କୁ ଏକ ସତ୍ତା ରୂପେ ବର୍ଣ୍ଣନା କରିଛନ୍ତି । ସତ୍ୟନାରାୟଣ ପାଲା ବ୍ୟତୀତ ଏ ଅଞ୍ଚଳରେ ଓଡ଼ିଆ ପାଲା ବା ବାଦୀପାଲା ପ୍ରଚଳିତ । ଦଶ କୋଡ଼ିଏ ବର୍ଷ ପୂର୍ବରୁ ଏହାର ପ୍ରଚଳନ ଓ ଆଦର ବେଶ୍ ରହିଥିଲା । ଏବେ କିଛି ପରିମାଣରେ ଏହାର ଆଦର ହ୍ରାସ ପାଇଛି । ଏହା ଏକ ପ୍ରକାର ନାଟ୍ୟାନୁଷ୍ଠାନ । ଦୁଇ ଦଳ ପାଲା ଗାୟକ ମଧ୍ୟରେ ଗୋଟିଏ ଦଳ ଅନ୍ୟ ଦଳକୁ ପ୍ରଶ୍ନଟିଏ ପଚାରିବ । ଅପର ଦଳର ଗାୟକ ଏହାର ଉତ୍ତର ଦେବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ପ୍ରଶ୍ନ ବିପକ୍ଷ ଦଳକୁ ପଚାରିବ । ଏହିପରି ପ୍ରଶ୍ନ ଉତ୍ତର ଦେଉଁ ଦେଉଁ ଯେଉଁ ଦଳ ଉତ୍ତର ଦେଇ ନ ପାରିଲା, ସେ ଦଳ ହାରିଲା । ସଭା ମଧ୍ୟରେ ଗୋଟିଏ ଦିଗରେ ପାଚିଲା କଦଳୀ କାନ୍ଧି ଚମ୍ପା ଫୁଲ ମାଳା, ଅନ୍ୟ ଦିଗରେ ଛିଣ୍ଡା ଯୋତା ଝଙ୍ଗା ହୋଇଥିବ । ଯେଉଁ ଦଳ ଜିତିବ ଫୁଲମାଳା କଦଳୀକାନ୍ଧି ନେବ । ଯେ ହାରିବ ସେମାନେ ଅନ୍ୟଟି ନେବେ । ସମଗ୍ର ଅନୁଷ୍ଠାନଟି ଗୀତ ମାଧ୍ୟମରେ ହୋଇଥାଏ । ଏଥିରେ (ପଞ୍ଚଳ) ପ୍ରଧାନ ଥାଏ । ଗାୟକ ହାତରେ ଚାମର ଧରିଥାନ୍ତି ।

ଏହା ବ୍ୟତୀତ ଅନ୍ୟ ଏକ ପାଲା ଏ ଅଞ୍ଚଳରେ ଅନୁଷ୍ଠିତ ହୁଏ । 'ଷଷ୍ଠୀଘରର ପୂଜା ହେଲେ ଷଷ୍ଠି ପାଲା ଗୀତ ହୋଇଥାଏ । ପିଲା ଜନ୍ମ ହେଲା ପରେ ପିଲାର ମଙ୍ଗଳ ନିମନ୍ତେ ଦେବୀଙ୍କୁ ଘରବାରରେ ଆରାଧନା କରାଯାଇଥାଏ । ପାଲାରେ ଦେବୀଙ୍କ ମହିମା ବର୍ଣ୍ଣିତ । ବଙ୍ଗୀୟ କବି ଭୃଗୁରାମଙ୍କ ରଚିତ 'ଭ୍ରମରବର' ପାଲା ଏବଂ 'କଳାବତୀ' ଓ 'ଲୀଳାବତୀ' ପାଲା ପ୍ରଭୃତି ଏଥିରେ ଗାନ କରାଯାଏ ।

Digitized by srujanika@gmail.com

**ତ୍ରିନାଥ ମେଳା :**

ଗୃହର ମଙ୍ଗଳ ଓ ବ୍ୟକ୍ତିର ମନୋବାଞ୍ଛା ସିଦ୍ଧି ନିମନ୍ତେ ଏହି ପୂଜା ଅନୁଷ୍ଠିତ ହୋଇ ଉପାଖ୍ୟାନ ଗୀତ ହୋଇଥାଏ । ସରଳ ଭାଷା ଓ ସାବଲୀଳ ପ୍ରକାଶଭଙ୍ଗୀ ଏହାର ବିପୁଳ ପ୍ରସାର ଘଟାଇଛି । ମେଦିନୀପୁର ଅଞ୍ଚଳରେ ଏ ଉପାଖ୍ୟାନଟି ବଙ୍ଗ ଲିପିରେ ମୁଦ୍ରିତ ହୋଇ ମେଳା ସମୟରେ ଗାନ କରାଯାଇଥାଏ ।

**ଗୁରୁବାର ଓଷା ପୋଥି :**

ମାର୍ଗଶୀର ମାସର ଗୁରୁବାର ଦିନ ମହାଲକ୍ଷ୍ମୀଙ୍କର ମାଣବସା ବ୍ରତ ଉପଲକ୍ଷେ ଘରେ ଘରେ ଏହା ଗାନ କରାଯାଇଥାଏ । ଦୁଇ ତିନି ଜଣ * କବିଙ୍କ ଦ୍ୱାରା ବିଭିନ୍ନ ଆଖ୍ୟାନକୁ ନେଇ ମହାଲକ୍ଷ୍ମୀଙ୍କର ମହିମା ଗୀତମାନ ରଚିତ ହୋଇଥିବାର ଦୃଷ୍ଟି-ଗୋଚର ହୁଏ । କିନ୍ତୁ ବଳରାମ ଦାସଙ୍କ ରଚିତ ମହାଲକ୍ଷ୍ମୀ ପୁରାଣର ପ୍ରସିଦ୍ଧି ଅନ୍ୟ କାହାର ଭାଷାରେ ଯୁଟି ନାହିଁ ।

**କାର୍ତ୍ତିକ ମହାତ୍ମ୍ୟ :**

କାର୍ତ୍ତିକ ମାସରେ ପୁଣ୍ୟ ଅର୍ଜ୍ଜନ କରିବା ନିମନ୍ତେ ହିନ୍ଦୁମାନେ ଏ ପୁରାଣ ପାଠ କରିଥାନ୍ତି । ସାଧାରଣତଃ ପଞ୍ଚମୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହା ଗାନ କରାଯାଇଥାଏ । ମେଦିନୀପୁର ଅଞ୍ଚଳରେ ଏହା ବଙ୍ଗାକ୍ଷରେ ମୁଦ୍ରିତ ହୋଇ ଗୀତ ହୁଏ ।

**ଶୀତଳା ମଙ୍ଗଳ :**

ପ୍ରତିଗ୍ରାମରେ ଗ୍ରାମ ଦେବତାଙ୍କ 'ମାଜଣା' ବା 'ଜଳାଦିଆ ପୂଜା' ଅନୁଷ୍ଠିତ ହେଲେ ଏହି ଗୀତ ଗାନ କରାଯାଇଥାଏ । ଏହା ବଙ୍ଗ ଭାଷାରେ ରଚିତ । ସମଗ୍ର ଅଞ୍ଚଳରେ ଏହାର ବିପୁଳ ପ୍ରସିଦ୍ଧି ।

**ଟୀକା ଗୋବିନ୍ଦ ଚନ୍ଦ୍ର :**

ନାଥ ଯୋଗୀମାନେ ଏହି ଗୀତ ଗାନ କରି ଏ ଅଞ୍ଚଳମାନଙ୍କରେ ଭିକ୍ଷା କରି-ଥାନ୍ତି । ଗୋବିନ୍ଦ ଚନ୍ଦ୍ରଙ୍କ ସନ୍ୟାସ, ମାତାଙ୍କର ତ୍ୟାଗ ଓ ପତ୍ନୀଗଣଙ୍କର କରୁଣ କ୍ରନ୍ଦନ ବିଷୟ କେନ୍ଦାରର କରୁଣ ସ୍ୱର ମୂର୍ଚ୍ଛନାରେ ଗାଁ ଦାଣ୍ଡ ମୁଖରିତ ହୋଇ ଉଠେ । ଏକ ଧର୍ମୀୟ ଉଦାର ଭାବନା ଲୋକ ପ୍ରାଣରେ ସ୍ୱତଃ ଜାଗରିତ ହୁଏ ।

---

* ବାଣିଦା ଗ୍ରାମ ନିବାସୀ ୰ କନ୍ଦର୍ପ ନାରାୟଣ ଦାଶଙ୍କ ରଚିତ 'ମହାଲକ୍ଷ୍ମୀ ବ୍ରତ କଥା' ପ୍ରଭୃତି ।

Digitized by srujanika@gmail.com

**ନାମ ସଂକୀର୍ତ୍ତନ :**

ମହୋତ୍ସବ ହେଲେ ନାମ ସଙ୍କୀର୍ତ୍ତନ ହୋଇଥାଏ । ଓଡ଼ିଆ ଓ ବଙ୍ଗଳା କୀର୍ତ୍ତନ ଏ ସମଗ୍ର ଅଞ୍ଚଳରେ ପ୍ରସିଦ୍ଧି ଓ ଆଦର ଲାଭ କରିଛି । ଗ୍ରାମମାନଙ୍କରେ କୀର୍ତ୍ତନ ଦଳମାନ ଗଠିତ ହୋଇ କୀର୍ତ୍ତନ ଗାନ କରାଯାଏ । ମାଘ ମାସରେ ଏ ଅଞ୍ଚଳରେ ପୁରପଲ୍ଲୀରେ ବୈଷ୍ଣବଗଣ କୀର୍ତ୍ତନ କରି ମାସଯାକ ଘୁରିବୁଲି ନାମ ଦିଅନ୍ତି ।

**ପଞ୍ଚାନନ ମେଳା :**

ଶ୍ରୀ ଦିବାକର ଭୂୟାଁ ରଚିତ ପଞ୍ଚାନନ ମେଳା ଓ ଆଖଣ୍ଡଳମଣି ମେଳା ଏ ଅଞ୍ଚଳରେ ପ୍ରାୟ ପ୍ରତ୍ୟେକ ଗୃହରେ ଅନୁଷ୍ଠିତ ହୋଇଥାଏ । ଶିବଙ୍କର ପ୍ରସାଦାର୍ଥେ ଏହି ପୂଜା ଅନୁଷ୍ଠିତ ହୁଏ । ମେଦିନୀପୁର ଅଞ୍ଚଳରେ ଏହାର ପ୍ରସିଦ୍ଧି ଓ ଆଦର ଦେଖାଯାଏ ।

**କାନ୍ଦଣା :**

ଲୋକଗୀତରେ କାନ୍ଦଣା ଏକ ଉଲ୍ଲେଖନୀୟ ବିଷୟ । ଶାଶୁ ଘରକୁ ଯିବାବେଳେ ଝିଅ କାନ୍ଦି ବା ଗୀତ ଗାଇ ଯାଇଥାଏ । କାନ୍ଦଣାରେ ସମାଜର ଚିତ୍ର ସରଳ ଓ ସ୍ପଷ୍ଟଭାବେ ଗୀତ ହୋଇଥାଏ । ନିଜ ଘରର ଅଭାବ ଅନାଟନ, ଶାଶୁ ନଣନ୍ଦଙ୍କର ନିର୍ଯ୍ୟାତନା, ସ୍ୱାମୀଙ୍କର ଅତ୍ୟାଚାର, ଅପାରଗତା ସମସ୍ତ କାନ୍ଦଣା ଗୀତର ବିଷୟ ବସ୍ତୁ । ଆଗରୁ ସମାଜରେ 'ପଣ' ବା କନ୍ୟା ଶୁନାର ପ୍ରଚଳନ ଥିଲା । ପିତା ଅର୍ଥ ଲୋଭରେ ଯୁବତୀ କନ୍ୟାକୁ ବୁଢ଼ା ବରରେ ଟେକି ଦେବା ଏକ ସାଧାରଣ କଥା ଥିଲା । ବ୍ୟାସକବି ଫକିର ମୋହନ ସେନାପତି 'ବରେଇ ବଣାଲ' ଗଳ୍ପରେ ତତ୍କାଳୀନ ସମାଜରେ ପ୍ରଚଳିତ ବିବାହ ଓ କନ୍ୟାମାନଙ୍କର ମନସ୍ତତ୍ତ୍ୱ ସମ୍ପର୍କରେ ସୁନ୍ଦର ଚିତ୍ର ପ୍ରଦାନ କରିଛନ୍ତି । ଗୋଟିଏ କନ୍ୟାକୁ ଅର୍ଥଲୋଭରେ ବହୁଥର ବିବାହ ଦିଆଯାଇଥିବାର ଦେଖାଯାଏ । ନାରୀ ହୃଦୟର ଅନ୍ତରାତ୍ମାମୂଳକର ଗୋପନ କଥାକୁ ଲୋକକବି ଗୀତରେ ଗାଇଥାଏ ।

"ଟାଙ୍ଗିବର, ଟୁଙ୍କାବର, ନସ ମାଡେ ଜର ଜର
କୁଠାବର, ବୁଢ଼ାବର, ଲୁହ ବହେ ଝର ଝର ।"

ମୋଟ ଉପରେ କାନ୍ଦଣା ଗୀତରେ ପଲ୍ଲୀ ଜୀବନର ହସ, କାନ୍ଦ, ଦୁଃଖ, ଦୈନ୍ୟ, ଆଶା, ହତାଶା, ଅଭାବ ଅନାଟନ, ଅତ୍ୟାଚାର, ଅବିଚାରର ଜୀବନ୍ତ ଓ ଜୀବନ୍ତ ପ୍ରକାଶ ଦେଖିବାକୁ ମିଳେ ।

ଛୋଟ ପିଲାଙ୍କୁ ଶୁଆଇ ଦେଲାବେଳେ ମା'ମାନେ ଗୀତ ଗାଇଥାନ୍ତି । ପିଲାମାନେ ଖେଳିଲାବେଳେ ଗୀତ ଗାଇ ଖେଳନ୍ତି ।

Digitized by srujanika@gmail.com

ହଳୁଆ ଓ ଶ୍ରମିକ ଶ୍ରେଣୀ ବଳରେ କାମ କରୁ କରୁ ଗୀତ ଗାଇ ମନକୁ ଆନନ୍ଦିତ କରି ଶ୍ରମ ଲାଘବ କରିଥାନ୍ତି । ଏହା ବିଭିନ୍ନ ସାମାଜିକ, ପାରିପାର୍ଶ୍ୱିକ ପରିସ୍ଥିତି ଓ ପୁରାଣ-ଭିତ୍ତିକ ମୁଖ୍ୟତଃ ଲୌକିକ ରାମାୟଣ ଓ ମହାଭାରତର ବିଷୟବସ୍ତୁ ସମ୍ବଳିତ ରଚନା ।

ଗାଁ ଗହଳରେ ଲୋକମାନେ କଥା କଥାକେ ଢଗ, ଢମାଳି, ନାଁ ଧଆ, ଆପ୍ତବଚନ, ପ୍ରବଚନ, ବ୍ୟଙ୍ଗୋକ୍ତି, ଡାକ ବଚନ, ଖନା ବଚନ ଓ ଭାଗବତ ବାଣୀ ଉଚ୍ଚାର କରିଥାନ୍ତି ।

ଲୋକଗୀତରେ ଆମ ପ୍ରାଚୀନ ସମାଜର ଦୁଃଖ, ଦାରିଦ୍ର୍ୟ, ରୀତି, ନୀତି, ବ୍ୟବସାୟ, ବାଣିଜ୍ୟ ପ୍ରଭୃତିର ସ୍ପଷ୍ଟ ଛବି ପ୍ରକାଶ ପାଇଥାଏ । ଭକ୍ତି, ହାସ୍ୟ, ବ୍ୟଙ୍ଗ, କରୁଣ, ବାତ୍ସଲ୍ୟ ଓ ଶୃଙ୍ଗାର ପ୍ରଭୃତି ରସର ପ୍ରାଧାନ୍ୟ ଲୋକଗୀତରେ ଉପଲବ୍ଧ ହୁଏ ।

**ଲୋକ ଗଳ୍ପ :**

କେତେକ ଗଳ୍ପ ଧର୍ମୀୟ ସୀମାରେଖା ମଧ୍ୟରେ ଲୋକବ୍ରତ, ଓଷା କମୃଦନ୍ତୀ ରୂପରେ ପ୍ରଚଳିତ । ଶାସ୍ତ୍ରାନୁମୋଦିତ ବ୍ରତ ସହ କେତେକ ଲୌକିକ ଓଷା ବ୍ରତ ମଧ୍ୟ ପ୍ରଚଳିତ । ଏଇ ସବୁର ମୂଳରେ ଆଖ୍ୟାୟିକା ସହ ଲୌକିକ ଦେବଦେବୀଙ୍କର ମହିମା ପ୍ରତିଷ୍ଠା କରାଯାଇଛି । କାହାଣୀ ଗୁଡ଼ିକର ଭାଷା ସରଳ, ସାବଲୀଳ କଳାତ୍ମକ ପ୍ରକାଶ ଭଙ୍ଗୀ, ଏ ସବୁକୁ ଆଜି ପର୍ଯ୍ୟନ୍ତ ଆମ ସମାଜରେ ଜୀବନ୍ତ କରି ରଖିଛି । ଏଗୁଡ଼ିକ ପ୍ରାଚୀନ ଓଡ଼ିଆ ଗଦ୍ୟ ରୀତିର ଉତ୍କୃଷ୍ଟ ଦୃଷ୍ଟାନ୍ତ ହେଲେ ହେଁ ଆଧୁନିକ ସମାଜରୁ ଏ ସବୁର ଦ୍ରୁତ ଅବଲୁପ୍ତି ଘଟୁଥିବା ଚିନ୍ତାର ବିଷୟ ।

ପ୍ରଫେସର କୁଞ୍ଜବିହାରୀ ଦାସ ଲୋକଗଳ୍ପକୁ ନିମ୍ନମତେ ବିଭକ୍ତ କରିଛନ୍ତି । ଯଥା—(କ) ପୌରାଣିକ କଥା (ଖ) ଓଷାବ୍ରତ କଥା (ଗ) ସନ୍ଥ ଓ ଭକ୍ତ କଥା (ଘ) କମୃଦନ୍ତୀ (ଙ) ସତ୍ୟନାରାୟଣ ପୁରା କାହାଣୀ (ଚ) ମାହାତ୍ମ୍ୟ କଥା (ଛ) ଲୌକିକ କଥା । ଏ ସମଗ୍ର ଅଞ୍ଚଳରେ ଏ ସମସ୍ତ ବିଭାଗର କାହାଣୀମାନ ପ୍ରଚଳିତ ।

**ତନ୍ତ୍ର ସାହିତ୍ୟ :**

ସଂସ୍କୃତ ତନ୍ତ୍ର ସାହିତ୍ୟର ଅବକ୍ଷୟ କାଳରେ ଓଡ଼ିଆ ଜନସାଧାରଣରେ ତନ୍ତ୍ରର ଆଭିଚାରିକ କର୍ମଗୁଡ଼ିକ ଏକ ନୂତନ ଆଭିମୁଖ୍ୟ ଗ୍ରହଣ କରି ବିକଶିତ ହେବାକୁ ଲାଗିଲା । ଗୁଣି ଗାରେଡ଼ି, ବାଣ, ସିଙ୍ଗାର ପ୍ରଭୃତି ସୃଷ୍ଟି ହୋଇ ସମାଜରେ ପ୍ରଚଳିତ ହେଲା । ଏ ସବୁର ପ୍ରକାଶ ରୀତି ସରଳ ଓ ସାବଲୀଳ । ପ୍ରାଚୀନ ଓଡ଼ିଆ ଗଦ୍ୟ-ପଦ୍ୟ ମିଶ୍ରିତ ରଚନା । ଓଡ଼ିଆ ଗଦ୍ୟର ବିକାଶରେ ଏଗୁଡ଼ିକର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

Digitized by srujanika@gmail.com

ପ୍ରୟୋଗରେ ସ୍ୱାଚ୍ଛନ୍ଦ୍ୟ, ସାବଲୀଳ ଶୈଳୀ, ଅଲୌକିକ ଶକ୍ତି ସମ୍ପନ୍ନ ହୋଇଥିବାରୁ ଏ ପର୍ଯ୍ୟନ୍ତ ଗାଁ ଗହଳରେ ଏ ଗୁଡ଼ିକ ଜୀବନ୍ତ ହୋଇ ରହିଛି । ପ୍ରୟୋଗର ବିବର୍ତ୍ତନ ମଧ୍ୟରେ କେତେବେଳେ କେଉଁଠି କେମିତି ଏ ଗୁଡ଼ିକର ଭାଷା ବିକୃତ ହୋଇ ଯାଇଥିଲେ ହେଁ ଅଷ୍ଟାଦଶ/ଊନବିଂଶ ଶତକରେ ତାଳପତ୍ର ପୋଥିରେ ଏ ମନ୍ତ୍ରର ପ୍ରତିଲିପିଜନିତ ଅକ୍ଷତ ପ୍ରମାଣ ମଧ୍ୟ ପରିଦୃଷ୍ଟ ହୁଏ । ଏ ପ୍ରସଙ୍ଗରେ ଡାହାଣୀ, ଚିରଗୁଣୀ, ଭୂତପ୍ରେତ, ନରସିଂହ, ଯୋଗିନୀ, ହନୁ ମନ୍ତ୍ର, ରାମ ସୀତା, ଈଶ୍ୱର ପାର୍ବତୀ, ବେତାଳ, ପିଶାଚ, ଗର ଗନ୍ଧର୍ବ, ସିଦେଇ ଶଉରୁଣୀ, ନେତେଇ ଧୋବଣୀ (ସୁପ୍ରସିଦ୍ଧ କୁମାରୀ କଥା) ଧର୍ମ ଦେବତା, ଗଙ୍ଗା ଯମୁନା ସରସ୍ୱତୀ, ଶ୍ୱେତ ଗଙ୍ଗା ପ୍ରଭୃତି ଉଲ୍ଲେଖ ତାତ୍ପର୍ଯ୍ୟପୂର୍ଣ୍ଣ ।

**ଲୋକ ନାଟ୍ୟ : (ନାଟ ଓ ନାଚ)**

ଲୋକନାଟ୍ୟ ଲୋକସାଧାରଣଙ୍କ ଆମୋଦ ପ୍ରମୋଦର ବାହ୍ୟ ପ୍ରକାଶ । ଏଥିରେ ସଂଳାପ ଗୌଣ । ସଙ୍ଗୀତର ଧାରା ମୁଖ୍ୟ । ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳୀୟ ସମାଜରେ ପାଲା, ପାଟୁଆ, ଦାସକାଠିଆ, ଛଉ, ଡାମସା, ସଖିନାଟ, ଦଣ୍ଡ ନାଟ, ଚଇତି-ଘୋଡ଼ା ନାଟମାନଙ୍କରେ ଗୀତ ବୋଲା ଯାଇ ନୃତ୍ୟ ପରିବେଷଣ କରାଯାଇ-ଥାଏ । ହାସ୍ୟ କରୁଣ, ବୀର, ଶୃଙ୍ଗାର ଓ ଭକ୍ତି ପ୍ରଭୃତି ରସ ଏଥିରେ ମୁଖ୍ୟ ବିଭାବ ।

**ପାଲା :**

ସମ୍ଭବତଃ ବିଂଶ ଶତାବ୍ଦୀରେ ପ୍ରଥମେ ରଚିତ ହୋଇଥିବା ଲଳିତା ପାଲା ଏ ଅଞ୍ଚଳରେ ଏକ ଲୋକପ୍ରିୟ ନାଟ୍ୟାନୁଷ୍ଠାନ । ଜଗନ୍ନାଥଙ୍କ ସନ୍ଧାନରେ ବ୍ରାହ୍ମଣ ବିଦ୍ୟାପତି ଯାଇ ଶବର ବିଶ୍ୱାବସୁଙ୍କ ଘରେ ପହଞ୍ଚିଛନ୍ତି । ପରେ ବିଶ୍ୱାବସୁ କନ୍ୟା ଲଳିତାର ପ୍ରେମରେ ପଡ଼ି, ତା'ର ସହାୟତାରେ ଜଗନ୍ନାଥ ଦର୍ଶନ କରି ଫେରିଛନ୍ତି । ଏହାହିଁ ଲଳିତା ପାଲାର କଥାବସ୍ତୁ । ଯୁବତୀ ଝିଅ ଘରେ କାହା ସହିତ କଥାବାର୍ତ୍ତା କରୁଛି ଶୁଣିପାରି ବିଶ୍ୱାବସୁ ଲଳିତାକୁ ପଚାରିଲେ ଲଳିତା କହନ୍ତି "ନାହିଁ ମୁଁ ଗୁଣ୍ଡୁଣୀ ସହିତ କଥା ହଉଚି" ଲଳିତା ପାଲାର ରଚୟିତା ଭାବେ ଦୁଇଜଣ କବି ଏ ସମସ୍ତ ଅଞ୍ଚଳରେ ଖ୍ୟାତିଲାଭ କରିଥିଲେ । କଣ୍ଟାଇ ଥାନାନ୍ତର୍ଗତ ଦେପାଳ ଗ୍ରାମର ଶ୍ରୀ କୃପାସିନ୍ଧୁ ମିଶ୍ର ଓ ଏଗ୍ରା ଥାନାର ଶ୍ରୀ ବିଜୟ ଗୋବିନ୍ଦ ଦାସ । ଶ୍ରୀ ବିଜୟ ଗୋବିନ୍ଦ ଦାସଙ୍କ ଗୁରୁ ଥିଲେ କୃପାସିନ୍ଧୁ । ବିଜୟ ଗୋବିନ୍ଦ ଦାସଙ୍କ ଲଳିତା ପାଲାଟି ମିଳିଛି । ଏହା ୧୯୬୫ ଖ୍ରୀ:ରେ ରଚିତ ହୋଇଥିବାର ଜଣାଯାଏ । ଲଳିତା ପାଲା ବ୍ୟତୀତ ସେ 'ସୁଲୋଚନା ହରଣ' ପାଲା ଓ କେତେକ ଯାତ୍ରା ଲେଖିଥିବାର ଜଣାଯାଏ । କୃପାସିନ୍ଧୁଙ୍କ 'ଲଳିତା ପାଲା' ଏ ପର୍ଯ୍ୟନ୍ତ ମିଳିନାହିଁ । ଲଳିତା ପାଲାର କଥାରେ "ଆରେ ଦୂତ ! ଆମେ ତର କଥା ଶୁଣି ବଡ଼ ଶାନ୍ତ ହେଲୁ । ଦେଖ ମନ୍ତ୍ରୀ, ତୁମେ ଆଉ ଦୁଇଜଣ ଦୂତର ସମ୍ବାଦ ନେଇ ଆମର ନିକଟେ ଉପସ୍ଥିତ ହେବ । ଆମେ ଯାଇ କିଛୁକ୍ଷଣ ବିଶ୍ରାମ କରୁ ।"

Digitized by srujanika@gmail.com

ସଖିନାଚ ବା ପୁତୁଲା ନାଚ ଏ ଅଞ୍ଚଳରେ ବିଶେଷ ପ୍ରଚଳିତ ଥିଲା । ମୋ ପିଲାବେଳେ ଏ ସମସ୍ତ ମୁଁ ବାରମ୍ବାର ଦେଖିଅଛୁ । ମଞ୍ଚ ଉପରକୁ ନିର୍ଜୀବ ପୁତୁଳାମାନ ଆସି ଅଭିନୟ କରିବା ଦୃଶ୍ୟ ଚମତ୍କାର । ଅନ୍ତରାଳରୁ ସୂତାଧର ଲୋକେ ନଚାଇବା ସଙ୍ଗେ ସଙ୍ଗେ ଗୀତ ବୋଲୁଥାନ୍ତି । "ପୁତ୍ତଳିକା ନାଚ" .(Puppet play) ଓଡ଼ିଆ ସଂସ୍କୃତିର ଏକ ପ୍ରାଚୀନ ବିଭବ । ସଖିପାଲରେ ବ୍ୟବହୃତ ଭାଷାର ନିଦର୍ଶନ;— "ଦେଖ ସଖି; ତୁମେ ଆମର ଆଗେ ସବୁ ସତ କୁହ, ଆମେ ବିଚାର କରିବା"

ଚଢ଼ିଆ ଚଢ଼ିଆଣୀ (ଚଢ଼େୟା ଚଢ଼େୟାଣୀ) ନାଟ ଏ ଅଞ୍ଚଳରେ ଏକ ଲୋକପ୍ରିୟ ଅନୁଷ୍ଠାନ । ନାୟକ ଚଢ଼ିଆର ସ୍ତ୍ରୀ ରାଗି ସ୍ୱାମୀ ଘରୁ ପଳାଇ ଆସିବ । ବାଟରେ ଦେଖା-ହେବ ଅନ୍ୟ କୌଣସି ଗ୍ରାମର ଚୌକିଆ/ମୁରବୀ ସହିତ । ଏ ଜଣେ ଟାଉଟର ଶ୍ରେଣୀର ଚତୁର ବ୍ୟକ୍ତି । କଥାବାର୍ତ୍ତା ପରେ ଚଢ଼ିଆଣୀ ତାକୁ ଧର୍ମ ବାପ/ଧର୍ମ ଭାଇ କରି ତା ଘରକୁ ଯିବ । (ନାଟରେ ଏ 'ପଣ୍ଡାପୁଅ' କିମ୍ବା 'ବାଙ୍କୁ ଭାଇ' ନାମରେ ପରିଚିତ). ଏଣେ ଚଢ଼ିଆ ନିଜ ସ୍ତ୍ରୀକୁ ଖୋଜି ଖୋଜି ସେହି ଗ୍ରାମ ଦାଣ୍ଡରେ ପହଞ୍ଚିବ । ଘରୁ ବାହାରିଲା ବେଳେ ସେ ଅଞ୍ଚଳର ସମସ୍ତ (ଓଡ଼ିଶା ଓ ବଙ୍ଗଳାର) ପ୍ରଖ୍ୟାତ ଦେବଦେବୀଙ୍କ ବନ୍ଦନା କରିବ ସେ ଯେମିତି ଚଢ଼ିଆଣୀକୁ ଭଲରେ ଭଲରେ ପାଇଯାଏ । ଏଠାରେ ମୟୂରଭଞ୍ଜ ଅଞ୍ଚଳରେ ପ୍ରଚଳିତ ଚଢ଼େୟା ନାଟର କିଛି ଅଂଶ ଉଦ୍ଧାର କରୁଅଛୁ ।

ଚଢ଼େୟା :— × × × ×

ମନ ମୋର ଚଳିଲା କେଉଁ ଦିଗେ ଝୁଜିବହିଁ ଭଲ,
ପଶ୍ଚିମ ଦିଗକୁ ସନ୍ଦେହ ହୋଇଲା ଚାଲିଗଲି ଧୀରେ ଧୀରେ,
ବାରିପଦା ବଡ ଦାଣ୍ଡରେ ପ୍ରବେଶି ପୁଚ୍ଛା କଲି ବହନରେ ହେ,
ଭିତ୍ତି ଗଡ଼ ଦେବତା ତାଙ୍କ ପୟରେ କଲି ପ୍ରଣତି ହେ,
ବଡ଼ ଦାଣ୍ଡ ଧୂଳି ଶୀରେ ହୋଇ ବୋଲି ବଡ଼ ଦେଉଳେ ପ୍ରବେଶି
ସନ୍ଦେହ ତୁଟିଲି ନ ପାଇଲି ସହୁଁ ଚକା ମୁହଁ । ପଦେ ବସି
ଜଲ ତାଙ୍କୁ ଜଣାଣ ଯାଇ ପ୍ରବେଶ ରେଲ ଷ୍ଟେସନ ହେ,
ଟିକଟ କାଟିଲି ଗାଡ଼ିରେ ଚଢ଼ିଲି ରୁପ୍‌ସା ପ୍ରବେଶ ହେଲି;
ବାଲୀଣ ଖୋଜି ମୁଁ ହାଲିଆ ହୋଇ ଯେ, ବାଲେଶ୍ୱର ପ୍ରବେଶିଲି,
ଯେତେ ଗଲି ବଜାର ରମା ନ ପାଇ ହେଲି କାତର ହେ !

× × ×

ନ ପାଇ ସନ୍ଧାନ ଅନ୍ୟ ଦେଶେ ବଲି ଗଲାଟି ମନ
ଦକ୍ଷିଣ ଦିଗେ ପଥ ଗଲି ବାହି ପ୍ରବେଶିଲି ପୁରୀ ସହର ଯାଇ
ମେ ବିମଳା ମାତା ଧରି ଜନନୀ ତାଙ୍କ ପାଦ ପଦ୍ମ କରେ ଦାସ୍ମିନୀ ।"

ଇତ୍ୟାଦି ।

Digitized by srujanika@gmail.com

ଚଢ଼େୟାଣୀକୁ ଖୋଜି ଖୋଜି କୁଆଡ଼େ ନ ପାଇ ସେହି ଗ୍ରାମ ଦାଣ୍ଡରେ ଫେରୁଥିବା ସମୟରେ ସେହିଠ 'ପଣ୍ଡା ପୁଅ'/'ବାଙ୍କୁ ଭାଇ'ଙ୍କ ସହିତ ସାକ୍ଷାତ ହେବ। ପଣ୍ଡା ପୁଅକୁ ଚଢ଼େଇଆ ସମସ୍ତ ବୃତ୍ତାନ୍ତ ଗୀତ ମାଧ୍ୟମରେ କହିବ। ପୁଣି ପଚାରିବ ଯେ, ସେ ତା'ର ଦୁଃଖୀଧନ; ଗଳାମାଳି ଶୁଆନାକୀକୁ ଦେଖିଛନ୍ତି କି ନା? ସେ ସବୁ ବୃତ୍ତାନ୍ତ ଶୁଣିଲା ପରେ 'ଚଢ଼େୟାଣୀ'କୁ ପାଇବାରେ ସାହାଯ୍ୟର ପ୍ରତିଶ୍ରୁତି ଦେବ। ତା'ପରେ ଚଢ଼େୟାଣୀ ଆସରକୁ ଆସି ସେ ବୁଲିଥିବା ବିଭିନ୍ନ ସ୍ଥାନର ଅନୁଭୂତି ନିମ୍ନ ମତେ ବର୍ଣ୍ଣନା କରିବ।

ଚଢ଼େୟାଣୀ :—**ଚଢ଼େୟାଣୀର ବିଦେଶ ଭ୍ରମଣ ବିଷୟ ବର୍ଣ୍ଣନା—**

ପ୍ରଥମରେ ବାରିପଦା ପାର ହୋଇ ଗଲି
"କୁଚେଇ ଗ୍ରାମରେ ବାବୁ ପ୍ରବେଶ ହୋଇଲି ହେ
ସାଧୁଜନ ଚଢ଼ୟାନ ପାଇ ଦୁଃଖ ମନ ହେ
ତହିଁ ଗାଡ଼ି ଚଢ଼ି ଏକାଲେକା ପ୍ରବେଶିଲି
ସେଠାରୁ ମୁଁ ଗୁଲିଯାଇ ଶୀର୍ଷା ଗ୍ରାମେ ହେଲି ହେ,
ଚିଡା ଲେଖେ ହୋଇ ଛନ୍ନ ଛନ୍ନ ହେ
ସେଠାରେ ମୁ ଚିଡା ଲେଖା ଶେଷ କରି ଦେଲି
ଠାକୁର ବାଡ଼ି * ଯିବାକୁ ମନ ବଳାଇଲି ହେ (ବୃନ୍ଦାବନରେ)
ପ୍ରବେଶିଲି ଠାକୁର ବାଡ଼ରେ ହେ
ଗୋବର୍ଦ୍ଧନ ଠାକୁରଙ୍କୁ ଦର୍ଶନ କରିଲି
ମନେ ମାନସିକ କରି ପ୍ରସାଦ ପାଇଲି ହେ ସୁରସିକ
ସ୍ଥିତ ମୋର ହୁଏ ଦକ ଦକ।"

ଗ୍ରାମ ଦାଣ୍ଡରେ ଦେଖା ହେବ ଭଲ ଲୋକଙ୍କ ସହିତ। ତା'ର ନାମ 'ପଣ୍ଡା ପୁଅ'। ସେଠୁ ନାନା ଗୀତ ମାଧ୍ୟମରେ ହାସ୍ୟ କୌତୁକରେ ଚଢ଼ିଆ ଚଢ଼େଆଣୀର ମିଳନ ହେବ।

**ବାଲିପିଣ୍ଡି ଗୀତନାଟ୍ୟ :— (ବାଦ ପାଲା)**

ମୟୂରଭଞ୍ଜର କୁଡୁମୀ କ୍ଷତ୍ରିୟମାନଙ୍କର ଏହା ଏକ ମୁଖ୍ୟ ଲୋକ ନାଟକ। ପାର୍ଶ୍ୱବର୍ତ୍ତୀ ଜିଲ୍ଲାମାନଙ୍କରେ (କେନ୍ଦୁଝର ଜିଲ୍ଲା ଓ ସିଂହଭୂମି ଜିଲ୍ଲାର ଉପାନ୍ତ ଅଞ୍ଚଳ)

* ମେଦନୀପୁର ଝାଡ଼ଗ୍ରାମ ଅନ୍ତର୍ଗତ ଗୋପୀବଲ୍ଲଭପୁରର ଗୋବର୍ଦ୍ଧନଜୀଉଙ୍କ ମଠ। ଏହା 'ଠାକୁରବାଡ଼ି' ନାମରେ ପ୍ରସିଦ୍ଧ। ଏ ପାଣ୍ଡୁଲିପିଟି ଧରମପୁରା, ମୟୂରଭଞ୍ଜର ଶ୍ରୀ ବିଜୟ କୁମାର ସର୍ଦ୍ଦାର, ବୟସ ୪୨ ବର୍ଷଙ୍କ ନିକଟରୁ ପ୍ରାପ୍ତ।

Digitized by srujanika@gmail.com

ଏହା ମଧ୍ୟ ପ୍ରଚଳିତ । ଏହା ପୌରାଣିକ ବିଷୟ ଉପରେ ଆଧାରିତ । 'କୁର୍ମାଳୀ' ଭାଷାରେ ଗୀତ ହୁଏ । ରାମାୟଣର କଥା ବସ୍ତୁ ନେଇ ଏ ପାଲା ଗୃହେ । ଗୟାର ମହାତ୍ମ୍ୟ ଏଥିରେ ବର୍ଣ୍ଣିତ । ହିନ୍ଦୁ ଧର୍ମଗ୍ରନ୍ଥର ଅନୁସାରେ ପ୍ରେତାତ୍ମାକୁ ପିଣ୍ଡ ଦାନ ପ୍ରଚଳିତ । ଦଶାହ ରାତିରେ ପ୍ରେତାତ୍ମାର ଓ ଗୃହର ମଙ୍ଗଳ ନିମନ୍ତେ ଏ ପାଲା ଅଭିନୀତ ହେବା ଓ ଶୁଣିବା ବିଧି । ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ମଞ୍ଚର ପ୍ରୟୋଜନ ନାହିଁ । ଘର ବାହାରେ ଓ ପିଣ୍ଡାରେ, ଖୋଲା ସ୍ଥାନରେ, ଖୋଲା ମଞ୍ଚରେ ଏହା ଅନୁଷ୍ଠିତ ହୋଇପାରେ । ଭୂମିକାରେ ଦଶରଥ (ପ୍ରେତାତ୍ମା) କୈକେୟୀ, ମନ୍ଥରା, ରାମଚନ୍ଦ୍ର, କୌଶଲ୍ୟା, ଭରତ, ଲକ୍ଷ୍ମଣ, ସୀତା, ମୁନିକନ୍ୟା ଓ ବଟ ବୃକ୍ଷ ପ୍ରଭୃତି ଚରିତ୍ର ଅବତୀର୍ଣ୍ଣ ହୁଅନ୍ତି । ଜଣେ ସୂତ୍ରଧର ନିର୍ଦ୍ଦେଶକ ଭାବେ ଥାଆନ୍ତି । ଚରିତ୍ର ଉପଯୋଗୀ ପୋଷାକ ଓ ଅଳଙ୍କାର ବ୍ୟବହୃତ ହୁଏ ।

ଏଥିରେ ଖୋଲ, କୁବୁଜ୍, କରତାଳ କେତେକ କ୍ଷେତ୍ରରେ ହାରମୋନିୟମ ବ୍ୟବହୃତ ହୁଏ । ଅଭିନେତାମାନେ ବାଦ୍ୟକାର ଭାବେ କାର୍ଯ୍ୟ ଚଲାଇଥାନ୍ତି ।

**ମାନ ପାଲା :—'ମାନଭଞ୍ଜନ**

ଏହା ନୌକା ବିଳାସ, ନିମାଇଁ ସନ୍ୟାସ ଓ ସଙ୍କୀର୍ତ୍ତନ ଏପରି ନାମରେ ମଧ୍ୟ କଥିତ ହୁଏ । ଗ୍ରାମାଞ୍ଚଳର ଆଦିବାସୀ ଓ ଅଣଆଦିବାସୀମାନେ ଏ ପାଲାର ଆୟୋଜନ କରିଥାନ୍ତି । କୃଷ୍ଣ ଓ ରାଧାଙ୍କ ସମ୍ପର୍କରେ ଗୀତ ରଚିତ ହୋଇ ଗାନ ହୁଏ । ଏହା ବୈଷ୍ଣବଧର୍ମୀୟ ଚେତନା ସମୃଦ୍ଧ । କୃଷ୍ଣ ଓ ରାଧା ଏଥିରେ ମୁଖ୍ୟ ଚରିତ୍ର ଓ ଯୋଗିନୀ-ଗଣ ଗୌଣ ଚରିତ୍ର । ଚରିତ୍ରଗଣ ଉପଯୋଗୀ ପୋଷାକ ଓ ଅଳଙ୍କାରରେ ସଜ୍ଜିତ ହୋଇଥାନ୍ତି । ମସ୍ତକରେ ମୁକୁଟ ଓ ପାଦରେ ଘୁଙ୍ଗୁର ଥାଏ । ମଞ୍ଚଟି ଖୋଲା ସ୍ଥାନରେ ହୋଇ ଦର୍ଶକମାନେ ଚାରି ପାଖରେ ଘେରି ବସିଥାନ୍ତି । ଅଭିନେତାଗଣ ଆସରକୁ ଯିବା ପାଇଁ ଗୋଟିଏ ରାସ୍ତା ଥାଏ । ଏଥିରେ ବାଦ୍ୟଯନ୍ତ୍ର ଖୋଲ, କୁବୁଜ, ବଂଶୀ, ହାରମୋନିୟମ ପ୍ରଭୃତି ବାଦ୍ୟଯନ୍ତ୍ର ବ୍ୟବହୃତ ହୁଏ । ଏହା ସମଗ୍ର ରାତ୍ରି ବ୍ୟାପି ଅନୁଷ୍ଠାନ । ଗୀତର ଭାଷା ବଙ୍ଗଳା । ବୈଷ୍ଣବ, ପଦାବଳୀ ଓ ସଙ୍କୀର୍ତ୍ତନର ସ୍ୱର । ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର ଓ ଶାନ୍ତ ରସ ପ୍ରଭୃତିର ଉପଯୋଗ ଥିଲେ ହେଁ ଶୃଙ୍ଗାର ଓ ହାସ୍ୟରସ ପ୍ରାଧାନ୍ୟ ଲାଭ କରିଥାଏ ।

**ଗୋଷ୍ଠ ପାଳ :**

ମୟୂରଭଞ୍ଜର ଏହି ପାଲା ବେଶୀ ଆଦୃତ । ଗାୟକ ଓ ପାଲିଆମାନଙ୍କର ଭାବଭଙ୍ଗୀ ବେଶୀ ଆକର୍ଷଣୀୟ । ଏହାକୁ ଏକକ ନାଟକ କୁହାଯାଇ ପାରେ । କାରଣ ଜଣେ ଗାୟକ ଗାନ କରନ୍ତି । ଚରିତ୍ର ଉପଯୋଗୀ ବେଶଭୂଷା ବ୍ୟବହୃତ ହୁଏ । ବୈଷ୍ଣବ ଭକ୍ତି ଭାବ ଏଥିରେ ପ୍ରକଟିତ ।

Digitized by srujanika@gmail.com

**ବାଳକ ସଙ୍ଗୀତ :**

ଦୁର୍ଗାପୂଜା, ଲକ୍ଷ୍ମୀପୂଜା, ବାସନ୍ତୀ ପୂଜା, ସମୟରେ ଏହା ଅନୁଷ୍ଠିତ ହୁଏ। ଦଶ ବାରଜଣ ବାଳକ ମିଶି କୃଷ୍ଣଙ୍କର ବାଳଲୀଳା ଅଭିନୟ କରନ୍ତି।

**ରାମଲୀଳା :**

ବିଚିତ୍ର ରାମାୟଣର ସୁନ୍ଦରାକାଣ୍ଡର ବିଷୟବସ୍ତୁ ଅନୁସରଣରେ ଏହା ରଚିତ ଓ ଅଭିନୀତ ହୋଇଥାଏ। ଅଭିନୟ ପାଇଁ କୌଣସି ନିର୍ଦ୍ଦିଷ୍ଟ ମଞ୍ଚ ନଥାଏ। ଶ୍ରାବଣ ସପ୍ତମୀ ପରେ ଗାଁକୁ ଗାଁ ବୁଲି ଏହା ଅଭିନୀତ ହୁଏ। ଏଥିରେ ଚରିତ୍ର ଉପଯୋଗୀ ସଜ୍ଜା, ଅଳଙ୍କାର, ପୋଷାକ ଓ ମୁଖା ବ୍ୟବହୃତ ହୁଏ। ବାଦ୍ୟ—ଢୋଲକ। ଭାଷା—ଓଡ଼ିଆ, ମୁକ୍ତ ଆକାଶ ତଳେ ବର୍ଷର ଯେକୌଣସି ସମୟରେ ଉପଯୁକ୍ତ ପାରିତୋଷିକ ସହ ଏ ଲୀଳା ଅନୁଷ୍ଠିତ ହୁଏ।

ଏତଦ୍‌ବ୍ୟତୀତ ଏ ଅଞ୍ଚଳରେ ଦାସ କାଠିଆ, ଗୟା ପାଲା, ଝାର୍ଣ୍ଣ, ଛିଟକୀ ନାଚ, ଝିଙ୍ଗା ଫୁଲିଆ ପ୍ରଭୃତି ନାଚ ଓ ଗୀତ ବର୍ଷର ବିଭିନ୍ନ ସମୟରେ ଅନୁଷ୍ଠିତ ହୁଏ।

ଆଲୋଚ୍ୟ ଅଞ୍ଚଳର ଆଦିବାସୀ ମାନଙ୍କ ମଧ୍ୟରେ ଡାଣ୍ଟା, ଦାସାଇଁ, ଦୁସୁରୀ, ବାଁଦଣା; କରମ, ସାଧନ, ଖଲୁକୁଣୀ ଓ ଝୁମୁ ପ୍ରଭୃତି ବିଭିନ୍ନ ନାଚ ଓ ଗୀତ ଅନୁଷ୍ଠିତ ହୁଏ।

**ଛଉ ନାଚ :**

ଛଉ ଏକ ଲୋକନାଟ। ମୁଖାଯୁକ୍ତ ଓ ମୁଖାହୀନ—ଏପରି ଦୁଇ ପ୍ରକାର ଛଉନାଟ ଅଛି। ଆଲୋଚ୍ୟ ମୟୂରଭଞ୍ଜ—ଝାଡ଼ଗ୍ରାମ ଅଞ୍ଚଳରେ ଏ ନାଟ ବହୁଳ ପ୍ରଚଳିତ। ଏହା ଏକ ମୂକ ନାଚ। ନର୍ତ୍ତକ ଶାରୀରିକ ଅଙ୍ଗଭଙ୍ଗୀ ଦ୍ୱାରା ନୃତ୍ୟ ପ୍ରଦର୍ଶନ କରନ୍ତି। ନିଜ ମୁହଁରେ ଗୀତ ବୋଲନ୍ତି ନାହିଁ। ଏଥିରେ ସଂଳାପ ନାହିଁ। ମଞ୍ଚର ପାର୍ଶ୍ୱରୁ ଗୀତ ଗାନ କରନ୍ତି ଓ ବାଦକମାନେ ବାଦ୍ୟ ଯନ୍ତ୍ରରେ ଧ୍ୱନି ସୃଷ୍ଟି ସହ ନାଚର ଲହର ଧରନ୍ତି।

ମୟୂରଭଞ୍ଜ ଓ ଝାଡ଼ଗ୍ରାମ ଅଞ୍ଚଳରେ ପ୍ରଚଳିତ ଛଉ/ଛୌ ନାଟ ମଧ୍ୟରେ ମୟୂରଭଞ୍ଜ ବାରିପଦାର ମୁଖାହୀନ ଛଉନାଟ ଜଗତ ପ୍ରସିଦ୍ଧ। ଝାଡ଼ଗ୍ରାମର ଚିଲକି ଗଡ଼, ଗ୍ରେଭ ଚିତା, ନୟାବସାଣ ପ୍ରଭୃତି ସ୍ଥାନରେ ମୁଖାହୀନ ଛଉନାଟ ମଧ୍ୟ ଅନୁଷ୍ଠିତ ହୁଏ। ଚିଲକି ଗଡ଼ ଛଉରେ କାଠ ଓ ବାଉଁଶ ନିର୍ମିତ 'ଶର୍‌ଭି' ବ୍ୟବହୃତ ହୁଏ।

ପ୍ରାକୃତିକ ପଶୁପକ୍ଷୀ ସମ୍ବନ୍ଧୀୟ, ସାମାଜିକ, ଧର୍ମୀୟ, କାଳ୍ପନିକ, ପୌରାଣିକ ଓ ଐତିହାସିକ ଏପରି ବିଭିନ୍ନ ବିଷୟରେ ନାଟ ଅନୁଷ୍ଠିତ ହୁଏ। ଚୈତ୍ର ମାସରେ ଅନୁଷ୍ଠିତ

Digitized by srujanika@gmail.com

ଚଇଡ଼/ଉଡ଼ା/ଭକ୍ତାପର୍ବ/ଶିବ ଗାଜନ/ମାଁଡ଼ ପର୍ବ ଉପଲକ୍ଷେ ଶିବ/ଭୈରବଙ୍କ ସମ୍ମାନାର୍ଥେ ଏ ନାଚ ଅନୁଷ୍ଠିତ ହୁଏ । ଏ ଅଞ୍ଚଳର ଅଧିବାସୀ ଯଥା କୁଡ଼ୁମୀ (ମାହାନ୍ତ-ମାହାତୋ), କୁମ୍ଭାର, କମାର, ଭୂମିଜ, ସାନ୍ତାଳ, ବାଥୁଡ଼ି, ଭୂୟାଁ, ପୁରାଣ, ତନ୍ତୀ, ବଣିଆ, ବ୍ରାହ୍ମଣ, କରଣ ଓ କ୍ଷତ୍ରିୟ ପ୍ରଭୃତି ବହୁ ଜାତି/ଗୋଷ୍ଠୀର ଲୋକେ ଏ ନାଚରେ ଅଂଶ ଗ୍ରହଣ କରନ୍ତି । ହାଡ଼ି, ଡମ, ଘାସି ଜାତିର ଲୋକେ ବାଦ୍ୟକାର ଭାବେ ଛଉରେ ଅଂଶ ଗ୍ରହଣ କରନ୍ତି । ଉପରୋକ୍ତ ଅଞ୍ଚଳରେ ପ୍ରଚଳିତ ପାଇକ, ସାଧନ, ଡାଣ୍ଡା ଓ ପାନ୍ତା ପ୍ରଭୃତି ପାରଂପରିକ ନାଚ ସହିତ ଓଡ଼ିଶୀ ପରି ଶାସ୍ତ୍ରୀୟ ନୃତ୍ୟର ପ୍ରଭାବରେ ଛଉ/ଚ୍ଛୌ ନାଚ ଶୀ ନିର୍ମିତ । ଝାଡ଼ଗ୍ରାମ ଅଞ୍ଚଳରେ ଏ ନାଚ ଛଉ, ଚ୍ଛୌ,ଛ ନାମରେ କଥିତ ହୁଏ ।

ବୀର ଓ ଲାସ୍ୟ ଦୁଇ ପ୍ରକାର ଭାବର ଛଉ/ଚ୍ଛୌ ନାଚ ହୁଏ । ନାଚର ବିଷୟ ବସ୍ତୁ, ଅଙ୍ଗଭଙ୍ଗୀ, ବ୍ୟବହୃତ ବାଦ୍ୟ ଓ ଅସ୍ତ୍ରଶସ୍ତ୍ର ସମସ୍ତ ଏକ ସମର ଭିତ୍ତିକ ନାଚର ପ୍ରମାଣ ବହନ କରେ । ଢୋଲ, ଚଡ଼ ଚଡ଼ି, ଧମ୍‌ସା, ମହୁରୀ ଓ ସିଂଘା ପ୍ରଭୃତି ପାରମ୍ପରିକ ବାଦ୍ୟଯନ୍ତ୍ର ସହ ଆଧୁନିକ ବାଦ୍ୟଯନ୍ତ୍ର ଯଥା—ହାର୍ମୋନିୟମ୍, କ୍ଲାରିଓନେଟ, ଝୁମୁକା ପ୍ରଭୃତି ବ୍ୟବହୃତ ହୁଏ । ଏଥିରେ ଢାଲ, ଖଣ୍ଡା, ଶର ଓ ଧନୁ ପ୍ରଭୃତି ପାରଂପରିକ ଅସ୍ତ୍ରଶସ୍ତ୍ର ବ୍ୟବହୃତ ହୁଏ ।

ଛଉରେ ନାରୀ ଭୂମିକାରେ ପୁରୁଷ ଅଭିନୟ କରନ୍ତି । ଆଧୁନିକ କାଳରେ କେତେକ ସ୍ଥାନରେ ନାରୀମାନେ ମଧ୍ୟ ଛଉନାଚ ନାଚୁଛନ୍ତି ।

ବର୍ତ୍ତମାନ ଛଉନାଚ ନୃତ୍ୟ—ନାଟ ଭାବରେ ସୁପ୍ରତିଷ୍ଠ । ପାର୍ଶ୍ଵବର୍ତ୍ତୀ ନୀଳଗିରି କେଉଁଝର, ତାଳଚେର, ଢେଙ୍କାନାଳ, ବଣାଇ, ହିନ୍ଦୋଳ, ଘାଟଶିଳା ଖରସୁଆଁ ଓ ପୁରୁଲିଆର ପରିସ୍ପର ସଲଗ୍ନ ଅଞ୍ଚଳ ସବୁଠି ଛଉ ଅନୁଷ୍ଠିତ ହୁଏ ।

**ସାଧନ ନାଚ :**

ସାଧନ ନାଚ/ଖେଳ ମକରସଂକ୍ରାନ୍ତି ଦିନ ଠାରୁ ଆରମ୍ଭ ହୋଇ ପାଞ୍ଚ ଛଅଦିନ ପର୍ଯ୍ୟନ୍ତ ଚାଲେ । ମୟୂରଭଞ୍ଜର ବିଭିନ୍ନ ସ୍ଥାନରେ ମୁଖ୍ୟତଃ ସଦର ଉପଖଣ୍ଡର ବିଭିନ୍ନ ଗ୍ରାମର ଶିବ ମନ୍ଦିର ପ୍ରାଙ୍ଗଣରେ ଏ ନାଚ/ଖେଳ ଅତ୍ୟନ୍ତ ଉତ୍ସାହ ସହକାରେ ଅନୁଷ୍ଠିତ ହୁଏ । ଏଥିରେ ମୁଖ୍ୟତଃ ବାଥୁଡ଼ି, ଭୂୟାଁ, ପୁରାଣ, ହାଡ଼ି, ଡମ, ଘାସି, ପାଣ, ତନ୍ତୀ, ଦଣ୍ଡଛତ୍ର ମାଝୀ, ଧୋବା, ଖଣ୍ଡାୟତ, ସାଅର ପ୍ରଭୃତି ବିଭିନ୍ନ ଜାତି ଗୋଷ୍ଠୀର ଲୋକ ଅଂଶ ଗ୍ରହଣ କରନ୍ତି । ଯେଉଁ ଗ୍ରାମ ମାନଙ୍କରେ ମୁସଲମାନ ବସତି ଅଛି, ସେମାନେ ମଧ୍ୟ ଏଥିରେ ଅଂଶ ଗ୍ରହଣ କରୁଥିବାର ଦେଖାଯାଏ ।

Digitized by srujanika@gmail.com

ହାଡ଼ି, ଡମ, ଘାସି ଜାତିର ଲୋକ ବାଦ୍ୟକାର ଭାବରେ ବାଦ୍ୟ ବଜାନ୍ତି । ଏଥିରେ ଢୋଲ, ଚଡ଼ଚଡ଼ି, ନାଗରା, ଘଣ୍ଟା, ସାହାନାଇ, ଝୁମୁକା ପ୍ରଭୃତି ବାଦ୍ୟଯନ୍ତ୍ର ବାଜେ ।

ଧାନକଟା ପରେ ସାଧାରଣତଃ ପୌଷ ମାସର ଅଧାଅଧି ସମୟକୁ ବଡ଼ାମ୍ କିମ୍ବା ଭୈରବଙ୍କ ପାଖରେ ପୂଜା ଅର୍ଚ୍ଚନା କରି ଆଖଡ଼ା ଆରମ୍ଭ ହୁଏ । ଖେଳ ବାଡ଼ି, ଢାଲ, ତରବାରି ପ୍ରଭୃତି ଅସ୍ତ୍ରଶସ୍ତ୍ର ବ୍ୟବହୃତ ହୁଏ । ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ସାଧନ (ଅଭ୍ୟାସ) କରିଥିବା ବିଭିନ୍ନ ଖେଳ କୌଶଳସହ ଶୂନଡିଆଁ, ପଚ୍ଛଡ଼ିଆଁ,ଆଗାଡିଆଁ, ଆଗାଶୂଳ, ପଚ୍ଛଶୂଳ, ରଥ ଦଉଡ଼ି, [ପିରାମିଡ଼; ଦଉଡ଼ି ଖେଳ ପ୍ରଭୃତି ବହୁପ୍ରକାର ବାଜି ଓ କୌଶଳ ପ୍ରଦର୍ଶିତ ହୁଏ ।

ମୟୂରଭଞ୍ଜର ଛଉନାଚର ବିଭିନ୍ନ ଭଙ୍ଗୀ ସହିତ ସାଧନା ନାଚ ଭଙ୍ଗୀର ବହୁ ସାମଞ୍ଜସ୍ୟ ରହିଅଛି ।

**ପାଇକ ନାଚ :**

ମୟୂରଭଞ୍ଜରେ ମହାରାଜାଙ୍କ ସାମରିକ ବିଭାଗରେ ପାଇକମାନଙ୍କର ଅବଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶାର ଗଜପତିଙ୍କର ଦୁର୍ଦ୍ଧର୍ଷ ପାଇକବାହିନୀ ଅନୁକରଣରେ ଅଧିନସ୍ଥ ରାଜାମାନେ ନିଜ ନିଜ ରାଜ୍ୟରେ ପାଇକବାହିନୀକୁ ସଙ୍ଗଠିତ କରି ରଖୁଥିଲେ ।

ପଦାତିକରୁ ପାଇକ ଶବ୍ଦର ସୃଷ୍ଟି । ଏମାନଙ୍କର ନିର୍ଦ୍ଦିଷ୍ଟ କୌଣସି ଜାତି ନଥାଏ । ଅତୀତରେ ମୟୂରଭଞ୍ଜର ରାଜା ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ସହିତ ବିଭିନ୍ନ ଯୁଦ୍ଧରେ ପାଇକବାହିନୀ ଦ୍ୱାରା ବିଜୟଲାଭ କରିଥିଲେ । ମୟୂରଭଞ୍ଜ ରାଜାଙ୍କର ସୈନ୍ୟ ବାହିନୀରେ ଖଣ୍ଡାୟତ/କ୍ଷତ୍ରିୟମାନଙ୍କ ବ୍ୟତୀତ ଆଦିବାସୀ ଗୋଷ୍ଠୀର ସୈନ୍ୟ ଓ ଅନ୍ୟ କର୍ମଚାରୀମାନେ (ମୁଖ୍ୟତଃ ଭୂୟାଁ, ବାଥୁଡ଼ି, ଭୂମିଜ, ସାନ୍ତାଳ, ପୁରାଣ, ଗଣ୍ଡ ପ୍ରଭୃତି ଜାତି ଓ ଗୋଷ୍ଠୀ ଲୋକମାନେ) ସାଧନ ନାଚ/ଖେଳ ଅଭ୍ୟାସ କରୁଥିଲେ ।

ପାଇକମାନେ ଇନ୍ଦ/ଛତା ପରବରେ ପୁନିଆଁ ଦିନ ରାଜା/ଜମିଦାରଙ୍କୁ ସେମାନଙ୍କର ଆନୁଗତ୍ୟ ପ୍ରକାଶ କରିଥାନ୍ତି । ଆଗକୁ ଗୋଡ଼ ଟେକି ଅଣ୍ଟା ନୁଆଁଇ ସମ୍ମାନ ଜଣାଇବା ସହିତ "ସ୍ୱର୍ଗରେ ଇନ୍ଦ୍ରମର୍ତ୍ତ୍ୟରେ ନରେନ୍ଦ୍ର..." ଇତ୍ୟାଦି ବୋଲିଥାନ୍ତି ।

ପାଇକମାନେ ଯୁଦ୍ଧାସ୍ତ୍ର ରୂପେ ଖଣ୍ଡା, ଢାଲ, ତଲୱାର, ବାଡ଼ି ଇତ୍ୟାଦି ସାହାଯ୍ୟରେ ବିଭିନ୍ନ ପ୍ରକାର ଖେଳ/କୌଶଳ ଦେଖାନ୍ତି । ଏ ନାଚ/ଖେଳର ବହୁ କୌଶଳ ଛୌ ନାଚର କୌଶଳ ସହ ସାମଞ୍ଜସ୍ୟ ଅଛି ।

Digitized by srujanika@gmail.com

ଉପରୋକ୍ତ ଦୁଇଟି ନାଚ/ଖେଳ ପୂର୍ବତନ ମୟୂରଭଞ୍ଜ ରାଜ୍ୟର ସାମରିକ ପରଂପରାର ପ୍ରତୀକ ରୂପେ ବର୍ତ୍ତମାନ ସୁଦ୍ଧା ମୟୂରଭଞ୍ଜ ଜିଲ୍ଲାର ବହୁସ୍ଥାନରେ ଅଣ ଆଦିବାସୀ ଓ ଆଦିବାସୀ ମାନଙ୍କ ମଧ୍ୟରେ ପ୍ରଚଳିତ ଅଛି ।

**କାଠି ନାଚ :**

ମୟୂରଭଞ୍ଜର ଆଦିବାସୀମାନଙ୍କ ମଧ୍ୟରେ ବହୁ ସ୍ଥାନରେ କାଠିନାଚ ପ୍ରଚଳିତ ଅଛି । ଏହା ମକର ପର୍ବରେ ଅନୁଷ୍ଠିତ ହୁଏ । ଏପରି କେତେଗୋଟି ଅନୁଷ୍ଠାନ ବ୍ୟତୀତ ରସ ପରିବେଷଣ ସମ୍ପର୍କୀୟ ପ୍ରଚଳିତ ଆଉ କେତେକ ଅନୁଷ୍ଠାନ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦତ୍ତ ହେଲା ।

ଏ ଅଞ୍ଚଳରେ 'ସୁଆଙ୍ଗ'ର ବହୁଳ ପ୍ରଚଳନ ଥିଲା । ଦଶ କୋଡ଼ିଏ ବର୍ଷ ଆଗରୁ ଏହାର ଆଦର ଥିଲା କିନ୍ତୁ ଏବେ କ୍ୱଚିତ୍ ଦେଖିବାକୁ ମିଳେ ।

ରାସଯାତ୍ରା, ଏ ଅଞ୍ଚଳରେ ବେଶ୍ ପ୍ରଚଳିତ । ଏହା ଏକ ଧର୍ମୀୟ ଅନୁଷ୍ଠାନ । ରାଧାକୃଷ୍ଣଙ୍କ ଲୌକିକ ପ୍ରେମ କାହାଣୀ ଏଥିରେ ମୂଳ ବିଷୟ । ବୈଷ୍ଣବ ଧର୍ମ ପ୍ରସାର ଫଳରେ ଏହାର ସୃଷ୍ଟି ।

ଗୀତନାଟ୍ୟ ଏ ଅଞ୍ଚଳରେ ପୂର୍ବେ ବହୁ ଆଦର ଲାଭ କରିଥିଲା । ବର୍ତ୍ତମାନ ଏହା ଯାତ୍ରା ସହିତ ଅନୁଷ୍ଠିତ ହୋଇଥାଏ । ଯାତ୍ରା ଆରମ୍ଭରେ ଏହା ପ୍ରଦର୍ଶିତ ହୋଇଥାଏ ।

'ଦଧି' ଅନୁଷ୍ଠାନ ଏ ଅଞ୍ଚଳରେ ବହୁ ପ୍ରଚଳିତ । ମହୋତ୍ସବ ସମୟରେ ରାଧିକାଙ୍କ ଦହି ବିକିବା ଦୃଶ୍ୟ ଅଭିନୀତ ହୋଇଥାଏ । ସଂକୀର୍ତ୍ତନ ରୀତିରେ ଗୀତ ସମସ୍ତ ଗାନ କରାଯାଏ । ଏହାଛଡ଼ା ବୈଶାଖ ମାସରେ କେତେକ ସ୍ଥାନରେ ଶ୍ରେଷ୍ଠ ଝିଅ ପୁଅଙ୍କୁ ରାଧାକୃଷ୍ଣ ବେଶରେ ସଜାଇ 'ଦେଇଯା ଦହିବାଲି ।'' ଗୀତ ବୋଲି ନାନା ଧାନ, ଗୁଡ଼ଲ ଓ ଅର୍ଥ ଉପାର୍ଜନ କରିଥାନ୍ତି । 'କୃଷ୍ଣପାଲ,'—'ନିମାଇଁ ସନ୍ୟାସୀ' ପାଲା ଏ ଅଞ୍ଚଳରେ ଅଭିନୀତ ହୋଇଥାଏ ।

'ଯାତ୍ରା' ଏ ଅଞ୍ଚଳର ବହୁଳ ପ୍ରସାରିତ ଅନୁଷ୍ଠାନ । ଯେ କୌଣସି ପର୍ବପର୍ବାଣୀ, ଉତ୍ସବ ଅନୁଷ୍ଠାନରେ ଯାତ୍ରା ହୋଇଥାଏ । ପୂର୍ବେ ଜମିଦାର, ସାମନ୍ତ, ମହନ୍ତ ଏପରି ଧନୀ ଓ ଗୁଣଗ୍ରାହୀ ବ୍ୟକ୍ତିଗଣ ଏହାର ପୃଷ୍ଠପୋଷକ ଥିଲେ । କ୍ରମେ ଜନସାଧାରଣ ତାର ପୋଷକ ହେଲେ । ଏଥିରେ ଲେଖକ କିଏ ଗୁରୁ କିମ୍ବା ଓସ୍ତାଦ୍ ହୋଇ ଶିକ୍ଷା ଦେଇଥାନ୍ତି । ଓଡ଼ିଶାରେ କୃପାସିନ୍ଧୁ, ଶଙ୍କର ବୈଷ୍ଣବ, ବାଳକୃଷ୍ଣ, ଘନଶ୍ୟାମ, କୃଷ୍ଣପ୍ରସାଦ, ଜଗବନ୍ଧୁ ସିଂହ ପ୍ରଭୃତି ଯାତ୍ରା ଦଳମାନ ଗଠନ କରି ପ୍ରତିଷ୍ଠିତ ହୋଇଥିଲେ ।

Digitized by srujanika@gmail.com

ଯାତ୍ରାର କବି ବହୁତ । ବହୁତ ତା'ର ପରିମାଣ । ଏ ଅଞ୍ଚଳର ବହୁ ସ୍ଥାନରେ ଯାତ୍ରାଦଳମାନଙ୍କରେ ଯାତ୍ରା ପାଣ୍ଡୁଲିପିମାନ ରହିଥିଲା । କ୍ରମେ ସେ ସବୁ ବିନଷ୍ଟ ହୋଇ ଯାଉଅଛି । ଏଗୁଡ଼ିକ ମୁଖ୍ୟତଃ ପୌରାଣିକ, ଲୌକିକ ବିଷୟବସ୍ତୁ ଆଧାରିତ ରଚନା । ପରେ ଐତିହାସିକ, ସାମାଜିକ ଓ କାଳ୍ପନିକ ଯାତ୍ରାମାନ ଲିଖିତ ହୋଇ ଅଭିନୀତ ହେଉଥିଲା । ଊନବିଂଶ ଶତାବ୍ଦୀରେ ଓଡ଼ିଆ ଯାତ୍ରାରେ 'ମୋଗଲ ତାମସା'ର ପ୍ରଭାବ ପରିଲକ୍ଷିତ ହୁଏ । ସଜ୍ଜା, ପୋଷାକ, ବାଦ୍ୟଯନ୍ତ୍ର, ସଂଳାପ ପ୍ରଭୃତିରୁ ଏହାର ପ୍ରମାଣ ମିଳେ ।

ଏ ଅଞ୍ଚଳରେ ବହୁ ଯାତ୍ରାର ଲେଖକ ଯାତ୍ରା ବହି ଲେଖୁଥିଲେ । ସେମାନଙ୍କ ମଧ୍ୟରୁ, ଦେ'ପାଳ ଗ୍ରାମର କୃପାସିନ୍ଧୁ ମିଶ୍ର (ଭୋଗରାଇ), ଆଦ୍ୟାଚରଣ ପଣ୍ଡା (କଖଡ଼ା, ଭୋଗରାଇ), ଭଗବାନ ଚନ୍ଦ୍ର ପାତ୍ର (ଶାଳବଣୀ, ଜଳେଶ୍ୱର), ହରିଧନ ବେହେରା (ପଞ୍ଚୁଟଣ୍ଡା, ଜଳେଶ୍ୱର) ପ୍ରଭୃତିଙ୍କର ଲେଖା ଯାତ୍ରାମାନ ଏ ଅଞ୍ଚଳରେ ଅଭିନୀତ ହେଉଥିଲା ।

କେତେକଙ୍କ ମତରେ ଗୋପାଳ ଦାସ ସର୍ବପ୍ରଥମ ଓଡ଼ିଆ ଯାତ୍ରାଦଳ ଗଢ଼ି ବଙ୍ଗ ଦେଶରେ ପ୍ରଖ୍ୟାତି ଅର୍ଜନ କରିଥିଲେ । ତାଙ୍କଠାରୁ ବଙ୍ଗଳାରେ ଯାତ୍ରାର ଆରମ୍ଭ ବୋଲି ବଙ୍ଗୀୟ ଆଲୋଚକମାନେ ମତ ଦିଅନ୍ତି । ଦେବପାଳ ଗ୍ରାମର କୃପାସିନ୍ଧୁ ମିଶ୍ର ପ୍ରଥମ ଓଡ଼ିଆ ଯାତ୍ରା କବି । ଏହାଙ୍କ ଲିଖିତ ଯାତ୍ରା ମେଦିନୀପୁରର ରାମନଗର, କାନ୍ଥି ଓ ଉତ୍ତର ବାଲେଶ୍ୱରର ସମଗ୍ର ଅଞ୍ଚଳରେ ପ୍ରସିଦ୍ଧି ଲାଭ କରିଥିଲା । ଖ୍ରୀ: ୧୮୩୭ରେ ତାଙ୍କର ଜନ୍ମ । ଷୋହଳ ବର୍ଷ ବୟସରେ ଅର୍ଥାତ୍ ୧୮୫୮ ମସିହା ବେଳକୁ ସେ ପ୍ରଥମ ଲୀଳା ନାଟକ ଲେଖିଥିବାର ଜଣାଯାଏ । ସାରା ଜୀବନ ସେ ଶତାଧିକ ଯାତ୍ରା/ନାଟ୍ୟ ସାହିତ୍ୟ ରଚନା କରିଥିଲେ । ୮୦ ବର୍ଷ ପର୍ଯ୍ୟନ୍ତ ସେ ନିଜେ ସ୍ୱହସ୍ତରେ ଲେଖୁଥିଲେ । ତାପରେ ଲେଖିନିପାରି ଡାକୁଥିଲେ । ଲଳିତା ହରଣ, ସରଳା ହରଣ, ଚନ୍ଦ୍ରାବତୀ ହରଣ, ବାଗାମ୍ବର ପାଳା, ମନୋହର ଫାସ୍ୟାରୀ ପ୍ରଭୃତି ବହୁତ ନାଟକ ଏବେ ବି ମେଦିନୀପୁର ଅଞ୍ଚଳରେ ଲୋକପ୍ରିୟ ।

ନାଟ୍ୟକାର କାଳିଚରଣ ଦାସଙ୍କ ସମ୍ପର୍କରେ ଏ ଅଞ୍ଚଳର ଜଣେ ବିଶିଷ୍ଟ ସାହିତ୍ୟିକଙ୍କ ଉକ୍ତି ଉଦ୍ଧାର କରୁଛି । "ଲିଙ୍ଗଳେଶ୍ୱର ଗ୍ରାମରେ ଥିଲେ ନାଟ୍ୟକାର କାଳୀଚରଣ ଦାସ । ଅନେକଗୁଡ଼ିଏ ନାଟକର ଜନ୍ମଦାତା । ସେ ସମସ୍ତର (ବିଂଶ ଶତକର ଦ୍ୱିତୀୟ ଦଶକ) ଜଣେ ବିଖ୍ୟାତ ଯାତ୍ରାଭିନେତା, ନିର୍ଦ୍ଦେଶକ ଏବଂ ନାଟ୍ୟକାର । ସେତେବେଳେ ସେ ନାଟକ ଲେଖା, ଅଭିନୟ ଓ ନିର୍ଦ୍ଦେଶନାକୁ ପେଶା କରି ଭଲ ରୋଜଗାର କରୁଥିଲେ । ତାଙ୍କ ସୃଷ୍ଟିର ସୀମା ଚିହ୍ନଟ କରିବା ମୋ ପକ୍ଷେ

Digitized by srujanika@gmail.com

ମୋଟେ ସମ୍ଭବ ନୁହେଁ । ତେବେ ଏତକ କହିପାରିବ ଯେ, ସେତେବେଳେ ତାଙ୍କୁ ଲୋକେ ଗାଁରେ ନେଇ ନିଜ ଘରେ ଖାଦ୍ୟ, ପେୟ, ପରିଧାନ ଓ ପାରିଶ୍ରମିକ ଦେଇ ନୂଆ ନାଟକ ଲେଖାଉଥିଲେ । ଗାଁ ଗାଁରେ ତାଙ୍କ ନାଟକର ପ୍ରତିଯୋଗିତା ହେଉଥିଲା । ଏସବୁ ତ୍ରିଂଶ ଦଶକର ପ୍ରଥମ ଭାଗର କଥା'' (ଭୂପେନ ମହାପାତ୍ରଙ୍କ ଲିପିବଦ୍ଧ ଉକ୍ତି) ।

ଶ୍ରୀ ରଘୁନାଥ ବିଶ୍ୱାଳ (ଜମାଲପୁର, ଜଳେଶ୍ୱର) ଏ ଅଞ୍ଚଳର ଜଣେ ପ୍ରତିଷ୍ଠିତ ଯାତ୍ରା ଲେଖକ । ବର୍ତ୍ତମାନ ତାଙ୍କ ଲିଖିତ ଯାତ୍ରା ସମସ୍ତ ଅଭିନୀତ ହେଉଅଛି । ନାଟ୍ୟକାର ଶ୍ରୀ ଆନନ୍ଦ ଶଙ୍କର ଦାସ (ବାରିପଦା) ନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ । ତାଙ୍କ ରଚିତ ନାଟକ ସବୁ ଅଗଣିତ ସ୍ଥାନରେ ଅଭିନୀତ ହୋଇ ପ୍ରଶଂସିତ ହୋଇଛି । କେତେକ ନାଟକ ଚଳଚ୍ଚିତ୍ର ରୂପରେ ପ୍ରସିଦ୍ଧି ଅର୍ଜନ କରିଛି । ନାଟ୍ୟକାର ତଲ୍ଲୁର କାର୍ତ୍ତିକେଶ୍ୱର ପାତ୍ର ଜଣେ ସଫଳ ନାଟ୍ୟକାର ଭାବରେ ପ୍ରତିଷ୍ଠିତ । ତାଙ୍କର ଅନେକ ନାଟକ ବହୁ ସ୍ଥାନରେ ମଞ୍ଚସ୍ଥ ହେବା ସଙ୍ଗେ ସଙ୍ଗେ ଚଳଚ୍ଚିତ୍ର ରୂପରେ ପ୍ରଶଂସିତ ହୋଇଛି ।

୰ ହାଗ୍ରଧନ ବେହେରା ବହୁ ଯାତ୍ରାର ଲେଖକ ଭାବେ ପ୍ରତିଷ୍ଠିତ । ନାଗ୍ନି ରାକ୍ଷସୀ, ସମ୍ବରପୁର ବଧ, ସୁଦାମା ଦାରିଦ୍ର୍ୟ ଭଞ୍ଜନ, ମାନଭଞ୍ଜନ ପ୍ରଭୃତି ଏହାଙ୍କର ପ୍ରଧାନ ରଚନା ।

ଶ୍ରୀ ରାମକୃଷ୍ଣ ସାହୁ (ସର୍ଣିଦା, ଜଳେଶ୍ୱର) ଜଣେ ସୁଲେଖକ । ସେ ମାତ୍ର ୨ ଖଣ୍ଡ ନାଟକ ଲେଖିଥିବାର ଜଣାଯାଏ । 'ମାଟିର ସ୍ୱର୍ଗ' ପ୍ରକାଶିତ ଓ 'ଶ୍ରୀ ମନ୍ଦିର ବା ଶ୍ରୀ ଗୁଣ୍ଡିଚା' ଅପ୍ରକାଶିତ । ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର 'କେଦାରଗୌରୀ'ର ସେ ବିକ୍ରମଦେବ କେଶରୀ ଭୂମିକାରେ ଅଭିନୟ କରି ଅଭିନୟ କଳା ନୈପୁଣ୍ୟ ପ୍ରକାଶ କରିଛନ୍ତି ।

ଐତିହାସିକ ମାଟିର ସ୍ୱର୍ଗ ନାଟକଟି କଲିକତାର ପ୍ରଗତି ଓଡ଼ିଆ ନାଟ୍ୟ ପରିଷଦର ଚତୁର୍ଥ ଅର୍ଘ୍ୟ ଭାବରେ ତା ୧୨-୧୨-୫୪ ଶନିରେ ସିଆଲଦା ନେତାଜୀ ଇନ୍‌ଷ୍ଟିଚ୍ୟୁଟ୍ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ଏ ନାଟକ ସମ୍ପର୍କରେ ନାଟ୍ୟକାର ଲେଖିଛନ୍ତି "......ବହୁ ସଂଶୋଧନ କରି ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ଅଶ୍ୱିନୀ କୁମାର ଘୋଷ ମହାଶୟଙ୍କୁ ଦେଇଥିଲି । ସେ ଅତି ଆନ୍ତରିକ ସହକାରେ ତାଙ୍କର ମତ ଦେଇଥିଲେ । × × × ପ୍ରବାସରେ ଥାଇ ପ୍ରାୟ ଉତ୍ତର ବାଲେଶ୍ୱର ତଥା ଓଡ଼ିଶାର ଅନେକ ଲୋକ ସାହାଯ୍ୟ କରିଥିଲେ ।'' ✳

ଜଳେଶ୍ୱର ଅଞ୍ଚଳରେ ଲୋକ ନାଟ୍ୟର ବିକାଶ ଓ ବିସ୍ତାର ସମ୍ପର୍କରେ ଗୋଟିଏ ଉକ୍ତି ଏଠାରେ ଉଦ୍ଧୃତ ହେଲା—"......ଅଲାଲପୁରର ୰ ନରେନ୍ଦ୍ରନାଥ ଗୈଁଧୁଲି ଥିଲେ ଜଣେ ନାଟ୍ୟକାର । ତାଙ୍କ ରଚିତ ପାଲଗୁଡ଼ିକ ରାତି ରାତି ଉଜାଗର ହୋଇ ଲୋକେ ଲେଖୁଥିଲେ । ତା'ଛଡ଼ା କାଶୀଡିହାର ୰ ପଦ୍ମଚରଣ ନାୟକ ଶିଏ ବିହାରରେ

✳ ମାଟିର ସ୍ୱର୍ଗ—ପଦେ ଅଧେ

Digitized by srujanika@gmail.com

ଅନେକ ଧନ ଶିକ୍ଷା ବିଭାଗର ଏସ୍‌-ଆଇ ଥିଲେ । ତାଙ୍କର ବି ସାହିତ୍ୟ ପ୍ରତି ଅନୁରାଗ ଥିଲା । ଜଳେଶ୍ୱର ଦୁର୍ଗର ପ୍ରାଚୀନ ଇତିହାସକୁ ନେଇ ସେ ଗୋଟାଏ ଐତିହାସିକ ନାଟକ ଲେଖିଥିଲେ—ତା'ର ନାଁ ରଖିଥିଲେ 'ଡାଲିଆ ଚନ୍ଦ୍ର ଶେଖର'—ଏମିତି ବହୁ ପ୍ରତିଭା ଏ ଅଞ୍ଚଳରେ ଝଡ଼ିଗଲା ।''

ଯାତ୍ରା ସମ୍ପର୍କରେ ଏତିକି କୁହାଯାଇପାରେ ଯେ, ସେତେବେଳେ ଓଡ଼ିଆ ନାଟକ ପ୍ରାପ୍ତ ନଥିଲା । ବଙ୍ଗଳା ନାଟକମାନ ଏ ଅଞ୍ଚଳର କେତେକ ନାଟ୍ୟ କୁଶଳୀକଳାକାର ଅନୁବାଦ କରି ଏ ଅଞ୍ଚଳରେ ଅଭିନୀତ କରାଉଥିଲେ । ଏମାନଙ୍କ ମଧ୍ୟରୁ ୬ ସିଦ୍ଧେଶ୍ୱର ପଣ୍ଡା, ଯଜ୍ଞେଶ୍ୱର ପଣ୍ଡା, (ଶାଲିକୋଠା) ରମାନାଥ ମହାପାତ୍ର ଓ ସତ୍ୟେନ୍ଦ୍ର ଷଡ଼ଙ୍ଗୀ (ନାମୋ)ଙ୍କ ଅବଦାନ ସ୍ୱୀକାର୍ଯ୍ୟ ।

ନାଟ୍ୟାଚାର୍ଯ୍ୟ କାମଦେବ ମଣ୍ଡଳ (ମେଦିନୀପୁର) ଜଣେ ଯାତ୍ରା ଲେଖକ ଭାବେ ଏ ଅଞ୍ଚଳରେ ପ୍ରତିଷ୍ଠା ଲାଭ କରିଥିଲେ ।

**ସଙ୍ଗୀତ ଚର୍ଚ୍ଚା—**

ଯାତ୍ରା, ପାଲା, ନାଚ, କୀର୍ତ୍ତନ ପ୍ରଭୃତିରେ ସଙ୍ଗୀତ ହିଁ ମୁଖ୍ୟ ଅଂଶ ଗ୍ରହଣ କରିଥାଏ । ବିଭିନ୍ନ ଶ୍ରୁତି ମଧୁର ସ୍ୱର, ତାଳ, ଲୟରେ ଢୋଲ, ମହୁରି, ଝୁଣ୍ଟି, ମୃଦଙ୍ଗ ପ୍ରଭୃତି ବାଦନ ଦ୍ୱାରା ଗାୟକମାନେ ଲୋକମନରଞ୍ଜନ କରୁଥିଲେ । ଏ ଅଞ୍ଚଳର ଲୋକ ସମାଜରେ ସଙ୍ଗୀତର ଆଦର ସହିତ ଚର୍ଚ୍ଚାର ପ୍ରଶସ୍ତି ରହିଥିଲା । କୃଷି-ସମାଜର ଆନନ୍ଦ ଉତ୍ସବ-ମୁହୂର୍ତ୍ତିଗୁଡ଼ିକ, ତବଲା, ଢୋଲ, ମହୁରି, ଗୋପୀଯନ୍ତ୍ର ଇତ୍ୟାଦିର ସୁମଧୁର ସ୍ୱର ତାଳରେ ମୁଖରିତ ହୋଇ ଉଠୁଥିଲା । ହାଣ୍ଡିରେ ଝୁଣା ଓ ଗବଜଡ଼ା ତେଲର ମଶାଲ ଜାଳି ଯାତ୍ରାସ୍ଥଳ ଆଲୋକିତ କରାଯାଉଥିଲା ।

ବାହାର ଜଗତରେ ଆଫଗାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କର ଅତ୍ୟାଚାର ଲାଗି ରହିଥିଲେ ହେଁ ଗ୍ରାମାଞ୍ଚଳରେ କୃଷି ସଭ୍ୟତାପୁଷ୍ଟ ଅଧିବାସୀଗଣ ଏକ ପ୍ରକାର ନିଶ୍ଚିନ୍ତ ରହିଥିଲେ । ପରମ୍ପରା ପ୍ରସୂତ ସଂସ୍କୃତି, ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚା ଅବହେଳିତ ହେଉନଥିଲା । ଜୀବନରେ ଏତେ ସମସ୍ୟା ନଥିଲା ଯଦିଓ ଅଭାବ ଥିଲା ପ୍ରଚୁର । ପାଲା, ପୋଥି ସବୁଥିରେ ସ୍ୱର ସଂଯୋଜନା ସେତେବେଳେ ପ୍ରତିଭା ବିକାଶର ଶ୍ରେଷ୍ଠ ମାଧ୍ୟମ ଥିଲା । ବିଭିନ୍ନ ବାଦ୍ୟଯନ୍ତ୍ର ଉଦ୍‌ଭୂତ ସ୍ୱର ଓ ତାଳର ମଧୁର ଧ୍ୱନି ଓ ଛନ୍ଦୋମୟ ପଦ ପାତରେ ଅଭିନୟ ପ୍ରକାଶର ମୁହୂର୍ତ୍ତିଗୁଡ଼ିକ ହଜାର ହଜାର ଦର୍ଶକ-ମାନଙ୍କୁ ବିମୋହିତ କରି ରଖୁଥିଲା ! ସ୍ୱର ଓ ତାଳର ସାମାନ୍ୟ ତ୍ରୁଟି ଦର୍ଶକ ମନରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରୁଥିଲା । ସଙ୍ଗେ ସଙ୍ଗେ ସମାଲୋଚନାର ଶରବ୍ୟ ହେବାର ଆଶଙ୍କା ସ୍ୱର ସଙ୍ଗୀତ ଚର୍ଚ୍ଚାକୁ ଉନ୍ନତତମ ପର୍ଯ୍ୟାୟରେ ଉପନୀତ କରାଇଥିଲା । ସେଥିପାଇଁ

Digitized by srujanika@gmail.com

ବହୁ ବିଖ୍ୟାତ 'ଉସ୍ତାଦ' (ଓସ୍ତାଦ୍) ଏ ଅଞ୍ଚଳରେ ସଙ୍ଗୀତ ସାଧନାରେ ଜୀବନ ବିତେଇ ଦେଇଥିଲେ । ସଙ୍ଗୀତର ନାନା ପରୀକ୍ଷା ନିରୀକ୍ଷା ଅହରହ ଚାଲୁଥିଲା । ହାୟ, ସେମାନେ ଆଜି କାହିଁ, ସେ ପରିବେଶ ଆଜି କାହିଁ ! ଚର୍ଚ୍ଚା-ଉଜ୍ଜଳ ପରମ୍ପରାରେ ପରିଣତ ସ୍ୱରୂପ ବହୁ ସଙ୍ଗୀତ ଶାସ୍ତ୍ର (ସ୍ୱରଲିପି) ପୁସ୍ତକମାନ ରଚିତ ହୋଇଥିଲା । ଗୀତନାଟ୍ୟ, ପାଲି ପ୍ରଭୃତି ପ୍ରଚୁର ପରିମାଣରେ ରଚିତ ହୋଇ ସ୍ୱର ସଙ୍ଗତ କରି ହେଉଥିଲା ଓ ଏ ଅଞ୍ଚଳରେ ବହୁ ଯାତ୍ରାଦଳ ସୃଷ୍ଟି ହୋଇଥିଲା । ସେହି ପାଣ୍ଡୁଲିପିଗୁଡ଼ିକ ମଧ୍ୟରୁ ଅନେକ ଉପଯୁକ୍ତ ସଂରକ୍ଷଣ ଅଭାବରୁ କାଳର କରାଳ ଗର୍ଭରେ ବିନଷ୍ଟ ହୋଇ ଯାଇଛି । ତଥାପି ଯାହା ଅଛି, ତାହା ଲୋକଲୋଚନ ଅଗୋଚରରେ ଅଦ୍ୟାପି ବିଦ୍ୟମାନ । ଏ ସମ୍ପର୍କରେ ଏଠାରେ ଜଣେ ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କର ଉକ୍ତି ଉଦ୍ଧାର କରୁଅଛୁ;

"ମୁଁ ମୋର ବର୍ତ୍ତମାନ ୭୯ ବର୍ଷ ବୟସରେ ଏତଦଞ୍ଚଳରେ କେତେକ କୁଶଳୀ ତବଲା, ଢୋଲ ପ୍ରଭୃତି ବାଦ୍ୟଯନ୍ତ୍ରର ବାଦକମାନଙ୍କ ବିଷୟରେ ସ୍ମୃତିଚାରଣ କରୁଅଛୁ । ଯେତେବେଳେ ଏହି ଅଞ୍ଚଳରେ ଓଡ଼ିଆ ଭାଷାରେ କୌଣସି ନାଟକ ମଞ୍ଚସ୍ଥ ହୋଇ ନଥିଲା, ସେତିକବେଳେ ମୁଁ ୧୯୨୯/୩୦ ମସିହାରେ ନାଟ୍ୟକାର ଅଶ୍ୱିନୀ କୁମାରଙ୍କ 'କଳାପାହାଡ଼' ନାଟକ ଅପେରାରେ ମଞ୍ଚସ୍ଥ କରିଥିଲି । ପ୍ରୋକ୍ତ ଯାତ୍ରା ଦଳରେ ନାମ୍ଯୋ ପ୍ରଗନ୍ନାନ୍ତର୍ଗତ ଜଳେଶ୍ୱର ଥାନା ଅଧୀନ 'ବାଣିଦା' ଗ୍ରାମର ସ୍ୱର୍ଗତଃ ରୁଦ୍ରନାରାୟଣ ପାତ୍ରଙ୍କୁ ତବଲା ବାଦକ ରୂପେ ନିଯୁକ୍ତ ଦେଇଥିଲି । ତତ୍ପୂର୍ବରୁ ଏ ମହାଶୟ ଏ ଅଞ୍ଚଳର ସଙ୍ଗୀତ ଚର୍ଚ୍ଚାର କେନ୍ଦ୍ରସ୍ଥଳୀ ଅଲାଲପୁର ଗଡ଼ରେ ସ୍ଥାୟୀ ଭାବରେ ବାଦକ ରୂପେ ଥାଇ ବିଭିନ୍ନ ସଙ୍ଗୀତଜ୍ଞ ମହାଶୟଙ୍କ ସାନ୍ନିଧ୍ୟ ଲାଭ କରି ଦ୍ରୁତ, ବିଳମ୍ବିତ, ଅତି-ବିଳମ୍ବିତ ଲୟରେ ବାଦନ କରି ବୋଲ୍ ଅନୁଯାୟୀ ବାଦ୍ୟ ବଜାଇ ଶ୍ରୋତୃବର୍ଗଙ୍କୁ ଚମତ୍କୃତ କରୁଥିଲେ । ଏବଂ କୁଶଳୀ ବାଦକ ଭାବରେ ସମସ୍ତଙ୍କର ଶ୍ରଦ୍ଧା ଓ ପ୍ରୀତିର ପାତ୍ର ହୋଇଥିଲେ । ଦୀର୍ଘ ପଚିଶ ବର୍ଷ ବ୍ୟାପୀ ଏହି ସାଧନାରେ ନିଜକୁ ନିୟୋଜିତ କରି ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ମାତ୍ର ଦୁଃଖର କଥା ବହୁ ଗୁଣଗ୍ରାହୀ ଶିଷ୍ୟ ବର୍ତ୍ତମାନ ସୁଦ୍ଧା ଥିଲେ ହେଁ ତାଙ୍କର ସେହି ଗଭୀର ଜ୍ଞାନ ଆହରଣ କରିପାରି ନଥିଲେ । ଫଳତଃ ଗୋଟିଏ ପ୍ରତିଭା ଚିରଦିନ ପାଇଁ ଲୋପ ପାଇଗଲା ।" ତାଙ୍କର ବାପା ଭୋଲାନାଥ ପାତ୍ର ବେହେଲା ବାଦନରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ । *

"ଆଉ ଜଣେ କୁଶଳୀ 'ମହୁରୀ' ବାଦକ ପଡୁ ମହୁରୀ (ଗୋବର୍ଦ୍ଧନପୁର) ନାମକ ବ୍ୟକ୍ତି ଏ ଅଞ୍ଚଳରେ ମହୁରୀ ବଜାଉଥିଲେ । ସିଏ ବଙ୍ଗ ଓ ଓଡ଼ିଶାର ବହୁ ସ୍ଥାନରେ ମହୁରୀ ବଜାଇ ଅନେକ ରୌପ୍ୟ ପଦକ ଓ ସାର୍ଟିଫିକେଟ ପ୍ରଭୃତି ପାଇଥିଲେ ।"

---

* ଶ୍ରୀ ଭଗବତ ଚନ୍ଦ୍ର ମହାପାତ୍ର, ବାଣିଦାଙ୍କ ନିକଟରୁ ସଂଗୃହୀତ ।

Digitized by srujanika@gmail.com

"......'ସୀରୁବଡ଼ୁ' ନାମରେ ଜଣେ ଢୋଲ ବାଦକ (ଶାଳକୋଠା ଗ୍ରାମର) ଥିଲେ । ଆମ ପିଲାକାଳରୁ ତାଙ୍କର ଢୋଲ ବାଦନରେ କୁଶଳତା ଦେଖି ଆସିଛୁଁ । ...ସମସ୍ତେ ତାହାଙ୍କୁ ଗୁରୁଙ୍କର ଆସନ ଦେଉଥିଲେ । ......ତାଙ୍କର ବାଦନ ନିପୁଣତା ସମସ୍ତଙ୍କୁ ମୁଗ୍ଧ କରୁଥିଲା ।"

ସଙ୍ଗୀତ ଶିକ୍ଷା ପାଇଁ ସେତେବେଳେ ଏ ଅଞ୍ଚଳରେ ଅଲ୍ଲାଳପୁର ଓ ଦେହୁରୁଡ଼ା ଜମିଦାର ଗଡ଼ ଖ୍ୟାତି ଲାଭ କରିଥିବାର ଜଣାଯାଏ । ଲୋକ ସାଧାରଣରେ ଗୋଟିଏ କଥା ଏବେ ବି ପ୍ରଚଳିତ ଅଛି—

"ଜାମ୍ କୁଣ୍ଡା ଯାଗ
ସା' ବନ୍ଦର ଖେଳ
ଲକ୍ଷଣ୍ ନାଥ ହାଣକାଟ
ଅଲ୍ଲାଳପୁର ଗୀତାନାଟ ।"

ଅର୍ଥାତ ଜାମୁକେଣ୍ଡା ଭୂୟାଁ ଗଡ଼ରେ ଯାଗଯଜ୍ଞ ଖୁବ୍ ହେଉଥିଲା । ସାହବନ୍ଦର ଗଡ଼ରେ ବାରମାସୀ ଖେଳ ହେଉଥିଲା । ଲକ୍ଷ୍ମଣନାଥ ମହାଶୟଙ୍କ ଗଡ଼ରେ ଆଡ଼ମ୍ବର-ପୂର୍ଣ୍ଣ ଦୁର୍ଗାପୂଜା ହେଉଥିଲା । ସପ୍ତମୀ ପୂଜାରେ ସାତବୋଡ଼ା, ଅଷ୍ଟମୀରେ ଆଠ ବୋଡ଼ା, ନବମୀରେ ନଅବୋଡ଼ା ଛେଳି, ଦଶମୀ ଦିନ ଦଶଟି ମେଣ୍ଢା ଓ ମଇଁଷି ବଳି ପଡ଼ୁଥାଏ । ଅଲ୍ଲାଳପୁର ଜମିଦାର ଗଡରେ ଯାତ୍ରା ନାଟ ଅନୁଷ୍ଠିତ ହେଉଥିଲା ।

ଅଲ୍ଲାଳପୁର ଜମିଦାର ୰ଚୌଧୁରୀ ନରେନ୍ଦ୍ରନାଥ ମହାପାତ୍ର ନିଜେ ଜଣେ କବି ଓ ସଙ୍ଗୀତଜ୍ଞ ଥିଲେ । ସେ ବହୁ କାବ୍ୟ, ଗୀତ କବିତା, ନାଟକ ଓ ଓଡ଼ିଆରେ ଶତଶତ କୀର୍ତ୍ତନ ଆଦି ରଚନା କରି ଗାନ କରାଉଥିଲେ । ତାଙ୍କ ରଚିତ କାବ୍ୟ କବିତା ଅତ୍ୟନ୍ତ ଉଚ୍ଚ କୋଟୀର । ନିକଟରେ ସେ ସମସ୍ତ ଗ୍ରନ୍ଥାବଳୀ ଭାବରେ ପ୍ରକାଶିତ ହୋଇଛି । ଚୌଧୁରୀ ନରେନ୍ଦ୍ରବାବୁ ଓ ବିଶିଷ୍ଟ ସମାଜ ସେବୀ ୰ ସିଦ୍ଧେଶ୍ୱର ପଣ୍ଡାଙ୍କ ଉଦ୍ୟମରେ ଅଲ୍ଲାଳପୁର ମ· ଇ· ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଏ ଅଞ୍ଚଳରେ ସେତେବେଳେ ଦେହୁରୁଡ଼ା, ଅଲ୍ଲାଳପୁର ଓ ଲକ୍ଷ୍ମଣନାଥରେ କେବଳ ଇଂରାଜୀ ବିଦ୍ୟାଳୟ ରହିଥିଲା । ଦୂରଦୂରାନ୍ତରୁ ଛାତ୍ରମାନେ ଆସି ତାଙ୍କ ଘରେ ରହି ଖାଇପିଇ ବିଦ୍ୟାଳୟରେ ପଢ଼ିବା ସଙ୍ଗେ ସଙ୍ଗେ ସଙ୍ଗୀତ ଶିକ୍ଷା କରୁଥିଲେ ।

ବିଶିଷ୍ଟ ସଙ୍ଗୀତଜ୍ଞ ୰ ଆଦ୍ୟାଚରଣ ପଣ୍ଡା (ମୀରଗୋଦା, ଏଗ୍ରା)ଙ୍କ ସମ୍ପର୍କରେ ନିମ୍ନରେ ଗୋଟିଏ ଉକ୍ତି ଉଦ୍ଧୃତ ହେଲା—

"ମୋର ଯାତ୍ରାଦଳର ଶିକ୍ଷକ ରୂପେ ସ୍ୱର୍ଗତ ଆଦ୍ୟାଚରଣ ପଣ୍ଡାଙ୍କୁ ସଙ୍ଗୀତ ଶାସ୍ତ୍ରୀ ରୂପେ ନିଯୁକ୍ତ ଦେଇଥିଲି । ସେତେବେଳେକୁ ସିଏ ମହାଶୟ·······ପ୍ରସିଦ୍ଧ

Digitized by srujanika@gmail.com

ଚନ୍ଦନେଶ୍ୱର 'ମହାତ୍ମ୍ୟ'.........ରଚନା କରି ପାରିଥିଲେ । ସେ ଜଣେ କୁଶଳୀ ଅଭିନେତା, ସୁରକାର ଓ ନିର୍ଦ୍ଦେଶକ ରୂପେ ଖ୍ୟାତିଲାଭ କରି ପାରିଥିଲେ । ପରେ ଆମ୍ଭମାନଙ୍କ ଅନୁରୋଧ କ୍ରମେ ଗୋଟିଏ ରାଗରାଗିଣୀ ଓ ବାଦ୍ୟ ବିଷୟକ ଗ୍ରନ୍ଥ ରଚନା କରି ପାରିବା ପରେ...ମୁଁ "ପ୍ରୋକ୍ତ ଗ୍ରନ୍ଥଟିକୁ 'ସଙ୍ଗୀତ ରହସ୍ୟ' ନାମରେ ନାମିତ କରିଥିଲି । ଉକ୍ତ ଗ୍ରନ୍ଥର ପାଣ୍ଡୁଲିପି ବର୍ତ୍ତମାନ ସୁଦ୍ଧା ମୋ'ଘରେ ରହିଛି...। ସ୍ୱାମୀ ଅଭେଦାନନ୍ଦ ପ୍ରଭୃତି ସଙ୍ଗୀତ ଗ୍ରନ୍ଥକାରମାନଙ୍କର ମତ ସେଥିରେ ସନ୍ନିବେଶିତ ହୋଇଅଛି ।''

**ନାଟ୍ୟ ଆନ୍ଦୋଳନ :**

ଓଡ଼ିଶାର ଉତ୍ତର ସୀମାରେ ବାଲେଶ୍ୱର ଓ ବାରିପଦା ସହର ଅବସ୍ଥିତ ଥିବାରୁ କଲିକତାର ଆଧୁନିକ ରଙ୍ଗମଞ୍ଚର ଧାରା ପ୍ରତି ଏ ସ୍ଥାନର କଳାପ୍ରେମୀମାନେ ପ୍ରଥମେ ଆକୃଷ୍ଟ ହେବା ସ୍ୱାଭାବିକ । ଓଡ଼ିଶାରେ ମଞ୍ଚ ଅଭିନୟର ସୂତ୍ରପାତ ଏ ଦୁଇ ସହରରେ ପ୍ରଥମେ ହୋଇଥିବାର ଧାରଣା କରାଯାଇପାରେ । ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ଅନୁଷ୍ଠିତ ହେବା ସମୟରେ ବାଲେଶ୍ୱର ସହରର 'ରାଧାଗୋବିନ୍ଦ' ଥିଏଟର ମଧ୍ୟ କଲିକତାର 'ମିନାର୍ଭା' ଥିଏଟର ପରି ଉଚ୍ଚ ପ୍ରଶଂସା ଲାଭ କରିଥିଲା । ଉତ୍ତରପୂର୍ବ ଉପାନ୍ତ ଅଞ୍ଚଳରେ ସାଂସ୍କୃତିକ ଇତିହାସ ଅଧ୍ୟୟନ କାଳରେ ଉପର ଲିଖିତ ଦୁଇ ସହରରେ ସୃଷ୍ଟି ହୋଇଥିବା ଏପରି କେତେଗୋଟି ଅନୁଷ୍ଠାନ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରୁଅଛୁ ମାତ୍ର ।

ବାଲେଶ୍ୱର ସହରରେ ଶ୍ରୀ ଲକ୍ଷ୍ମୀକାନ୍ତ ମିତ୍ର ୧୮୯୮ ମସିହାରେ ରାଧାଗୋବିନ୍ଦ ଥିଏଟର ପ୍ରତିଷ୍ଠା କରିଥିଲେ । ସେ ସମୟରେ ଏହା ସହରରେ ବହୁ ନାଟକ ମଞ୍ଚସ୍ଥ କରି ଆଜିଯାଏ ଯାବନ୍ତ ସୁନାମ ସହ ପରିଚାଳିତ ହୋଇଥିଲା । ତହିଁରେ ମଞ୍ଚସ୍ଥ ନାଟକଗୁଡ଼ିକ ହେଲା; ହରିଶ୍ଚନ୍ଦ୍ର, ବିଲ୍ୱମଙ୍ଗଳ, ପ୍ରହ୍ଲାଦ ଚରିତ୍ର, ଆଲିବାବା ପ୍ରଭୃତି । ଏଥିରେ ସର୍ବ-ସ୍ୱର୍ଗୀୟ ରାମଚନ୍ଦ୍ର କର, ହୃଦୟ କର, ଜୟନାରାୟଣ ଦାସ, ସାଧୁ ମହାନ୍ତ, ଯଦୁପଣ୍ଡା ପ୍ରଭୃତି ପ୍ରସିଦ୍ଧ ଅଭିନେତାଗଣ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ । ସ୍ୱର୍ଗତ ବୃନ୍ଦାବନ ଚୌଧୁରୀ ସେହି ନାଟ୍ୟାନୁଷ୍ଠାନର ସର୍ବଜନାଦୃତ ଶିକ୍ଷକ ରୂପେ ନିଯୁକ୍ତ ହୋଇ ଖ୍ୟାତିଲାଭ କରିଥିଲେ ।

ରାଧାଗୋବିନ୍ଦ ଥିଏଟରରେ ନାରୀମାନେହିଁ ସ୍ତ୍ରୀ ଭୂମିକାରେ ଅଭିନୟ କରୁ-ଥିଲେ । ସେହି ପ୍ରତିଭାମୟୀ ନାରୀମାନେ ହେଲେ ସର୍ବସ୍ୱର୍ଗୀୟା ବସନ୍ତ କୁମାରୀ, ଶଶୀ ମୁଖୀ, ସଙ୍ଗୀତ ଶିଳ୍ପୀ ରାଜମୁଖୀ ଓ କୁସୁମ କୁମାରୀ ପ୍ରଭୃତି । ଓଡ଼ିଶାର ରଙ୍ଗମଞ୍ଚରେ ନାରୀ ଚରିତ୍ରରେ ମହିଳାମାନେ ଅଂଶ ଗ୍ରହଣ କରିବାରେ ବାଲେଶ୍ୱରର ସହର ହିଁ ସର୍ବପ୍ରଥମ ଗୌରବର ଅଧିକାରୀ ।

Digitized by srujanika@gmail.com

ବାଲେଶ୍ୱର ସହରର ବାରବାଟୀ ଗ୍ରାମରେ ନାଟ୍ୟାଗ୍ରହୀ ଶିକ୍ଷଣ ଚନ୍ଦ୍ର ଦେ, ଅବିନାଶ ଚନ୍ଦ୍ର ସେନ, ଅମୃତଲାଲ କର, ଧୀରେନ୍ଦ୍ରନାଥ ଘୋଷଙ୍କ ପରି କେତେକ କଳାପ୍ରେମୀ ଶିକ୍ଷିତ ଯୁବକମାନଙ୍କ ଉଦ୍ୟମରେ ନୂଭେନାଇଲ ଥିଏଟାର ପ୍ରତିଷ୍ଠିତ ହୋଇଥିଲା । ୧୯୧୭ ମସିହାରେ ଏଥିରେ ଦ୍ୱିଜେନ୍ଦ୍ରଲାଲ ରାୟଙ୍କର 'ଚନ୍ଦ୍ରଗୁପ୍ତ' ନାଟକ ସର୍ବପ୍ରଥମେ ମଞ୍ଚସ୍ଥ ହୋଇଥିଲା । ଏଥିରେ ଅଭିନୀତ ହୋଇଥିବା ନାଟକଗୁଡ଼ିକ ମଧ୍ୟରୁ ହିନ୍ଦୁବୀର, ଜୟଦେବ, ସରଳା, ବଙ୍ଗୋବର୍ଗୀ, କଣ୍ଠହାର, ଶ୍ରୀଦୁର୍ଗା, ମିଶର କୁମାରୀ, କର୍ଣ୍ଣାର୍ଜ୍ଜୁନ, ସୀତା ପ୍ରଭୃତି ଅନ୍ୟତମ । ଜୁଭେନାଇଲ ଥିଏଟାର ୧୯୪୦ ମସିହା ପର୍ଯ୍ୟନ୍ତ ବହୁ ନାଟକ ମଞ୍ଚସ୍ଥ କରି ବାଲେଶ୍ୱର ଓ ଓଡ଼ିଶାର ନାଟ୍ୟପ୍ରେମୀ ଜନଗଣଙ୍କୁ ନାଟ୍ୟରସ ବିତରଣ କରିଥିଲା । ଜୁଭେନାଇଲର ଉଚ୍ଚକୋଟୀର ନାଟକଗୁଡ଼ିକ ଦେଖିବା ପାଇଁ କଟକରୁ ରେଭେନ୍‌ସା କଲେଜ ଓ ମେଡ଼ିକାଲ ସ୍କୁଲର ଗ୍ରହ ଅଧ୍ୟାପକଗଣ ନିୟମିତ ଆସୁଥିଲେ । ଏତଦ୍‌ବ୍ୟତୀତ ବାରିପଦା ଓ ଖଡ଼ଗପୁର ସହରରୁ ଅନେକ ଦର୍ଶକ ନିୟମିତ ଭାବେ ବାଲେଶ୍ୱର ଆସି ନାଟକ ଦେଖୁଥିଲେ ।

୧୯୨୨ ମସିହାରେ ରେମୋଗସ୍ତିଠାରେ ୬ କୃଷ୍ଣଚନ୍ଦ୍ର ମହାନ୍ତିଙ୍କ ଦ୍ୱାରା ଶ୍ୟାମସୁନ୍ଦର ଅବସର ବିନୋଦନ କେନ୍ଦ୍ର ନାଟ୍ୟ ସଙ୍ଗୀତ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ରାସପୂର୍ଣ୍ଣିମା ଉପଲକ୍ଷେ ଅନୁଷ୍ଠାନ ପକ୍ଷରୁ ପ୍ରତିବର୍ଷ ବିଭିନ୍ନ ନାଟକ ମଞ୍ଚସ୍ଥ କିରାଯାଉଥାଏ । ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ଓ ସାହିତ୍ୟ ଓ ସଂସ୍କୃତି ବିକାଶ ଦିଗରେ ଏ ସଂସ୍ଥାର ଅବଦାନ ଅବଶ୍ୟ ସ୍ୱୀକାର୍ଯ୍ୟ । ଏ ଅନୁଷ୍ଠାନର ନିଜସ୍ୱ ପାଠାଗାର ଓ ନାଟ୍ୟ ଗୃହ ରହିଥିବାର ଜଣାଯାଏ ।

'ଡଷ୍ଟୁଦଲ' ଯାତ୍ରା ପାର୍ଟି ଜୁଭେନାଇଲ ଥିଏଟାରର ସାଫଲ୍ୟ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ୧୯୨୫ ମସିହାରେ 'ଭାରତୀ ଥିଏଟାର' ରୂପେ ରୂପାନ୍ତରିତ ହୋଇଥିଲା । ଏହା ବାଲେଶ୍ୱରର ବାରବାଟୀରେ ଅବସ୍ଥିତ ଥିଲା । ଏଥିରେ ନାରୀମାନେ ସ୍ତ୍ରୀ ଚରିତ୍ରରେ ଅଭିନୟ କରୁଥିଲେ ।

ବାଟେଶ୍ୱର ଗ୍ରାମରେ ରାଜଲକ୍ଷ୍ମୀ ଥିଏଟାର ପ୍ରତିଷ୍ଠିତ ହୋଇ ଏଥିରେ ବହୁ ଧନ୍ୟ ଧରି ଓଡ଼ିଆ ଓ ବଙ୍ଗଳା ନାଟକମାନ ମଞ୍ଚସ୍ଥ ହୋଇ ପ୍ରଶଂସା ଅର୍ଜ୍ଜନ କରିଥିଲା ।

**ସୁନହଟ ଥିଏଟାର :**

ସୁନହଟ ଗ୍ରାମର ଜମିଦାର ସାମନ୍ତ ରାଧା ପ୍ରସନ୍ନ ଦାସଙ୍କ ପୃଷ୍ଠପୋଷକତାରେ ବାଙ୍କୁ ବାବୁଙ୍କ ଶିକ୍ଷା ଦାନରେ ୧୯୩୦ ମସିହାରୁ ୧୯୩୫ ପର୍ଯ୍ୟନ୍ତ ଗୋଟିଏ ଥିଏଟାରପାର୍ଟି ଗଠିତ ହୋଇ ବହୁ ନାଟକ ମଞ୍ଚସ୍ଥ କରି ଖ୍ୟାତି ଲାଭ କରିଥିଲା । ଏ ରଙ୍ଗମଞ୍ଚରେ ଶ୍ରୀମନ୍ଦିର, ଭକ୍ତ ବୀର, ଦୁର୍ଗା ଦାସ ପ୍ରଭୃତି ଅନେକ ନାଟକ ମଞ୍ଚସ୍ଥ ହୋଇଥିଲା ।

Digitized by srujanika@gmail.com

୧୯୩୬ ମସିହାରେ କବିରାଜ ଶ୍ରୀମିହିର ପାଣିଗ୍ରାହୀଙ୍କ ଦ୍ୱାରା ବାଲେଶ୍ୱରରେ ସଂସ୍କୃତ ନାଟ୍ୟ ସଂଘ ପ୍ରତିଷ୍ଠିତ ହୋଇଥିଲା । ଏଥିରେ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ପଣ୍ଡିତ ରମାକାନ୍ତ ମିଶ୍ରଙ୍କର ପ୍ରଣୀତ ପରିଶରୁ ଊର୍ଦ୍ଧ୍ୱ ସଂଖ୍ୟକ ନାଟକ ମଞ୍ଚସ୍ଥ ହୋଇଥିବାର ଜଣାଯାଏ । ଅନୁଷ୍ଠାନର ସଦସ୍ୟମାନଙ୍କର କନ୍ୟାମାନେ ଏଥିରେ ନାରୀ ଭୂମିକାରେ ଅଭିନୟ କରୁଥିଲେ ।

କବିରାଜ ଶ୍ରୀ ମିହିର କୁମାର ପାଣିଗ୍ରାହୀଙ୍କ ଦ୍ୱାରା ୧୯୪୩ ମସିହାରେ 'କଳାଙ୍ଗୀ ଡ୍ରାମାଟିକ କ୍ଲବ' ପ୍ରତିଷ୍ଠିତ ହୋଇଥିଲା । ନାଟ୍ୟ ସଂସ୍ଥାଟି ଏ, ବି, ସି ଓ ଡ଼ି ଏପରି ଚାରିଗୋଟି ଭାଗରେ ବିଭକ୍ତ ହୋଇ ପରିଣତ ବୟସ୍କଙ୍କ ଠାରୁ ଆରମ୍ଭ କରି ଶିଶୁ କଳାକାରମାନଙ୍କ ଦ୍ୱାରା ବିଭିନ୍ନ ପର୍ଯ୍ୟାୟରେ ନାଟକ ମଞ୍ଚସ୍ଥ କରିଥିଲା । ବଭ୍ରୁବାହନ, ସମାଧୀ, ଉଦ୍‌ଭ୍ରାନ୍ତ, ଗୋବିନ୍ଦ ସିଂହ, ମୂକଆ, କୋଣାର୍କ, ବୀର ଅଭିମନ୍ୟୁ ପ୍ରଭୃତି ବହୁ ପ୍ରସିଦ୍ଧ ନାଟକ ମଞ୍ଚସ୍ଥ ହୋଇଥିଲା ।

ବାଲେଶ୍ୱର ସହରର ବିଶିଷ୍ଟ ପରିବାରବର୍ଗଙ୍କ ମଧ୍ୟରେ ସ୍ୱର୍ଗତ ଓକିଲ ନରେନ୍ଦ୍ର ନାଥ ସରକାର ଓ ତାଙ୍କର ନିକଟ ଆତ୍ମୀୟ ଆଇନଜୀବୀ ସୌରୀନ୍ଦ୍ରମୋହନ ମିତ୍ରଙ୍କ ପରିବାର ମିଳିତ ଭାବରେ ଏକ ପାରିବାରିକ ଥିଏଟାର ମଞ୍ଚ (୧୯୧୮-୨୦) ଗଠନ କରି ବାଲେଶ୍ୱରବାସୀ କଳାପ୍ରେମୀମାନଙ୍କୁ ନାଟ୍ୟରସ ପରିବେଷଣ କରିଥିଲେ । ଏଥିରେ ନାରୀ ଭୂମିକାରେ ସେହି ଦୁଇ ପରିବାରର ବଧୂ ଓ କନ୍ୟାଗଣ ଅଭିନୟ କରି ଯଶସ୍ୱିନୀ ହୋଇଛନ୍ତି । ଏହି ଥିଏଟାର ମଞ୍ଚରେ ନଟୀର ପୂଜା, ଶେଷ ରକ୍ଷା, ଚିରକୁମାର ସଭା ପ୍ରଭୃତି ଉଚ୍ଚକୋଟୀର ନାଟକ ଅଭିନୀତ ହୋଇଛି । ଏ ପାରିବାରିକ ଥିଏଟାର ସମ୍ପର୍କରେ ଅଭିନେତା ଆଲୋଚକ ଶ୍ରୀ ସୁକୁମାର ସାହୁ କହନ୍ତି, "···ସେହି ଦୁଇଟି ପରିବାର ସାଂସ୍କୃତିକ ବାୟୁମଣ୍ଡଳ ସମଗ୍ର ବାଲେଶ୍ୱରକୁ ପ୍ରଭାବିତ କରିଛି । ସେହିମାନଙ୍କ ପ୍ରେରଣାରେ ସେହି କାଳରେ ଭଦ୍ର ପରିବାରର ଝିଅ ମଞ୍ଚରେ ନାଚିଛି, ଗୀତ ଗାଇଛି ଓ ଅଭିନୟ କରିଛି । ···ବାଲେଶ୍ୱରର ଅଭିନୟ ଜଗତ ମଧ୍ୟ 'ସେହି ପାରିବାରିକ ଥିଏଟାର ଗୋଷ୍ଠୀଙ୍କ ଠାରେ ବହୁଳାଂଶରେ ଋଣୀ ।"

ବାଲେଶ୍ୱରରେ ଫକୀର ମୋହନ କଲେଜ ପ୍ରତିଷ୍ଠା ହେଲା ପରେ ନାଟ୍ୟ ଆନ୍ଦୋଳନର ଇତିହାସରେ ବାଲେଶ୍ୱରର ଭୂମିକା ଏକ ନୂତନ ରୂପ ଗ୍ରହଣ କରିଅଛି । କଲେଜର ଅଧ୍ୟାପକ, ଛାତ୍ରଛାତ୍ରୀମାନେ ବହୁ ନାଟକରେ ଅଭିନୟ କରି ପରବର୍ତ୍ତୀ କାଳରେ ଅଭିନେତା ରୂପେ ପ୍ରତିଷ୍ଠିତ ହୋଇଛନ୍ତି । କଲେଜ ପଢ଼ୁଆ କନ୍ୟାମାନେ ସୌଖୀନ ନାଟ୍ୟ ସଂସ୍ଥାରେ ଅଭିନେତ୍ରୀ, ଗାୟିକା ଭାବରେ ବହୁ ପ୍ରସିଦ୍ଧିର ଅଧିକାରିଣୀ ହୋଇଛନ୍ତି ।

Digitized by srujanika@gmail.com

କଲେଜର ଗ୍ରୀଷ୍ମୀ ସଂସଦ ଆନୁକୂଲ୍ୟରେ ସୀତା, ଝାନସୀ ରାଣୀ, ନବ ତାରକା, ଗାନ୍ଧାରୀର ଅଭିଶାପ, ନଟୀର ପୂଜା ପ୍ରଭୃତି ବହୁ ନାଟକ ମଞ୍ଚସ୍ଥ ହୋଇଅଛି ।

ନାଟ୍ୟଶ୍ରୀ ଥିଏଟର ୧୯୫୧ ମସିହାରେ ଶ୍ରୀ ରାଧାନାଥ ଦାସଙ୍କ ତତ୍ତ୍ୱାବଧାନରେ କେତେଜଣ ସହଯୋଗୀ ତରୁଣଙ୍କ ଅର୍ଥାନୁକୂଲ୍ୟରେ ଗଠିତ ହୋଇଥିଲା । କୁଞ୍ଜେନାଗଲ ଥିଏଟରର ପୁରାତନ ଶିଳ୍ପୀ ଗୋଷ୍ଠୀମାନଙ୍କ ନାଟ୍ୟାଭିନୟରେ ନାଟ୍ୟଶ୍ରୀର ଏକମାତ୍ର ନାଟକ 'ଦେବାସୁର' (ବଙ୍ଗଳା ନାଟକର ଓଡ଼ିଆ ରୂପାନ୍ତର) ଅଭିନୀତ ହୋଇଥିଲା । ଏଥିରେ ପ୍ରଧାନ ହାସ୍ୟାଭିନେତା ଭାବରେ ରାଧାରମଣ ଦାସ ବହୁ ପ୍ରସିଦ୍ଧିର ଅଧିକାରୀ ହୋଇଛନ୍ତି ।

ବାଲେଶ୍ୱର ସହରରେ ପ୍ରତିଷ୍ଠିତ ରଙ୍ଗମଞ୍ଚରେ ବହୁ ନାଟ୍ୟକାରଙ୍କର ବିଖ୍ୟାତ ନାଟକମାନ ମଞ୍ଚସ୍ଥ ହୋଇଛି । ନାଟ୍ୟକାର ସର୍ବଶ୍ରୀ ଯଦୁନାଥ ଦାସମହାପାତ୍ର ଓ ପୁରୁଷୋତ୍ତମ ଭୂୟାଁ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । "ଫକୀର ମୋହନ ସାହିତ୍ୟ ପରିଷଦ'' ଆନୁକୂଲ୍ୟରେ ନାଟ୍ୟ ସାହିତ୍ୟର ଆଲୋଚନାଚକ୍ରମାନ ଅନୁଷ୍ଠିତ ହୋଇ ନୃତ୍ୟ, ସଙ୍ଗୀତ ଓ ଅଭିନୟ କଳାର ପରିପୁଷ୍ଟି ସାଧନ ସହିତ ନାଟ୍ୟ ଆନ୍ଦୋଳନର ଅଗ୍ରଗତି ନିମନ୍ତେ ସୁସ୍ଥ ପରିବେଶ ସୃଷ୍ଟି ହୋଇଛି ।

ବାଲେଶ୍ୱରର ନାଟ୍ୟ ଆନ୍ଦୋଳନର ଇତିହାସରେ ପୂର୍ବତନ ନୀଳଗିରି ଷ୍ଟେଟର ଦରବାର ରଙ୍ଗମଞ୍ଚର ଅବଦାନ ଉଲ୍ଲେଖନୀୟ । ୰ ରାଜା ସାହେବ କିଶୋରଚନ୍ଦ୍ର ମର୍ଦ୍ଦିରାଜ ହରିଚନ୍ଦନଙ୍କର ଅବଦାନ ଏ କ୍ଷେତ୍ରରେ ଚିର ସ୍ମରଣୀୟ । ୧୯୩୦ ମସିହାରୁ ଗଡ଼ଜାତ ମିଶ୍ରଣ ପର୍ଯ୍ୟନ୍ତ ତଦାନୀନ୍ତନ ଓଡ଼ିଶାର ଏକମାତ୍ର ବିଦ୍ୟୁତ୍ ଆଲୋକିତ ସୁବିଖ୍ୟାତ ଓ ସୁଦୃଶ୍ୟ ନାଟ୍ୟମନ୍ଦିର (କିଶୋର ଥିଏଟର ରେ ବହୁ ନାଟକ ମଞ୍ଚସ୍ଥ ହୋଇ କେବଳ ଓଡ଼ିଶା କାହିଁକି ବଙ୍ଗ ଦେଶର ବହୁ କଳାକାରଙ୍କୁ ଚମତ୍କୃତ କରିଅଛି ।

ଆଧୁନିକ କାଳରେ ନବନାଟ୍ୟ ଆନ୍ଦୋଳନରେ ବାଲେଶ୍ୱର ସହରର କେତେକ ନାଟ୍ୟାନୁଷ୍ଠାନ ଗଠନାତ୍ମକ ଭୂମିକା ଗ୍ରହଣ କରି ଖ୍ୟାତି ଲାଭ କରିବା ସଙ୍ଗେ ସଙ୍ଗେ ପ୍ରତିଷ୍ଠିତ ହୋଇଛନ୍ତି । ତନ୍ମଧ୍ୟରୁ କାଳୀ ମନ୍ଦିର ନାଟ୍ୟ ସଂସଦ (୧୯୬୫), ଅକ୍ଟୋପସ (୧୯୬୮), ସ୍ରଷ୍ଟା (୧୯୭୨), ବନ୍ଧୁ ବଳୟ, ଫକୀରମୋହନ ନାଟ୍ୟ ପରିଷଦ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଆଧୁନିକ ବାଲେଶ୍ୱର ସହରର ସଙ୍ଗୀତ, ନୃତ୍ୟ, ନାଟ୍ୟ ସାରସ୍ୱତ ସାଂସ୍କୃତିକ ବାତାବରଣ ସୃଷ୍ଟି ଓ ବିକାଶ ଦିଗରେ ଏପରି ଅନେକ ସଂଗଠନ ସବୁର ଭୂମିକା ଅଭିନନ୍ଦନୀୟ । ଅଗଣିତ କଳାକାର-ସଂଗଠକମାନଙ୍କର ତ୍ୟାଗପୂତ ମହନୀୟ ଉଦ୍ୟମ ଏ ସବୁ ସଂଗଠନର ବିକାଶର ହେତୁ ।

Digitized by srujanika@gmail.com

'ବାରିପଦା ଏକ ମୁକ୍ତର ରାଜ୍ୟ ଓ କଳାର କ୍ଷେତ୍ର' ରୂପେ ପରିଚିତ । ଏ ରାଜ୍ୟର ପୂର୍ବତନ ରାଜନ୍ୟ ବର୍ଗ ନୃତ୍ୟନାଟ ସଙ୍ଗୀତ କଳାର ଚର୍ଚ୍ଚା ଓ ସଂରକ୍ଷଣ ଦିଗରେ ପୃଷ୍ଠପୋଷକତା କରିଥିଲେ । ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓଙ୍କ ସମୟରେ ବାରିପଦା ଛଉ ନାଚର ପରିମାର୍ଜନ ଓ ପରିବର୍ତ୍ତନ ସଂଘଟିତ ହୋଇଥିଲା । ପ୍ରବୀଣ ନୃତ୍ୟ ଗୁରୁ ନିପୁଣ ସଙ୍ଗୀତଜ୍ଞ, ଉସ୍ତାଦ୍‌ମାନେ ବାରିପଦାର ଦରବାରରେ ଆଦର ଲାଭ କରିଥିଲେ । ମହାରାଜାଙ୍କ କନିଷ୍ଠ ଭ୍ରାତା ଶ୍ୟାମଚନ୍ଦ୍ର ଭଞ୍ଜ ଅସ୍ଥାୟୀ ରଙ୍ଗମଞ୍ଚରେ ବଙ୍ଗଳା ଅନୁବାଦ ନାଟକ ମଞ୍ଚସ୍ଥ (୧୮୯୮/୯୯) କରାଇଥିବାର ଜଣାଯାଏ । ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ସମୟରେ ସଙ୍ଗୀତ ନୃତ୍ୟର ଆଦର ରହିଥିଲା । ତାଙ୍କ ସମୟରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ନାଟକ ମଞ୍ଚସ୍ଥ ହୋଇଥିବାର ଜଣାଯାଏ । ୧୯୧୭ ବେଳକୁ କଲିକତାର 'ମିନାର୍ଭା' ଥିଏଟାର ଆସି ବାରିପଦାରେ ନାଟକ ପ୍ରଦର୍ଶନ କରିଥିଲା । ଏଥିରେ ନାରୀ ଭୂମିକାରେ ନାରୀମାନେ ହିଁ ଅଭିନୟ କରୁଥିଲେ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ବାରିପଦାରେ ଅବସ୍ଥାନ କରି ଥିଏଟର ଦଳ ଗଠନ କରି ନାଟ୍ୟରସ ପରିବେଷଣ କରି ଖ୍ୟାତି ଅର୍ଜନ କରିଥିଲେ । ସେତେବେଳକୁ ବି ସୁନାମ ଧନ୍ୟ ଉସ୍ତାଦ୍ ଯଦୁରାଓ ଓ ସଙ୍ଗୀତଜ୍ଞ ନରେନ ପାଲ ରାଜ ଭ୍ରାତା ଶ୍ରେଷ୍ଠରାୟ ପ୍ରତାପଚନ୍ଦ୍ର ଦେବଙ୍କୁ ସଙ୍ଗୀତ ଶିକ୍ଷା ଦେଉଥିଲେ । ସେତେବେଳକୁ ବି ସେ ନିପୁଣ ଅଭିନେତା ଶ୍ୟାମ ପହରାଜ, ସଫଳ ସଂଗଠକ ଦିବାକର ଭଞ୍ଜଙ୍କ ସାହଚର୍ଯ୍ୟ ଓ ସହାୟତା ଲାଭ କରିଥିଲେ । ପ୍ରତାପ ଚନ୍ଦ୍ରଙ୍କ ପୋଷକତା ଓ ସମର୍ଥନରେ କାଳୀବାବୁ ବାରିପଦାରେ ପ୍ରଥମ କରି ଥିଏଟର ଦଳ ଗଠନ କଲେ । ରାଜବାଟୀର ଦ୍ୱିତୀୟ ଅଗଣାରେ ଥିଏଟର ମଞ୍ଚ ବନ୍ଧାଯାଇ ମିଳନ 'ମାଧୁରୀ ନାଟକ' ଅଭିନୀତ ହୋଇଥିଲା ।

୧୯୨୧/୨୨ ସାଲ ବେଳକୁ ବାରିପଦାକୁ କାନ୍ତକବି ଲକ୍ଷ୍ମୀକାନ୍ତ ତାଙ୍କ ନାଟକେ ଦଳ ନେଇ ଆସିଥିଲେ । ସାଙ୍ଗରେ ଆସିଥିଲେ ବିଶିଷ୍ଟ ସଙ୍ଗୀତଜ୍ଞ ମନମୋହନ ସାହୁତ । କାନ୍ତକବି କିଛୁଦିନ ବାରିପଦାରେ ନାଟକ ଅଭିନୟ କରାଇଥିଲେ । ଲକ୍ଷ୍ମୀକାନ୍ତଙ୍କ ନାଟଦଳ ବାରିପଦାରୁ ଗଲାପରେ କବିଚନ୍ଦ୍ର ଆଉ ଖଣ୍ଡିଏ ଗୀତ ବହୁଳ ନାଟକ 'ମୃଗୟା' (ଦଶରଥଙ୍କ ମୃଗୟା ଓ ସିନ୍ଧୁବଧ) ଲେଖି ଅଭିନୀତ କରାଇଥିଲେ । ପରେ 'ଶକୁନ୍ତଳା' ନାଟକର ଲେଖା ଓ ରିହର୍ସାଲ ହୋଇଥିଲେ ବି ନାଟକଟି ମଞ୍ଚସ୍ଥ ହୋଇ ପାରି ନଥିଲା । କାଳୀବାବୁଙ୍କ ନାଟକରେ ନାରୀ ଭୂମିକାରେ ପୁରୁଷମାନେ ଅଭିନୟ କରୁଥିଲେ ।

ଓଡ଼ିଶାର ଗୌରାଙ୍ଗ ଥିଏଟାର ୧୯୩୪–୩୫ ସମୟ ବେଳକୁ ବାରିପଦାର ବର୍ତ୍ତମାନର ମହାରାଜା କୃଷ୍ଣଚନ୍ଦ୍ର ହାଇସ୍କୁଲରେ ଦୁଇଦିନ ଧରି ନାଟକ ମଞ୍ଚସ୍ଥ କରିଥିଲେ ।

Digitized by srujanika@gmail.com

ମହାରାଜା ପ୍ରତାପଚନ୍ଦ୍ରଙ୍କ ରାଜତ୍ୱ ସମୟରେ ନାଟ୍ୟ ଆନ୍ଦୋଳନ ଏକ ନୂତନ ଓ ପ୍ରତିଷ୍ଠିତ ରୂପ ଗ୍ରହଣ କରିଥିଲା । 'ଅଲ ବାରିପଦା କ୍ଲାବ୍' ମହାରାଜାଙ୍କ ପୃଷ୍ଠ-ପୋଷକତାରେ ନାଟକ ମଞ୍ଚସ୍ଥ କରୁଥିଲେ । ଫେଣ୍ଡସ୍ ଇଙ୍ଗିଏସନ କ୍ଲାବ ପ୍ରତିଷ୍ଠିତ ହୋଇ ନାଟକମାନ ମଞ୍ଚସ୍ଥ ହେଉଥିଲା । ପ୍ରତାପ ଚନ୍ଦ୍ରଙ୍କ ପୋଷକତାରେ 'ବାଥିଡେ ଥିଏଟାର' ନାମକ ଏକ ସୌଖୀନ ଥିଏଟାର ସଂସ୍ଥା ଗଠିତ ହୋଇଥିଲା । ଏହା ପ୍ରତିବର୍ଷ ମହାରାଜାଙ୍କ ଜନ୍ମଦିନ ଉତ୍ସବ ଉପଲକ୍ଷେ ଆୟୋଜିତ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟକକୁ ପୁରସ୍କୃତ କରାଇ ନାଟକ ରଚନା ଅଭିନୟ କୁଶଳତା ଦିଗରେ ପ୍ରେରଣା ଓ ଉତ୍ସାହ ପ୍ରଦାନ କରୁଥିଲେ । ଏ ନାଟ୍ୟ ସଂସ୍ଥା (ଖ୍ରୀ: ୧୯୩୫-୧୯୪୭)ରେ ରାଜ୍ୟର ପଦସ୍ଥ କର୍ମକର୍ତ୍ତା ଓ ଖ୍ୟାତନାମା ଅଭିନେତାଗଣ ଅଂଶ ଗ୍ରହଣ କରୁଥିଲେ । ତତ୍କାଳୀନ ମୟୂରଭଞ୍ଜ ରାଜ୍ୟର ଶିକ୍ଷାମନ୍ତ୍ରୀ ମହେଶ୍ୱର ନାୟକଙ୍କ 'ଅଭିଷେକ' ନାଟକ ପ୍ରଥମ ହୋଇ ପୁରସ୍କୃତ ହୋଇଥିଲା । ୧୯୪୨ରେ ଶ୍ରୀ ପ୍ରଭାସ ଚନ୍ଦ୍ର ବ୍ରହ୍ମା ଶ୍ରେଷ୍ଠ ନାଟ୍ୟକାର ଭାବେ ପ୍ରଥମ ପୁରସ୍କାର ଲାଭ କରିଥିଲେ । ନାଟ୍ୟକାର ଆନନ୍ଦ ଶଙ୍କର ମଧ୍ୟ ନାଟ୍ୟ ରଚନାରେ ଦରବାର ପକ୍ଷରୁ ପୁରସ୍କୃତ ହୋଇଥିଲେ । ୧୯୪୩ ସାଲ ବେଳକୁ ବାରିପଦାରେ ହରିଶ୍ଚନ୍ଦ୍ର ଦାଶଙ୍କ ପ୍ରଚେଷ୍ଟାରେ ବାରିପଦାରେ ଫ୍ରେଣ୍ଡସ ଇଙ୍ଗିଏସନ କ୍ଲାବ ଓ 'ନବ ଓଡ଼ିଶା ଥିଏଟାର' ପ୍ରତିଷ୍ଠିତ ହୋଇଥିଲା । ଏ ସମୟରେ ବାରିପଦାର ଆଖପାଖ ଅଞ୍ଚଳରେ ବହୁ ସୌଖୀନ ନାଟ୍ୟ ସଂସ୍ଥା ଗଢ଼ି ଉଠିଥିଲା ଓ ବାର୍ଷିକ ନାଟକମାନ ମଞ୍ଚସ୍ଥ କରୁଥିବାର ଜଣାଯାଏ ।

ଅତୀତରେ ବାରିପଦାର ସୁପ୍ରସିଦ୍ଧ ଅଭିନେତାମାନଙ୍କ ମଧ୍ୟରେ ରାମଚନ୍ଦ୍ର ଦାଶ, ବ୍ରଜସୁନ୍ଦର ଦାସ, ଦୁର୍ଗା ଚରଣ ଦାସ, ସୁରେଶ ଚନ୍ଦ୍ର ମିଶ୍ର, ହରିଶ୍ଚନ୍ଦ୍ର ଦାଶ, ଗୋପାଳଚନ୍ଦ୍ର ମହାନ୍ତି, ଉମେଶ ଚନ୍ଦ୍ର ମହାନ୍ତ ପ୍ରଭୃତି ଉଲ୍ଲେଖଯୋଗ୍ୟ—ନାଟ୍ୟ ପ୍ରତିଭାର ଅଧିକାରୀ ଥିଲେ ।

ବାରିପଦାର ପ୍ରତିଷ୍ଠିତ ନାଟ୍ୟକାରମାନଙ୍କ ମଧ୍ୟରେ ମହେଶ୍ୱର ନାଏକ, ପୁରୁଷୋତ୍ତମ ପାଣିଗ୍ରାହୀ, ମହେଶ ଚନ୍ଦ୍ର ମହାପାତ୍ର, ପ୍ରଭାସ ଚନ୍ଦ୍ର ବ୍ରହ୍ମା, ଆନନ୍ଦ ଶଙ୍କର ଦାସ ପ୍ରମୁଖ ଅଗ୍ରଣୀ ଆସନର ଅଧିକାରୀ । ପୁରୁଷୋତ୍ତମ ପାଣିଗ୍ରାହୀଙ୍କର 'କୁହେଳୀ' 'ମା' ପୁଅ' (ମା' ପୁଅ ଅନ୍ନପୂର୍ଣ୍ଣା ବି ଗ୍ରୁପରେ ଅଭିନୀତ) ନାଟକ ଓ ଶ୍ରୀ ମହେଶ ଚନ୍ଦ୍ର ମହାପାତ୍ରଙ୍କ ସତ୍ୟସାଚୀ, କ୍ଷୁଧା, ଦୁଇ ପୁରୁଷ, ରୁମଙ୍କ ନୁଏଣ୍ଟା ନାଇନ୍, ନାଟକଗୁଡ଼ିକ ବାରିପଦାର ସୌଖୀନ ନାଟ୍ୟ ସଂସ୍ଥା "ବାର୍ଥଡେ ଥିଏଟର" ଓ "ନବ ଓଡ଼ିଶା ଥିଏଟାର"ରେ ମଞ୍ଚସ୍ଥ ହୋଇଥିଲା ।

ପ୍ରଦେଶ ମିଶ୍ରଣ ପରେ ବାରିପଦାରେ ଅନେକ ସୌଖୀନ ନାଟ୍ୟ ସଂସ୍ଥା ଗଠିତ ହୋଇଛି । ତନ୍ମଧ୍ୟରୁ କଲେକ୍ଟରେଟ କଲଚ୍ଚରେଲ ଏସୋସିଏସନ (୧୯୫୫), ସି. ସି;

Digitized by srujanika@gmail.com

ଆଇ: ଡ୍ରାମାଟିକ ଏସୋସିଏସନ (୧୯୫୭) ମୟୂରଭଞ୍ଜ ମେଡ଼କେଲ ଡ୍ରାମାଟିକ ଏସୋସିଏସନ (୧୯୬୦), ଫରେଷ୍ଟ ଡ୍ରାମାଟିକ ଏସୋସିଏସନ, ବାରିପଦା (୧୯୬୨), ତା'ପରେ ଆମେ (୧୯୮୭ ଓ ଆମେ ବ୍ୟବସାୟୀ (୧୯୮୫) ପ୍ରଭୃତି ଉଲ୍ଲେଖଯୋଗ୍ୟ । *

ସ୍ୱର ସଂଯୋଜନା ଓ ସଙ୍ଗୀତ ରଚନା କ୍ଷେତ୍ରରେ ବାରିପଦା ରାଜ୍ୟର ପ୍ରାଚୀନ ପରମ୍ପରା ଅଦ୍ୟାବଧି ଅକ୍ଷୁଣ୍ଣ ରହିଅଛି । ବାରିପଦା/ମୟୂରଭଞ୍ଜର 'ଝୁମର' ଗୀତକା-ଏ ସବୁର ପ୍ରକୃଷ୍ଟ ନିଦର୍ଶନ । କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ପ୍ରାଚୀନ ଝୁମର ଗୀତକାର ସ୍ୱର ଓ ରସ ମାଧୁର୍ଯ୍ୟରେ ବିମୁଗ୍ଧ ଓ ପ୍ରଭାବିତ ହୋଇଥିଲେ । ମୟୂରଭଞ୍ଜ ଓ ଝାଡ଼ଗ୍ରାମ ଅଞ୍ଚଳର ଝୁମର ଗୀତକବି ଅଗଣିତ ଓ ଅସଂଖ୍ୟ ଏ ଧରଣର ରଚନା ଉପଲବ୍ଧ ହୁଏ । ବାରିପଦାର ସଙ୍ଗୀତଜ୍ଞ, ଗାୟକ, ଗୀତକାର ପ୍ରତ୍ୟେକ ଅଳ୍ପାଧିକେ 'ଝୁମର' ଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ । ପ୍ରାଚୀନ ଝୁମର ଗାୟକ ଓ ଗୀତକାର ଭାବରେ ପ୍ରଫୁଲ୍ଲ ଚନ୍ଦ୍ର ଭଞ୍ଜ ଦେଓଙ୍କ ନାମ ସ୍ମରଣୀୟ । ଦରବାର ସମୟରେ ନିଯୁକ୍ତ ପ୍ରଖ୍ୟାତ ସଙ୍ଗୀତଜ୍ଞ ଗଣ ରାଜଧାନୀ ବାରିପଦାର ସ୍ୱର ସଙ୍ଗୀତ ବାତାବରଣକୁ ଉଚ୍ଚତମ ସୋପାନରେ ଉପନୀତ କରାଇଥିଲେ ।

ଆଧୁନିକ କାଳରେ ଗାୟକ, ବାଦନ, ସ୍ୱର ସଂଯୋଜନା ଓ ସଙ୍ଗୀତ ରଚନା କ୍ଷେତ୍ରରେ ଓଡ଼ିଶାରେ ବାରିପଦା ପୂର୍ବର ସେହି ଉଜ୍ଜ୍ୱଳ ଧାରା ରକ୍ଷାକରି ଅଗ୍ରଣୀ ହୋଇଅଛି । ସେହିପରି ନୃତ୍ୟ-ନାଟ୍ୟ କ୍ଷେତ୍ରରେ ବାରିପଦାର ଛଉ ନାଚ ଓଡ଼ିଶାକୁ ସମଗ୍ର ବିଶ୍ୱର କଳାର ଦରବାରରେ ସୁପ୍ରତିଷ୍ଠିତ କରାଇଛି ।

ଆଧୁନିକ କାଳରେ ମେଦନୀପୁର ଅଞ୍ଚଳରେ ସୃଷ୍ଟି ହୋଇଥିବା ବଙ୍ଗଳା ସାହିତ୍ୟ ସଙ୍ଗୀତ-ନାଟକର ଧାରା ଅନେକ ପରିମାଣରେ ଓଡ଼ିଆ ଭାଷା ସାହିତ୍ୟ-ସଙ୍ଗୀତ-ନାଟକକୁ ପ୍ରଭାବିତ କରିଅଛି । ୧୮୫୧ ମସିହାରେ କଲେକ୍ଟର ବେଲି (ଏଇଚ. ଭି: ବେଲି)ଙ୍କ ପ୍ରୋତ୍ସାହନ ଫଳରେ କେତେଜଣ ଇଂରେଜ ଓ ସ୍ଥାନୀୟ ଲୋକଙ୍କ ପରିଚାଳନାରେ "Midnapore and Hijli quardian" ବା "ମେଦନୀପୁର ଓ ହିଜଲୀ ଅଞ୍ଚଳର ଅଧକ୍ଷ" ନାମରେ ଗୋଟିଏ ଦ୍ୱିଭାଷିକ ପତ୍ରିକା ପ୍ରଥମେ ପ୍ରକାଶିତ ହୁଏ । ବେଲି ସାହେବଙ୍କ ପୋଷକତା ଫଳରେ ପ୍ରଥମେ ପାଠାଗାର ଗଠନ ଆରମ୍ଭ ହୁଏ । ମେଦନୀପୁରର ପତ୍ରିକା ପ୍ରକାଶନକୁ କେନ୍ଦ୍ରକରି ଅନେକ ଉନ୍ନତ ସାହିତ୍ୟ ସୃଷ୍ଟି ହୋଇଥିବାର ଲକ୍ଷ୍ୟ କରାଯାଏ । ଏ ଜିଲ୍ଲାର ପ୍ରଶାସନ ସହିତ ଜଡ଼ିତ ଅନେକ କବି, ଔପନ୍ୟାସିକ, ଗାଳ୍ପିକ ବହୁ ଉଚ୍ଚକୋଟୀର ସାହିତ୍ୟ ରଚନା କରିଥିବାର ଦେଖାଯାଏ ।

---

* ଶ୍ରୀ ଆନନ୍ଦ ଶଙ୍କର ଦାସ ଓ ଶ୍ରୀ ବିଜୟ କୁମାର ବାରିକ (ବାରିପଦା)ଙ୍କ ନିକଟରୁ ସଂଗୃହୀତ ।

Digitized by srujanika@gmail.com

ସଙ୍ଗୀତ କ୍ଷେତ୍ରରେ ମେଦନୀପୁରର ଅବଦାନ ମଧ୍ୟ ଉଲ୍ଲେଖଯୋଗ୍ୟ । ଅନେକ ବିଖ୍ୟାତ ସଙ୍ଗୀତଜ୍ଞ ସଙ୍ଗୀତ ଚର୍ଚ୍ଚା ନିମନ୍ତେ ଜିଲ୍ଲାର ବିଭିନ୍ନ ରାଜା ଓ ଜମିଦାରମାନଙ୍କ ପୃଷ୍ଠପୋଷକ ଲାଭ କରିଥିଲେ । ଚନ୍ଦ୍ରକୋଣାର ଗଙ୍ଗା ବିଷ୍ଣୁ ବନ୍ଦୋପାଧ୍ୟାୟ କାଶ୍ମୀର ନିମକ ମାହାଲର ଦେଓ୍ୱାନ ଥିଲେ । ସେ ଜଣେ ପଖୱାଜ ବାଦକ ଓ ଧ୍ରୁପଦ ଗାୟକ ଭାବରେ ପ୍ରସିଦ୍ଧ ଥିଲେ । ପ୍ରତାପଧର ସଙ୍ଗୀତଜ୍ଞ କ୍ଷେତ୍ରମୋହନ ସଙ୍ଗୀତ ଶାସ୍ତ୍ରରେ ସର୍ବଭାରତୀୟ ପ୍ରଖ୍ୟାତ ଅର୍ଜନ କରିଥିଲେ । ମହିଷା ଦଳର ଗର୍ଗ ପରିବାର ଓ ପଟାଶପୁରର ଜମିଦାର ପରିବାର ସଙ୍ଗୀତ ଚର୍ଚ୍ଚାର ପୋଷକତା କରିଥିଲେ ।

ମେଦନୀପୁର ସହରରେ ବଙ୍ଗାବ୍ଦ ୧୨୮୪ ସାଲରେ ଚଣ୍ଡୀସ୍ୱାମୀର-ସାଇର ରାମ-ଗୋବିନ୍ଦ ନନ୍ଦୀଙ୍କ ଘରେ ପ୍ରଥମ ନାଟକ ଅନୁଷ୍ଠିତ ହୁଏ । ପରବର୍ତ୍ତୀ ସମୟରେ କେତେକ ଅସ୍ଥାୟୀ ନାଟକ ମଞ୍ଚସ୍ଥ ହୋଇଥିଲେ ହେଁ ୧୨୮୯ ସାଲରେ ରଙ୍ଗମଞ୍ଚ ସହ ନାଟ୍ୟ ସମ୍ପ୍ରଦାୟ ଗଠନର ପ୍ରଚେଷ୍ଟା ଆରମ୍ଭ ହୁଏ । କଲାଇକୁଣ୍ଡା ଗଡ଼ରେ 'ହିନ୍ଦୁ ଥିଏଟର' ହେଉଛି ପ୍ରଥମ ସ୍ଥାୟୀ ନାଟ୍ୟ ସଂସ୍ଥା । ସର୍ବସାଧାରଣରେ ଏହା 'ଗୋପାଳ ମାଇତିର ଥିଏଟର' ନାମରେ ପରିଚିତ ଥିଲା । ପରେ ନିଉ ବେଙ୍ଗଲ ଥିଏଟର, ଡାୟମଣ୍ଡ ଜୁବେଲିର ଥିଏଟର, ବାନ୍ଧବ ନାଟ୍ୟ ସମାଜ, ଫ୍ରେଣ୍ଡସ୍ ଇଉନିଅନ ଡ୍ରାମାଟିକ କ୍ଳବ୍, ସାନା ଥିଏଟର, ମେଦନୀପୁର ସାହିତ୍ୟ ପରିଷଦ ଦ୍ୱାରା ଗଠିତ ନାଟ୍ୟ ସମ୍ପ୍ରଦାୟ ଓ ମେଦନୀପୁର ନାଟ୍ୟ ପରିଷଦ ପ୍ରଭୃତି ଉଲ୍ଲେଖଯୋଗ୍ୟ ନାଟ୍ୟ ଅନୁଷ୍ଠାନ । ଏଥିରୁ ଅଧିକାଂଶ ବର୍ତ୍ତମାନ ଅବଲୁପ୍ତ ।

ଆଗରୁ ନାଟକରେ ନାରୀ ଭୂମିକାରେ ପୁରୁଷମାନେ ଅଭିନୟ କରୁଥିଲେ । କିନ୍ତୁ, ଗୋପାଳ ମାଇତି ଥିଏଟରରେ ପ୍ରଥମରୁ ନାରୀ ଚରିତ୍ରରେ ନାରୀ ଅଭିନୟ କରିଛନ୍ତି । ବିଖ୍ୟାତ କୀର୍ତ୍ତନ ଗାୟିକା ଶ୍ରୀମତୀ ରାଜଲକ୍ଷ୍ମୀ ଦେବୀ ଏ ନାଟ୍ୟ ସଂସ୍ଥାରେ ସଫଳ ଅଭିନୟ କରିଛନ୍ତି । ପରବର୍ତ୍ତୀ ସମୟରେ ନାରୀ ଭୂମିକାରେ ନାରୀମାନେ ହିଁ ଅଭିନୟ କରି ପାରଦର୍ଶିତା ଲାଭ କରିଛନ୍ତି ।

ମେଦନୀପୁର ସହରରେ ଶ୍ରୀ ବଙ୍କିମ ବିହାରୀ ପାଲ ନାରୀମାନଙ୍କୁ ନେଇ 'ନାରୀ ଥିଏଟର' ନାମରେ ଏକ ନାରୀ ସଂସ୍ଥା ଗଠନ କରିଥିଲେ ।

ବିଂଶ ଶତାବ୍ଦୀର ମଧ୍ୟବର୍ତ୍ତୀ ସମୟକୁ ମେଦନୀପୁର ଓ ଝାଡ଼ଗ୍ରାମ ବ୍ୟତୀତ ଅନ୍ୟ ମହକୁମାର କେତେକ ସ୍ଥାନରେ ଅନେକ ନାଟ୍ୟ ସଂସ୍ଥା ଗଠିତ ହୋଇଥିଲା । ତନ୍ମଧ୍ୟରୁ କୃଷ୍ଟି ସଂସଦ (ମେଦନୀପୁର), ବ୍ରାଇଟ୍ ଫିଉଚର (ତମଲୁକ), ମଶାଲ (ଖଡ଼ଗପୁର), ଝାଡ଼ଗ୍ରାମ ରଘୁନାଥ ମେମୋରିୟାଲ କ୍ଳାବ, ରଘୁନାଥ ସ୍ମୃତି ମନ୍ଦିର (ଝାଡ଼ଗ୍ରାମ) ପ୍ରଭୃତି ଉଲ୍ଲେଖ ଯୋଗ୍ୟ ।

Digitized by srujanika@gmail.com

ମେଦିନୀପୁରର ପ୍ରାଚୀନ ନାଟ୍ୟକାର ସ୍ୱର୍ଗତ ଗୋଲକ ଚନ୍ଦ୍ର ବସୁ, ଓସମାନ ଆଲି, ଭୁବନ ଚନ୍ଦ୍ର ମହାପାତ୍ର, ସୁରେଶଚନ୍ଦ୍ର ଗୁପ୍ତ, ଶରତ୍ଚନ୍ଦ୍ର ପାଲ ଓ ବଙ୍କିମବିହାରୀ ପାଲ ଉଲ୍ଲେଖ ଯୋଗ୍ୟ । ଆଧୁନିକ କାଳରେ ଏ ଜିଲ୍ଲାର ଅନେକ ନାଟ୍ୟକାର ନାଟକ ଲେଖାରେ ବ୍ରତୀ । ମେଦିନୀ ପୁରରେ ଶ୍ରୀ ସମରେଶଚନ୍ଦ୍ର ରୁଦ୍ର ପ୍ରଥମ ଏକାଙ୍କ ନାଟକ ଲେଖିଥିବାର ଜଣାଯାଏ ।

ଆଲୋଚ୍ୟ ଅଞ୍ଚଳର ପୂର୍ବୋକ୍ତ ତିନିଗୋଟି ସହରରେ ସୃଷ୍ଟି ନାଟ୍ୟ ଆନ୍ଦୋଳନ ଧାରା ମୁଖ୍ୟତଃ ଦୁଇଭାଗରେ ବିଭକ୍ତ ହୋଇ ଥିବାର ପରିଲକ୍ଷିତ ହୁଏ । ପ୍ରଥମତଃ ରାଜା ଓ ଜମିଦାର—ଧନୀ ଶ୍ରେଣୀର ପୃଷ୍ଠପୋଷକତାରେ ରଚିତ ନାଟକ ଓ ଗଠିତ ନାଟ୍ୟ ସଂସ୍ଥା, ଦ୍ୱିତୀୟତଃ ପ୍ରତିଭାବନ୍ତ ଅଭିନେତା—ନାଟ୍ୟକାର ମାନଙ୍କ ନିଜସ୍ୱ ଉଦ୍ୟମରେ ରଚିତ ନାଟକ ଓ ଗଠିତ ନାଟ୍ୟସଂସ୍ଥା ।

ସାମ୍ପ୍ରତିକ କାଳରେ ମେଦିନୀପୁର, ବାରିପଦା ଓ ବାଲେଶ୍ୱର ସହରରେ ନବ ନାଟ୍ୟ ଆନ୍ଦୋଳନ ଧାରାରେ କେତେକ ନାଟ୍ୟ ସଂସ୍ଥା ଅନେକ ସମ୍ଭାବନା ନେଇ ଗଠିତ ହୋଇଛି । ତନ୍ମଧ୍ୟରେ ମଞ୍ଚସ୍ଥ ଅନେକ ସଫଳ ନାଟକ ରଚିତ ହେବା ସଙ୍ଗେ ସଙ୍ଗେ ବହୁ ପ୍ରତିଭାବାନ ଅଭିନେତା, ନାଟ୍ୟ ଶିଳ୍ପୀ ସେମାନଙ୍କ ଉଜ୍ଜ୍ୱଳ ଭବିଷ୍ୟତ ନିମନ୍ତେ ପ୍ରତିଶ୍ରୁତି ଦିଅ । ରଙ୍ଗ ମଞ୍ଚ ସହିତ ଜଡ଼ିତ ଅନେକ ନାଟ୍ୟକାରଙ୍କ କାହାଣୀ ଚଳଚିତ୍ର ରୂପ ଗ୍ରହଣ କରିବା ସାଙ୍ଗକୁ ରଙ୍ଗମଞ୍ଚରୁ ସୃଷ୍ଟ ବହୁ ଅଭିନେତା ଚଳଚିତ୍ରର ରୂପେଲି ପରଦାରେ ସଫଳତା ଲାଭ କରିଛନ୍ତି ।



Digitized by srujanika@gmail.com

## କାନ୍ଦଣା ଗୀତ :

(୧) ବାବା ଗୋ — ସୀତା ଠାକୁରାଣୀ ବନସ୍ତେ ଉଭା
,, — ଯେ ଡାଳ ଧରନେ ସେ ଡାଳ ଶୋଭା
,, — କଞ୍ଚନ ଆଳର ଟିକ ଚନ୍ଦନ
,, — ସେ ଘର କଥାତ କଟୁ ବଚନ
,, — ଭାଟିଆ ପାଖରେ ଲେବୁ ଆରାର
,, — ସେ ଘରେ ନାହିଁ ତ ବନ୍ଧୁ ବରାର
,, — ଗଛକୁ ଚାହିଁନେ ପତର ଟକା
,, — କେଉଁ ବନସ୍ତରେ ବାନ୍ଧଲ ଏକା ।

ମାଆ ଗୋ — କୁଆ ଉଡ଼ିଗଲା ନାଗିଲା ପର
,, — ସେ ଘରେ ନାହିଁତ ବନ୍ଧୁ ବେଭର
,, — ଡାଲ୍ ହାଣ୍ଡିର ଯେ ନାଲ୍ ପାଉଁଶ
,, — ସେ ଘର କଥାତ ଜହର ବିଷ
,, — ଉଠିଲା ସୁଆସ୍ତ ବସିଲା ନାହିଁ
,, — ଘୃଣ ଚାହିଁବାକୁ ଦୁଣିଲା ନାହିଁ
,, — ଚେକା ଗୁଟି ନେକ ଘାଇ ଭୁଞ୍ଜିବ
,, — ପର ଘରର ଙ୍କ ମନ ରହିବ ।

ମାମା ଗୋ — କୋଇଲି ରାବୁଛୁ କରଞ୍ଜ ଡାଳେ
,, — ଯାମେ ରାବୁଥିବା ରୁପାର ଶାଳେ
,, — କଦଳୀ ଗଛରେ ନାଗିଲା ମୂଷା
,, — ଭଇ ବାପରକୁ ରହିଲା ଆଶା ।

କାକା ଗୋ — ଦଣ୍ଡଆ ମଝିରେ କଇଁତ ଗଛ
ସେ ଫୁଲ ଫୁଟିବ ଚଇତ ମାସ ।

(ମେଦିନୀପୁର-ରାମନଗର ଥାନାରେ ପ୍ରଚଳିତ)

Memorandom : Submitted to the state Re-organisation Committee, Demanding the out-lying ORIYA Tractsରୁ ସଂଗୃହୀତ ।

Digitized by srujanika@gmail.com

(୨) ନଈର ପାଣିକି ନାଲେ ଧାଉଁଛୁ — ମୋ ଭାଇ
କଲିକତା କମଳା ଡାଲେ ଧରିଛୁ ,,
କଲିକତା କମଳା ଲେମ୍ବୁ ଆଙ୍ଗୁର ,,
ଗୁପତେ ଗୁପତେ କଲ ବିଚାର ,,
ଗୁପତର କଥା ଜାଣି ଥାଆନ୍ତି ,,
ପାନ ବଲି ବିଷ ଖାଇ ଥାଆନ୍ତି ,,
ଅଗ୍ନି କୁଣ୍ଡେ ଝାସ ଦେଇ ଥାଆନ୍ତି ,,
ଜଳ ସଙ୍ଗେ ମେଳ ହୋଇ ଥାଆନ୍ତି ,,
ଋଷି ଶୋଇଛନ୍ତି ସବଜ ଘରେ ,,
ଅଗ୍ନି ଢାଳି ଦେବେ ମୋର ଦେହରେ ,,
ଅଗ୍ନି ଯେତେ ବେଳେ ଶଳା ହୋଇବ ,,
ରାତି ବାରଟାରେ ମୋ ପ୍ରାଣ ଯିବ ;;
ଦିନ ଦଶଟାରେ ଚିଠି ଆସିବ ,,
ସେହି ଚିଠି ବାପା ହସ୍ତକୁ ନେବେ ,,
ବାପା ଶୁଣି ମୋର କାତର ହେବେ ,,
ମାତା ଶୁଣି ମୋର ମଥା କଚୁଡ଼ି ଦେବେ ,,
ସୁଜ୍ନା ଗଛରେ ସୁଜ୍ନା ଛୁଇଁ ,,
ଯମଙ୍କ ହସ୍ତରେ ଯାଉଛୁ ମୁଁ ହିଁ ,,
ମୋର ପାଇଁ ଚିନ୍ତା କରିବ ନାହିଁ ,,
ମୋର ପାଇଁ ଚିନ୍ତା ଯଦ କରିବ ,,
ସୁପ୍ରିମ କୋର୍ଟ୍‌ରେ ଦରଖାସ୍ତ ଦେବ ,,
ହାଇକୋର୍ଟରେ ଯାଇ ମୋତେ ଦେଖିବ ,,
ମୁଁତ ସହି ନାହିଁ ପତର ଭାର ,,
କିପରି ସହିବ ପଥର ଭାର ,,
ଏବେ ସବୁ ସୁଖ ସରିଣ ଗଲା ,,
ଜାଣିବ ତୋ ସାନ ଭଉଣୀ ମଲା ,,

(୩) ଦଶରଥ ରାଜା କରିଲେ ସତ୍ୟ — ମୋ ମାମୁଁ
ବନକୁ ପେଶିଲେ ସେ ଯୋଗ୍ୟ ପୁତ୍ର ,,
ସେହିପରି ତୁମେ ସତ୍ୟ କରିଲ ,,
ଅଜଣା ରାଇଜେ ମୋତେ ଛାଡ଼ିଲ ;;
ସ୍ନାନ ଦାନ କଲ ପଞ୍ଚୁ କୋଠିରେ ,,
ଝିଅ ଦାନ କଲ କଂସେଇ ଘରେ ,,

Digitized by srujanika@gmail.com

(୪) ମୁଁ ଯେତେ ବେଳେ ହେଲି ଜନମ   ମୋ ଯାଉସୀ
ବାପା ପଚାରଲେ କସ ଜନମ ,,
ଆଈମା କହିଲେ ଝିଅ ଜନମ ,,
ବାପା ଯା କହିଲେ ମୋ କର୍ମହୀନ ,,
ମାତା ସେତେ ବେଳେ ରାଗିଣ ଗଲେ ,,
ପଶ୍ଚିମ ଆଡ଼କୁ ମୁଖ କରଲେ ,,
ସ୍ତନ ଖର୍ଙ୍କି ଖିର ନାହିଁ ତ ଦେଲେ ,,
ଆଈ ମାଆଙ୍କର ଶରଧା ହେଲା ,,
ମା'ଙ୍କୁ ବୁଝାଇ କରି କହିଲା ,,
ନିଜର ମନକୁ ମା ବୁଝିଲେ ,,
ମାଉସୀ ସ୍ତନ ଖର୍ଙ୍କି କ୍ଷୀର କୋଳକୁ ନେଲେ ,,

## ଶିଶୁ ଗୀତ :

(୧) ଚୁଇଁ କ ଚୁଇଁ ଚଟିଆ ମୂଷା
ଯାଉ ବୋଉକ ହପା ମୂଷା ।
ତେର ବୋଉକ ହରଡ଼ ଯାଉ
ଉତ୍ତର ସାହିକୁ ଯାଇତେ ନାହିଁ ।
ଉତ୍ତର ସାହିର ଘୁଞ୍ଚି କବାଟ
କାଲି ଗୋଷ୍ଠୀ କରିଛୁ ନାଟ ।
କାଲି ପିନ୍ଧିଚ ମୁଗୁନି ପାଟ
ଗୋଷ୍ଠୀ ପିନ୍ଧିଚ ସରୁ ଅଳତା ।
ଚାଇଁ କ ଚାଇଁ ବଜେଇଲା, କଳସୀ ବାଡ଼ର ହଜେଇଲା
ଆରେ ମିତ, ଦଳେଇ କଡର ଯାଇ କହିତ ।
ଦଳେଇ ଆସିଲା ଧାଇଁ,
ଦଳା ଦେଇ ଟକେଇ ଦେଲା ଚହଟ କନିଆଁ କାହିଁ ।
ଚହଟ କନିଆଁ ଚୂଲି ଜାଳୁଚ, ଚୂଲି ଜଳୁ ନାହିଁ
ଭାତ ଫୁଟୁ ନାହିଁ ।

(ବାଣିଦା, ଜଳେଶ୍ୱର, ବାଲେଶ୍ୱର)

Digitized by srujanika@gmail.com

(୨) ରଙ୍ଗ ଲୋ ରଙ୍ଗ
କଦଳୀ ବାଡ଼କୁ ଯିବୁ କାହିଁକି
କଳା କୁମୁଟିଆ ବସିଥିବଟି
କୁଳରେ ବସାଇ ବାହା ହବଟି
ମା' ଦେବ ଶଙ୍ଖା ଶାଢ଼ୀ
ବାପା ଦେବେ ଝୁଣ୍ଟିଆ, ଆହୁରି ରଙ୍ଗ
ରଡ଼ କରୁଚ ଗୋଡ଼କୁ ନେବ ଝୁଣ୍ଟିଆ ।

(୩) ମେଘ ଆସିଲାଣି ଦୁମୁ ଦୁମୁ କ ଲୋ
ଦୁମୁକା ପୋଖରୀ ତେଇଁ
ରାଣୀ ପଠାଇଛନ୍ତି ସବାରୀ ପାଇଁ ଲୋ
ଆମର ସବାରୀ ନାହିଁ
ଆମର ସବାରୀ ଦରବାରିଆ ଲୋ
ଯାଉଛୁ କଟକ କେଇଁ
କଟକ ଭିତରେ ସୁନୁ ସୁନାଆଁ ଲୋ
ବରଜ ଭିତରେ ପାନ
ପାନ ଖାଇ ଛେପ ପକାଇ ଦେଲି ଲୋ
ଚନ୍ଦନ ଯାଉଛି ବନ
ଚନ୍ଦନ କାଠକୁ ଗୁଲରେ ମାରିଲି
ଗୁଲେ ଗୁଲେ ମହକିଲା
ଶିବ ଦେଉଳକୁ ମୁଣ୍ଡିଆ ମାରିଲି
କାନ୍ତ ଆସି ପହଞ୍ଚିଲା ।

(୪) ଆସ ଆସ କଜଳ ପାତି ଗାଈ ମୁଣିତେ ଯିବା
ମା' ବାପା ଗାଈ ଦେନେ ଫୁଲ ତୋଳି ଯିବା
ଦେଉଳ ଗୁରିପାଖେ କଉଡ଼ି ବୁଣିବା
କଟ କଉଡ଼ି ବୁଣିସାରି ବଉ ଆଣି ଯିବା
ବଉ ହାତରେ ଝୁମୁରି ଶଙ୍ଖା ଝୁମୁ ଝୁମୁ ବାଜେ
ବର ବେକର ଚକ ଚକ ପଇତା
ଦୂର ବାଟକୁ ଦିଶେ ।

(୫) କୋଟା, ତେଲପଡ଼ା, ଗିଡ଼ି କ ଗିଡ଼ି
ମଦନା ଯାଇଛି ବାଗୁଡ଼ି ଖେଳି

Digitized by srujanika@gmail.com

ବାଗୁଡ଼ ଖେଳରୁ ଆସିଲା ଧାଇଁ
ହାଣ୍ଡିରେ ଦେଖିଲା ପଖାଳ ନାହିଁ
ଥାଳରେ ଦେଖିଲା ଶୁଖୁଆଁ ନାହିଁ
ଆଜ ଗୁରୁବାର ଜଳବ ନାହିଁ ।



## ପିଲା ଶୁଆଇବା ଗୀତ

ଆଇ ଆଇରେ ନଦ ମାଉସୀ
ନଦ ଦେଇଯିବୁ ଦୋଳରେ ବସି
କୁନା ଶାଶୁଘର କେନ୍ଦ୍ରାପଡ଼ା
ଆମ କୁନା ବାବୁ ଚଢ଼ିବ ଘୋଡ଼ା
ହାତୀ ଝୁଲୁ ଝୁଲୁ ଆଇଲା ବନ
ହାତୀ ଖାଇଗଲା ପାକଲା ପାନ
ହାତୀ ଗୁଲଗଲା ଉଳମାଳକୁ
ଘଣ୍ଟି ଶୁଭିଗଲା କୁନା କାନକୁ
ହାତୀ ମଥାର ଯେ ସିନ୍ଦୂର ଗାର
ହାତୀ ଖାଇଗଲା ପାନ ପତର
କୁନା ଶାଶୁଘର ଗଡ଼ମନ୍ଦାର
କୁନା ଭାତ ଖାବ ସୁନା ଥାଳର
ହାତୀ ମଥାର ଯେ ମନ୍ଦାର ଫୁଲ
କୁନା ଆମ ହେବ ରାଜାର ଭୁଲ
କୁନା ଶାଶୁଘର ନଡ଼ା ଛପର
କୁନା ବାହାହବ ରାଜାର ଘର
କୁନା ଶାଶୁ ବଡ଼ ଓଲ ଖୁଣ୍ଟୁଣୀ
କଳି କରୁଥିବ ଲୁଗା ପକାଇ
କୁନା ଶାଶୁ ବଡ଼ ପାନ ରଙ୍କୁଣୀ
ମଣ୍ଡା କାଟୁଥିବ ପନକ ଧରି
ଆଇ ଆଇରେ ନଦ ମାଉସୀ
ନଦ ଦେଇଯିବୁ ଦୋଳରେ ବସି ।

(ବାଣିଦା, ଜଳେଶ୍ୱର, ବାଲେଶ୍ୱର)

Digitized by srujanika@gmail.com

(୨) ଆଇ ଆଇରେ କଜଳପାଢ଼ ଶାଢ଼ୀ ମଣିତେ ଯିବା···
ମାଆ ବାପା ଗାଳଦେବେ ଯୁଗୀ ଭେଶ ହେବା
ଶୁଷ କନେ ପିଇବା କଷନା କାଆଁସି ଗଡ଼ିଆ ଜଲ
ଭୁକ ଲଗିନେ ଖାଇବା କଷନା ଅଷାଢ଼ିଆ ଫଲ
ନିଦ ଲଗିନେ ଶୁଇବା କେଠି, ଗାଈ ପେଟ ତଳେ
ଶୀତ କନେ ଘୁଡ଼ିବା କସନା ଗଛଆ ବକଳ
ଆଇ ଆଇରେ କଜଳପାଢ଼ ଶାଢ଼ୀ ମଣିତେ ଯିବା··· । (ବାଣିଦା)

(୩) ଆଇ ଆଇରେ ନିଦ ମାଉସୀ
ନିଦ ଦେଇଯିବୁ ଛୁଆକୁ ବସି
ଛୁଆ ଶାଶୁଘର ହିଦମଉଦ
ଛୁଆ ନେଇଯିବ ନାଲ ପିଆଜ
ଛୁଆ ଶାଶୁଘର କେନ୍ଦଡ଼ା ବାଡ଼
ବାଜା ବାଜଯିବ ଧାଡ଼କ ଧାଡ଼
ଛୁଆ ଶାଶୁଘର ଆଲ ମାଲର
ଛୁଆ ନେଇଯିବ ଗୁଆ ଖଇର ।

(୪) ଆଇ ଆଇରେ ନିଦ ମାଉସୀ
ନିଦ ଦେଇଯିବୁ କୋଡ଼ରେ ବସି
ଛୁଆ ଶାଶୁଘର ଶାହାଡ଼ା ପଡ଼ା
ଛୁଆକୁ ଦବା ନାଲଆ ଛଡ଼ା
ଛୁଆ ଶାଶୁଘର ହିଦ ମଉଜ
ଛୁଆକୁ ଦବା ନାଲ ବଲଦ
ଛୁଆ ଶାଶୁଚର ଓଡ଼ିଆ ପଡ଼ା
ଛୁଆ ନେଇଯିବ ଉଝୁଡ଼ା ଚୁଡ଼ା ।

(ବର୍ଦ୍ଧିଟ୍ଟ, ଦାନ୍ତନ, ମେଦନୀପୁର)

(୫) ଆଇ ଆଇରେ ନିଦ ମାଉସୀ
ନିଦ ଦେଇଯିବୁ ଛୁଆକୁ ବସି
ଛୁଆ ଶାଶୁଘର ସୁନ୍ଦରଗଡ
ଛୁଆ ମଥାରେ ଯେ ହାତ ଜଲ ଢ଼ାଲବ

Digitized by srujanika@gmail.com

ହାଣ୍ଡି ମଥାର ଯେ ସିନ୍ଦୂର ଟୀକା
ସମସ୍ତେ ଦେଖିବେ କୋଡ଼ିବେ ମଥା
ହାଣ୍ଡି ମଥାର ଯେ ମନ୍ଦାର ଫୁଲ
ହାଣ୍ଡି ଗୃଲିଗଲା ମହନପୁର
ହାଣ୍ଡି ଗୃଲିଗଲା ରେବଣା ବାଟେ
ଛୁଆ ମଥା ବାନ୍ଧି ଅଜଣ ଡଟେ
ବନସ୍ତରେ ହାଣ୍ଡି କପଣ ଭୁହେ
ତୋତେ ଗୁଡ଼ ଧନ ନବା କେମନ୍ତେ
ବନସ୍ତରେ ହାଣ୍ଡି ଖାଇଲା କଷ୍ଟ
ଲୁଘ ପାଖରେ ଯେ ନ ଥିଲା ବଷ ।

(ଶାସନ, ପାଉଁଶକୂଲ, ବାଲେଶ୍ୱର)

●

# ଦୋଳ ଗୀତ

(୧) କବାଟର ଦୁଇ କାନ୍ଧ
ତୋ ଦେହ ଛୁଇଁଲେ ପାତଲି ଲ
ମୋ ଦେହ ହାନ୍ଧ
ବାଜସିବ ଲୁଗା କାନ୍ଧ ।

(୨) ଦାଣ୍ଡେ ଦାଣ୍ଡେ ଗଲା ହଂସ,
ମତେ ଦେଖି ପାତଲିଲ
କ ନାଗି ହସ
ନାଗିସିବ ଢଣ ଦୋଷ ।

(୩) ତେନ୍ତୁଳି କାଟିଲି ଟିଆ
ପଧାନ ଘରର ଖଡା ମୂଲିଆ
ଖଇଭୁଜା ଜଳଖିଆ ।

(୪) ଉଇ ମାଟି ଝର ଝର
ପଧାନ ପିଣ୍ଡାରେ ପଣେ ମଜୁର
ଗୃବ କାଠି ନେଲା ଚୂର । (ଦ୍ରେର)

Digitized by srujanika@gmail.com

(୫) ପୁରୁଷ :—କୋଳ ଜନ୍ମ କେଉଁଠାରେ କଏ ବା ଲେଖିଲା କେଉଁ ପ୍ରକାରେ
ବୃତ୍ତାନ୍ତ ଖୋଲି କହ ମୋ ଆଗରେ ।
ସ୍ତ୍ରୀ :—ଦ୍ୱାପରେ ଯେବେ କହ୍ନାଇ ଶିଆଳ ଲଟାରେ ଖେଳିଲେ ଯାଇ
ଖେଳିଲେ ଯାଇ
ସେହିଠାରୁ ଦୋଳି ।
ପୁରୁଷ :—ଖେଡ଼ଆର ଦୁଇ କାନ ଶିଆଳି ଲଟାରେ ଦୋଳି ଜନମ
ଦୋଳି ଜନମରେ
ଭଗବାନ ଦେଲେ ନାମ ।
ସ୍ତ୍ରୀ :—ବାହାରେ ରଙ୍ଗି ପିଆଜ ବରଷକୁ ଥରେ ରଜ ପରବ
ରଜ ପରବରେ
ମେଦନ କେଡ଼େ ମଉଜ ।
(ଧରମପୁର, ମୟୂରଭଞ୍ଜ)

## ଚଇତ ପରବ ଗୀତ : (ଭକ୍ତଗୀତା)

(୧) ଚଇ ଦେନ ଚଗ୍ ବତା, ଚଇ ଦେନ ଚଗ୍ ବତା
ମହାଦେବଙ୍କର ତେର ଭଗତା
ଆଉ ତଳେ ବନ୍ଦେ ବାସୁମଥା (ବାସୁମାତା) ।
(୨) କାଳ ଗାଈ ତଳପେଟ, କାଳ ଗାଈ ତଳପେଟ
ଛଅ ମାସ ଜଗିଲି ଗାଧୁଆ ଘାଟ, ଶଙ୍କର ହେ
କେବେ ନ ପାଇଲି ଭେଟ ।
(୩) କାଳ ଗାଈ ଛୁଟାଇଲା, କାଳ ଗାଈ ଛୁଟାଇଲା,
ଭଗତା ଭାଇକ ଝୁଲି ମାଇଲା
ଆଉ ପାନଖିଲ ବଖାଇଲା ।
(୪) ଅସନ ପତର ଚକ, ଅସନ ପତର ଚକ
ଘଇତା ମାଇପ ପଗ୍ୱରୁଛନ୍ତ
ଖାଇ ଢୋଲି ଆରେ, ଉଡ଼ା କେତେ ଦନ ଅଛୁ ।
(୫) ଧବଳ କୁକୁଡ଼ା ଚଆଁ
ଶନବାର ଦନରେ ହବ ଉଡ଼ା, ଖାଇ ଢୋଲିଆରେ
ଗ୍ୱଲଯିବ ଯୁବୁକା ମେଳା ।
(କୋପ୍ତା, ମୟୂରଭଞ୍ଜ)

—*—

Digitized by srujanika@gmail.com

## କର୍ମଗୀତ : (ବଲବଛା ଗୀତ)

(୧) ବଲବାଛୁ ଗଲ ହାତେ
ବଲବାଘ୍ର ଖାଇ ମନୁଷ୍ୟ କେତେ
ପସ୍ତର ନର୍ଭ୍ରୁଁ ତତେ ।

(୨) ବଲରେ ମାରଲ ରୁଳ (ଘାସ)
ତରଲଗି ଆଜ ମ ଘରେ କଲ
କେନେ ଆସୁ ଘଲ ଘଲ (ଘଡ଼ୁ ଘଡ଼ୁ) ।

(୩) ତଲା ମାର ଗଲ ଘରେ
ତଲାର ଭିତରେ ପଇସା ଅଣେ
ଯାଚୁଥିଲ ମୋତେ ଜଣେ ।

(୪) ବଲରେ ମାରଲ ମନ୍ଥ
ଶିବ ଗୁଲଗଲେ
ନଙ୍ଗଲା ହୋଇ
ପାର୍ବତୀ ରହିଲେ ଗୁହିଁ ।

(୫) ସଣଗଲ ବଲିକାମ
ନେଖି ରଖିଥିବ ମହନ୍ତ ନାମ
କାଲେ ନେଇଯିବ ଯମ ।

(ଧରମପୁର, ମୟୂରଭଞ୍ଜ)।

—※—

## ଜଗାଳିଆ ଗୀତ : (କମଗୀତ)

(୧) ଗାଈ ଗଲ ନାଲୋ ନାଲୋ
କୃଷ୍ଣ ବସିଛନ୍ତି କଦମ୍ବ ଡ଼ାଳେ (କୃଷ୍ଣ)
ବାଁଶିଟି ପଡ଼ିଲା ତଳେ ।

(୨) ଗାଈ ଗଲ ନାଲୋ ନାଲେ
ରାଧିକା ଆସୁଛି ସଖିର ଦଳେ
ବାଁଶିଟି ଟେକିବ ବଳେ ।

Digitized by srujanika@gmail.com

(୩) ଗାଈକୁ ମାରନ ଗ୍ରଟେ
ଗାଈ ଚାଲଗଲ
ଉଦୁଲା ବାଟେ
ବାଗ୍‌ଲଆ ବସିଛୁ ଥାଟେ ।

(୪) ଶିଆଳ ଢେ଼ଉଁଲ୍ ନାଳ
ଏତେ ବଡ଼ ଟୋକା ଗାଈ ବଗାଳ,
ଗାଈକୁ ଦେଲ ଖୁଆଡ଼ ।

(୫) ଗାଈ ଗ୍ରୁଡ଼ି ଦଅ ଚରୁ
କଞ୍ଚ ଗ୍ରୁଡ଼ି ଦଅ ପାଦରେ ପଡୁ
ମଲ୍ଲି ଫୁଲ ଝଡ଼ି ପଡ଼ୁ ।

(ଧରମପୁର, ମୟୂରଭଞ୍ଜ)

—*—

## ହଳୁଆ ଗୀତ : (କର୍ମଗୀତ)

(୧) ହଳୁଆ ହଳ କରଲ,
ହଳୁଆ ମଥାରେ କ ଫୁଲ ଥଲ
ଗଟା ବଲ ମହକଲ ।

(୨) ହଳ କର ଗନ ପଟେ
ନାଗେଶ୍ୱର ଫୁଲ ଫୁଟିଛୁ ଗଟେ
ପାତଳ ଗାଧୁଆ ଘାଟେ ।

(୩) କେନ୍ଦୁ ବୁଦା ତଳେ ଗାତ
ହଳୁଆ ଖାଉଚ ବେଳାଏ ଭାତ
ବାହୁଣୀ ମାରଲା ହାତ ।

(୪) ଗହିର ବିଲର ହଳ
ତତେ କଏ ଦେଲା ଏ ରଙ୍ଗ ମାଳ
ବୁଡ଼ାଇଲୁ ଜାତ କୁଳ ।

(୫) ହଳ କନ୍ନ ଆଡ଼େ ବାଙ୍କେ
ହଳିଆ ଭାଇ ତ ମୂଲ କେତେ,
ହିସାବ ଦେଇଯା ମତେ ।

(ଧରମପୁର, ମୟୂରଭଞ୍ଜ)

—*—

Digitized by srujanika@gmail.com

## ଲୋକଗଳ୍ପ

# ଅରାନ୍ଧ

ପାଣ୍ଡବମାନଙ୍କର ତ ପାଞ୍ଚଭାଇ । ସେମାନଙ୍କ ଭିତରେ ଖୁବ ମେଳଥିଲା । ସମସ୍ତେ ବଡ଼ ଭାଇଙ୍କୁ ଗୁରୁ ରକମ ମାନୁଥିଲେ । ବଡ଼ଭାଇ ଯାହା କହିବେ ତାହା ସମସ୍ତେ ଆଗ ପଛ ବିଚାର ନକରି କରିବେ ।

ସେମାନେ ହେଲେ ରାଜାପୁଅ । ସେମାନଙ୍କର ବହୁତ ରାଣୀ ଥିଲେ । ଦ୍ରୁପଦୀ ହେଲେ ପାଟରାଣୀ । ସୁଭଦ୍ରାଙ୍କୁ ଅର୍ଜୁନ ବାହା ହୋଇଥିଲେ । ଭୀମ ବି ପାତାଳପୁରକୁ ଯାଇ ସେଠୁ ହିଡ଼ମ୍ବୀକୁ ବାହା ହୋଇଥିଲେ ।

ଥରେ ବହୁଦିନ ପରେ ହିଡ଼ମ୍ବୀ ଶ୍ୱଶୁର ଘରକୁ ଆସିଥିଲା । ସେତେବେଳକୁ କୌରବବଂଶ ମରିଗଲେଣି । ମା' କୁନ୍ତୀ ବୁଢ଼ୀ ହୋଇ ଗଲେଣି । ଆଖିକୁ ଆଉ ଭଲ ଦିଶୁନି ।

ଦ୍ରୁପଦୀ ପ୍ରତ୍ୟେକ ଦିନ ଭାତ ରାନ୍ଧୁ ଥାନ୍ତି । ସେ ଥିଲେ ଲକ୍ଷ୍ମୀ ହସ୍ତା । ସମସ୍ତେ ଖାଇ ସାରିଲା ପରେ ସେ ଖାଉଥିଲେ ।

ଦ୍ରୁପଦୀଙ୍କୁ ଅସୁଖ ବେସୁଖ ହେଲେ ସୁଭଦ୍ରା ଭାତ ରାନ୍ଧୁଥାନ୍ତି ।

ଥରେ ହିଡ଼ମ୍ବୀ କହିଲା, "ମୁଁ ଭାତ ରାନ୍ଧିବି ।" ଦୁରପଦି ହେଉ କି ତାକୁ ଇଶାଣକୁ ପଶିଉଥାନ୍ତି ନି । ସେ ରାଗିକି ଭୀମ ଆଗରେ କହିଲା ମୋତେ ଭାତ ରାନ୍ଧିବାକୁ ଚୁଲି ମୁଣ୍ଡକୁ ପଶିଉଚନ୍ତି ନି । ମୁଁ ଅସୁରୁଣୀ ବୋଲି ମ ହାତରୁ କେହି ଖାଇବେନି । ତୁମେ ଯଦି ମତେ ଘୃଣା କରୁଚ, ତେବେ ମତେ ବାହା ହୋଇଥିଲ କେନେ ? ଏକଥା କହିକି କାନ୍ଦିବାକୁ ଲାଗିଲା । ଶେଷରେ ଚିଡ଼ି ରାଗିକି ଘରେ କବାଟ କିଲି ଦେଇ ଶୋଇଲା । ମହାସମସ୍ୟା ହେଲା ।

ଭୀମଯାଇ ବଡ଼ଭାଇଙ୍କୁ ଏ କଥା କହିଲା । ପାଞ୍ଚଭାଇ ବିଚାର କଲେ, ଦ୍ରୁପଦି କହିଲେ, "ଇଶାଣ ଶାଳକୁ ତାକୁ ପଶେଇଲେ ହାଣ୍ଡି ମାରି ହବ, ମାଆ ତା ହାତରୁ ତ ଖାଇବେନି ।"

ଯୁଧିଷ୍ଠିର କଥାଟା ସମାଧାନ ନକରି ପାରି ସହଦେବଙ୍କୁ ପଚାରିଲେ । ସହଦେବ ମନ୍ତ୍ରୀ । ସବୁକଥା ଜାଣନ୍ତି, ହେଲେ ନ ପଚାରିଲେ କିଛି କହନ୍ତିନି ।

Digitized by srujanika@gmail.com

ସହଦେବ କହିଲେ 'ଭାଇ ଗୁଟେ ଉପାୟ ଅଛି ।' ଯେତେ ବହୁ ଅଛନ୍ତି, ପାଳି କରାଯାଉ । ପାଳି ଅନୁସାରେ ଯେଉଁଦିନ ହିଡ଼ିମ୍ବୀର ଭାଗ ପଡ଼ିବ, ତା ଆଗ ଦିନ ଭାତ ବେଶି ରାନ୍ଧି ପଖାଳ କରି ଦେଇଥିବେ । ତାର ପାଳି ଦିନ ଅରନ୍ଧା, ଅରାନ୍ଧରେ ଭାତ ରନ୍ଧା ଯାଏନି, ଚୂଲି ପୂଜା ହୁଏ ବୋଲି କହି ସେ ଦିନ ରନ୍ଧା ବନ୍ଦ କରାଯିବ ।"

କଥାଟା ସମସ୍ତଙ୍କ ମନକୁ ପାଇଲା । ପାଳି ଅନୁସାରେ ସମସ୍ତେ ରାନ୍ଧିଲେ ।

ହିଡ଼ିମ୍ବୀ ବି ଖୁସି ହେଲା, ତାର ପାଳି ପଡ଼ିବା ଦିନ, ସେ ସକାଳୁ ଉଠି ମୁହଁ ନ ଧୋଇ ସିଧା ହାଣ୍ଡିଶାଳକୁ ଗଲା ।

ତାକୁ କୁନ୍ତୀ କହିଲେ, "ଲୋ ମାଆ ଆଜିପରା ଅରାନ୍ଧ । ଆଜି ଭାତ ରନ୍ଧା ହେବନି । ସମସ୍ତେ ପଖାଳ ଖାଇବେ ।"

ହିଡ଼ମ୍ବୀ ଶୁଣି ମନ ଦୁଃଖରେ ଫେରି ଆସିଲା । ସେ ଦିନ ସମସ୍ତେ ପଖାଳ ଖାଇ ରହିଲେ । ଚୂଲି ଜଳାଗଲା ନାହିଁ ।

କିନ୍ତୁ ସବୁଦିନେ ତ ସମାନ ଯାଏ ନାହିଁ । ହିଡ଼ିମ୍ବୀର ପାଳି ପଡ଼ିବା ଦିନ ପଖାଳ ହୋଇ ଅରାନ୍ଧ ହେଉଥାଏ । ଏସବୁ ଚାଲାକି କଥା ହିଡ଼ିମ୍ବୀ ବୁଝି ପାରିଲା ।

ଦିନେ ହିଡ଼ିମ୍ବୀର ପାଳି ପଡ଼ିଥାଏ । ସେଦିନ ଅରନ୍ଧା ଥାଏ । ହିଡ଼ିମ୍ବୀ କହିଲା "ସେ ଅରାନ୍ଧ ଫରାନ୍ଧ ଛାଡ଼, ମୁଁ ଆଜି ରାନ୍ଧିବି ।" ସମସ୍ତେ ମନା କଲେ । ସେ କାହାର କଥା ମାନିଲା ନାହିଁ । ଓଲଟି ଦ୍ରୁପତୀ ଆଉ ସୁଭଦ୍ରାକୁ ପିଟି, ମାରି ଦାଉଡ଼ି ଆଣ୍ଠୁଡ଼ି ଦେଲା ।

ସେମାନେ ହିଡ଼ମ୍ବୀର ଭୟରେ ଘରଛାଡ଼ି ପଳାଇଲେ । ଏକଥା ପାଞ୍ଚଭାଇ ଶୁଣିଲେ । ହିଡ଼ିମ୍ବୀକୁ କଣ କରିବେ କିଛି ଠିକ୍ କରି ପାରିଲେ ନାହିଁ । ଶେଷରେ ଭୀମ କହିଲା, "ତାକୁ ମାରି ଘୁଞ୍ଚାଇ ଦବା ।"

ସବୁଭାଇ ଉଠି ପଡ଼ି ରାନ୍ଧଣା ଘରକୁ ପଶିଗଲେ । ରାନ୍ଧଣା ଘରେ ଯେ ଯାହା ପାଇଲା, କୁଲା, ଲୁଞ୍ଚୁଣୀ, ଝିଂଟାଡ଼ାଙ୍ଗ, ନଳଫୁଙ୍କା ସବୁଧରି ହିଡ଼ିମ୍ବୀକୁ ପିଟିବାକୁ ଲାଗିଲେ । ହିଡ଼ିମ୍ବୀ ମାଡ଼ଖାଇକରି ଭୟରେ ଘର ଛାଡ଼ି ପଳାଇଲା । ତାକୁ ପଛରେ ଗୋଡ଼ାଇ ଗୋଡ଼ାଇ ସମସ୍ତେ ବଣରେ ଛାଡ଼ିଦେଇ ଆସିଲେ ।

ତାପରେ ଯାଇ ଦ୍ରୁପଦୀ ଆଉ ସୁଭଦ୍ରା ଘରକୁ ଆସିଲେ । ସେଥି ପାଇଁ ଅରାନ୍ଧ ହେଲା । ଅରାନ୍ଧ ଦିନ ସଞ୍ଜବେଳକୁ ଝାଟେଇ ପାଟେଇ କୁଲା ଲୁଞ୍ଚୁଣୀ ଧରି ଘରର ମଳିଆ ନେଇ ବାହାରେ ପକାଇ ଦେବା ସମୟରେ କୁହନ୍ତି—

"ହିଡ଼ିମ୍ବୀ ଗଲେ ବଣକୁ
ଲକ୍ଷ୍ମୀ ଆଇଲେ କଣକୁ ।"

(ବାଣିଦା, ବାଲେଶ୍ୱର)

Digitized by srujanika@gmail.com

## କଣ୍ଢା କଥା :

ଡାହୁକ, କଣ୍ଢା ଆଉ କଜଲପାଠ ତିନ୍ ଜଣ ମଇତ । ଏ ରକମ୍ ମେଳ ଥିଲ ଯେ ସେମ୍ନେ ଗୁଟେ ପତ୍ରରେ ଖାନ୍ତ୍ । ଗୁଟେ ଜାଗାର୍ ସୁଅନ୍ତ୍ । ଏ ତିନ ଜଣଙ୍କ ଭିତରୁ ବାହାରେ ପର୍'ଆସ୍ନନ୍ । ସମସ୍ତେ ଗରିବ । ତିନ ଜଣଯାକ ସାଙ୍ଗ ହେଇ ଗଛ ମୂଳରେ ସୁଅନ୍ତ୍ । ମଣିଷ ମେନେ ଘର କରି ରହିବାର ଦେଖିକରି ସେମ୍ନେ ଗୁଟେ ଘର ତିଆର କରିବେ ବୋଲି ଠିକ୍ କଲେ । ଘର ପାଇଁ ସମସ୍ତେ କୁଟା, କାଠି, ଧାନ, ଗୁହାଳ ଜୁଗାଡ୍ କଲେ । କାହା ଘରୁ କିଏ କୁଟା ଆଣିଲାତ, କାହା ଖଳାରୁ କିଏ ଧାନ ଆଣିଲା, କିଏ କାହା ଢେଙ୍କିଶାଳରୁ ଗୁହଳ ଘିନି ଆଇଲା । ଆଉ କିଏ ବାଉଁଶ ଆଣିଲାତ, କିଏ ଦଉଡ଼ି ଆଣିଲା ।

ଏଇ ରକମ୍ ସମସ୍ତେ ଚେଷ୍ଟା କରି ବର୍ଷକ ପରେ ଗୁଟେ ଘର ଠିଆ କରି-ଦେଲେ । ଦେଇକରି ସେଥିର ତିନି ଜଣ ସାଙ୍ଗ ରହିଲେ ।

ତିନ ଜଣଙ୍କ ଭିତରୁ କଣ୍ଢା ବଡ଼ ଅଲସୁଆ । କିଛି କାମ କରେନି । ଏମ୍ନେ ଯଦି କିଛି କହିବେ ସିଏ ମୁହଁ ମାରି ବସି୍ ରହିବ । ସାଙ୍ଗ୍ର ରହିବାରୁ ତା'ର ପର୍କୃତି ଆହୁରି ବଢ଼ିଲା । ଖାଲି ଶୁଇଲା ।

ଏର୍କମ୍ କିଛି ଦିନ ଗ୍ଲାଗଲା, ଦିନ ଗ୍ଲା ଯାଉଥାଏ । ଦିନେ କଜଲପାଠ ଆଉ ଡାହୁକ ରାଗି କରି କଣ୍ଢାକୁ ଗାଳି ଦେଲେ । କଣ୍ଢା ସେଇଠୁ ଭାବିଲା "ଏମ୍ନେ ଟିକେ ମତେ ଶାନ୍ତିରେ ରହିବାକୁ ଦେବେନି । ସେମ୍ନେ ଗାଳି ଗୁଲଜ କଲେ ଏତାର ମୁହଁ ଶୁଖେଇ କି ଗୁମ୍ ମାରି ବସି ରହିଲା । କଜଲପାଠ ଆଉ ଡାହୁକ ଦିଜଣ ମିଶି ରାନ୍ଧିଲେ, ଖାଇଲେ, କଣ୍ଢା ସାଙ୍ଗ୍ର ଖାଇଲାନି । ତା' ପାଇଁ ଢାଙ୍କି କରି ରଖିଦେଲେ । ଦେଇକରି କଜଲପାଠ ଆଉ ଡାହୁକ କାମ କରିଗଲେ । କଣ୍ଢାକୁ ଡାକଲେ ! କଣ୍ଢା କହିଲା, ମୋ ଦେହ ଖରାପ ମୁଁ ଉଠି ପାରିବନି । ଏମ୍ନେ ଘରୁ ବାହାରି ଗଲା ପରେ କଣ୍ଢା ଉଠିଲା । ଘରର ସବୁଆଡ଼େ ବୁଲିଲା, ଦେଖିଲା । କଣ ମନକଲା, ଚୁଲିରୁ ନିଆଁ ଆଣିକରି ଘରେ ଲଗେଇ ଦେଲା । ଦେଇକରି ଦୂରକୁ ପଳାଇଲା ।

ନିଆଁ ଲାଗିକରି ଘର ହୁତ୍ ହୁତ୍ ଜଳିବାକୁ ଲାଗିଲା । ଦୂରରୁ ନିଆଁ ଦେଖିକି ଡାହୁକ ଓ କଜଲପାଠ ଘର ଆଡ଼କୁ ଦୌଡ଼ିଲେ । ସେତେବେଳକୁ ନିଆଁ ଘରର ଚୁଳି ଧରି ସାରିଲାନି । ଡାହୁକ ଦେଖିଲା ଆଉ ଉପାୟ୍ ନାହିଁ । ବାଡ଼ିକରେ ରହି କହିଲା, "କୁଡ଼ କୁଡ଼ ଟଙ୍କା ଖୁଆର ଖୁଆର" "ପାଣି ଛୁଞ୍ଚ୍ ଛୁଞ୍ଚ୍" କଜଲପାଠ ରଡ଼ି ଗ୍ରୁଡ଼ିଲା । ଏଠୁ ସେଠିକି ଉଡ଼ି ଉଡ଼ି କରି । ଶେଷରେ ଗୁମ୍ ମାରି ବସି ରହିଲା ଗୁଟେ ଜାଗାରେ ।

ଦୂରର ଦୂର କରିବାର ବସିକରି ମଜା ଦେଖୁଥାଏ କଣ୍ଢା । କହିଲା "ଖୁବ୍, ଖୁବ୍" ଭଲ ହେଇଛି, ଭଲ ହେଇଛି । ମୋତେ ଗାଳିଦିଅ ।"

(ବାଣିଦା, ବାଲେଶ୍ୱର)

Digitized by srujanika@gmail.com

( ଏହି କଥାଟିରେ ଲୋକ କଥାକାରଙ୍କର ପ୍ରକୃତ ପର୍ଯ୍ୟବେକ୍ଷଣ ଶକ୍ତି ଅସାଧାରଣ ରୂପେ ପ୍ରଦର୍ଶିତ । ଡାହୁକ, କଣ୍ଢା ଓ କଜଳପାତି—ଏ ତିନୋଟି ପକ୍ଷୀଙ୍କର ସ୍ୱରଭଙ୍ଗୀ ଓ ସ୍ୱଭାବ ସୁଲଭ ଶବ୍ଦର ଗତିକୁ ସହଜ ସରଳ ଭାବରେ ବୋଧଗମ୍ୟ ନିମନ୍ତେ ଏପରି ଗଳ୍ପର ଅବତାରଣା । )

## କୁକ୍‌ଲା ଆର୍ ଶିଆଳ କଥା :

ଗୋଟେସ୍ କୁକ୍‌ଲା ଆର୍ ଗୋଟେସ୍ ଶିଆଳ ସାଙ୍ଗାତ୍ ବସିଥିଲେସ୍ । ଦୁଇ ସାଙ୍ଗାତ୍ ତାଙ୍କର୍ ଭଲ୍ ଚଳୁଥିଲେଏଁ । ଦୁଃଖେ, ସୁଖେ ଜଣେ ଜଣକ୍ ସାହାଯ୍ୟ କରି-କୁରି ହେଉଥିଲେଏ । ଦିନେ କ ହେଲାନା, ଶିଆଳ୍‌କେ କୁକ୍‌ଲା ଖାଇକ୍ ନିମନ୍ତ୍ରଣ୍ କର୍‌ଲା । ଶିଆଳ୍ କୁକ୍‌ଲା ଘରକ୍ ଖାଇନ୍ ଆସ୍‌ଲା । କୁକ୍‌ଲା ତାର ସାଙ୍ଗାତ୍ ଆସିଛନ୍ ବୋଲି ଭଲ୍ ଭଲ୍ ଜିନଷ୍ ଖାଇକ୍ ଦେଲା । ଶିଆଳ ଖୁସିରେ ଖାଉଥାଏ । ଖାଉ ଖାଉ କ କର୍‌ଲା ନା ସେଠେ କୁକ୍‌ଲାର ଗୁହୁ ଟିକେ ପଡ଼ିଥିଲା ତାକେ ଚାଟି ଦେଲା । ଗୁହୁଟା ବେଢ଼େ ମିଠା ଲାଗ୍‌ଲା । ଭାବ୍‌ଲା, 'ସାଙ୍ଗାତ୍‌ର ଗୁହୁଟା ଏତେ ମିଠା ତାର ମାଁସ୍‌ଟା କେତେ ନାହିଁ ମିଠା ହେଇଥିବ ।'' ବୁଦ୍ଧି କର୍‌ଲା କେମିତ୍ କରି କୁକ୍‌ଲାକେ ଖାଇବ ।

ଦିନେ ସଞ୍ଜ୍‌ବେଳେ କୁକ୍‌ଲା ଘରକ୍ ଶିଆଳ ଆସି କହ୍‌ଲା, "ସାଙ୍ଗାତ୍ ତୁମେ ଆଜ୍ କେଁଠେ ଶଇବ ।'' କୁକ୍‌ଲା ଶିଆଳର୍ କଥା ବୁଝିପାରି କହ୍‌ଲା, "ସାଙ୍ଗାତ୍ ! ମୁଇଁ ଆଜ୍ "ଚୁଲିରେ ନିଆଁ ଦେଇ ଫୁଲିରେ ଶସ୍ପିବ ।'' ହେଲେ ରାତିରେ କୁକ୍‌ଲା ତାର ଉଲ୍‌ଟା କର୍‌ଲା । ଫୁଲିରେ ନିଆଁ ଦେଇ ଚୁଲ୍‌ରେ ଶସ୍ପ୍‌ଲା । ଶିଆଳ ରାତିରେ ଆସି କୁକ୍‌ଲା ଶସ୍‌ଥିବ ଭାବି ଫୁଲ୍‌ରେ ଯେମିତି ହାତ୍ ମାରିଛି ହାତ୍‌ଟା ତାର ନିଆଁରେ ଫସ୍‌କା ହେଇଗଲା ।

ତାର ଆର୍ ଦିନେ ଶିଆଳ୍ ଆର୍ ଥରେ ଆସି କୁକ୍‌ଲାକେ ପଚାରିଲା, "ସାଙ୍ଗାତ୍ ! ଆଜ୍ କେଁଠେ ଶସ୍ପିବ ।'' କୁକ୍‌ଲା କହ୍‌ଲା, "ଆଜ୍ ମୁଇଁ ଫୁଲ୍‌ରେ ନିଆଁ ଦେଇ ଚୁଲ୍‌ରେ ଶସ୍ପିବ ।'' ଶିଆଳ କହ୍‌ଲା "ସତ କହୁଚ୍ ଆଜ୍ ଚୁଲ୍‌ରେ ଶସ୍ପିବ ।'' କୁକ୍‌ଲା କହ୍‌ଲା, "ସଙ୍ଗାତ୍ ! ମୁଇଁ ତିନ୍‌ବାର୍ ସତ୍ କରି କହୁଚୁ ଆଜ୍ ଚୁଲ୍‌ରେ ଶସ୍ପିବ ।'' ହେଲେ ରାତିରେ କୁକ୍‌ଲା ତାର ଉଲ୍‌ଟା କର୍‌ଲା । ଚୁଲ୍‌ରେ ନିଆଁ ଦେଇ ଫୁଲ୍‌ରେ ଶସ୍ପ୍‌ଲା । ଯେମିତ୍ ରାତ୍‌ରେ ଶିଆଳ ଆସି ଯେମିତ୍ କୁକ୍‌ଲା ଶସ୍‌ଥିବ ଭାବି ଚୁଲ୍‌ରେ ହାତ୍ ମାରିଛି ହାତ୍ ତାର ଫସ୍‌କା ହେଇଗଲା ।

ଦୁଇଥର୍ ହାତ୍ ଫସ୍‌କା ହେଇ ଯିବାକେ ଶିଆଳ୍ କୁକ୍‌ଲାକେ ରାଗିଗଲା । କୁକ୍‌ଲାକେ ତାର୍ ଆର୍‌ଦିନେ କିଛି ନାହିଁ ପଚାରି ତାର ଘରେ ସଞ୍ଜ୍‌ବେଳୁ ଲୁକି ରହ୍‌ଲା, ଯେ କେଁଠେ ଆଜ୍ କୁକ୍‌ଲା ଶସ୍ପିବ । କୁକ୍‌ଲା ବି ଶିଆଳର କଥା ବୁଝି ପାରିଲାନି ।

Digitized by srujanika@gmail.com

ସବ୍‌ଲ ଶିଆଲ୍ ଦୂଇଥର ଠକ ଆର୍ ଆସ୍‌ବନ । ତେବେବ କୁକ୍‌ଲା ସନ୍ତରେ ସାବ୍‌ଧାନ୍‌ରେ ରହ୍‌ବ ଭବ ଗୋଟେସ୍‌ ଫୁଙ୍କ୍‌ନଲ୍‌ରେ ଢ଼ୁକ୍‌ଯାଇ ଶନ୍ଦ୍‌ଧଢ଼୍‌ଲ । ଶିଆଲ୍‌ଡ ପଷ୍ଟବେଲ୍କୁ ଲୁକ କର ଦେଖୁଥିଲା । ସେମନ୍ତ କୁକ୍‌ଲା ଫୁଙ୍କ୍‌ନଲରେ ଶସ୍‌ଚ ସେ ଦଉଲ ଯାଇ କୁକ୍‌ଲାକେ ଧର ପାକେସ୍‌ଲ । ସେମନ୍ତ ଶିଆଲ କୁକ୍‌ଲାକେ ଧରଚ, କୁକ୍‌ଲା କହ୍‌ଲା –"ହେ, ହେ, ସାଙ୍ଗାତ୍ । ତୁମେ ମକେ ଏମନ୍ତ ଧର୍‌ଲେ କେନେ ।" ଶିଆଲ୍ କହ୍‌ଲା, ସାଙ୍ଗାତ୍ ! ତୁମକ୍ ମୋର ମନ୍ ନାଗ୍‌ଛୁ । ମୁଁଇ ତୁମକ୍ ଆଜ୍ ଖାସ୍‌ବ ।" କୁକ୍‌ଲା ଦେଖ୍‌ଲା ଶିଆଲ୍ ଜାମାରୁ ତାକେ ଆର୍ ଗୁଡ଼ବେ ନାଇଁ । ହଠାତ୍ ତାର୍ ମୁଣ୍ଡକେ ଗୋଟେସ୍ ବୁଦ୍ଧି ଆସ୍‌ଲା । ସେ ଶିଆଲ୍‌କେ କହ୍‌ଲା, "ସାଙ୍ଗାତ୍ । ତୁମେ ଦେଖ; ମୋର ଦେହ୍‌ଟା କେମନ୍ତ ଅସ୍‌କସ୍ ହେଇଛୁ । ତୁମେ ଗୋଟେନ୍ କାମ୍ କର, ମୋର ଦେହ୍‌ଟାକେ ଧଇ ଧୁଆ କର ସଫା କର ଖାଅ । ତୁମକ୍ ବ ଭଲ ନାଗ୍‌ବ, ଆର୍ ମକେ ବ ।

କୁକ୍‌ଲାର କାଥାରେ ଶିଆଲ୍ ସେମନ୍ତ କାମ୍ କର୍‌ଲା । କୁକ୍‌ଲାକେ ଧଇ ଧୁଆ କର ଖାସ୍‌ରେ ସୁଖେସ୍ ଦେଲା । କୁକ୍‌ଲାର ଦେହେ ଯେତେବେଳେ ସୁଖ୍‌ଲା ହେଇଗେଲା ସେ ଶିଆଲ୍‌କ ଡାକ୍ ମାର କହ୍‌ଲା, "ସାଙ୍ଗାତ୍ ! ମୋର ଦେହେ ସୁଖ୍‌ଲା ହେଇଗଲା, ତୁମେ ଇନାସ୍ ଆଁଖି ବୁଜ ପାଟିକେ ଆଁ କର ରଖ ମୁଁଇ ଏଠୁ ଉଡ଼୍ କରଯାଇ ତୁମର୍ ପାଟିରେ ଢୁକ ଯିବ ।" ଶିଆଲ୍‌ବ କୁକ୍‌ଲାର କାଥାରେ ସେମନ୍ତ ପାଟିକେ ଆଁ କର ରହ୍‌ଲା । କୁକ୍‌ଲାତ ଆଗ୍‌ରୁ ବୁଦ୍ଧିଆ ଥିଲା । ସେ କ କର୍‌ଲା ନା ଫୁର୍ କର ଉଡ଼ଯାଇ ଶିଆଲ୍‌ର ପାଟ୍‌ରେ ହଗି ଦେଇ ଉଡ଼୍ ପାଲେସ୍‌ଲା । ଶିଆଲ ସେତେ ବେଳେ ଆଁଖି ମେଲ୍‌ନ୍ ତ ଦେଖେସ୍ କୁକ୍‌ଲା ଉଡ଼୍ ପାଲୋଓଛୁ । ସେଇ ଦିନୁ ଶିଆଲ କୁକ୍‌ଲାକେ ଆଜ୍ ତକ୍ ସାଗ୍ କର ଖାଇକ୍ ଦଉଡ଼ାସ୍ ।

(ଧରମପୁର୍, ମୟୂରଭଞ୍ଜ)

## ଗୃଙ୍ଗ୍‌ରଆ

ଏକ୍ ଯେ ସାଦେବ୍ ବୁଢ଼ା ଥିଲା । ତାର ଗୃଙ୍ଗ୍‌ରଆ ବୋଲି ଗୋଟେନ୍ ପୁଅ ଥିଲା । ସେ ଠିକ୍ ମାପ୍‌କର୍‌ଲେ ଗୃଙ୍ଗ୍‌ରେସ୍ ହେବ । ତେବେ ବ ତାର ମାଆ ବାପ୍ ତାକେ ବେଲ୍ଲେ ଭଲ୍ ପାଉଥିନେସ୍ । ଗୃଙ୍ଗ୍‌ରଆ କେ ତାଙ୍କର୍ ଗାର କେହ୍ କୁଆସାଙ୍ଗ୍ କରନ୍ତ୍‌ନ । କୁହନ୍, "ତୁଇଶଲା ଗୃଙ୍ଗ୍‌ରେସ୍‌ଟା କେଁଠେ କ ହେଇ ହୁଆ ଯିବେ ତୋର ମା ବାପ୍ ଆମକ୍ ଗାଲ୍ ଦେମେସ୍ ।" ହେଲେ ଗୃଙ୍ଗ୍‌ରଆ ମସ୍ତ ଗୁଲାକ୍ ଥିଲା । ସେ ଗାର ସବୁ କୁଆ ସଙ୍ଗେ ସାଙ୍ଗ୍‌ହ୍‌ଏସ୍ । ହେଲେ ତାର ବୁଦ୍ଧିରେ ତାର ସଙ୍ଗେ କେହ୍ ପାରନ୍‌ନ ।

Digitized by srujanika@gmail.com

ଗୃଙ୍ଗ୍‌ଶିଆର୍ ବାଆ ସବୁ ଧନ୍ ବଳଦ୍ ହଳ କରକ୍ ଯାଏ ଆର ତାର ମା ଘର କାଏସୁ ଧାଏସୁ । ତନେ ଗୃଙ୍ଗ୍‌ଶିଆ ତାର ମାକେ କହ୍‌ଲା, "ମା ଏ ! ମୁଁଇ ଆଜ୍ ପାଖଲ୍ ନେଇ ବଲକ୍ ବାଆଇଠକ୍ ଯାଇଁ । ତୁଇ ଆଜ୍‌ମକେ ମାନା କର୍‌ନା । ସବୁଦନ୍‌ତ ମାନା କରତୁ; ହେଲେ ଆଜ୍ ଯିବ ।" ତାର ମାଁତାକେ ଯେତେ ବୁଝେଇଲେ ବ ସେ ଆର୍ ବୁଝ୍‌ଲାନ । ସେଇକରି ମା ତାରପାଖାଲ୍ ଧଅଣ୍ ଭଲ୍‌କରି ଲୁଗାରେ ଗଣ୍ଠେଇ ତାକେ ବଲକ୍ ପାଠେଇ ଦେଲା ।

ବଲେ ପହଞ୍ଚି ତାର ବାଆକେ କହ୍‌ଲା, ବାଆଗୋ ଆସୁ ପାଖାଲ୍ ଖାଆ । ତାର ବାଆ ଯେତେବେଳେ ହଳ ଛାଡ଼ିକରି ଆସ୍‌ଲା ପାଖାଲ୍ ଖା ଏତେ, ଗୃଙ୍ଗ୍‌ଶିଆ ଧର୍‌ଲା ମୁଁଇ ଯାଇଁ ଟିକେ ହଳ କରୁ । ସେ ହଳ କରୁଥିବା ବେଳେ ଗୋର୍‌ଟା ଦେଲା ଯେ ନେଦେଇ ହଗି ଠିକ୍ ତାର ଉପ୍‌ରେ ସେ ଗବର ନେଦାରେ ଚାପି ଗେଲା । ତାର ବାଆ ଯେତେବେଳେ ପାଖାଲ୍ ଖାଇ ସାର ଆସିଦେଖେସ୍ ତ ଗୃଙ୍ଗ୍‌ଶିଆ ନାଇଁ । ସେ ତାକାଡୁକ କର୍‌ଲା । ହେଲେ ଗୃଙ୍ଗ୍‌ଶିଆ ଶୁଣ୍‌ଲାନ କ ତାର ବାଆ ତାକେ ଖଜାଖଜି ଆର୍ ପାଇଲାନ । ତେଣୁ ମନ୍‌ଦୁଃଖେ ବୁଢ଼ା ଘରକ୍ ପାଲେଇ ଆଇଲା ।

ଇଆଡ଼େ ରାତକ୍ ଚୋର୍‌ମେନେ ଆସ୍‌ନେଇ ରଜା ଘରକ୍ ଚୋର୍ କରକ୍ । ସେମେନେ ସେ ବଲ୍‌ଦେଇ ଆସୁଥାନ୍ । ଜଣେ ଚୋର୍ ଗୋବର୍ ନେଦା ଟାକେ ଯେମିତି ମାଡ଼ି ଦେଇଛି ଗୃଙ୍ଗ୍‌ଶିଆ ପାଟି କରି ଉଠିଲା କେଁ ଶଳା ମକେ ମାଡ଼୍‌ଲବେ ମୁଁଇଁ ଏଠେ ଶଇଥିଲି । ଗୃଙ୍ଗଶିଆର କଥା ଶୁଣି ଚୋର୍‌ମେନେ ଡରିଗେନେଇଁ । ଭାବ୍‌ନେଇ ଶଳାଭୂତ୍ ଫୁତ୍ ହୋଇଥିବ ନାକି । କେନେନା ଆନ୍ଧାର୍ ରାତି ଗୃଙ୍ଗଶିଆକେ ସେମେନେ ଆର ଭଲ୍ କରିଦେଖିବ ପାରୁଛନ୍‌ନ । ସେଇଠୁ ଗୃଙ୍ଗ୍‌ଶିଆ ଆରବେଳେ ଯେତେବେଳେ କଥା କହ୍‌ଲା ଚୋରମେନେ ଆଣ୍ଡାଳ ଉଣ୍ଡ୍‌ଲା କରି ତାକେ ପାଇ ଗେନେଇଁ । କହ୍‌ନେଇ ତୁଇ କଏ । ଏଠେ କେନେ ଥିଲେ । ସେତାର ନାମ୍ ଆର୍ କେମିତି କରି ସେଠେ ଥିଲ ସବୁକଥା କହ୍‌ଲା । ସେଇକରି କହ୍‌ଲା ତୁମର୍‌ମେନେ ଯେତେବେଳେ ରଜା ଘରକ୍ ଚୋର୍‌କରକ୍ ଯାଉଛ ମକେ ବ ସଙ୍ଗେ ନେଇଚାଲ ମୁଁଇବ ଚୋର୍ କର୍‌ବି ।

ସେଇ ସବୁନକ୍ ରଜାଘରକ୍ ଚୋର୍‌କରକ୍ ଗେନେଇ । ଗୃଙ୍ଗ୍‌ଶିଆ କାବାଟରେ୍ କାଣାରେ ଗଲି ଯାଇ ଭତ୍ରୁ କାବାଟ୍ ଖୁଲ୍‌ଲା । ସବୁ ଚୋର୍ ଢେରଢେର ଜିନିଷ୍ ଚୋର୍ କର୍‌ନେଇ ହେଲେ ଗୃଙ୍ଗଶିଆକେ ଗୋଟେଇ ଢୋଲ୍ ପସନ୍ଦ ହେଲା ସେ ସେଇଟାକେ ହିଁ ଚୋର୍ କର୍‌ଲା । ସବୁ ଚୋର୍ ଜିନିଷ ପତର ଚୋର୍ କରି ନେଇ ଗୋଟେଇ ଜାଗାରେ ଜାମା ହେନେଇଁ । ସେଠେ ସବୁ ଜିନିଷ୍ ଭାଗ୍ ହେଲା ।

Digitized by srujanika@gmail.com

ଗୃଙ୍ଗଶିଆ ନେବ ଦେନେସ୍ନ୍ତୁ । ହେଲେ ଗୃଙ୍ଗଶିଆ କହିଲା ମୁଁ କିଛି ନେବନି ଏଇ ଢୋଲ୍ଟା ଖାଲି ନେବି ।

ଗୃଙ୍ଗଶିଆ ଘରକୁ ପହଞ୍ଚି ଯାକାଲେ ତା'ର ମାକେ କହିଲା ମା ଗୋ ମୋକେ ଆଜ ବେଡ଼େ ଜୁର ଷିର ଖାଇବାକେ ମନ ହେଉଛି । ମରନାଗି ଷୀର ରାନ୍ଧଦେ । ତାର ମାଁ ଷିରି ରାନ୍ଧଦେଲା । ସେ ଢୋଲ ଆଉର ଷିରି ନେଇକରି ଘରର ଛାଲ ଉପରକେ ଉଠି ଷିରି ଖାଇ ଢୋଲ ବାଜେଇ ବାଜେଇ କହିଲା "ରାଜା ଘରେ ହେଇଛି ଚୋରି ମୁଇଁ ଖାଉଛୁଁ ଷିରି ।"

ରାଜା ଘରେତ ସତର୍ ସତର୍ ଚୋରି ହେଇଥିଲା । ରାଜାଘରର ସିପେଇମେନେ ସେଇବାଟେ ଯାଉ ଯାଉ ଶୁଣିନେଇ ଯେମତି ଭାବନେଇ, ରାଜାଘରେ ରାତିରେ ଚୋରି ନେଇଛି; ରାଜ୍ୟର କେହି ନକେ ଜାଣନ୍ତି ଇଏ କେମତି କରି ଏତେ ସାକାଲୁ ଜାଣଲା । ଇଏ ନାକି ଚୋରି କରିଥିବ ନାଇତ ଚୋରି ମେନକୁ ଜାଣିଥିବ ।

ସିପେଇ ମେନେ ଏମତି କଥା ଶୁଣି ଦଉଡ଼ିଲେନି, ରାଜାପାଶକୁ ଖବର ଦେଇକେ । ରାଜା ଯେମତି ଏଇ କଥା ଶୁଣିଛି, କହିଲା ଯାଙ୍କେ ଯାଙ୍କେ ତାକେ ବାନ୍ଧି ଆଣ । ସିପେଇମେନେ ଗୃଙ୍ଗଶିଆ ଘରକେ ଯାଇ ତାର ବାପକୁ ବାନ୍ଧିନେଇ ଆସିନେଇ । ସେତେବେଳେ ଗୃଙ୍ଗଶିଆ ସିପେଇମେନେକେ ଆଉର କିଛିବି କହିଲାନି । ସେ ଢୋଲ ବଜେଇ ଷିରି ଖାଉଥାଏ ଆଉର ଗୀତ ଗାଉଥାଏ ।

ଗୃଙ୍ଗଶିଆ ଛାଳଉପରୁ ତଳକୁ ଆସି ଦେଖେଇ ତ ତାର୍ ମାଁ କାନ୍ଦୁଛି । ସେ ତାର ମାକେ ବୁଝେଇଲା, କହିଲା, ମା ତୁଇ ଯାମାରୁ କାନ୍ଦନା । ମୁଇଁ ଏଭେ ରାଜାଘରକୁ ଯାଉଛି, ଆଉର ବାଆକେ ଆଣୁଛି । ତାର୍ ମା ତାକେ ଆର୍ ବୁଝେଇଲେ ବି ସେ ବୁଝିଲାନି । ଏକାବେଳେ ରାଜାଘରକୁ ବାଟେ ବାଟେ ଚାଲିଲା । ସେ ବାଟେ ଯାଉଁ ଯାଉଁ ଗୋଟେଇ ଠେଙ୍ଗା ପାଇଲା । ଠେଙ୍ଗା ତାକେ କହିଲା ତୁଇ କେଭେ ଯାଉଛୁ ମକେ ତୋର ଯାଙ୍କେ ନେଇଯା ତୁଇ ଯାହାକେ କହିବୁ ମୁଇଁ ତାକେ ପିଟ୍‌ବି । ଠେଙ୍ଗାର କଥା ଶୁଣି ଗୃଙ୍ଗଶିଆ ତାକେ ଧରି ବାଟେ ଚାଲିଲା । ଆଉଥରେ ବାଟେ ଗୋଟେଇ ବରେଇକେ ପାଇଲା । ବରେଇ ବି ତାକେ ଯେମତି କହିଲା, ମୋକେ ତୋର ଯାଙ୍କେ ନେଇଚ ମୋକେ ତୁଇ ଯାହାକ୍ ବାନ୍ଧିକ୍ କହିବେ ତାକେ ମୁଇଁ ବାନ୍ଧିବି । ତାର କାଥା ଶୁଣି ଗୃଙ୍ଗଶିଆ ତାକେ ବି ଗୁଡ଼େଇ କରି ଧରି ଚାଲିଲା ।

ଗୃଙ୍ଗଶିଆ ରାଜାଘରର ପାଖାପାଖି ପହଞ୍ଚି ଦେଖିଲା ରାଜା ଝିଆ ପୁଖୁରେ ଗାଧୁଛି । ଗୃଙ୍ଗଶିଆ ତୋ ଟିକେ ନକରି ସେ ଚୁପକରି ଗଲାଯାନି ରାଜାଝିଆ ପାଖିକ୍ ପହଞ୍ଚି ଗେଲା ହେଲେ ସିପେଇ କି ରାଜାଝିଆ କେହି ଜାଣିପାରିନେଇନି ।

Digitized by srujanika@gmail.com

ପୁଖୁର୍‌ରେ ରାଜାଛୁଆ ତ ଗାଧୁଥିଲା, ସେ ଯେମନ୍ତ୍ ପାଣି୍‌ରେ ବୁଡ୍ ମାରଚ ଚାଙ୍ଗରଆ ସେନ୍ତକବେଳେ ତାର ନାକେ ଧର ପାକେସ୍ଲା । ରାଜାଛୁଆ ଚମକ ଯାଇ ପାଚାରଲା କଏ ରୁଇ । ସେ ଆର୍ କଛୁ ନାଇଁ କର କହ୍ଲ ଖାଲ କହ୍ଲା ମୁଇଁ ଧରଚୁ ତୋର ନାକ ଲୁଇ ମୋର ବାଆକେ ଗ୍ରୁଡ୍ । ରାଜାଛୁଆ ଯେତେଥର ଏମନ୍ତ୍ କୁହେସ୍ତୁ ଚାଙ୍ଗରଆ ବ ସେମନ୍ତ୍ ସେଥ୍‌କର କୁହେସ୍ତ । ଶେଷେ ରାଜାଛୁଆ ପାଟି କରଲା । ତାର ପାଟି ଶୁଣି ସିପେସ୍ତ ମେନେ ଆସୁଥାନ୍ ସେନ୍ତ୍‌କବେଳେ ଚାଙ୍ଗରଆ ଦଉଲା ଆର୍ ଠେଙ୍ଗାକେ କହ୍ଲା ବାନ୍ଧ ଦଉଲା, ମାର ଠେଙ୍ଗା । ତାର କଥାଶୁଣି ଦଉଲା ଯେତେ ବ ସିପେସ୍ତ ଆସୁଥାନ୍ ବାନ୍ଧୁଥାଏ । ଆର ଠେଙ୍ଗା ନର୍ଘାତଆ ପିଟୁଥାଏ ।

ଏମନ୍ତ୍ କାଣ୍ଡ ଦେଖି ରାଜା ଆସ୍ଲା । ଦେଇ ସେ କହ୍ଲା କଏ ଏମନ୍ତ୍ କାମ କରୁଛୁ ବନ୍ଦକର ମୁଇଁ ଯେତେବେଳେ ଆସ୍ଲି ମୋକେ କ ଘଟଣା କୁହ ମୁଇଁ ବଚାର କରବ । ରାଜାକ ଦେଖି ଚାଙ୍ଗରଆ ଦଉଲା ଆର ଠେଙ୍ଗାକେ ମାନା କର୍‌ଲା । ଆର୍ ସବ୍ ଘଟନା କହ୍ଲା । ମୋର ବାଆ ଚୋର କରନ ମୋର ବାଆକେ ଗ୍ରୁଡ ଆର୍ ମୋର ସାଙ୍ଗେ ଚଲ ମୁଇଁ ଚୋର ମେନର୍ ଜାଗା ଦେଖିଚୁ, ତାଙ୍କକ୍ ଧରବା । ରାଜା ଚାଙ୍ଗରଆର ବ ଆକେ ଗ୍ରୁଡ୍ ଦେନେସ୍ତଁ ଆର୍ ତାର ସାଙ୍ଗେ ଯାଇ ଚୋର ମେନକ୍ ଧର୍‌ନେସ୍ତଁ ।

(ଧରମପୁର, ମୟୂରଭଞ୍ଜ)

## ଛୁଞ୍ଚିମୂଲ ଲକ୍ଷେ ଟଙ୍କା :

ଗୁଟେ ଜୁଗି ଥିଲା । ସେ ବଡ଼ ଗରବ; ଗାଁ ଗାଁ ଯାଇ ଗୁଧୁଡ଼ିକନ୍ଥା ସିଲେଇ କର ସସାର ଚଲାଏ । ଦୁଇଜଣ ପୁଅ, ବହୂ, ବୁଢ଼ାବୁଢ଼ୀ ମିଶି ପାଞ୍ଚଜଣ କୁଟୁମ୍ବ । ଗଲାସନ ତାର ବଡ ପୁଅକୁ ବାହା କରେଇଚ । ବାପ ପୁଅ କାମ୍‌କୁ ଗଲେ, ଶାଶୁ ବହୂ ଘରେ ଥାନ୍ତି । ଆର ପୁଅଟାତ ସାନ୍ । ମନ ହେଲେ ବେଳେ ବେଳେ ଇସକୁଲ୍‌କୁ ଯାଏ । ବହୁତ ସମସ୍ତର ଦାଣ୍ଡରେ ଖେଳେ । ଦିନେ ଜୁଗି ବୁଢ଼ା କାମ୍‌ରୁ ଫେରି ଆସି ମନଦୁଃଖ କର କହ୍ଲା, "ହାସ୍ତ, ହାସ୍ତ, ମୋର ଆଜ ନକ୍ଷେ ଟଙ୍କା ନୁକ୍‌ସାନ ହେଇଗଲା ।" ବୁଢ଼ୀ ପଚ୍ଚର୍‌ଲାରୁ ବୁଢ଼ା କହ୍ଲା, "ଦଶ ବାର ବର୍ଷର ଛୁଞ୍ଚିଟା ମର୍ ଭାଙ୍ଗିଗଲା । ନକ୍ଷେ ଟଙ୍କା ନୁକ୍‌ସାନ ହେଇଗଲା ।"

ବୁଢ଼ା ହାଟରୁ ଆଉ ଗୋଟେ ଛୁଞ୍ଚି କଛୁ ଆଣି କାମ ଚଲେଇଲା । ବହୁ ମଷ୍ଟେ ମଷ୍ଟେ ଥାଏ । ବୁଢ଼ା ଘରେ ନଥିବା ବେଳେ ଚୁପ୍‌କନ ଛୁଞ୍ଚିଟା କାଢ଼ି ନେଇ ରଖିଦେଲା । ବୁଢ଼ା ଆରଦନ ଦେଖିଲା । ତାର ନୂଆ ଛୁଞ୍ଚିଟା ନାହିଁ । ତେର୍ ଖୁଜଲା । ଖୁଜି ଖୁଜିକ ପାଇଲାନ । କହ୍ଲା, "ହାସ୍ତ, ହାସ୍ତ" ମୋର ନକ୍ଷେ ଟଙ୍କାର ଛୁଞ୍ଚିଟା କାଢ଼ ଗଲା । ହଜଗଲା କ କାଆଡ଼ ପଡ଼ିଗଲା । ମୁଁ ପାଉନ । ଏଇଁର ତ ରଖିଥିନ ।"

Digitized by srujanika@gmail.com

ବୁଢ଼ା ଆଉ ଗୁଟେ ଛୁଈଁ କଣିକରି କାମକୁ ଗଲା । ଏହିପରିକମ୍ କିଛି ଧନ ରହି ତାହା ମଝିରେ ମଝିରେ ବୁଢ଼ାର ଲକ୍ଷେ ଟଙ୍କାର ଛୁଈଁ ହଜି ଯାଉଥାଏ । ବୁଢ଼ା ଖୋଜେ । ନ ମିଳେ ଯେତେବେଳେ ନୂଆ ଛୁଈଁ କଣି କାମକୁ ଯାଏ । ଇହା ଭିତରେ ବନ୍ଧୁ ପାଖର ଦଶବାରଟା ଛୁଈଁ ହୋଇଗଲା । ଦଶବାରଟା ଛୁଈଁ ବୁଦ୍ଧେ ସେ ଦଶବାର ଲକ୍ଷ ଟଙ୍କା । ଇଖୁଣ୍ଡ଼ିକା ବନ୍ଧୁର ମନ ମୁଟା ହୋଇଗଲାଣି । ଭଲ ରକମ୍ କାମ କରେନି । ବେଶି ସମସ୍ତ ଶୁଏ । ଶାଶୁ ପଦେ କହନେ ବନ୍ଧୁ ଦ ପଦ ହିରର ଦିଏ । ବୁଢ଼ୀ ମନ କଷ୍ଟ କରେ । ଘର୍‌ର ବନ୍ଧୁକୁ ଗାଳି ଦିଏ । ବନ୍ଧୁ ବି ବୁଢ଼ୀ ସାଙ୍ଗରେ କଳି କରେ । ସିଏ ତାର ଘଇତାକୁ ଦିନେ କହିଲା । "ଘରର ଏତେ କାମ ମୁଁ କରି ପାରିମିନି । ଆମର ଭିନେ ହୋଇଯିବା ।" ଘଇତା ସେ କଥା ମାନିଲାନି । ତା କଥା ମୁଟେ ଶୁଣିଲାନି । ହେଲେ କି ହବ । ସିଏ ପରି କାନ ଫୁଙ୍କା ଗୁରୁ । ଆସ୍ତେ ଆସ୍ତେ ଘଇତା ବାଗ୍‌କୁ ଆସିଗଲା । ସିଏ ବି ଖାଲି ଖାଇଲା ଆଉ ଶୁଇଲା । କାମକୁ ଆନ୍‌ଦୁ ଗଲାନି । ବାପ କହନେ । ବାପ୍‌କୁ ଉଲଟିଇ ଗାଳି ଦେଲା । ଇନ୍‌ଡ଼ି ହଉ ହଉ ରାଗରେ ଦିନେ ଭିନେ ହବା କଥା ପକେଇଲା । ବାପ ଏକଥା ଶୁଣି ତାହଁକା । ବୁଢ଼ା ଗୁମ ମାରି ବସି ରହିଲା । ବହୁତ ସମୟପରେ ବୁଢ଼ା କହିଲା "ହତଭାଗା, କୁଳାଙ୍ଗାର, ଭିନେ ହବୁ । କେନେ ? ଭିନେ ହବୁ କହ ? ମୁଁ ବୁଢ଼ା ହେଲି । ତୁମ୍‌ମେନ୍‌କାକୁ ମଣିଷ କଲି, ଆଜି କହୁଛୁ ଭିନେ ହବୁ ।" ବୁଢ଼ା ଯେତେ ବୁଝାଇଲା, ସାଇ ପଡ଼ଶା ଯେତେ ବୁଝେଇଲେ, ସାଙ୍ଗସାଥି ବନ୍ଧୁବାନ୍ଧବ ଯେତେ ବୁଝେଇଲେ, ହେଲେ କିଛି ହେଲାନି । ବଡ଼ପୁଅ ଭିନେ ହେଇଗଲା । ଜମିବାଡ଼ି ତ ନଥିଲା । ଖାଲି ଡ଼ିପା ଖଣ୍ଡିକ, ଯାହା ଘର ବିଲ ଜି ପଲା ଖଣ୍ଡେ । ତା' ଭିତରେ ଛଟା ବେଢ଼ା ହେଲା ।ଚୁଲି, ହାଣ୍ଡି ସବୁ ଅଲ୍‌ଗା ଅଲ୍‌ଗା ହେଇଗଲା ।

ଯେ ଦିନ ଭିନେ ହେଲା । ସେଇ ସନ୍ଧ୍ୟାର ବଡ଼ପୁଅ ତା' ମାଇପକୁ କହିଲା, "ହଁ ଲ, ତ କଥାର ପଡ଼ିକି ଭିନେ ହେଲି । ଏ ଛୁଣୁକା ଘର କେଉଁରକମ ଚଳାଇବୁ ଚଳା । ହାତର ଗୁଟେ ବଳି ପଇସା ନାହିଁ । ଖାଲି ଭିନେ ହବୁ । ଭିନେ ହବୁ କହିଲୁ, ତୋ କଥାରେ ପଡ଼ି ସିନା ଭିନେ ହେଲି ।" ବନ୍ଧୁ ସେଟୁ ମୁହଁଟା ହାଣ୍ଡିରିକମ କରି କହିଲା, "ଘର ଚଲେଇବା କଥା ମୁଁ ଚଲେଇମି, ତୁମର ଏତେ କେନେ ମୁଣ୍ଡ ବଥଉଛି । ବଡ଼ପୁଅ ରାଗିଯାଇ ପଚାରିଲା, "ଟଙ୍କା ପଇସା କିଛି ରଖିଚୁନା କିସ ।"

ସେଟୁ ବନ୍ଧୁ ହସି ଦେଇ ଘର ଭିତରକୁ ପଶିଗଲା । ଗିରସ୍ତ ବି ତା' ପଛେ ପଛେ । ବନ୍ଧୁ କହିଲା ବସ । ଦେଇକରି ବାଆଁଶର ପେଡ଼ିଟାକୁ କାଢ଼ି ଆଣିଲା । ଆଣି କରି ଗିରସ୍ତ ଆଗର ରଖିଦେଲା । ନଫର ବାଉଟାକୁ ଆଉଟିକେ ତେଜି ଦେଲା । ଦେଇକରି ପେଡ଼ି ଖୁଲି ଗୁଟେ କନା ବୁନୁଲା ବାହାର କଲା । ଗୁରି ପାଞ୍ଚ ପରସ୍ତ କନା ଗୁଡ଼ାଇ ହେଇଥିଲା । ତା' ଘଇତା କହିଲା, "ଏଟା କିସ" ? ବନ୍ଧୁ ଖୁଲିତେ କହିଲା ।

Digitized by srujanika@gmail.com

ପୁଅ ତାର କଥା ପରଖୁ ଖୁଲ୍ ଖୁଲ୍ କରି ଦେଖିଲା ଭିତରେ ଦଶବାରଟା ଛୁଞ୍ଚି ଅଛି । ପୁଅ ସେଇଠୁ ପଚାରିଲା, "ଏ ଗୁଡ଼ାକ ତ ଛୁଞ୍ଚି, ଟଙ୍କା କାହିଁ ? ଟଙ୍କା କେଇଠି ରଖିଚୁ, ପରି କାହିଁ ? "ବହୁ କହିଲା", ଏ ଗୁଡ଼ାକ ପରା ବାର ଲକ୍ଷ ଟଙ୍କା । ବାପ ଯେ ଛୁଞ୍ଚି ହଜଗଲେ କହୁଥାନ୍ତି । ମୋର ଲକ୍ଷେ ଟଙ୍କାର ଛୁଞ୍ଚି ହଜଗଲା ବୋଲି । ମୁଁ ସେ ଗୁଡ଼ାକ ନେଇ ରଖି ଦେଉଥାଏ । ଇଏତ ବାରଟା ଛୁଞ୍ଚି ବାର ଲକ୍ଷ ଟଙ୍କା । ତୁମ ଆଖିକି ଦିଶୁନି କି ?" ।

(ବାଣିଦା, ଚାଳେଶ୍ୱର)

—*—

## ନାଉଧୁଙ୍କୁକୀ

ଗୁଟେ ଗାଁର ଗୁଟେ ବୁଢ଼ୀ ଥିଲି । ତା'ର ଗୁଟେ ଝିଅ ଥିଲି । ତାକୁ ବଣ ସେପାରର ଧୁର ଗାଁରେ ବାହା ଦେଇଥିଲି । ବୁଢ଼ୀର କିଛି ଜମିବାଡ଼ି ଥିଲି । କାଳିଆ, ବଳିଆ ନାଁର ଦିଟା କୁକୁର ବି ପୋଷିଥିଲି । କୁକୁର ଦିଟା ବଡ଼ ଖାଲୁ । ସେ ଦିଇଟା ଡରରେ କେହି ବୁଢ଼ୀଘର ପଶିପାରୁ ନଥିଲେ । ସାଇପଡ଼ିଶାର ସମସ୍ତଙ୍କ ସାଙ୍ଗରେ ବୁଢ଼ୀର ଭଲ ପଟୁଥିଲା । ଝିଅଟାକୁ ତ ବାହା ଦେଇସାରି ଥିଲି । ଥିଲାବାଲା ଘର, ବର୍ଷସାରା ଚଳନ୍ତି, ଅଭାବ ହୁଏ ନାହିଁ । ବୁଢ଼ୀ ବି ଝିଅ ଜୁଇଁକି ବାହାଘର ଢେରଢେର ଜିନିଷପତ୍ର ଦେଇଥିଲି । ତାର ଆଉ କିଏ ଅଛି ଯେ ଖାଇବ । ତାଛଡ଼ା ସାଇପଡ଼ିଶାର ଗାଁ ଭୂଇଁର ଯିଏ ଯାହା ମାଗୁଥିଲେ ବୁଢ଼ୀ ଶକ୍ତି ମୁତାବକ ଦରକାର ବେଳେ ଦେଉଥିଲି । ବୁଢ଼ୀ ବର୍ଷସାରାର ଝିଅ ଘରକୁ କଦାଚ ଥରେ ଯାଏ । ଗଲାବେଳେ ବହୁତ ରକମର ପିଠା କରିନେଇଯାଏ । ଥରେ ବୁଢ଼ୀ ତା ଝିଅ ଘରକୁ ଯିବ ବୋଲି ବାହାରିଲି । ଲୁଗାପଟା କାଚିଲି । ଦି, ଚାରି ରକମ ପିଠାପଣା କଲି । ଝିଅ ଘରକୁ ଯିବ ଯେତେବେଳେ ଫେରିବାକୁ ହୁଏତ ଡେରି ହେଇପାରେ । ସେ ପାଇଁ ଜଣେ ବିଶ୍ୱାସୀ ଲୋକକୁ ଶୁଇବାର ଠିକ୍ କଲି, ଆଉ କୁକୁର ଦିଟାତ ଅଛନ୍ତି ।

ବୁଢ଼ୀ ନିଶ୍ଚିନ୍ତ ମନରେ ପିଠା ବୁନ୍ଦୁଲା ଧରି ଘରୁ ବାହାରିଲି । ଯାଉଁ ଯାଉଁ ବାଟରେ ଗୁଟେ ବଣ ପଡ଼ିଲା । ବଣ ପାରିହେଲେ ଜୁଇଁ ଘର ଗାଁ । ବୁଢ଼ୀ ବଣ ରାସ୍ତାର ପଶିବ, ସେତିକି ବେଳେ ଗୁଟେ ଶିଆଳ ବାହାରିକି ବୁଢ଼ୀ ଆଗ ଠିଆହେଲା । ଶିଆଳ କହିଲା, "ବୁଢ଼ୀ ଗୁଣ୍ଡି ତତେ ଆଜି ମୁଁ ଖାଇବି ।" ସେଠୁ ବୁଢ଼ୀ କହିଲା "ପ ! ମୁଁ ଝିଅ ଘରକୁ ଯାଉଚି । ସେଠି ଖାଇପିଇ ମୁଟାମୁଟି ହେଇଥିବି । ଫେରିଲାବେଳେ ତୁ ମୋତେ ଖାଇବୁ । ଏଲୁଣ୍ଡିକା ମତେ ଖାଆନା" ଶିଆଳ ଏକଥା ଶୁଣିକି ଖୁସି

Digitized by srujanika@gmail.com

ହୋଇଗଲା । ତାକୁ ସିଏ ବାଟ ଛାଡ଼ିଦେଲା । ବୁଢ଼ୀ ତା ପାଖରୁ ରକ୍ଷା ପାଇ ବଣ ରାସ୍ତାରେ ଆଗେଇଗଲା । କିଛି ଦୂର ଗଲାପରେ ଦେଖିଲା ବାଟ ମଝିରେ ବାଘଟିଏ ବସିଚି । ବୁଢ଼ୀକୁ ଦେଖି ବାଘ କହିଲା ଏ ବୁଢ଼ୀଧୁଡ଼ି ! ମୁଁ କେତେ ଦିନ ହେଲା କିଛି ଖାଇନି । ଆଜି ମୁଁ ତତେ ଖାଇମି ।'' ବୁଢ଼ୀ କହିଲା, "ବାପ ମୁଁ ଝିଅ ଘରକୁ ଯାଉଚି । ସେଠୁ ଖାଇପିଇ ମୁଣ୍ଟା ମୁଣ୍ଟି ହୋଇ ଫେରିଲେ ତୁ ମତେ ଖାଇବୁ ।'' ବାଘ ଖୁସି ହୋଇ କରି ତାକୁ ବାଟ ଛାଡ଼ିଦେଲା । ବୁଢ଼ୀ ଝିଅଘର ରାସ୍ତା ଧରିଲା । କିଛି ଦୂର ଯାଇଚି ଦେଖିଲା ବାଟ ମଝିରେ ଭାଲୁ ଗୁଟେ ବସିଚି । ବୁଢ଼ୀକି ଦେଖି କହିଲା, "ବୁଢ଼ୀଛୁଣ୍ଡି ! ମୁଁ ଆଜି ତତେ ଖାଇମି ।'' ବୁଢ଼ୀ ସେଠି ଆଗ ରକମ କହିଲା । ସେଇଠୁ ଭାଲୁ ଖୁସି ହୋଇକରି ରାସ୍ତା ଛାଡ଼ିଦେଲା । ବୁଢ଼ୀ ଝିଅ ଘରକୁ ଗଲା । ତାଙ୍କ ଘରେ ପହଞ୍ଚି ଝିଅ ଜ୍ୱାଇଁକି ସବୁକଥା କହିଲା । ସେଠି ବେଶ୍ କିଛିଦିନ ରହିଲା । ବୁଢ଼ୀକି ଝିଅ ଜ୍ୱାଇଁ ବେଶ୍ ସମ୍ମାନ କଲେ । ବହୁତ ଭଲ ଭଲ ଜିନିଷ ଖୁଆଇଲେ । ଦିନାକାତେ ରହିଲା ପରେ ବୁଢ଼ୀ ଘରକୁ ବାହାରିଲା । ଝିଅ ସେଠୁ କହିଲା, "ହଉ ଯିବୁତ ଯିବୁ, ରହ କିଛିଦିନ ।'' ବୁଢ଼ୀର ମନ ଆକାପାକା କଲାଣି ଘରକୁ ଆସିବ ବୋଲି । ଝିଅ ଘର ପିଢ଼ାରେ ବହୁତ ଲାଉ ଧରିଥିଲା । ଝିଅ ଗୁଟେ ପାଚିଲା ଲାଉକୁ କୁରି ତା ମାକୁ ତା ଭିତରେ ଭର୍ତ୍ତିକରି ଖୁବ୍ ଜୋର୍‌ରେ ଦାଣ୍ଡର ଗଡ଼ାଇ ଦେଲା । ଲାଉଟି ଗଡ଼ି ଗଡ଼ି ଭାଲୁ ବସିଥିବା ଜାଗାରେ ପହଞ୍ଚିଲା । ଭାଲୁ ସେଠୁ ଲାଉକୁ ଦେଖି ପଚାରିଲା, "ଲାଉ ଧୁଡ଼ୁକି; ଲାଉ ଧୁଡ଼ୁକି ! ଦେଖିଚକି ବୁଢ଼ୀ ଧୁଡ଼କି ?'' ବୁଢ଼ୀ ତା ଭିତରେ ଥାଇ କହିଲା, "କେଜାଣେ ତାର ବୁଢ଼ୀ ଧୁଡ଼ି, ନାଉ ଯାଉଚି ଗଡ଼ି ଗଡ଼ି ।'' ଭାଲୁ ଲାଉଟିକୁ ଗୁଟେ ଗୁଣ୍ଡିଠା ମାରିଲା ଯେ ଲାଉଟି ବଣ ରାସ୍ତାରେ ଗଡ଼ି ଗଡ଼ି ବାଘ ବସିଥିବା ଜାଗାରେ ପହଞ୍ଚିଲା । ବାଘ ଛକି ବସିଥାଏ । ବୁଢ଼ୀ ଆସିବ ତା ଝିଅ ଘରୁ । ମଣିଷ ମାଉଁସ ଖାଇ ତା ମନ ଶାନ୍ତ କରିବ । ଲାଉକୁ ଦେଖି ବାଘ କହିଲା ।'' ନାଉଧୁଡ଼ୁକି ! ନାଉ ଧୁଡ଼ୁକି ! କାଆଡ଼ ଗଲା ଯେ ବୁଢ଼ୀ ଧୁଡ଼କି ?'' ଲାଉ ଭିତରେ ଥାଇ ବୁଢ଼ୀ କହିଲା । "କେଜାଣେ ତାର ବୁଢ଼ୀଧୁଡ଼ି । ନାଉ ଯାଉଚି ଗଡ଼ି ଗଡ଼ି ।'' ବାଘ ସେଠୁ ରାଗିଯାଇ ସେଇ ନାଉକୁ ଗୁଣ୍ଡିଠା ମାରିଲା । ନାଉଟି ଗଡ଼ି ଗଡ଼ି ଯାଇ ଶିଆଳ ପାଖରେ ପହଞ୍ଚିଲା । ଶିଆଳ ପୂର୍ବପରି ପଚାରିଲା । ଲାଉ ଭିତରୁ ବୁଢ଼ୀ ପୂର୍ବପରି କହିଲା । ପଶୁମାନଙ୍କ ଭିତରେ ଶିଆଳ ବଡ଼ ଚାଲାକ । ଇଏତ ପୁଣି ଶିଆଳ ! ବୁଝିନେଲା ବୁଢ଼ୀର କଦର୍ । ଲାଉ ଭିତରେ ବୁଢ଼ୀ ଲୁଚିଛି । ଶିଆଳ ତା ନଖ୍‌ର ଲାଉ ଟିକେ ଚିରି ପକାଇଲା । ବୁଢ଼ୀକୁ ଦେଖି କହିଲା, "ତୁ କମିତି ଚାଲିଯାଉଥିଲୁ । ମୁଁ ତମେ ଖାଇମି ଏବେଣ,'' ବୁଢ଼ୀ ତ ମହାସିଆଣ, କହିଲା, "ହଉ ତୁ ଖାଇବୁତ ଖାଇବୁ । ମୁଁ ଗୁଟେ ଗୀତ ଗାଇସାରେ ତାପରେ ତୁ ମତେ ଖାଇବୁ । ଶିଆଳ ରାଜି ହେଲା । ସେଇ ଜାଗାରୁ ବୁଢ଼ୀର ଘର ଅଳ୍ପ ଦୂର । ବୁଢ଼ୀ ଖୁବ ଜୋରରେ ପାଟିକରି ଘର ଆଡ଼କୁ ମୁହଁ କହିଲା, "ଆରେ କାଳିଆ ଆରେ ବଳିଆ ଆସିବ ଜୋରେ

Digitized by srujanika@gmail.com

ଧାଇଁ'' ! ବୁଢ଼ୀର ପାଟି ଶୁଣି ଘର ପାଖର କାଳିଆ ବଳିଆ ଦୌଡ଼ି ଦୌଡ଼ି ବୁଢ଼ୀ କତିରେ ପହଞ୍ଚିଗଲେ । କୁକୁର ଦଳଙ୍କୁ ସିମିତି ଶିଆଳ ଦେଖିଣ ଲୁଙ୍ଗାଆରେ ବଣ ଭିତରକୁ କୁଦାମାରି ପଳେଇଲା । ବୁଢ଼ୀ କାଳିଆ ବଳିଆଙ୍କୁ ଧରି ଘରକୁ ଆଇଲା ।

(ବାହ୍ମାରଦା-ବର୍ଦ୍ଧିଗୁ, ମେଦିନୀପୁର,
ବାଣିଦା, ବାଲେଶ୍ୱର)



## ନାକ୍ଟ ଖଣ୍ଡିଆ (ବାଣ୍ଡିଆ) ଶିଆଳ କଥା

ଗୋଟେଏ ଗାଁରେ ବୁଢ଼ୀ ଗୋଟେଏ ଥିଲା । ତାର ନଧିଆ ବୋଲି ଗୋଟେଏ ଝିଆ ଥିଲା । ଆଉ କେହି ଥିନେଏଁ ନି । ଦିନେ ନଧିଆ ତାର ମାଁକେ କହିଲା, ''ମାଁଗୋ ମୁଇଁ ପାଲେ ମକା ଗୃଷ କରିବି ।'' ଦେଇ ନଧିଆ ପାଲେ ମକା, କାକୁଲି ଗୃଷ କରିଲା । ମକା ବଢ଼େ ବଢ଼ ବଡ ହେଲା । ନଧିଆର ମକା ଦେଖି ଗୋଟେଏ ଶିଆଳ ଭାବିଲା, ମୁଁଏ କେମିତି କରି ମକା ଖାଇବି ।''

ନଧିଆ ପାଲେ ସବୁଦିନ ରାତିଦିନ ଜାଗିଥାଏ । ତାର ବୁଢ଼ୀମାଁ ତାକେ ସବୁଦିନ୍ ପାଲକ୍ ଖାଇକ୍ ନିଏଯ୍ ଦିଏଯ୍ । ଆଉ ତାର ବୁଢ଼ୀମାଁ ଭଲକରି ଟିକେ ଦେଖି ପାରେଯ୍ ନି । ଦିନେ ବୁଢ଼ୀ ଭାତ ନେଇ ପାଲକ ଯାଉଛି, ଶିଆଳବାଟେ ତାକେ ଦେଖି କହିଲା, ''ମାଉସୀ ଏ ତୁଇତ ଭଲ୍ କରି ଦେଖି ପାରୁଛନ୍ତିନି, କି ଗୃଲି ପାରୁଚୁନ୍ତିନି । ତୁଇ ମତେ ଭାତ ବେଲାଟା ଦେ ଆଉ ତୁଇ ମୋର ନେଙ୍ଗେ ଧରିଚ । ବୁଢ଼ୀ ଶିଆଳର କଥାରେ ସେମିତି କରିଲା । ହେଲେ ଶିଆଳ ଭାତ୍ ବେଲି ଧରି ଭାତ୍ ଖାଇ ଖାଇ ଯାଉଥାଏ ଆଉ ବୁଢ଼ୀ ପଛେ ପଛେ ଗୃଲୁଥାଏ । ଯେତେବେଲେ ନଧିଆର ପାଲ ପାଖକ ସିମାନେ ପହଞ୍ଚି ଗେନେସ୍ ଶିଆଳ କହିଲା । ''ମାଉସୀ ପାଲକ ପହଞ୍ଚିଗେଲୁ ତୁଇ ଏତେବେଲେ ଗୃଲିଯାଆ ।''

ନଧିଆ ଯେତେବେଲେ ଖାଇକ୍ ବସେସ୍ ଦେଖିଲା ଅଲ୍‌ଭାତ୍ ଅଛି । ସେ କହିଲା, ''ମାଁଗୋ ତୁଇ ଆଜ୍ କମ୍‌ଭାତ ଆଣିଚୁତ୍ ।'' ବୁଢ଼ୀ କହିଲା, ''ମୁଇଁତ ଘରୁ ବେଲାଏ ଭାତ ଆଣିଥିଲି । ମୁଇଁତ ଭଲ କରି ଦେଖି ପାରୁନି । ଆଉ୍ ଯେଦି କେଁଠେ ପଳି ପୁଲା ଯାଇଥିବ ମୁଇଁ କହି ପାରିବିନି । ନଧିଆ ବି ତାର ମାଁ କଥା ମାନିଗେଲା । ହେଲେ ଦିନ୍ ଦିନ୍ କମ୍ କମ୍ ଭାତ୍ ଦେଖି ନଧିଆ ଆଉ ଥରେ ତାର ମାଁକେ ପଗୃରିଲା, ''ତୁଇ

Digitized by srujanika@gmail.com

ସବୁଦିନ କମ୍ କମ୍ ଭାତ୍ ଆଣୁଛନ୍ତି ଯେ ମୋର ପେଟ ବି ପୂରେ ନାହିଁ । "ସେଇଠୁ ବୁଢ଼ୀ କହିଲା," ମୁଁ ସବୁଦିନ ଘରୁ ବେଳାଏ ଭାତ୍ ଆଣେ, ହେଲେ ରାସ୍ତାରେ ଗୋଟେଏ ଶିଆଳ ମତେ କୁହେଁ, ମାଉସୀ ! ମତେ ଭାତ୍ ବେଳାଟା ଦେ, ଆର୍ ତୁଇ ମୋର ନେଟୁ ଧରି ପଛେ ପଛେ ଚ । ମୁଁ ତ ଆର୍ ଜାଣି ପାରୁନି ସେଇ ନାକ ଭାତ୍ ଖାଇ ଦେଉଥିବ ।"ନଧିଆ ଜାଣିଲା ସେଇ ଶିଆଳ ହିଁ ଭାତ୍ ଖାଇ ଦେଉଛି । ଦେଇ ନଧିଆ ତାର ମାଁକେ ଗୋଟେଏ ଦାଉ ଦେଇ କହିଲା, ତୁଇ କାଲି ଯେତେବେଳେ ଭାତ୍ ନେଇ କରି ଆସ୍‌ବେ ଦାଉଟା ଲୁକେଇ କରି ଧରିଥିବେ । ଦର୍ ବାଟେ ଶିଆଳତ ଭାତ୍ ବେଲା ଧର୍‌ବ ତୁଇତ ତାର ନେଣ୍ଟ ଧରି ଆସ୍‌ବେ ଠିକ୍ ଯେତେବେଳେ ନଈ ପାରେ-ଇବେ ସେତ୍‌କବେଳେ ତୁଇ ତାର ନେଣ୍ଟଟାକେ ଦାଉରେ କାଟି ଦେବେ ।

ବୁଢ଼ୀ ତାର ଆର୍‌ଦିନେ ନଧିଆ ଯେମତ୍ କହିଥିଲା ଠିକ୍ ସେମତ୍ ନଈ ପାଣିରେ ଚାଲିବା ବେଳେ ଦାଉରେ ତାର ନେଣ୍ଟଟାକେ ଏକା ଚଟ୍ ମାର୍‌ଲା ଯେ ଛିଣ୍ଡେଇ ଦେଲା । ନେଣ୍ଟଟା ଯେମିତି ଛିଣ୍ଡିଗଲା ବାଣ୍ଡିଆ ଦଉଡ଼ି ପାଲଉ ଥିଲା । ନଧିଆତ୍ ଆଗରୁ ସେଠେ ଲୁକି ଥିଲା, ସେତ୍‌କ ବେଳେ ସେ ତାକେ ପାକେଏଲା ନର୍‌ଘାଉଆ ।

ସେଇଠୁ ବାଣ୍ଡିଆ ନଧିଆକେ ନର୍‌ଧୂମ ରାଗଲା । କହିଲା, "ଶଲା ତୋର ମକା ଖାଇକରି ମୁଁ ଯେବେ ଧୂସ୍‌ନାଇଁ କରି ଦେଇଛୁ ମୋର ନାମ୍ ବାଣ୍ଡିଆ ନାହିଁ ।"

ଦେଇକରି ବାଣ୍ଡିଆ ତାର ସାଙ୍ଗ ମେନକ ଡ଼ାକି କରି ଗୋଟେଏ ବିଚ୍ଚାର କର୍‌ଲା । "ଯେମତ୍ ହେଉ ଆଜରାତ୍‌ରେ ନଧିଆର ବାଲରୁ ମକା ଚ଼ୁରି କରି ଖାଇବା' ହେଲେ ନଧିଆ କେମତ୍ କରି ବାଣ୍ଡିଆର ବିଚ୍ଚାରଟା ଜାଣିପାରି ସେ ମକା ବାଲ୍‌ରେ ରାତ୍‌ରେ ପାଖେ ଠେଙ୍ଗା ଗୋଟେଏ ରଖି ଚିତ ହୋଇ, ମରଲା ରକମ୍ ପଡ଼ି ରହିଲା । ସବୁ ଶିଆଳ ଆସି ଦେଖ୍‌ନେଏଁ ଯେ ନଧିଆ ମର୍‌ଲା ରକମ୍ ପଡ଼ି ରହିଛି । ଭାବନେସ୍ ନଧିଆ ବୋଧେସ୍ ମରିଯାଇଛି । ନଧିଆର ଚିତ୍ ହେଇ ପଡ଼ିବାର ଦେଖି ବାଣ୍ଡିଆ କହୁଛି—"ଗାଁରେ ନାଇଁ କାନ୍ଦଣା, ନଧିଆର ନାଇଁ ମରଣା ।" ତାର କଥା ଶୁଣି କରି ଆର୍ ଜଣେ କହୁଛି ନାଇଁ ବେ ଏ ଶଳାର—'ଗ୍ରାମରେ ଆଛୁ କାଣା, ଶିଆଲ୍ ମାର୍‌ବାର ନହୁଣ! ।" ଦେଇ ସିମିନେ ମକା ଭାଙ୍ଗ୍‌ବାର ଆରମ୍ଭ କରନେସ୍ କହୁଛନ୍ ସେତ୍‌କବେଳେ ନଧିଆ ଉଠିକରି ପାକେସ୍‌ଲା ସବୁ ଶିଆଳକ୍ ଠେଙ୍ଗେସ୍ ହେଲେ ବାଣ୍ଡିଆ ସବୁବେଳେ ପଛେ ଥାଏ । ତାକେ ପାକେସ୍‌ଲା ନଧୁମିଆଁ ଦୁଇ ଠେଙ୍ଗା । ସବୁ ଶିଆଳ ଡରେ ମରେ ଦଉଡ଼ି ପଳେସ୍ ନେସ୍, ଦେଇ ବାଣ୍ଡିଆକେ କହନେସ୍ "ଶଳା ଆମେ ତୋର

Digitized by srujanika@gmail.com

ନାଗି ଆଉ ମାଡ଼୍ ଖାଏନୁ । ତୁମ୍ଭ ଶଳା ମୋର ଭଲନାଇଁ ।'' ଦେଇ ବାଣ୍ଡିଆ ସବୁ ନକକ୍ ଦୁଝେଇସୁ ସୁଝେଇ କରି କହ୍ଲା ।'' ଏମତ୍ ଆର୍ ମକା ଖାଇ ହେବନି । ଇନାଗ ଚଲ ଗୋଟେସ୍ ଜ୍ୟୋତଷ ପାଶକ୍ ଯିବା । ସେ ଖଳିଖୁଲା ପାଞ୍ଜି କରି କହିବ କେମତ୍ କରି ମକାଖାଇ ହେବ ।''

ଶିଆଲ୍‌ମେନର୍ ଭ୍ଲ ବୁଦ୍ଧିପାରି ନଧିଆ ଜ୍ୟୋତଷ୍‌ବେଶ୍ ଧରି ବଣେ ଯାଉ-ଥାଏ । ଯେମତ୍ ଶିଆଲ୍ ମେନେ ତାକେ ଦେଖିଛନ୍ କହିନେସୁ "ଭାଇ ଏସୁ ! ଆମକ୍ ଟିକେ ଦେନା ଖଳି ପାଞ୍ଜି । ଆମେ କେମତ୍ କରି ନଧିଆର ପାଲୁ ମକା ସବୁ ଖାଉଁମୁଁ । ସେଇଠୁ ନଧିଆ ଖାଲି ଖାଲି ଭୂଇଁରେ ଗାର୍‌ଟାଣି ହିସାବ୍ କର୍ଲା ଦେଇ କହ୍ଲା, ।'' ତୁମର ମେନେ ଗୋଧେସୁ ଠାକୁରକେ ପୂଜା ଦିଅ । ଆର୍ ପୂଜା ମୁଇଁ କର୍ବ । ଆର୍ ପୂଜାର ନାଗି ମିଠେଇ, କଦଲ୍, ନଡ଼ିଆ ଏମତ୍ ଭଲ୍ ଭଲ୍ ଜିନସ୍ ସବୁ ଗାଦେସୁ (ବହୁତ) ଆଣ ।''

ଦେଇ କରି ଶିଆଲ୍‌ମେନେ ନଧିଆର୍ କଥାରେ ଗାଦେସୁ ଗାଦେସୁ ଜିନଷ୍ ଆଣି ପହିଞ୍ଚିନେସୁ । ନଧିଆ କହ୍ଲା, "ତୁମର ମେନେ ଗୋଟିଗୋଟେସୁ ଦଉଲା ଆର୍ ଦୁଇଟା ଖୁଣ୍ଟା ଆଣ । ଦେଇ କରି ଖୁଣ୍ଟା ଦୁଇଟା ଗାଡ଼ି ତାର୍ ଭିତର୍‌ରେ ତୁମର୍‌ମେନେ ସବୁ ଦଉଲାରେ ବାନ୍ଧି ହେଇ ଆଁଖିବୁଜି ବସିପଲ ତାର ପରେ ମୁଇଁ ପୂଜା ଆରମ୍ଭ କର୍ବ । "ଶିଆଲ ମେନେ ନଧିଆର କଥାରେ ସେମତ୍ କର୍ନେସୁ । ନଧିଆ ଖାଲିଖାଲି ପୂଜା କର୍ଲା ଆର ସବୁ ମିଠେଇ, କଦଲି ଆର୍ ଯାହାସବୁ ଜିନଷ୍ ଆଣିଥିନେସୁଁ ସବୁ ଖାଏଲା । ଦେଇକରି କହ୍ଲା, "ସବୁ ଇନାକ୍ ଆଁଖି ଖୁଲା । ଶିଆଲମେନେ ଆଁଖି ଖୁଲି ଦେଖନ୍ତି ସାମ୍‌ନାରେ ନଧିଆ ଠେଙ୍ଗା ଗୋଟେସୁ ଧରି ଠିଆ ହେଇଛି । ଶିଆଲ୍ ମେନେ ନଧିଆକେ ଦେଖି ଆର୍ କି ପାଲେସୁ ପାରୁଛନ୍ । ଆଗ୍‌ରୁତ ଦଉଲାରେ ବନ୍ଧା ହେଇଛନ । ଦେଇକରି ନଧିଆ ଗୋଟେସୁ ଗୋଟେସ୍ ଶିଆଲକେ ଗୁଡ଼ିଲା । ଆର୍ ଠେଙ୍ଗେସ୍ ଠେଙ୍ଗେସୁ ପାକାଲା ହେଲେ ବାଣ୍ଡିଆକେ ଦୁଇ ଠେଙ୍ଗା ପାକେସ୍ଲା । କହ୍ଲା, "ସବୁ ଶିଆଲକ୍ ଠେଙ୍ଗେସୁ ଠେଙ୍ଗେସୁ, ବାଣ୍ଡିଆକେ ଦୁଇଠେଙ୍ଗା ।''

ସବୁ ଶିଆଲ ତ ବାଣ୍ଡିଆର୍ ନାଗି ମାଡ଼୍ ଖାଇନେଇଁ ତେଣୁ ତାକେ ତାଙ୍କର୍ ଦଲୁ ଆଲ୍‌ଗା କରି ଦେନେସୁ । ସେଇଠୁ ବାଣ୍ଡିଆ ଏକ୍‌ଲା ଯାଉଥାଏ । ବଣେ ଗୋଟେସୁ ନେଉଳ ତାକେ ଦେଖି ହସି ଦେଲା । ବାଣ୍ଡିଆ ରାଗି କରି ନେଉଳ୍‌କେ ଦଉଡ଼େସ୍ଲା । ହେଲେ ନେଉଳ୍ ସଙ୍ଗେ କି ସେ ଆର୍‌ପାରେସୁ । ନେଉଳ ଦଉଡ଼ି ପାଲେସୁ ଯାଇ ଗୋଟେସୁ ଉଇ ହିକରାରେ ଡୁକି ଗେଲା । ଶିଆଲ ସେଠେ ପହିଞ୍ଚି ଉଇ ହିକରାରେ ଗାଣ୍ଡିକେ ଦାପେସ୍ କରି ବସି ପଲଲା । ମନେ ମନେ କହ୍ଲା, "ତୁଇ ଶଳା ଗାତୁ ଯେତେବେଲେ ବାହାରିବେ ତକେ ଶଳାକ ଖାଇବି ।

Digitized by srujanika@gmail.com

ଇଆଡ଼େ କ ହେଇଛନା ଉଇ ଟିକଗୁରୁ ଉଇ ବାହାର ବାଣ୍ଡିଆରେ ଗାଣ୍ଡିକେ କାଣା କରଦେଇଛନ୍ । ବାଣ୍ଡିଆ ଆର ଜାଣେସୁନ । ତାକେ ଯେତେବେଳେ ଉକ ନାଗଲା ସେ ଆର୍ ସମାଳ ପାର୍‌ଲାନ । ଉଇଟିକଘରୁ ଉଠି ପୋଖର୍‌କେ ଗେଲା ଆର୍ ସେଠେ ମାଛ ଧର ଖାସୁଲା । ବାଣ୍ଡିଆ ଗଟା ଗଟା ମାଛ ଗିଳୁଥାଏ ପୁଣି ପଛକ ଘୁଁ ହେସୁ ବେଳେ ଦେଖେସୁ ପୁଣି ମାଛ । ତାର ତ ଗାଣ୍ଡି କାଣା ସେ ଯେତେ ମାଛଗିଳେସୁ ଗାଣ୍ଡିଆଡ଼େ ବାହାରଯାଏ । ସେ ଆର୍ ଜାଣି ପାରେସୁନ । ମନେ ମନେ ଭାବଲା ମୁଁଇ ଏତେ ମାଛ ଖାସୁଲି ପେଟ କେନେ ପୁର୍‌ଲାନ । ଦେଇକର ସେ ଗାଣ୍ଡିବାଟେ ଯେତେ-ବେଳେ ହାତ୍ ମାର୍‌ଲା ଦେଖଲା ଗାଣ୍ଡଟା ତାର କାଣା । ହେଇ କର ମାଛ ଗୋଟେସୁ ଧର ସେ ଦଉଡ଼ଲା ମୁଚ ପାଶକ । କହଲା, "ମୁଚ ଭାଇ ମୋର ଗାଣ୍ଡଟା କାଣା ହୋଇଯାଇଛୁ ସିଲେଏ କରଦେ । ଆର୍ ଏ ମାଛଟା ନେ ।" ମୁଚ ମାଛ ନେଇ ସିଲେଏ ଏମନ୍ତ୍ କର୍‌ଲା ଯେ ତାର ଗାଣ୍ଡରେ ଆର୍ ବାଟ ବ ରଖଲାନ ।

ଦେଇ ବାଣ୍ଡିଆ ମନ ଖୁସିରେ ପୋଖର୍‌କେ ଯାଇ ମାଛ ଧର ଖାସୁଲା । ଏମନ୍ତ୍ ଦୁଇ ଦନ ଦନ ଗୁଲ୍‌ଗେଲା ପରେ ତାକେ ଧୁମ ହଗିକ ସୁଏଲା । ହେଲେ ସେକ ଆର୍ ହଗି ପାରୁତ, ଗାଣ୍ଡିତ ତାର ସିଲେଏ । ଦେଇ କର ସେ ଦଉଡ଼ଲା ଅସମାଳ ହେଇ କାମାର୍ ପାଶକ । ସେଠେ ଯାଇ କହଲା, "କାମାର୍ ଭାଇ ! ମୋର ଗାଣ୍ଡିରେ ଟିକେ ଫଣ ଦେଇ ଦେ ଯେମନ୍ତ୍ ଗାଣ୍ଡଟା ଟିକେ କାଣା ହେବ ।" କାମାର କହଲା, "ଠିକ ଆଛୁ । ତୁଇ ଗାଣ୍ଡଟା ଟିକେ ଟେକ କର ବସ । ମୁଁଇ ନୁହାଟା ତାତେସୁ ଆଣୁ ।" କାମାର ନୁହା ଗୋଟେସୁ ନିଆଁରେ ପୁରା ଗରମ କର ଟକ ଟକ ନାଲ କର୍‌ଲା । ଦେଇ ତାତ୍‌ଲା ନୁହାଟା ଆଣି ତାର ଗାଣ୍ଡରେ ହୁଙ୍ଗି ଦେଲା । ଯେମତ ନୁହାଟା ହୁଙ୍ଗିଚ ବାଣ୍ଡିଆ ତ ଦୁଇ ଦନଦନ ହଗି ଥିଲାନ ଦେଲା ଯେ ପିଚକାରୀ ଗୁହ ଏକାବେଳେ କାମାରର୍ ମୁହଁ ଗଟା ହେଇଗେଲା । ବାଣ୍ଡିଆ କ ଆର ସେଠେ ତୁହେସୁ, ଏକାବେଳେ ଊଆଁମାର ସେଠୁ ଦଉଡ଼ ପାଳେସୁଲା ।

(ଧରମପୁର୍, ମୟୁରଭଞ୍ଜ)

—o—

## ନେଷି, ଗଜ ଅଉ ଭାଲୁକୁଣୀ କଥା

ଘୁଟେ ଗାଆଁର ଗୁଟେ ବୁଢ଼ୀ ଥିଲା । ଗିରସ୍ତ ତାର ବହୁତ ଦନ ଆଗରୁ ମରି ଯାଇଥିଲା । ବୁଢ଼ୀ ଦୁଃଖ କଷ୍ଟ କର ଛୁଆ ଦଟାକୁ ପାଳି ପୁଷି ବଡ଼ କଲା । ଦଟା ଛୁଆ ଗୁଟେ ପୁଅ ଗୁଟେ ଝିଅ । ଝିଅ ନେଷି ବଡ଼, ପୁଅ ଗଜ ସାନ । ବୁଢ଼ୀ ଏକଲା ମଣଷ ।

Digitized by srujanika@gmail.com

ଲୋକଘରେ କାମକୁ ଯାଉ, ବିଲ ବାଡ଼ିକି ଯାଉ, ବଜାରକୁ ଯାଉ, ଯେଉଁଠିକି ଯାଉ ପଛେ ସଞ୍ଜ ବେଳକୁ ଫେରି ଆସେ । ଝିଅ ଦିଟା ଯେତେବେଳେ କୁଟୁକୁଟୁ ହୋଇଥିଲେ ସାଇ ପଡ଼ିଶାର ଲୋକ ଘର ବହୁତ ଝିଅଙ୍କୁ କହି କରି ବାହାରକୁ ଯାଉଥିଲା । ଆଉ ସଞ୍ଜ ବେଳକୁ ଘରକୁ ଫେରୁଥିଲା । କିଣା ବିକା କରି ଯାହା ଆଣୁଥିଲା, ସଞ୍ଜବେଳେ ଆସିନେ ଭାତ ଦିଟା ଫୁଟେଇ ପକେଇ ଝିଅ ଦିଟାକୁ ଖାଇବାକୁ ଦେଇ ଗୁଡ଼ର ଟିକେ ଚାଇଡେଲ ଚୁଲେଇ ଦେଇ ଶୋଇ ପଡ଼ୁଥିଲା । ଇମିତି କିଛି ବର୍ଷ କଟିଗଲା । ଝିଅଦିଟା ବଡ଼ ହେଲେ । ଝିଅ ଭିତରୁ ଝିଅଟା ନେଖି ଟିକେ ଚାଲାକ । ଏଣୁ କେତେ ବେଳେ ବେଳେ ବୁଢ଼ୀ ଧୂରଜାଗାକୁ ଯାଉଥିଲେ ଯଦି ଫେରି ନପାରେ ତେବେ ବି ଝିଅ ଉପରେ ଦାୟିତ୍ୱ ଦେଇ ନିଶ୍ଚିନ୍ତରେ ରହିପାରୁଥିଲା । ସୁଅଟା ଝିଅ ବୟସ ଅନୁଯାରେ ସେତେ ଚାଲାକ୍ ଚତୁର ନୁହେଁ । ଖାଏ ଆଉ ବୁଲେ । ସାଙ୍ଗ ମେଳରେ ଟିର୍, ଗାଡି, ଡୁଡୁ ଖେଳୁଥାଏ । ଭୋକ କଲେ ଘରକୁ ଆସି ଖାଇଦିଏ । ଇମିତି ଦିନ ଚାଲିଯାଉଥିଲା ।

ଦିନେ ବୁଢ଼ୀ ଝିଅଙ୍କୁ ଡାକି କହିଲା ନେଖିରେ ମୁଁ ଆଜି ଟିକେ ଧୂରି ଯାଗା ଯାଉଛି । ଆସିବାକୁ ଡେରି ହେଇଯାଇପାରେ । ଯଦି ସଞ୍ଜବେଳକୁ ନ ଫେରେ ତେବେ ତୁ ସକାଳ ବାଢ଼ିକି ଭାଇକୁ ଦବୁ, ନିଜେ ଖାଇବୁ । କବାଟ ମାରିକରି ଦିଜଣ ଶୋଇ ପଡ଼ିବ । ଆଉ ବାଛ୍ଡ଼ି ମୁହଁରେ ଦିଟା କୁଟା ପକେଇ ଦେଇଥିବ । ରାତିରେ ବାହାରକୁ ଉଠିବନି । ଇମିତି କହି ବୁଢ଼ୀ ଚାଲିଗଲା । ବୁଢ଼ୀହିର ଘର ଆଗରେ ଗୁଟେ ତାଳଗଛ ଥିଲା । ସେଇ ତାଳଗଛର ବହୁତ ବରଡ଼ା ନଦି ହୋଇ ରହିଥାଏ । ତା' ଭିତରେ ଗୁଟେ ଭାଲୁକୁଣୀ ବସା କରିଥିଲା । ଯେତେବେଳେ ବୁଢ଼ୀ ଆଉ ନେଖି କଥା କଇଥିଲେ, ସେତେବେଳେ ସେକଥା ଭାଲୁକୁଣୀ ସବୁ ଶୁଣୁଥିଲା । ଠିକ୍ ସଞ୍ଜ ହେବା ବେଳକୁ ନେଖି ସଞ୍ଜବତୀ ଦେଉଥିଲା ବେଳେ ଗୁଟେ ଧଳା ଲୁଗା ପିନ୍ଧିକରି ଭାଲୁକୁଣୀ ତାଳଗଛରୁ ଓହ୍ଲେଇ ଆସି ଘର ଭିତରକୁ ପଶିଗଲା । ସେତେବେଳକୁ ମୁନ୍ଦ୍ ଅନ୍ଧାର ହୋଇଗଲାଣି । ଭାଲୁକୁଣୀ ଆସିକରି କହିଲା, ନେଖିରେ ! ଗଜାରେ ! ଗୁଟେ ହେ ସ ବଛେଇ ଦିଅତ ମୁଁ ଟିକେ ଗଡ଼ି ପଡ଼େ । ମୋତେ ବହୁତ ଜର । ମୁଁ କିଛି ଖାଇନିନି । ମ ଗୋଡ଼ଟା ଟିକେ ଟିପି ଦବୁ । ଆଲଫାଲ ଜାଳିବେ ଜାଳିବେ ହବନି । ତୁମର ଦିଜଣ ଦିଟା ପଖାଳ ବାଢ଼ିଆଣି ଖାଇଦିଅ । ଆଉ ଘର କବାଟଟା ନଗେଇ ଦିଅ ।" ନେଖି କହିଲା, । ମା ତୁ ଖାଇବୁନି ? ବୁଢ଼ୀ କହିଲା "ନା ମାଆ ମୁଁ ଖାଇନିନି । ମୋର ମୁଟେ ଭୋକ ନାହିଁ । ତୁମର ଖାଇବତ ଖାଅ ନ ହେଲେ ଶୋଇପଡ଼ । ବୁଢ଼ୀ କଥା କହୁଥିଲା ବେଳେ କୁନ୍ଥ ଛାଡ଼ୁଥାଏ । ଅସଲ କଥା ହେଉଛି ଭାଲୁକୁଣୀକୁ ସଞ୍ଜବେଳେ ଜ୍ୱର ଆସେ । ସେଦିନବେଳେ ଜ୍ୱର ଆସିଥିଲା । ସେ କଥା କହୁଥିଲାବେଳେ କୁନ୍ଥଉ ଥିଲା । ନେଖି ଏସବୁ କଥା କିଛି ବୁଝିପାରିଲାନି । ସେ କିସ କଲାନା ସାନଭାଇ ଗଜାକୁ ଡାକିକରି

Digitized by srujanika@gmail.com

ପଖାଳ ଘଣ୍ଟା ବାଢ଼ିଦେଲା । ନିଜେ ଗୁଣ୍ଡେ ବାଢ଼ିକରି ଆଣି ଖାଇଲା । ଖାଇସାରି ଥାଳି ଗୁଣ୍ଡେଇ ଦେଇ ହାତ ମୁହଁ ଧୋଇସାରି ଦୁ ଜଣ ମା କଡକୁ ଚାଲି ଆଇଲେ ଶୁଇତେ । ଗଜ ଯେତେବେଳେ ମା' କୋଳରେ ଶୁଇବ ବଲିକ ଜିଦ ହେଲା, ବୁଢ଼ୀ କହିଲା 'ମତେ ବଡ଼ ଜଲ୍‌କ ଉଠୁଛି, ହେଁସଟା ଭଲକରି ଘୋଡ଼େଇ ଦେଏ । ଦେଇକି ଭାଇ ଭଉଣୀ ଏକା ପାଖରି ଶୁଇଯାଅ । ମ କଡକୁ ମୁଟେ ଆସନା । ମାଆର ଦେହ ଖରାପ ଦେଖି ନେଖି, ଗଜ ଦୁଜଣ ଏକାକଡ଼ରେ ଶୁଇଗଲେ । ତା'ପରେ ନେଖିର ଟିକେ ବଡ଼ ହୋଇ-ଗଲାଣି, ଭାବିଲା ମା ଦୂରଆ ଯାଗାରୁ ଚାଲି ଚାଲି ଆଇଛି, ତା'ର ଗୋଡ଼୍ ହାତ ବିନ୍ଧୁଥିବ । ତା ଗୋଡ଼ରେ୍ ଟିକେ ହାତ ବୁଲେଇ ଦେଇତେ ମନକରି ପାଖକୁ ଉଠିଗଲା । ହେଁସ କାଢ଼ିକରି ଗୋଡ଼ରେ ହାତ ଦେଲା, ଭାଲୁକୁଣୀ କହିଲା, "ହାଁ ହାଁ ମତେ ବଡ଼ ଶୀତ । ମୁଟେ ହେଁସ କାଢ଼ନା । ଗୋଡ଼ ହାତ ମର ଭାରି ବଥା । ଧୂରି ବାଟରୁ ଚାଲି ଚାଲି ଆଇଛି । ଟିପାଟିପି ମୁଟେ କରତେ ହବନା । ଛୁଆଟା ତୁ କଣ ଗୋଡ଼ମୁଡ଼ ଦବୁ । ଯାଆ ଶୁଇପଡ଼ । ନେଖିଯେ ଗୋଡ଼ରେ ହାତ ଦେଇଥିଲା, ଗୋଡ଼ସାରା ଚୂଲି ଥିବାର ଜାଣିପାରିଲା । ଭାବିଲା ମା' ଗୋଡ଼ତ ଏ ରକମ ନୁହେଁ । ମା' ଗୋଡ଼ ଏଟା ନୁହେଁ । ଏଟା ମାଆ ନୁହେଁ, ତାହାନେ ଏଟା କିଏ ? ଏଇଟା ନିଶ୍ଚୟ ଭାଲୁକୁଣୀ । ଆମର ଶୁଇଗଲା ପରେ ଇଏ ଆମକୁ ଭେଲେ ଭେଲେ ଖାଇଦବ । ସେଠୁ ଗଜକୁ ଡାକିକରି ଚୁପ୍‌ଚୁପ୍ କି ତା କାନରେ ସବୁ କହିଲା ।" ଗଜ କହିଲା "ତାହାନେ କଣ କରବା", ନେଖି କହିଲା, "ତୁ ହଗିତେ ଯିବୁ ବଲି କହିକରି ଖାଲିଖାଲି କାନ୍ଦ ।" ଗଜ କାନ୍ଦିଲା, ଭାଲୁକୁଣୀ ବୁଢ଼ୀ କହିଲା, "କଣ ହେଲାରେ; ଗଜ କାନ୍ଦିଲା କେନେ ? ପୋଡ଼ାମୁହିଁ, ନେଖି ତମ୍ଭର୍‌ରୁ ମ ଛୁଆଟା ଟିକେ ଶାନ୍ତିରେ ଶୁଇ ପାରିଲାନି ପରା । ତୁ ବଡ଼ ଭଉଣୀ, ସାନ ଭାଇକୁ ଚିହ୍ନୁଚ୍‌ନା କେଣ୍ଠଦେଲୁ ।" ନେଖି ବୁଢ଼ୀର୍ ପାଟି ଶୁଣି କହିଲା, "ମା'ରେ ମୁଁ ଗଜକୁ ଚିଟିନାହିଁ, ହଗିତେ ଯିବ ବଲି କହୁଚି । ଏତେ ରାତିରେ କିଏ ଯିବ ବାହାରକୁ କହତ ? ମୁଁ ନ ଯିବାକୁ ସେ କାନ୍ଦୁଚି । ଭାଲୁକୁଣୀ ସେଠୁ କହିଲା, ରାତିର ବାହାରକୁ ଯାଇତେ ହବନା, ଯା ଗୁହାଳର ବାଛୁରି ମୁହଁରେ ହଗିଦେ । ସେ ଖାଇଦେବ । ବାହାରକୁ ମୁଟେ ଯାଇତେ ହବନା । ନେଖି କଣ କଲାନା ଧିରକିନା କବାଟ ଖୋଲିଲା । ଭାଇ ଭଉଣୀ ଚାଲିଗଲେ ବାହାରକୁ । କବାଟ ବନ୍ଦ ହେଲାରୁ ଭାଲୁକୁଣୀ କହିଲା କିଛି ଶବ୍ଦ ହଉନିରେ । "ନେଖି କହିଲା," ମା ଗଜ ହଗିଲାବେଳେ ପାଡୁଁଚି । ବୁଢ଼ୀ ଚୁପ୍ ହେଲା । ବାହାରକୁ ଯାଇ ନେଖି କବାଟର ଝିଞ୍ଜିରି ମାରିଦେଇ ପଡ଼ିଶା ଘରକୁ ଚାଲିଗଲା । ସେଠି ସବୁକଥା ନେଖି କହିଲା । ଗାଁର ଲୋକମାନେ ଏକଜୁଟ ହୋଇକି ନେଖି ଘରକୁ ଆଇଲେ । ଆସିଲା ବେଳକୁ ଭିତରୁ ଗର୍ଜନ ଶୁଭୁଚି । ବାପ୍‌ରେ କି ଗର୍ଜନ ! କାନ୍ଥ ଚାମ୍ପୁଡ଼ି ଦାବୁଡ଼ି ପକଉଚି । ଦେଇ କହୁଚି, ହୁଁ ହୁଁରେ ନେଖି ଗଜ, କାଆଡ଼େ ଗଲରେ ମ ବାଳୁଆ ଗୋଡ଼୍‌କୁ ଦେଖି । ମୁଁ ତୁମକୁ ଆଜ ଖାଇ ଥାଆନ୍ତି ମନଭରି କରିରେ ।" ଗାଁ ଲୋକମାନେ ଯେ

Digitized by srujanika@gmail.com

ଥିଲେ, ଗୁଳି କଣା କରି ଭିତରକୁ ଶର ମାରିଲେ । ଘର ଭିତରକୁ ପଶି ଠେଙ୍ଗାରେ ମେ ମାଡ଼ ଦେଲେ ମାଡ୍‌ତ ମାଡ୍‌ତ ସେର୍ ପଇସା୍, ପିଟି ପିଟି କରି ମାରିଦେଲେ । ନେଖି ଗଜ୍ଜ ପଞ୍ଝଣା ଘରେ ସେଦିନ ରାତିରେ ରହିଲେ । ତା ପରଦିନ ତା ମାଁ ଆଇଲା ପରେ ସବୁ କଥା ଶୁଣିଲା । ଗପଟ ସରିଗଲା । ଖଲୁଟା ମରିଗଲା, କାଠିକୁଟା ଜାଳିଦେଲେ ।'' ନିଆଁରେ ତାକୁ ପୁଡ଼ିଦେଲେ ।

●

ବାଣିଦା—ବାଲେଶ୍ୱର

ବାହିର୍‌ଦା—ବଇଁଗ୍ରା, ମେଦିନୀପୁର,

## ବେଙ୍ଗ୍‌ଲା ବେଙ୍ଗ୍‌ଲି କଥା

ଏକ୍‌ଯେ ବେଙ୍ଗ୍‌ଲା ବେଙ୍ଗ୍‌ଲି ଥିନେ ଏଁ । ତାଙ୍କର ଝିଇ ଭିଉଣୀ । ଦିନେ ବେଙ୍ଗ୍‌ଲି ବେଙ୍ଗ୍‌ଲାକେ କହିଲା, ''ବେଙ୍ଗ୍‌ଲା ଏ ! ଚ, ଢନ୍ତ୍ରୋଲ୍ ପାଳିକ୍ ଯିବା ।'' ବେଙ୍ଗ୍‌ଲା କହିଲା, 'ଚ' । ଦେଇକରି ଦୁଇଜଣ ଢନ୍ତ୍ରୋଲ ପାଲ୍‌ତେ ଗେନେଏଁ । ବେଙ୍ଗଲା ଗଛେ ଚଢ଼ିଲା ଆଉ ବେଙ୍ଗଲି ତଳେ ରହିଲା । ଦେଇକରି ବେଙ୍ଗଲା ଢନ୍ତ୍ରୋଲ ବିଗ୍ରେଓ । ଥାଏ ବେଙ୍ଗଲି ତଳେ ପାଗ୍ରିରେ ଢନ୍ତ୍ରୋଲ୍ କୁଳେଏ କୁଳେଏ ଖାଉଥାଏ । ବେଙ୍ଗ୍‌ଲା ଗଛ ଉପରେ ଥାଇ ପଚ୍ରିଲା, ''ବେଙ୍ଗ୍‌ଲି, ପୂରିଲା କରେ ପାଗ୍ରି'' ବେଙ୍ଗ୍‌ଲି କହିଲା, ''କାଇଁରେ ବେଙ୍ଗ୍‌ଲା, ତୁଇ ଆରଦିଟା ବିଗ୍ରି ।'' ଏଇମିତି ବେଙ୍ଗ୍‌ଲା ତିନ୍ ଚ୍ରିଥର ପଚ୍ରିଲା ବେଳେ ବେଙ୍ଗ୍‌ଲି କହିଲା, ହଁ, ପାଗ୍ରି ପୂରିଗେଲା ତୁଇଅଇଁ ଆସୁ । ବେଙ୍ଗ୍‌ଲା ଗଛୁ ଅଇଁ ଆସି ଦେଖିଲା ପାଗ୍ରିଟା ଅଧା ହେଇଛି । ସେ ଜାଣିଲା ବେଙ୍ଗ୍‌ଲି ଅଧେ ଢନ୍ତ୍ରୋଲ୍ ଖାଇ ଦେଇଛି । ଦେଇକରି ସେ ରାଗିକରି ବେଙ୍ଗ୍‌ଲିକେ ଗୋଟେଯୁ ଢନ୍ତ୍ରୋଲ୍ ଛୁଟ୍ ମାରିଲା ଯେ, ବେଙ୍ଗ୍‌ଲି କାନ୍ଦି କାନ୍ଦି ଘର୍ ଦଉଡ଼ି ପାଲେଯିଲା । ଘରକ୍ ଆସି ବେଙ୍ଗ୍‌ଲି ଆର୍ କାହାରି ସଙ୍ଗେ କଥାବାର୍ତ୍ତା ବି କର୍‌ଲାନି କି ଖାଇକ୍ ବି ଗେଲାନି । ସେ ଗୋଟେଯୁ ଘରେ ରୁନ୍ ମାରି ବସି ରହିଲା । ଯେତେବେଳେ ଖାଯିବାର ବେଲ୍ ହେଲା ସେତିକି ବେଳେ ତାର୍ ମାଁ ତାକେ ଡ଼ାକିଲା । ଆସୁରେ ବେଙ୍ଗ୍‌ଲି, ଖାଏ୍‌ବେ ଭାତ । ବେଙ୍ଗ୍‌ଲି ରାଗିକରି କହିଲା, ତର୍ ପୁଅ ଶଳା ମକେ ମାରିଛି···''ନାଯିଯାଏ ବେଙ୍ଗ୍‌ଲି···ନାଯି···ଖାଏ ଭାତ ।'' ତା'ର ପରେ ତା'ର ବାଆ ଡ଼ାକିକ୍ ଆସିଲା । ବେଙ୍ଗ୍‌ଲି ସେଇମିତି କହିଲା । ତୋର ପୁଅ ଶଳା ମକେ ମାରିଛି । ନାଯି···ଯାଯି···ବେଙ୍ଗ୍‌ଲି ନାଯି···ଖାଏ ଭାତ ।'' ତାର ପରେ ତା'ର ଭାଇ ଡାକିକ୍ ଆସିଲା । ସେଇମିତି ବେଙ୍ଗ୍‌ଲି କହିଲା, ''ତୋର ଭାଇ ଶଳା ମକେ ମାରିଛି ନାଯି ଯାଯି···ବେଙ୍ଗ୍‌ଲି···ନାଯି···ଖାଏ ଭାତ ।'' ଘରର ସବୁ ଲୋକ୍ ତାକେ ଖାଇକ୍ ଡାକ୍ ନେଏଁ ବେଙ୍ଗ୍‌ଲି ଆର୍ ଖାଇକ୍ ଆସିଲାନି । ଦେଇ ଶେଷେ ବେଙ୍ଗ୍‌ଲା ଡାକିକ୍ ଆସିଲା,

Digitized by srujanika@gmail.com

କହିଲା, ତରେ ବେଙ୍ଗ୍‌ଲି ଖାଏବେ ଭାତ ।'' ବେଙ୍ଗ୍‌ଲି ଘଗିକଣ କହିଲା, ''ରୁଇ ଶଳା ମୋର ମାଣଛତ୍ର ନ ଯାସୁ ବେଙ୍ଗ୍‌ଲି ନ ଖାଏ ଭାତ ।,, ସେଇଠୁ ବେଙ୍ଗ୍‌ଲି ଘଗିକଣ କହିଲ ''ଆଣ ତଗୋ ମାଁ ଡନ୍ତ୍ରୋଳ ଗୁଣ୍ଡ୍ ବେଙ୍ଗ୍‌ଲି କେମ୍‌ତ ନାଏ ଖାଏ ଖାଏ ଭାତ ।'' ଦେଇ ବେଙ୍ଗ୍‌ଲି ଓରେ ଯାଇ ଭାତ୍ ଖାଏଲ । ବେଙ୍ଗ୍‌ଲି ଭାତ୍ ଖାଇ ସାର୍‌ଲ ପରେ ବେଙ୍ଗ୍‌ଲି କହିଲ, ''ବେଙ୍ଗ୍‌ଲି ରୁଇ ଆର୍ ଏମନ୍ତ ଡନ୍ତ୍ରୋଳ ଖାଏବେନ ନ ଆର୍ ହାଗ୍‌ବେନ ।'' ବେଙ୍ଗ୍‌ଲର କଥା ଶୁଣି ଘରର ସବୁ ନକ୍ ହସି ଦେନେଏଁ ଆର୍ ବେଙ୍ଗ୍‌ଲି ବ ।

(ଧରମପୁର୍, ମୟୂରଭଞ୍ଜ)

## ମଶା, ମୂଷା ଵଲେଇ

ଗୁଟେ ଗାଁର ମେଇଁ, ମଶା ଆଉ ମୂଷା ତିନ୍ ଜଣ ସଙ୍ଗାତ ଥିଲେ । ଛୁଆ କାଳରୁ ତିନ୍ ଜଣଙ୍କର ଭାରି ମେଳ । କେହି କାହାରିକୁ ଘଡ଼ିଏ ନ ଦେଖିଲେ ଅସମ୍ଭାଳ ଯାନ୍ତି୍‌ର ହେଇ ବଣ୍‌କୁ କୁଳି ଆଣିତେ ଯାନ୍ତି । ନଇକି ଗାଧିତେ ଯାନ୍ତି । ପାଖ୍‌ଛଡ଼ା ହୁଅନ୍ତିନ ।

ଦିନେ ବୁଲ୍‌ତେ ବୁଲ୍‌ତେ ମଶା କହିଲା, "ମୂଷା ହ ! ଗୁଟେ ବେପାର୍ କଲେ ଭଲ୍ ହେନ୍ତାନ ? ହାତ୍‌ର କିଛି ପଇସାପତ୍ର ହେଁତା । ତିନ୍‌ଜଣ୍ ସାର୍ ବସିକି କଥାଟାକୁ ବିଚାର କଲେ । ବହୁତ ବିଚାର ଆଲୋଚନା ପରେ ମୂଷା କହିଲା, ଅଫିମ ବେପ୍‌ସା କଲେ ସବୁଠୁ ବେଶି ଲାଭ ହବ । ପୁସ୍ତ ଖୁଲାରୁତ ଅଫିମ ହୁଏ । ପୁସ୍ତ ଗଛତ ଆମର ଏ ଆଡ଼େ ବହୁତ ଅଛି । ଖୁବ୍ ଭଲ ହବ । ତା ଛଡ଼ା ଆଜିକାଲି ଅଫିମ ମଦ ବହୁତ ଲୁକ ଖାଉଚନ୍ । ଆଉ, ଦୂକାନ୍‌କି, ଜାଣ ଅଫିମ ସରବରା ହଉନ ।

କଥାଟା ସମସ୍ତଙ୍କ ମନକୁ ପାଇଲା । ଦୂକାନ ପାଇଁ ଜାଗା ଠିକ୍ ହୋଇଗଲା । ଘର ତିଆରି ହେଲା । ଦୂକାନ ବି ଆରମ୍ଭ ହୋଇଗଲା । ଭଲ ରକମ୍ ବିକ୍ରି ବି ହେଲା । ଭଲ୍ ଲାଭ ହେଲା । ଏହା ଭିତରେ କିଛି ଦିନ ବିତିଗଲା ।

ବିଲେଇ ନାମିର ବାହାଘର ପାଇଁ ଟା ବାପ ବର ଖୁଜୁଥାଏ । ଏହା ଭିତରେ ବର ମିଳିଗଲା । ବାହାଘର ଠିକ୍ ହେଇଗଲା । ମେଇଁ ବାହା ହେଇଯିବ । ସମସ୍ତଙ୍କ ମନ୍‌ର ଦୁଃଖ । ଏଇ ସମୟରେ ଦିନେ ମଶା କତିକି ଗୁଟେ ଗୁରୁତ୍ୱର ଖବର ଆଇଲା । ତାକୁ ସେଠ୍‌କି ଜଲଦି ଯାଇତେ ହବ । ବାକି ରହିଲା ମୂଷା । ଏକ୍‌ଲଟା ଦୂକାନ କିମିତି ଚଲାବ ? ଦୂକାନ ଭାଙ୍ଗି ଦେଇକରି ପଇସା ପତ୍ର ସମସ୍ତେ ବାଣ୍ଟିକରି ନେଲେ । ଆଉ ବଳକା ମାଲ ସବୁ ତିନ ଜଣ ସାର୍ ଭାଗ କରିନେଲେ ।

Digitized by srujanika@gmail.com

ବଳେଇ ଅଫିମ ନେଇ କଣ କରିବ । ଭାବିଲା ଭାବିଲା । ଭାବି ଭାବି ଠିକ୍ କଲା । ମରିବ ନାହିଁ ଘରକୁ ଯିବ । ମୁଁ ଆଉ ଅଫିମ ଏଠି ରଖିମି କେନେ । ଶୁଣିଚି ଶଶୁର ଗୁଟେ ଅଛୁ । ତା'ର ବି ଦରକାର ହେଇପାରେ । ଭାବୁ ଭାବୁ ଚଟି ତା ଭାଗ ଅଫିମ ସବୁ ଗିଳି ପକାଇଲା । ମଶା ଗୃହଦାରିକୁ ଯିବ । ଗାଁର ଗୁଟେ ବୁଢ଼ାକୁ ଧରମ ଭଉଣି କରି ତା ପାଖ୍‌ର ଅଫିମ ରଖି ଦେଇଗଲା । ବାକି ରହିଲା ମୂଷା । ତାର ଭାଗ ଅଫିମକୁ ଗୁଟେ ଜାଗାର ଗାତ କରି ପୋତି ଦେଇଗଲା । ଜନର୍ ପରିବର୍ତ୍ତନ ପାଇଁ ସିଏ ଅନ୍ୟ ଦେଶକୁ ଚାଲିଗଲା ।

କିଛି ଦିନ୍ ପରେ ଦୁରଗା ପୂଜା ପଡ଼ିଲା । ମଶା ଛୁଟିରେ ଘରକୁ ଆଇଲା । ଅଫିମ କଥା ମନେ ପଡ଼ିଲାରୁ ତା ଭଉଣୀକି ତାକୁ ଯାଇକରି ଡାକିଲା । "ଭଉଣୀ, ଭଉଣୀ ଉଠ୍" କହି ଭଉଣୀ ଶୁଇଥିଲା ଉଠିଲାନି । ଓଲଟି ବୁଢ଼ୁଡ଼େ ଦେଇ ଘୁଡ଼େଇ ଦେଲା । ଭଉଣୀ ନ ଉଠିଲାରୁ ମଶା 'ତା' ଗୋଡ଼ ଧରିଲା । ତଥାପି ଭଉଣି ଉଠିଲାନି । ସେଇଦିନୁ ମଶା ସବୁ ମଣିଷର କାନ ପାଖର "ଭୁଣ ଭୁଣ" (ଭଉଣୀ ଭଉଣୀ) ବୋଲି ଡାକେ ଆଉ ଗୋଡ଼ ଧରେ । (କାମୁଡ଼େ) ।

ମୂଷା ବୁଲି ବୁଲି କି ଘରକୁ ଆଇଲା । ତା'ର ଅଫିମ କଥା ମନ୍‌ଲି ପଡ଼ିଲାରୁ ଅଫିମ ଖୁଜିଲା । କେଉଁଠି ପୋତିଥିଲା ତା'ର ଆଉ ମନ୍‌ଲି ପଡ଼ିଲାନି । ସବୁଆଡ଼ୁ ଖୋଳି ଖୋଳି ଅଫିମ ଖୋଜିଲା । ଆଜି ପର୍ଯ୍ୟନ୍ତ ସେ ଅଫିମ ଖୋଜୁଚି ।

ମେଇଁଚି ବାହା ହେଇଥିଲା । ପରେ ତା'ର ବୁଢ଼ା ଶଶୁର । ଖୁଁ ଖୁଁ କାଶେ । କାଶ ବନ୍ଦ୍ ହେବା ପାଇଁ କବିରାଜ୍ ଓଷୁଦ ସାଙ୍ଗାର ଅଫିମ ବରାଦ କଲା । ଅଫିମ ପରଖ ପଡ଼ିବ । ମେଇଁର ଅଫିମ କଥା ମନ୍‌ଲି ପଡ଼ିଗଲା । ସେ ବାଡ଼ି ଅଡ଼କୁ ଯାଇକରି ନଖ ପଞ୍ଝାରେ ଭୂଇଁ ସଫା କରି ହଗିଲା । ଦେଖିଲା, ଶୁଙ୍ଘିଲା । ତା'ପରେ ଢାଙ୍କି ଦେଇସାରି ମନ୍ ଦୁଖ୍‌ର ଘରକୁ ଆଇଲା । ଅଫିମଟା ପାଇଲାନି । ଯଦି ଗୁହରେ ବାହାରି ପଡ଼ିଥାଏ ତେବେ କେହି ନେଇ ପଳେଇବ । ସେଇ ପାଇଁ ସେ ଝାଡ଼ା ଫେରିସାରି ତା' ଗୁହକୁ ଢାଙ୍କି ଦେଇଯାଏ ।

ଏ କଥାଟି ଏତିକି । (ବାଣିଦା, ବାଲେଶ୍ୱର)

ଟିପ୍‌ପଣୀ :—ଗଳ୍ପଟିରେ ଲୋକଗାଳ୍ପିକଙ୍କର ପ୍ରକୃତି ନିରୀକ୍ଷା ଅସାଧାରଣ । ବିଳେଇ, ମୂଷା ଓ ମଶା ଏପରି ତିନୋଟି ସାଧାରଣ ଜୀବ ଆଉ କୀଟଙ୍କର ସ୍ୱଭାବ ସୁଲଭ ପ୍ରାକୃତିକ ଆଚରଣକୁ ଲକ୍ଷ୍ୟ କରି ଗାଳ୍ପିକ ସୁନ୍ଦର ଭାବରେ ସହଜ ବୋଧଗମ୍ୟ କରିଛନ୍ତି ଏଇ ଗଳ୍ପରେ ।

———

**୧ । ଅଜୟ୍ଯ ଚନ୍ଦ୍ର ଦାସ** (୧୮୮୭-୧୯୪୭)

ବାଲେଶ୍ୱର ସହର ଅନ୍ତର୍ଗତ ସୁନହଟ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀ ରୂପେ ବହୁ ବର୍ଷ କାର୍ଯ୍ୟ କରି ଅବସର ଗ୍ରହଣ କରିଥିଲେ । ଲିଖିତ ପୁସ୍ତକ : 'ଶ୍ୱେତ ଦ୍ୱୀପ ବାଣୀ' (କବିତା), 'ଶ୍ରେଷ୍ଠ ବନ୍ଦୀ ଭାରତୀ' ଇଂରେଜୀ ଅନୁଦିତ କବିତା ସଂକଳନ ପ୍ରକାଶିତ ।

**୨ । ଅଜିତ ଦାଶ ମହାପାତ୍ର**

ପିତା ସ୍ୱନାମଧନ୍ୟ ସାହିତ୍ୟିକ ଯଦୁନାଥ ଦାଶ ମହାପାତ୍ର, ମାତା ଶ୍ରୀମତୀ ଲକ୍ଷ୍ମୀ-ପ୍ରିୟା ଦେବୀ । ୧୯୪୮ ମସିହା ସେପ୍ଟେମ୍ବର ୧୨ ତାରିଖରେ ବାଲେଶ୍ୱର ସହର ଅନ୍ତର୍ଗତ ନୂଆ ବଜାରରେ ଜନ୍ମ ଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସାହିତ୍ୟରେ ଉଚ୍ଚ ଡିଗ୍ରୀ ପ୍ରାପ୍ତ ହୋଇ ବ୍ୟବସାୟକୁ ଜୀବିକା ଭାବରେ ଗ୍ରହଣ କରିଛନ୍ତି । ସେ ନିମ୍ନ-ଲିଖିତ କବିତା, ଗଳ୍ପ ଓ ନାଟକ ରଚନା କରିଛନ୍ତି । କବିତା ସଂକଳନଗୁଡ଼ିକର ନାମ— (୧) ଅନେକାଖିର ଲୁହ, (୨) ମନ ପୋଡ଼ିର ଦୃଶ୍ୟ, (୩) ଦେଖ ମୁଁ ଯାଉଛି ସଖି, (୪) ନଗରୀ ମୋ ଦେବୀ ପାଇଁ, (୫) ପ୍ରୀତି ଚନ୍ଦନ । ଗଳ୍ପ ସଂକଳନ :– ଅରଣ୍ୟ ଅଧିବାସ ଓ ନାଟକ—ନିଃଶବ୍ଦ ପାଦ ଶବ୍ଦ ।

**୩ । ଅର୍ଜ୍ଜୁନ ଚରଣ ଭଞ୍ଜ** (୧୮୯୪-୧୯୬୦)

ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ନିକଟବର୍ତ୍ତୀ ନଧକା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପିତା ସୃଷ୍ଟିଧର ଭଞ୍ଜ ମଧ୍ୟ ଜଣେ ପାଲା ଗାୟକ ଥିଲେ । ବାଲେଶ୍ୱର, ମେଦିନୀପୁର ଓ ମୟୂରଭଞ୍ଜ ଅଞ୍ଚଳର ଜଣେ ପ୍ରସିଦ୍ଧ ପାଲା ଗାୟକ ରୂପେ ବିଶେଷ ଖ୍ୟାତି ଅର୍ଜ୍ଜନ କରିଥିଲେ । ତାଙ୍କର କେତେକ ଛାନ୍ଦ, ଉପଦୀ ଓ ଗୀତର ଚିତ୍ରିତ ରଚନା ଅପ୍ରକାଶିତ ରହିଅଛି । ଲକଡା ଓ ତଡ଼େଶ୍ୱା ପାଳ, ଷଷ୍ଠୀ ପର ପାଲାର ନିର୍ଦ୍ଦେଶକ ଭାବରେ ସେ ପ୍ରସିଦ୍ଧ ଥିଲେ ।

**୪ । ଅଧିକାର ମୋହନ ସେନାପତି :**

ବାଲେଶ୍ୱର ସହର ଅନ୍ତର୍ଗତ ମଲ୍ଲିକାଶପୁର ଗ୍ରାମରେ ୧୮୯୮ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ଜଣେ ସଫଳ ଶିଶୁ ସାହିତ୍ୟିକ ରୂପେ ସୁପରିଚିତ । ଲିଖିତ ପୁସ୍ତକ : ବନ ଜଙ୍ଗଲ କଥା, ବର୍ଣ୍ଣ ସମ୍ପଦ, ସରଳ ସାହିତ୍ୟ । ଏତଦ୍ ବ୍ୟତୀତ ସେ ରାଷ୍ଟ୍ରଭାଷାର ପ୍ରସାର ନିମନ୍ତେ ବହୁ ପାଠ୍ୟ ପୁସ୍ତକ ରଚନା କରିଥିଲେ ।

Digitized by srujanika@gmail.com

**୫ । ଅନନ୍ତ କୁମାର ପଣ୍ଡା :**

ସ୍ୱନାମଧନ୍ୟ ଶିଳ୍ପୀ ବସନ୍ତ କୁମାର ପଣ୍ଡାଙ୍କର ପୁତ୍ର ଅନନ୍ତ ବାବୁ ୧୯୩୪ ମସିହାରେ ଭେଗବ୍ରହ୍ମପୁରଠାରେ ଜନ୍ମ ଗ୍ରହଣ କରିଛନ୍ତି । କଳାରେ ଉଚ୍ଚ ଶିକ୍ଷା ଲାଭ କରି ସେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଆନୁକୂଲ୍ୟରେ ଅଧ୍ୟାପନା ସହ ପ୍ରଶାସନ ଅଧିକାରୀ ରୂପେ ଅବସ୍ଥାପିତ ହୋଇ ସାରସ୍ୱତ ସାଧନାରେ ବ୍ରତୀ । ସେ ଏକାଧାରରେ ଜଣେ ସୁଦକ୍ଷ ଚିତ୍ର ଶିଳ୍ପୀ, ବାଦ୍ୟଯନ୍ତ୍ର ଶିଳ୍ପୀ ଓ କବି । 'ଅନ୍ୱେଷଣ' ଚିତ୍ର ଲାଗି ଲଳିତ କଳା ଚିତ୍ର ପ୍ରଦର୍ଶନୀରୁ ସ୍ୱର୍ଣ୍ଣ ପଦକ ଲାଭ କରିଛନ୍ତି । କାଠ ଖୋଦେଇ ମୂର୍ତ୍ତି ପ୍ରସ୍ତୁତ କରି ଶ୍ରୀ ପଣ୍ଡା ଲଳିତ କଳା ଏକାଡ଼େମୀ ଓ ଫାଇନ୍ ଆର୍ଟ ଏକାଡ଼େମୀରୁ ପୁରସ୍କୃତ ହୋଇ-ଛନ୍ତି । ଏତଦ୍‌ବ୍ୟତୀତ ସେ ଗଳ୍ପ ଓ କବିତା ଲେଖୁଥିବାର ଜଣାଯାଏ । ପ୍ରକାଶିତ ଗଳ୍ପ ସଙ୍କଳନ—'ସ୍ୱରାଜ୍ୟ ସ୍ୱପ୍ନ' ।

**୬ । ଅନନ୍ତ କୁମାର କର :**

ପିତାଙ୍କର ନାମ ପରଶୁରାମ କର ମାତା ଜ୍ଞାନଦା ଦେବୀ । ୧୯୩୬ ମସିହା ମେ ୭ ତାରିଖରେ ବାଲେଶ୍ୱର ଜିଲ୍ଲା ନମକନା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଅନନ୍ତ-ବାବୁ ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି । ଅଧ୍ୟାପନାକୁ ନିଜର ପେଶା ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ଲିଖିତ "ରୁଷ ଦେଶରେ ମାତ୍ର କେତୋଟି ଦିନ (ଭ୍ରମଣ କାହାଣୀ) ପ୍ରକାଶିତ । ସେ ଜ୍ୟୋତିର୍ମୟ ବସୁଙ୍କ ଲିଖିତ "ଚୀନ ଦେଶରେ ସତର ଦିନ,, (ଭ୍ରମଣ କାହାଣୀ) ଅନୁବାଦ କରିଛନ୍ତି । ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘର ମୁଖପତ୍ର "ଶିକ୍ଷା ପ୍ରଦୀପ"ରେ ନିୟମିତ ଲେଖି ଉପାସ୍ୟନ ଲାଭ କରିଛନ୍ତି । ଏତଦ୍‌ବ୍ୟତୀତ ଜଳେଶ୍ୱରରୁ ଗଣବାଦୀ ଲେଖକ ସାମ୍ମୁଖ୍ୟ ମୁଖପତ୍ର "ବହ୍ନିଶିଖା"ରେ ନିୟମିତ ପ୍ରବନ୍ଧ ଲେଖକ ଭାବେ ସୁପରିଚିତ ।

**୭ । ଅନନ୍ତ କୁମାର ପଣ୍ଡା :**

ପିତାଙ୍କର ନାମ କୃପାସିନ୍ଧୁ ଓ ମାତା ଇନ୍ଦୁମତୀ ଦେବୀ । ବାଲେଶ୍ୱର ଜିଲ୍ଲାର ବସ୍ତା ଥାନା ଅନ୍ତର୍ଗତ ନର୍ସିଂହପୁର ଗ୍ରାମରେ ୧୯୩୯ ମସିହା ଜୁଲାଇ ୨୩ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଉଚ୍ଚତର ଶିକ୍ଷାଲାଭ ପରେ ଅଧ୍ୟାପନା ସହିତ ଗବେଷଣା ଓ ସାରସ୍ୱତ ସାଧନାରେ ବ୍ରତୀ । ସେ ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ ଓ ସଫଳ ନାଟ୍ୟକାର ଭାବରେ ସୁପରିଚିତ । ରଚିତ ଗ୍ରନ୍ଥ-ନାଟକ :—ଅପରିଚିତ । ସନ୍ଦର୍ଭ—ଫକୀରମୋହନଙ୍କ ସାହିତ୍ୟରେ ନୀତିବୋଧ । ଏତଦ୍‌ବ୍ୟତୀତ ସାମୟିକ ପତ୍ର ପତ୍ରିକା ଓ ସଙ୍କଳନରେ ବହୁ ପ୍ରବନ୍ଧ ପ୍ରକାଶିତ ।

Digitized by srujanika@gmail.com

### ୮ । ଅନନ୍ତ କୁମାର ପରିଡ଼ା :

ପିତାଙ୍କର ନାମ କାର୍ତ୍ତିକ ଚନ୍ଦ୍ର ଓ ମାତା ଲକ୍ଷ୍ମୀପ୍ରିୟା ଦେବୀ । ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ଥାନାନ୍ତର୍ଗତ ସୁଙ୍ଗୋ ଗ୍ରାମରେ ୧୯୪୫ ମସିହା ନଭେମ୍ବର ୧ ତାରିଖ ଦିନ ଜନ୍ମ ଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ ପରେ ଅଧ୍ୟାପନା ସହ ସାରସ୍ୱତ ସାଧନାରତ ରହିଛନ୍ତି । ତାଙ୍କ ଲିଖିତ ନାଟକ :—(୧) ଛ' ମାଣ ଆଠ ଗୁଣ୍ଠ, (୨) ଦୂର ସହରର ଘଡ଼ି, (୩) ଏ ଲୁହେଁ ଇତିହାସ, (୪) ଶେର ଆଫଗାନ । ନାଟକ 'ଦୂର ସହରର ଘଡ଼ି ଜିଲ୍ଲା ସ୍ତରୀୟ ନାଟକ ପ୍ରତିଯୋଗୀତାରେ ଶ୍ରେଷ୍ଠ କାହାଣୀ ରୂପେ ପୁରସ୍କୃତ । ଏତଦ୍‌ବ୍ୟତୀତ ସେ କେତେକ ଗଳ୍ପ, କବିତା, ରମ୍ୟରଚନା ଓ ପ୍ରବନ୍ଧ ଲେଖିଥିବାର ଜଣାଯାଏ ।

### ୯ । ଅନ୍ନଦା ପ୍ରସାଦ ରକ୍ଷିତ୍ :

ପିତାଙ୍କର ନାମ ଅମୂଲ୍ୟ ଚନ୍ଦ୍ର ଓ ମାତା ନନ୍ଦରାଣୀ ଦେବୀ । ୧୯୨୭ ମସିହା ନଭେମ୍ବର ୫ ତାରିଖରେ ବାଲେଶ୍ୱର ମାଣିଖମ୍ବ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଜଣେ ଉଚ୍ଚ ଶିକ୍ଷିତ ଭାବରେ ରାଜ୍ୟ ଶିକ୍ଷା ବିଭାଗରୁ ଅବସର ଗ୍ରହଣ କରି ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ଉପନ୍ୟାସ :—(୧) କେତେ କଣ୍ଟା କେତେ ଫୁଲ (୧୯୬୮), (୨) ସ୍ୱର୍ଣ୍ଣ ରେଣୁ (୧୯୭୭), (୩) ଅଶାନ୍ତ ପୃଥିବୀ (୧୯୯୦), (୪) ନୀଳମ୍ ବିବି (୧୯୯୧ ; ପ୍ରକାଶିତ ଗଳ୍ପ ଗ୍ରନ୍ଥ :— ୧) କଥନିକା (୧୯୬୧), କର୍ଣ୍ଣକୁନ୍ତୀ ଅଳକା (୧୯୭୭), ନୀଳ ଆକାଶ ଓ ସବୁଜ ଧରଣୀ । କବିତା ଗ୍ରନ୍ଥ ବଜ୍ର ଓ ବିଦ୍ୟୁତ୍ (୧୯୭୮) ଏବଂ ଶିଶୁ କବିତା 'ଟିମ୍ ଟିମା ଟିମ୍ ଟିମ୍ (୧୯୭୪) ପୁସ୍ତକଟି ୧୯୭୫ ମସିହାରେ ଓଡ଼ିଶା ସରକାରଙ୍କ ଦ୍ୱାରା ପୁରସ୍କୃତ । ତାଙ୍କର 'ମଲ୍ଲ ନଈର ଇତିହାସ' ଓ 'ଏଇ ସେ ଆସୁଛି ଝଡ଼' ଦୁଇଖଣ୍ଡ ଉପନ୍ୟାସ ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଅଛି । ଅପ୍ରକାଶିତ ଶିଶୁ କବିତା :—(୧) ଗୋଟିଏ ମାଆର ସନ୍ତାନ ଆମେ, (୨) ଏଇ ଭାରତର ସନ୍ତାନ ଆମେ । ଅପ୍ରକାଶିତ ଶିଶୁ ଗଳ୍ପ :—(୧) ସ୍ୱପ୍ନ ବି ସତ ହୁଏ, (୨) ବାଘ ସିଂହ, (୩) ନୀଳ ବେଙ୍ଗ କଥା; ୪) ଶିଶୁ ଫୁଲ ପରି ପବିତ୍ର । ଅପ୍ରକାଶିତ ଅନୁବାଦ :—(୧) ମୋ ଜୀବନ କାହାଣୀ (ମୋହନ ଦାସ କରମ ଚାନ୍ଦ ଗାନ୍ଧୀ) । ପ୍ରକାଶିତ ଅପ୍ରକାଶିତ ଗଳ୍ପ ଓ କବିତା :—ଓଡ଼ିଶାର ବିଭିନ୍ନ ସାମୟିକ ପତ୍ରିକାରେ ଶତାଧିକ ଗଳ୍ପ ଓ କବିତା ପ୍ରକାଶିତ । ଏତଦ୍‌ବ୍ୟତୀତ ୧୯୭୫ ମସିହାରେ ଶିଶୁ ସାହିତ୍ୟିକ ଭାବେ ଓଡ଼ିଶା ସରକାର ଓ ଔପନ୍ୟାସିକ ଭାବେ ୧୯୮୭ରେ ବାଲେଶ୍ୱର ବାର୍ତ୍ତା ପ୍ରତିଷ୍ଠାନ ଦ୍ୱାରା ମାନପତ୍ର ପ୍ରାପ୍ତ ଓ ସମ୍ମାନିତ ।

Digitized by srujanika@gmail.com

**୧୦ । ଅଶରଫ୍ ଅଲି ଖାଁ :**

ବାଲେଶ୍ୱର ନିବାସୀ ହାଜୀ ଅଶରଫ୍ ଅଲି ଜଣେ ଉଚ୍ଚକୋଟୀର ଲେଖକ ଭାବେ ପ୍ରତିଷ୍ଠିତ । ୧୯୧୭ ମସିହାରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରଚେଷ୍ଟାରେ ତାଙ୍କୁ ନିଖିଳ ଉତ୍କଳ କବି ସମ୍ମେଳନରେ "କାବ୍ୟ ରତ୍ନାକର" ଉପାଧିରେ ଭୂଷିତ କରାଯାଇଥିଲା । ଫକୀର ମୋହନଙ୍କ 'ମାମୁଁ' ଉପନ୍ୟାସ ଉପରେ ତାଙ୍କର ଆଲୋଚନା 'ଉତ୍କଳ ସାହିତ୍ୟ' ପତ୍ରିକାର ଅଷ୍ଟାଦଶ ଭାଗ ଦ୍ୱିତୀୟ ଓ ତୃତୀୟ ସଂଖ୍ୟାରେ ପ୍ରକାଶ ପାଇଥିଲା । ତାଙ୍କ 'ଅଦ୍ଭୁତ ସାକ୍ଷୀ' ପୁସ୍ତକଟି ୧୯୨୭ ମସିହାରେ ବାଲେଶ୍ୱର ପ୍ରଜାତନ୍ତ୍ର ପ୍ରେସରୁ ପ୍ରକାଶ ପାଇଥିଲା । ଏତଦ୍ ବ୍ୟତୀତ ପ୍ରଦୋଷ 'ପଦ୍ମିନୀ' ପ୍ରେମୋଚ୍ଛ୍ୱାସ ପ୍ରଭୃତି କେତେ ଖଣ୍ଡି କବିତା ପୁସ୍ତକ ରଚନା କରିଥିବାର ଜଣାଯାଏ । କେତେକ ପାଣ୍ଡୁଲିପି ଅପ୍ରକାଶିତ ରହିଅଛି । ଉର୍ଦ୍ଦୁଭାଷୀ ହୋଇ ମଧ୍ୟ ଅଶରଫ୍ ଅଲି ଓଡ଼ିଆ ଭାଷାରେ ସାହିତ୍ୟ ସାଧନା କରି ଭାବଗତ ସଂହତି ରକ୍ଷା ଲାଗି ଯେଉଁଭଳି ଉଦ୍ୟମ କରି ଯାଇଛନ୍ତି, ତାହା ବାସ୍ତବିକ ଗୌରବର ବିଷୟ ।

**୧୧ । ଆନନ୍ଦ ତୁଙ୍ଗ :**

ପିତାଙ୍କର ନାମ ଭାଗବତ ତୁଙ୍ଗ, ମାତା ଶାରଦାମଣି ଦେବୀ । ମୟୂରଭଞ୍ଜ ଜିଲ୍ଲାର କାଳିଆଶୋଳ ଗ୍ରାମରେ ୧୯୩୯ ମସିହା ନଭେମ୍ବର ୮ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ସେ ଜଣେ ରାଜ୍ୟପାଳ ପୁରସ୍କାରପ୍ରାପ୍ତ ପ୍ରାଥମିକ ଶିକ୍ଷକ । ତାଙ୍କର ରଚିତ କବିତା, ଗୀତିନାଟ୍ୟ ଓ ଗଳ୍ପର ନାମ :—(୧) ଗୀତି ମଞ୍ଜୁଷା (ପଦ୍ୟ) ୧୯୮୭, ୨) ଧର୍ମପଦ ପଦ୍ୟ ଗୀତନାଟ୍ୟ (ଦାସକାଠିଆ) ୧୯୮୨, (୪) ଭକ୍ତ ପ୍ରହ୍ଲାଦ ପଦ୍ୟ ଗୀତ ନାଟ୍ୟ (ଦାସକାଠିଆ] ୧୯୮୨, (୪) ଭଞ୍ଜ ଭୂମି (ପଦ୍ୟ) (ମୟୂରଭଞ୍ଜ) ୧୯୮୦, (୫) ପରିବେଶ ସୁରକ୍ଷା (ପଦ୍ୟ) ୧୯୮୮, (୬) ଅମୃତ ସନ୍ତାନ (ପଦ୍ୟ) ୧୯୮୫, (୭) ବ୍ୟାସ କବି ସ୍ମରଣେ (ପଦ୍ୟ) ୧୯୮୮, (୮) ଉତ୍କଳ ଗୌରବ ମଧୁସୂଦନ ସ୍ମରଣେ (ପଦ୍ୟ), (୯) ଉତ୍କଳ ଦିବସ ସ୍ମରଣେ (ପଦ୍ୟ) ୧୯୮୭; (୧୦) ସୁନା ଗିନ୍ନି (ପଦ୍ୟ) ୧୯୮୮, (୧୧) ରାଇରଙ୍ଗପୁର ଗୀତିକା ୧୯୮୦, (୧୨) ପୂଜ୍ୟ ପୂଜା (ପଦ୍ୟ) ୧୯୮୯, ଅଭିନନ୍ଦନ (ପଦ୍ୟ) ୧୯୮୧, (୧୩) ଗୁରୁ ଦିବସ (ପଦ୍ୟ) ୧୯୮୭, (୧୫) ବିଶ୍ୱପତିଙ୍କ ଜଣାଣ (୧୯୯୦), (୧୬) ଗୃହ ଜାଣିଲେ ବାଟ ସୁନ୍ଦର (ଗଳ୍ପ) ୧୯୮୮, ।

**୧୨ । ଆନନ୍ଦ ମହାନ୍ତ :**

ପିତାଙ୍କର ନାମ ଶିବପ୍ରସାଦ ଓ ମାତାଙ୍କର ନାମ ସତ୍ୟଭାମା ଦେବୀ । ସେ ମୟୂରଭଞ୍ଜର ଚନ୍ଦଡ଼ା ଗ୍ରାମରେ ୧୯୫୪ ମସିହା ମେ ମାସ ୮ ତାରିଖରେ ଜନ୍ମଗ୍ରହଣ

Digitized by srujanika@gmail.com

କରିଛନ୍ତି । ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଭାବରେ ଅଧ୍ୟାପନାକୁ ନିଜର ବୃତ୍ତି ଭାବରେ ଗ୍ରହଣ କରିଛନ୍ତି । ପ୍ରକାଶିତ ପୁସ୍ତକ— ୧) ଉତ୍ତର ଓଡ଼ିଶାର ଲୋକକଥା ୧ମ, ୨ୟ ଓ ତୃତୀୟ ଭାଗ (୨) ଗପ ଶୁଣିବା ଆସ, (୩) ସତ୍ତାର୍ଥ ଗଳ୍ପ, (୪) ଜ୍ଞାନ ତପସ୍ୱୀ ଧାର୍ମିକ ଷ୍ଟିନ୍ । ଏତଦ୍ ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ଅନେକ ଲେଖା ପ୍ରକାଶିତ । ପ୍ରକାଶନ ଗୃହ୍ର ସମିତ ବସ୍ତୁବ ମିଳନରେ ଓ ନିଖିଳ ଉତ୍କଳ ଶିଶୁ ସାହିତ୍ୟ ତରଫରୁ ଶିଶୁ ସାହିତ୍ୟିକ ରୂପେ ସମ୍ମାନିତ ।

## ୧୩ । ଅନନ୍ତ ଶଙ୍କର ଦାସ :

ପିତାଙ୍କର ନାମ ଦୁର୍ଗାଚରଣ ଓ ମାତାଙ୍କର ନାମ ଶୁକମଣି ଦେବୀ । ବାରିପଦା ସହରର ବଡ଼ ବଜାରରେ ୧୯୨୯ ମସିହା ମାର୍ଚ୍ଚ ୨ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଶିକ୍ଷା ପରେ ସରକାରୀ ଚାକିରିରୁ ଅବସର ଗ୍ରହଣ କରି ଅଦ୍ୟାବଧି ସାରସ୍ୱତ ସାଧନାରେ ବ୍ରତୀ । ଜଣେ ସଫଳ ନାଟ୍ୟକାର ନିର୍ଦ୍ଦେଶକ ଓ ଅଭିନେତା ଭାବରେ ଓଡ଼ିଶାରେ ସୁପ୍ରତିଷ୍ଠିତ । ତାଙ୍କ ଲିଖିତ ପୁସ୍ତକଗୁଡ଼ିକ ହେଲା :—ନାଟକ—(୧) ସମାଧି (୧୯୪୭), (୨) ସଉରୁକ (୧୯୫୩), (୩) ଚନ୍ଦ୍ରଭାନୁ (୧୯୫୫), (୪) ଲୁହା ଶିକୁଳି (୧୯୫୬), (୫) ଚକାଭଉଁରୀ (୧୯୫୭), (୬) ଭାନୁମତୀର ଖେଳ (୧୯୬୭), (୭) କପଟ ପାଶା (୧୯୬୮) (୮) ଚଢ଼େଇଖାନା (୧୯୭୩), (୯) ଧର୍ମର ଅଭିଶାପ (୧୯୭୮), (୧୦) ଫୁଲ ଶଯ୍ୟା (୧୯୮୦), ୧୧) କିଏ କ'ଣ କାହିଁକି (୧୯୮୦), (୧୨) ଦୁଇଟି ଆଖି (୧୯୮୧), (୧୩) ଡାକ୍ତରଖାନା (୧୯୮୨), (୧୪) ଫୁଲ ଚନ୍ଦନ (୧୯୮୨), (୧୫) କଇଁଚି ଖେଳ (୧୯୮୩) (୧୬) ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ (୧୯୮୪), (୧୭) ଉପହାର (୧୯୮୭), ଶିଶୁ ନାଟକ— (୧) ବୁଲୁ ଓସ୍ତାଦ (୧୯୫୮), (୨) ମଣି କାଞ୍ଚନ (୧୯୬୯), (୩) ଗୀତା ସଣ୍ଢା (ଏକାଙ୍କିକା ୧୯୮୯) । ଅପ୍ରକାଶିତ ରଚନା (ନାଟକ)— (୧) କେନ୍ଦୁଝର (୧୯୪୫), (୨) ଦାବୀ (୧୯୪୭), (୩) ଶେଷ ଦେଖା (୧୯୪୮), (୪) କିରଣୀ (୧୯୫୦), (୫) ନବ ଯୁଗର ନାରୀ (୧୯୫୬), (୬) ଅଭିଶପ୍ତା (୧୯୫୭), (୭) ଜ୍ୱାଳାମୁଖୀ (୧୯୮୯), । ଅନୁଦିତ — ୧) ଶାହାଜାହାନ (୧୯୫୧), (୨) ମାନସୀ (୧୯୬୨), (୩) କାଳିନ୍ଦୀ (୧୯୬୩), (୪) ତାପସୀ (୧୯୬୪), (୫) ରୂପାନ୍ତର ଜନ୍ମ ପଞ୍ଚ ଉପାଖ୍ୟାନ (୧୯୬୫), (୬) ତାଙ୍କର ରଙ୍ଗ କଳା (୧୯୬୯) । ଏକାଙ୍କିକା—(୧) ପଞ୍ଚ ପାଣ୍ଡବ (୧୯୪୧), (୨) ପେଟେଣ୍ଟ ମେଡ଼ିସିନ୍ (ନାଟକ—୧୯୪୨), (୩) ବେଲପତ୍ର (ନାଟକ—୧୯୬୦), (୪) କୁମାର ପୂର୍ଣ୍ଣିମା [ନାଟକ—୧୯୬୩], [୫] ଦାମ୍ପତ୍ୟ କଳହେ ଚୈବ [୧୯୮୯], [୬] ଅଧର୍ମ ବିତ୍ତ [୧୯୮୯] । ଏହାଛଡ଼ା ତାଙ୍କ ଲିଖିତ ପ୍ରାୟ ୩୦ ଗଳ୍ପ ଓ ବହୁ ନାଟକ ଶତାଧିକ ପତ୍ରପତ୍ରିକାରେ ପ୍ରକାଶିତ । ଏତଦ୍ ବ୍ୟତୀତ ସେ ବିଭିନ୍ନ ଅନୁଷ୍ଠାନ ଓ ସାହିତ୍ୟ

Digitized by srujanika@gmail.com

ଏକାଡେମୀ ତରଫରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ତାଙ୍କର ତିନୋଟି ନାଟକ [ଅଭିମାନ, ଫୁଲ ଚନ୍ଦନ ଓ ପରଦେଶୀ ଚଢେଇ] ଚଳଚ୍ଚିତ୍ର ରୂପଲାଭ କରିଅଛି ।

**୧୪ । ଇନ୍ଦୁଭୂଷଣ କର :**

ପିତାଙ୍କ ନାମ ଯୋଗେନ୍ଦ୍ରନାଥ ଓ ମାତା ନୀରବାଳା ଦେବୀ । ବାଲେଶ୍ୱର ଜିଲ୍ଲାର କଣ୍ଟିଆ ନିକଟବର୍ତ୍ତୀ ଚଣ୍ଡୀପୁର ଗ୍ରାମରେ ୧୯୩୫ ମସିହା ମାର୍ଚ୍ଚ ୧୨ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଏଲହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଉଚ୍ଚଶିକ୍ଷା ଲାଭ କରି ସେ ଓଡ଼ିଶା ପ୍ରଶାସନିକ ସେବାରେ ଉଚ୍ଚ ପଦବୀରେ ନିଯୁକ୍ତ ଓ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ :—(୧) ନିଃସଙ୍ଗ ଆକାଶ (କବିତା—୧୯୬୭), (୨) ସାହିତ୍ୟ ସମାଜ ଓ ସଂସ୍କୃତି (ପ୍ରବନ୍ଧ—୧୯୭୯ (୩) ଶିଶୁ କବିତା ସଂଗ୍ରହ ପ୍ରକାଶିତ । (୪) ଅନୁବାଦ—ଶବ୍ଦେର ଆକାଶ କବି ଡ: ସୀତାକାନ୍ତ ମହାପାତ୍ରଙ୍କ କବିତାର ବଙ୍ଗଳା ଅନୁବାଦ । ଏତଦ୍ ବ୍ୟତୀତ 'ଇମେଜ' ଇଂରାଜୀ ପତ୍ରିକାର ସମ୍ପାଦନା । ବିଭିନ୍ନ ପତ୍ରପତ୍ରିକାରେ ବହୁ ପ୍ରବନ୍ଧ ଓ ରମ୍ୟ ରଚନା ପ୍ରକାଶିତ ।

ଡକୁମେଣ୍ଟାରୀ ଫିଲମ୍ ଗୃହପୁର—ଏ ଟୁରିଷ୍ଟ ପାରାଡ଼ାଇଜ୍ ଓ 'ବ୍ୟାସକବି ଫକୀର ମୋହନ ଟେଲି ଫିଲମର ଲେଖକ ରୂପେ ପ୍ରସିଦ୍ଧ ।

ଆହ୍ଲାବାଦରୁ ୧୯୮୧-୮୨ରେ ବେଷ୍ଟ ଡ୍ରାମାଟିକ୍ ଭାବରେ ପୁରସ୍କୃତ । ବଙ୍ଗାନୁବାଦ 'ଶବ୍ଦେର ଆକାଶ' ନିମନ୍ତେ ସି· ଆଇ. ଆଇ. ଏଲ୍. ମହୀଶୂର ଦ୍ୱାରା ୧୯୯୨ ରେ ପୁରସ୍କୃତ ।

**୧୫ । ଉଦୟ ନାରାୟଣ ଜେନା :**

ବାଲେଶ୍ୱର ସହରରେ ୧୯୩୪ ମସିହାରେ ଜନ୍ମଗ୍ରହଣ କରିଛନ୍ତି । କଳାରେ [Fine Art]ରେ ଉଚ୍ଚଶିକ୍ଷା ଲାଭ କରି ସରକାରୀ ଚାକିରୀ ସହିତ ଶିଳ୍ପୀ ସାଧନାରେ ବ୍ରତୀ । ସୁପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ଝଙ୍କାର' ଓ 'ଅଗ୍ନିବୀଣା'ର ପ୍ରଚ୍ଛଦପଟ, ବହୁ ପୁସ୍ତକର ଅଙ୍କିତ ପ୍ରଚ୍ଛଦପଟର ଶିଳ୍ପୀରୂପେ ସୁପରିଚିତ । ତାଙ୍କ ଅଙ୍କିତ ବହୁଚିତ୍ର ଦେଶ ବିଦେଶରେ ପ୍ରଶଂସିତ ଓ ସଂରକ୍ଷିତ ହୋଇଅଛି । ଚିତ୍ରକଳା ସମ୍ପର୍କୀୟ ପୁସ୍ତକ ରଚନା କରି ସେ ଅଶେଷ ଖ୍ୟାତି ଅର୍ଜନ କରିଛନ୍ତି । ଅଳ୍ପ ବୟସର ପିଲାଙ୍କ ମନରେ ଚିତ୍ରକଳା ପ୍ରତି ଆଗ୍ରହ ସୃଷ୍ଟି ନିମନ୍ତେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଆନୁକୂଲ୍ୟରେ 'ସନ୍‌ଡେ ସ୍କୁଲ ଅଫ୍ ଆର୍ଟ'ର ଆରମ୍ଭ କରିଛନ୍ତି ।

Digitized by srujanika@gmail.com

ସାଧନାର ସ୍ୱୀକୃତି ସ୍ୱରୂପ 'ଓଡ଼ିଶା ଲଳିତ କଳା ଏକାଡେମୀ' ଓ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ତରଫରୁ ବହୁଥର ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

**୧୬ । ଉପେନ୍ଦ୍ର ନାଥ ଦତ୍ତଗୁପ୍ତ :**

ବାଲେଶ୍ୱର ସହରରେ ଜନ୍ମଲାଭ କରି ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ ପଦ ଅଳଙ୍କୃତ କରିଥିଲେ । ଲିଖିତ ଗ୍ରନ୍ଥ : 'Folk Tales of Orissa' ପ୍ରକାଶିତ ।

**୧୭ । ଉମେଶ ଚନ୍ଦ୍ର ଦାସ :**

ପିତାଙ୍କ ନାମ ଗୋବିନ୍ଦ ବଲ୍ଲଭ ଓ ମାତା ରମାମଣି ଦେବୀ । ମୟୂରଭଞ୍ଜ ଜିଲ୍ଲାର ଚନ୍ଦଡ଼ା ଗ୍ରାମରେ ୧୯୩୪ ମସିହା ନଭେମ୍ବର ୩ ତାରିଖରେ ଜନ୍ମ । ଅବସରପ୍ରାପ୍ତ ସରକାରୀ କର୍ମଚାରୀ । ସମାଜସେବା ସହିତ ସାରସ୍ୱତ ସାଧନରେ ବ୍ରତୀ । ଲିଖିତ ନାଟକ : ମହାରଥୀ କର୍ଣ୍ଣ (୧୯୫୪), ଗୟାତୀର୍ଥ [୧୯୬୧], ପୂର୍ଣ୍ଣାହୁତି [୧୯୬୨], ଶାହାଜାହାନ [୧୯୬୫] ପ୍ରକାଶିତ । ଏତଦ୍‌ବ୍ୟତୀତ 'ଝଙ୍କାର' ଓ 'ଇନ୍ଦିରା' ପ୍ରଭୃତି ପତ୍ରିକାମାନଙ୍କରେ ଲେଖାସବୁ ପ୍ରକାଶିତ । 'କୋଣାର୍କ'—ଅପ୍ରକାଶିତ ନାଟକ ।

**୧୮ । ଉମେଶ ଚନ୍ଦ୍ର ନାୟକ :**

ବାଲେଶ୍ୱର ଜିଲ୍ଲାନ୍ତର୍ଗତ ଭୋଗରାଇ ଅଞ୍ଚଳର ମହେଶପୁର ଗ୍ରାମରେ ୧୯୧୮ ମସିହା ଜୁଲାଇ ୪ ତାରିଖରେ ଜନ୍ମଗ୍ରହଣ କରି ୧୯୯୨ ମସିହା ମାର୍ଚ୍ଚ ମାସ ୬ ତାରିଖରେ ଇହଧାମ ତ୍ୟାଗ କରିଥିଲେ । ଏଲୋପ୍ୟାଥି ଚିକିତ୍ସକ ରୂପେ ସଫଳତା ଅର୍ଜନ ସହିତ ଆଜୀବନ ସାରସ୍ୱତ ସାଧନାରେ ରତ ରହିଥିଲେ । ସାଧନାଗତ ଅବଦାନ : ଶ୍ରୀରାମ ବନବାସ କାବ୍ୟ (୧୯୫୦), ବାପୁଜୀ ତର୍ପଣ (କବିତା—୧୯୬୮), ସାମାଜିକ ଅପବ୍ୟୟ ନାଟିକା (୧୯୫୬, ସରକାରୀ ସାମାଜିକ ଶିକ୍ଷା ବିଭାଗରୁ ପୁରସ୍କାରପ୍ରାପ୍ତ), କର୍ଣ୍ଣକୁନ୍ତୀ ସମ୍ବାଦ [୧୯୫୫], ଶ୍ରୀମଦ୍ ଭଗବତ୍ ଗୀତାର ଓଡ଼ିଆ ଅନୁବାଦ [୧୯୯୧-୯୨], ତୁଳସୀ ରାମାୟଣ [ଗୀତାନୁବାଦ] ଓ ଅଧ୍ୟାତ୍ମ ପ୍ରଭୃତି ଅପ୍ରକାଶିତ ରଚନା ।

**୧୯ । କବିତା ବାରିକ :**

ପିତାଙ୍କର ନାମ ରବୀନ୍ଦ୍ରନାଥ ଓ ମାତାଙ୍କର ନାମ ଇନ୍ଦୁମତୀ ଦେବୀ । ମୟୂରଭଞ୍ଜ ଜିଲ୍ଲାର ବାରିପଦାର ନିକଟସ୍ଥ ରାମଚନ୍ଦ୍ରପୁର ଗ୍ରାମରେ ୧୯୬୦ ଜୁନ୍ ୫ ତାରିଖରେ ଜନ୍ମ-ଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟ ସ୍ତରରେ ସର୍ବୋଚ୍ଚ ଡିଗ୍ରୀ ହାସଲ କରି ବର୍ତ୍ତମାନ ଓଡ଼ିଆ ସାହିତ୍ୟ ଅଧ୍ୟାପନାରେ ନିଯୁକ୍ତ । ତାଙ୍କ ଲିଖିତ ପୁସ୍ତକଗୁଡ଼ିକର ନାମ—

Digitized by srujanika@gmail.com

(୧) ପରଦା ପଛର ଗୀତ (ଉପନ୍ୟାସ—୧୯୮୧ , (୨) ଭିନ୍ନ ସହର (ଗଳ୍ପ—୧୯୮୭), (୩) ଛକ (ଗଳ୍ପ—୧୯୯୦), (୪) ସମ୍ପର୍କ (ଉପନ୍ୟାସ—୧୯୯୨) । ଓଡ଼ିଶାର ବିଶିଷ୍ଟ ପତ୍ରପତ୍ରିକାରେ ବିଭିନ୍ନ ସମୟରେ ଗଳ୍ପ ଓ ପ୍ରବନ୍ଧ ପ୍ରକାଶିତ । ଗାଳ୍ପିକା ଶ୍ରୀମତୀ ବାଣକ ପ୍ରଜାତନ୍ତ୍ର ବିଷୁବ ପୁରସ୍କାର ୧୯୮୮, ବାର୍ତ୍ତାଉର୍ମି ଅନୁଷ୍ଠାନରୁ ମାନପତ୍ର, ୧୯୯୦, ସୁନ୍ଦରଗଡ଼ର ଗଙ୍ଗାଧର ମେହେର ପରିଷଦରୁ ମାନପତ୍ର ଓ ଉପାୟନ ୧୯୯୦ ଓ ୧୯୯୧ ମସିହାରେ ପୁଣିର ଅଧୁନା ପ୍ରକାଶନୀ ତରଫରୁ ମନକା ଦାସ ଗୁପ୍ତ ସ୍ମୃତି ପୁରସ୍କାର ଲାଭ କରିଅଛନ୍ତି ଏବଂ ୧୯୮୭ରେ ସେ ସୁଇଡ଼େନର ପି. କେ. ମହାନନ୍ଦିଆ ବୃତ୍ତି ଲାଭ କରିଅଛନ୍ତି ।

୨୦ । **କରୁଣାକର ଦାସ** :

ପିତାଙ୍କର ନାମ କ୍ଷେତ୍ରବାସୀ ଓ ମାତାଙ୍କର ନାମ ଚନ୍ଦ୍ରମଣି ଦେବୀ । ୧୯୩୦ ମସିହାର ଏପ୍ରିଲ ୧୮ ତାରିଖରେ କେନ୍ଦୁଝର ଜିଲ୍ଲାର ଝୁମ୍ପୁରା ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ହିନ୍ଦୀ ଓ ସଂସ୍କୃତ ଭାଷାରେ ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା ବୃତ୍ତିରୁ ଅବସର ଗ୍ରହଣ କଲାପରେ ଶ୍ରୀ ଦାଶ ବର୍ତ୍ତମାନ ବାରିପଦା ସ୍ଥିତ ଲାଲ ବଜାରରେ ସ୍ଥାୟୀଭାବେ ବାସ କରୁଛନ୍ତି । ଓଡ଼ିଆ, ସଂସ୍କୃତ ଓ ହିନ୍ଦୀ ଭାଷାରେ ଅନେକ ଗ୍ରନ୍ଥ ଲେଖି ସୁପ୍ରତିଷ୍ଠିତ । ତାଙ୍କ ଲିଖିତ ପୁସ୍ତକଗୁଡ଼ିକ ହେଉଛି—

**ଓଡ଼ିଆ** :—ପ୍ରକାଶିତ (୧) ରୂପଲେଖା (ଗୀତି ନାଟିକା), (୨) ମାତୃ ମହିମା (କାବ୍ୟ), (୩) ଭୋଜ ବିଜୟ, (କାବ୍ୟ) ଅପ୍ରକାଶିତ ରଚନା :(୪) ନାଗାର୍ଜ୍ଜୁନ (କାବ୍ୟ), (୫) ଶୂଦ୍ରମୁନି (କାବ୍ୟ), (୬) ସ୍ୱୟଂପ୍ରଭା (କାବ୍ୟ), (୭) ଜୟଶ୍ରୀ (କାବ୍ୟ), (୮) ଅପରାଧୀ (କାବ୍ୟ), (୯) ସୂକ୍ତି ସୌରଭ (ଅନୁବାଦ), (୧୦) ସମସ୍ୟା ସୁଧା (କବିତା), (୧୧) ଉତ୍କଳ ଦର୍ଶନ (ସଙ୍ଗୀତ), (୧୨, ବଳି ବାମନ (ନାଟିକା), (୧୩) ପୁରାଣ କଥା ।

**ସଂସ୍କୃତ** :—(୧) ଚତୁର ଶ୍ଚୌରଃ (କ୍ଷୁଦ୍ର ନାଟିକା), (୨) ଅଜ୍ଞାତ କୁଳ-ଶୀଳସ୍ୟ (କ୍ଷୁଦ୍ର ନାଟିକା), (୩ ରଶ୍ମିରେଖା (କବିତା), (୪) ସୀତା-ପହରଣମ୍ (କାବ୍ୟ), (୫) ସନ୍ଧ୍ୟାଗ୍ରହଃ (ପ୍ରବନ୍ଧ), ପ୍ରକାଶିତ । (୬) ବ୍ୟାକରଣ ବିଳାସଃ, (୭) ଅଭିନବ ସଂସ୍କୃତ ବ୍ୟାକରଣ ବିସ୍ତରଃ, ୮) ଆଖଣ୍ଡଳେଶ୍ୱରାଷ୍ଟକମ୍ ।

**ହିନ୍ଦୀ** :—(୧) ଜଗନ୍ନାଥ ନକ୍ଷତ୍ରମାଳା, (୨) ଧମାନ୍‌ଦାସୀ (ଏକାଙ୍କିକା), (୩) ଭକ୍ତ ଔର୍ ଭଗବାନ୍ (ଏକାଙ୍କିକା), (୪) ଚନ୍ଦ୍ରିକା ଦାନ୍ (ଏକାଙ୍କିକା), (୫) ହିମାଚଲ୍ କା ଶେର, (୬) ବାତ (ଏକାଙ୍କିକା) । ଏସବୁ ରଚନା ମଧ୍ୟରୁ କେତେକ ପ୍ରକାଶିତ, ଆକାଶବାଣୀ ଦ୍ୱାରା ପ୍ରସାରିତ ଓ ବିଭିନ୍ନ ସାହିତ୍ୟ ସଂସଦମାନଙ୍କରେ ଉପସ୍ଥାପିତ ହୋଇଛି । କେତେକ ଗ୍ରନ୍ଥ ଅପ୍ରକାଶିତ ରହିଅଛି । ସାରସ୍ୱତ ସାଧନାର

Digitized by srujanika@gmail.com

ସ୍ୱୀକୃତି ସ୍ୱରୂପ ସେ କଳିଙ୍ଗ ଭାରତୀ କଟକ ଓ ମୈତ୍ରୀ ସାହିତ୍ୟ ସଂସଦ କେନ୍ଦୁଝରରୁ ପୁରସ୍କୃତ ହୋଇଛନ୍ତି ।

**୨୧ । କନ୍ହେଇଲାଲ ଦାସ :**

ପିତାଙ୍କର ନାମ କ୍ଷେତ୍ରମୋହନ ଓ ମାତା ଅମଳା ଦେବୀ । ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନା ଅନ୍ତର୍ଗତ କମର୍ଦ୍ଦା ଗ୍ରାମରେ ୧୯୪୮ ମସିହା ଜୁନ ମାସ ୨ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ଜଣେ ତରୁଣ କଥାକାର ଭାବରେ ନୂତନ ଶୈଳୀର ପ୍ରବର୍ତ୍ତନ କରି ଆଧୁନିକ ଓଡ଼ିଆ କଥା ସାହିତ୍ୟରେ ପ୍ରତିଷ୍ଠିତ । ସେ ୧୯୭୫ ମସିହା ଜୁଲାଇ ୨୭ ତାରିଖରେ ଅମରଧାମକୁ ଯାତ୍ରା କରିଛନ୍ତି । ତାଙ୍କର ପ୍ରକାଶିତ ପୁସ୍ତକଗୁଡ଼ିକ ହେଲା—(୧) ଯାହା ସେମିତି ହୁଏ (୧୯୭୨), (୨) କନ୍ହେଇ କଥା ଘର (୧୯୭୬) ।

**୨୨ । କାର୍ତ୍ତିକେଶ୍ୱର ପାତ୍ର :**

ପିତାଙ୍କର ନାମ ଭଗବାନ ଚନ୍ଦ୍ର ଓ ମାତା କ୍ଷୀରୋଦାମଣୀ ଦେବୀ । ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନାନ୍ତର୍ଗତ ସୁନ୍ଦରଗଡ଼ ଗ୍ରାମରେ ୧୯୪୧ ମସିହା ମେ ୨୫ ତାରିଖରେ ଲେଖକ ଜନ୍ମଗ୍ରହଣ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଡିଗ୍ରୀ ଲାଭ କରି ଅନେକ ସାହିତ୍ୟ ଓ ସଂସ୍କୃତି ସମ୍ପର୍କୀୟ ଗ୍ରନ୍ଥ ରଚନା କରିଛନ୍ତି । ରାଜନୀତିକୁ ପେଷା ଭାବରେ ଗ୍ରହଣ କରିଥିଲେ ହେଁ ତାଙ୍କ ପାଣ ସାରସ୍ୱତ ସାଧନାରେ ବ୍ରତୀ । ସାହିତ୍ୟ କ୍ଷେତ୍ରକୁ ତାଙ୍କର ଅବଦାନ ହେଉଛି—ନାଟକ :—(୧) ପିପାସା, (୨) ବିଷତୃଷା, (୩) କାରୁ-ବାକୀ, (୪) ଇତିହାସର ଗୁହାରି, (୫) କଳିଙ୍ଗ କନ୍ୟା, (୬) ସମ୍ରାଟ ଖାରବେଳ, (୭) ଜଳଗଲା ଜଉଘର, (୮) ବଡ଼ ଭାଉଜ (ଚଳଚିତ୍ର), ଗଳ୍ପ :—(୧) ଆକାଶର ଆଖି, (୨) ଶତାବ୍ଦୀର ଶିକାର, (୩) ସମତାର ମୋହ, (୪) ପ୍ରଭାତ ମରୀଚିକାରେ, (୫) ବାହକ ବାହୁଡ଼ା । ଉପନ୍ୟାସ—(୧) ଦଳିତ ଦୁବ, (୨) ନର୍କର ନାମ ଅମରାବତୀ, (୩) ଓସ୍ତାଦ, (୪) ସୁବର୍ଣ୍ଣ ଶାମୁକା । ପ୍ରବନ୍ଧ :—(୧) ଉତ୍କଳର ନୌବାଣିଜ୍ୟ, (୨) The Ports in Orissa.

**୨୩ । କାର୍ତ୍ତିକଚନ୍ଦ୍ର ଦେ :**

ପିତା ସାରଦା ପ୍ରସାଦ ଓ ମାତା ଅଧିକମଣି ଦେବୀ । ମୟୂରଭଞ୍ଜ ଜିଲ୍ଲାର ଚଟେଇଗାଁ ଗ୍ରାମରେ ୧୯୩୦ ମସିହା ଫେବୃୟାରୀ ୫ ତାରିଖରେ ଲେଖକ ଜନ୍ମଗ୍ରହଣ କରିଛନ୍ତି । ସରକାରୀ ଚାକିରୀରୁ ଅବସର ଗ୍ରହଣ କରି ସାହିତ୍ୟ ରଚନାରେ ବ୍ରତୀ । କେତେକ ଗଳ୍ପ ଓ ପ୍ରବନ୍ଧ 'ପୂଜ୍ୟ ପୂଜା', 'ଭକ୍ତପ୍ରଭା' ଓ ଏଡୁକେଶନାଲ କ୍ୱାର୍ଟର୍ଲିରେ ପ୍ରକାଶିତ । 'ନୃସିଂହ ପୁରାଣ'ର ଗଦ୍ୟାନୁବାଦ—ଅପ୍ରକାଶିତ ରଚନା ।

Digitized by srujanika@gmail.com

**୭୪ । କାଶୀନାଥ ବାରିକ :**

୧୯୪୭ ମସିହାରେ ବାରିପଦା ବଡ଼ ବଜାରରେ ଜନ୍ମ । ପ୍ରକାଶିତ ପୁସ୍ତକ :— ଛଉନୃତ୍ୟ ଗୁରୁ ଶ୍ରୀକାନ୍ତଙ୍କ ଜୀବନୀ ଏକ ଇତିହାସ (୧୯୯୦) । ଏତଦ୍ ବ୍ୟତୀତ ଧୁମସାର ଭାଷା, ଲୁପ୍ତ ପ୍ରାୟ ଝୁଇଲ ସହ ଛଉନୃତ୍ୟ, ଛଉନୃତ୍ୟରେ ନାଗ୍ରା । Rural chhau after Independance ପ୍ରଭୃତି କେତେକ ପ୍ରବନ୍ଧ ବିଭିନ୍ନ ପତ୍ରିକା ଓ ସ୍ମରଣିକାରେ ପ୍ରକାଶ ପାଇଛି ।

**୭୫ । କୁଳାନନ୍ଦ ମହାପାତ୍ର :**

ବାଲେଶ୍ୱର ଜିଲ୍ଲାର ହାଟଗଡ଼ ଗ୍ରାମରେ ୧୯୩୦ ମସିହା ଅଗଷ୍ଟ ୨୫ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଶିକ୍ଷା ବିଭାଗରୁ ଅବସର ଗ୍ରହଣ କରି ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ କେତେକ କବିତା, ପ୍ରବନ୍ଧ ଓ ଗଳ୍ପ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । 'ନିର୍ମାଲ୍ୟ', ଖ୍ରୀଷ୍ଟୀୟ ମଣ୍ଡଳୀ, 'କାହାଣୀ' ଓ ଦୁଇହାତ, ଦୁଇଣ ଆଖି ଆଦି ଅପ୍ରକାଶିତ ରଚନା ।

ସେ ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନ ତରଫରୁ ସାହିତ୍ୟ ସାଧନା ନିମନ୍ତେ ସମ୍ମାନିତ ।

**୭୬ । କୃଷ୍ଣଚନ୍ଦ୍ର ଦଣ୍ଡପାଟ :**

ବାଲେଶ୍ୱର ସ୍ଥିତ ଭିକ୍ଟୋରିଆ ଜୁବୁଲି ମ.ଇ. ସ୍କୁଲର ପ୍ରଧାନ ଶିକ୍ଷକ । ତାଙ୍କର ୧୯୧୬ ମସିହାରେ ପ୍ରକାଶିତ 'ଶ୍ରୀ ପଞ୍ଚମୀ ସଙ୍ଗୀତ ଓ ବାଳ ବୋଲ' ପୁସ୍ତକର ମୁଖବନ୍ଧ ଫକୀର ମୋହନ ସେନାପତି ଲେଖିଥିଲେ । ପୁସ୍ତକଟି ରାଜା ବୈକୁଣ୍ଠନାଥ ଦେଙ୍କୁ ଉତ୍ସର୍ଗ କରାଯାଇଛି ।

**୭୭ । କେଦାରନାଥ ଦାଶ ଗୋସ୍ୱାମୀ:**

ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନାନ୍ତର୍ଗତ ଦେଉଳା ଗ୍ରାମରେ ୧୯୧୮ ମସିହାରେ ନାଟ୍ୟକାର ଶ୍ରୀ ଦାଶ ଗୋସ୍ୱାମୀ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମ-ଗ୍ରହଣ କରିଛନ୍ତି । ଦୀର୍ଘ ୬୦ ବର୍ଷ ଧରି ସେ ନାଟ୍ୟ ଜଗତ ସହ ଜଡ଼ିତ । ସେ ଏକାଧାରରେ ଜଣେ ସଫଳ ନାଟ୍ୟକାର, ନିର୍ଦ୍ଦେଶକ, ସୁଦକ୍ଷ ଅଭିନେତା, ଗୀତିକାର, କୁଶଳୀ ସଜ୍ଜାକାର ଓ ନିପୁଣ ତବଲା ବାଦକ । ବାଲେଶ୍ୱର, ମୟୂରଭଞ୍ଜ, କଟକ, ପୁରୀ, କେନ୍ଦୁଝର, ରାଉରକେଲା ଓ ମେଦିନୀପୁରର ବହୁ ନାଟ୍ୟ ସଂସ୍ଥା ସହ ସେ ଜଡ଼ିତ । କଳାକୁଶଳୀ ସାରସ୍ୱତ ସାଧକ ଗୋସ୍ୱାମୀ ବାବୁ ଓଡ଼ିଶାର ବହୁ ନାଟ୍ୟ ସଂସ୍ଥା ତରଫରୁ ସମ୍ମାନିତ ।

Digitized by srujanika@gmail.com

**୨୭ । କୃଷ୍ଣମୋହନ ଦାସ :**

ରେମୁଣା ନିକଟସ୍ଥ କଅଁରିଲି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପ୍ରକାଶିତ କବିତା ପୁସ୍ତକ :—ଅକାଳ-ପ୍ରଦୋଷ (୧୯୩୫) ।

**୨୮ । କୈଳାଶ ପଟ୍ଟନାୟକ :**

ପିତାଙ୍କର ନାମ ଦେବଦୁର୍ଲ୍ଲଭ ଓ ମାତା ଶ୍ରୀମତୀ ଦେବୀ । ଲେଖକ ବଲାଙ୍ଗୀର ଜିଲ୍ଲାରେ ତା ୭-୨-୧୯୫୭ ଶଖରେ ଜନ୍ମଗ୍ରହଣ କରି ବାଲେଶ୍ୱର ବାଲିଆପାଳରେ ସ୍ଥାୟୀ ବାସିନ୍ଦା । ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସାହିତ୍ୟରେ ଇଉତର ଡିଗ୍ରୀପ୍ରାପ୍ତ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଅଧାପନାରେ ନିଯୁକ୍ତ । ତାଙ୍କ ଲିଖିତ ଗ୍ରନ୍ଥଗୁଡ଼ିକର ନାମ—(୧) ଏକଦା ଅନ୍ତରଙ୍ଗ (୧୯୮୧), (୨) ଦକ୍ଷିଣ ପବନ (୧୯୮୬), (୩) ଏକାଠି ଏକା ଏକା (୧୯୯୦) (୪) ଓଡ଼ିଆ ଉପନ୍ୟାସର ସମାଜ ତତ୍ତ୍ୱ (୧୯୮୮), (୫) ଲୋକ ସାହିତ୍ୟ ଚର୍ଚ୍ଚା(୧୮୮୯) (୬) ଗୀତାଞ୍ଜଳି (୧୯୮୬—ଭାଷାନ୍ତର) ।

ଡ: ପଟ୍ଟନାୟକ ଗଳ୍ପ ରଚନା ପାଇଁ ୧୯୯୧ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ସମ୍ମାନିତ ହୋଇଛନ୍ତି ।

**୨୯ । ଗଣନାଥ ପାତ୍ର :**

ପିତାଙ୍କ ନାମ ପ୍ରସନ୍ନ କୁମାର ଓ ମାତା ଦୁର୍ଗାମଣି ଦେବୀ । ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ଥାନାନ୍ତର୍ଗତ ବାଣିଦା ଗ୍ରାମରେ ୧୯୪୧ ମସିହା ଅକ୍ଟୋବର ତା ୨୭ ଶଖରେ ଜନ୍ମ । ରସାୟନ ବିଜ୍ଞାନରେ ଉଚ୍ଚଶିକ୍ଷା ଲାଭ କରି କିଛି କାଳ ଅଧାପନା କାର୍ଯ୍ୟ କରିଥିଲେ । ପରେ ସରକାରୀ ପରିତ୍ୟାଗ କରି ବିପ୍ଳବୀ ରୂପେ ସୁପରିଚିତ ।

ନକ୍ସାଲ ଆନ୍ଦୋଳନର ଦୃଢ଼ ସମର୍ଥକ ଓ ପ୍ରବକ୍ତା ଭାବରେ ଦଳର ଆଦର୍ଶ ସମ୍ପର୍କୀୟ ଲେଖାମାନ ପ୍ରକାଶିତ ।

**୩୦ । ଗଦାଧର ପାତ୍ରୀ :**

ବାପାଙ୍କର ନାମ ନାରାୟଣ ଓ ମାତା ବିଷ୍ଣୁପ୍ରିୟା ଦେବୀ । ମୟୂରଭଞ୍ଜ ଜିଲ୍ଲାର ଧାଙ୍ଗଡ଼ି ଶୋଳ ଗ୍ରାମରେ ୧୯୨୨ ମସିହା ଭାଦ୍ରବ ମାସ କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ଜନ୍ମ-ଗ୍ରହଣ କରିଛନ୍ତି । ସରକାରୀ କର୍ମ କ୍ଷେତ୍ରରୁ ଅବସର ଗ୍ରହଣ କରି ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କର ପୁସ୍ତକଗୁଡ଼ିକର ନାମ—(୧) ଗୁରୁଧାରା (କବିତା), (୨) ଖାଣ୍ଟି ମାଟିର ପଧାର; (୩) ଏ ମନ ଏ ହୃଦୟ, (୪) ବଡ଼ମୁନା, (୫) ହସ କାନ୍ଦର ଦୁନିଆ, (୬) ତେଲ ଲୁଣର ସଂସାର (ଉପନ୍ୟାସ), (୭) ଭଙ୍ଗୀ ଦପଣ (କ୍ଷୁଦ୍ର ଗଳ୍ପ), ଅପ୍ରକାଶିତ କେତୋଟି ପୁସ୍ତକ—(୧) କବର ପାଉଣା ଓ ତୃଷ୍ଣା (କବିତା), (୨) ଦୁନିଆର ଗୀତ, (୩) ଚନ୍ଦ୍ରିକା (ଉପନ୍ୟାସ) ପ୍ରଭୃତି । ଏତଦ୍‌ବ୍ୟତୀତ ଉଗର, ଉଦୟ; କୁମ୍‌କୁମ,

Digitized by srujanika@gmail.com

ଜାଗରଣ, ମୟୂରଭଞ୍ଜ ଜାଗରଣ, ମାତୃଭୂମି, ପ୍ରଜାତନ୍ତ୍ର ଓ ଓଡ଼ିଶା ଦେଶ ପ୍ରଭୃତି ବିଭିନ୍ନ ପତ୍ରପତ୍ରିକାରେ ଶ୍ରୀ ପାତ୍ରୀଙ୍କର ରଚନା ପ୍ରକାଶିତ ହୋଇଅଛି ।

**୩୨ । ଜ୍ଞାନେନ୍ଦ୍ର ପାତ୍ର :**

ପିତାଙ୍କର ନାମ ହରେନ୍ଦ୍ର ଓ ମାତା ବିମଳା ଦେବୀ । ବାଲେଶ୍ୱର ଜିଲ୍ଲାର ଜଲେଶ୍ୱର ନିକଟସ୍ଥ ଛଅ ମଉଜ ଗ୍ରାମରେ ୧୯୫୩ ମସିହା ଜୁନ୍ ୧୦ ତାରିଖରେ ଲେଖକ ଜନ୍ମଗ୍ରହଣ କରିଛନ୍ତି । ସେ କୃଷି କାର୍ଯ୍ୟରେ ବ୍ୟସ୍ତ ରହି ମଧ୍ୟ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକ—ଅଜଣା, କବିତା, ରକ୍ତ ମାଂସର ଦେହ ଓ ଚେନାଏ ବିଶ୍ୱାସର ମାଟି । ମିନି କବିତା, ନିଜ ନିଜର ପୃଥିବୀ (କବିତା) ନୀରବତାର ଦୁଃଖ, କବିତା ମମ୍ପର୍କର ଗ୍ରନ୍ଥି (ଗଳ୍ପ) । ବହୁ ପତ୍ରପତ୍ରିକାରେ କବିତା ଓ ଗଳ୍ପମାନ ପ୍ରକାଶିତ ।

**୩୩ । ଜ୍ଞାନୀଲ ଚରଣ ଦାସ :**

ପିତାଙ୍କ ନାମ ଗୋପୀନାଥ ଓ ମାତା ସ୍ୱର୍ଣ୍ଣମଣି ଦେବୀ । ମେଦିନୀପୁରର ଗୋପୀବଲ୍ଲଭପୁର ଥାନାନ୍ତର୍ଗତ ନଅାବସାଣ ଗ୍ରାମରେ ୧୯୦୧ ମସିହାରେ ଜନ୍ମ । ଜଣେ ସ୍ୱାଧୀନତା ସଂଗ୍ରାମୀ, ବିପ୍ଳବୀ ସାହିତ୍ୟିକ ଭାବେ ପରିଚିତ । ଲିଖିତ କ୍ଷୁଦ୍ର ପୁସ୍ତକ : ସରସ୍ୱତୀଙ୍କ ଭଜନ, ଖୁଦିରାମ ଫାଶୀ । ସତର୍କବାଣୀ, ଇଂରାଜୀର ଅବସର ଗ୍ରହଣ, ମୈରିତନ୍ତ୍ରୀ ଇଂରାଜୀ ପ୍ରଭୃତି ଅପ୍ରକାଶିତ ଓଡ଼ିଆ ରଚନା ।

**୩୪ । କାମିନୀବାଳା ପାତ୍ର :**

ପିତାଙ୍କ ନାମ ବୈକୁଣ୍ଠନାଥ ଓ ମାତା ସୁଧାବିନ୍ଦୁ ଦେବୀ । ମେଦିନୀପୁର ଜିଲ୍ଲା 'ଧୂଇପଡ଼ା' ଗ୍ରାମରେ ୧୯୩୯ ମସିହା ଅଷାଢ ମାସରେ ଜନ୍ମ । ବ୍ୟବସାୟ ସାଙ୍ଗକୁ ସାହିତ୍ୟ ସାଧନା । ଲିଖିତ ରଚନା : କେତେକ ଭଜନ, ଜଣାଣ, ଗୀତକବିତା ବିଭିନ୍ନ ସାହିତ୍ୟ ସଂସଦମାନଙ୍କରେ ପଠିତ ଓ ଆଲୋଚିତ କବିତା ସଂକଳନ ପ୍ରକାଶ ଅପେକ୍ଷାରେ ।

**୩୫ । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ :**

ମୟୂରଭଞ୍ଜର ଖିଚିଂ ଗ୍ରାମରେ ୧୩୧୭ ସାଲ ମାର୍ଗଶୀର ଦି ୨୧ ଦିନ ଭୃଗୁବାସରେ ଜନ୍ମ ଗ୍ରହଣ କରିଥିଲେ । ୧୯୮୭ ମସିହା ଫେବୃୟାରୀ ୨୫ ତାରିଖରେ କଟକଠାରେ ଇହଲୀଳା ସାଙ୍ଗ କରିଥିଲେ । ଜଣେ ସୁପ୍ରସିଦ୍ଧ ଐତିହାସିକ, ବହୁଶାସ୍ତ୍ରବିତ୍ ଅଧ୍ୟାପକ ଓ ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ଭାବରେ ସର୍ବଭାରତୀୟ ଖ୍ୟାତି ଲାଭ କରିଛନ୍ତି । ତାଙ୍କ ରଚିତ ପୁସ୍ତକ, ପ୍ରବନ୍ଧ ଓ ନିବନ୍ଧାବଳୀ : ୧—ଇତିହାସ ଓ କିମ୍ବଦନ୍ତୀ (ଉତ୍କଳ ବିଶ୍ୱବିଦ୍ୟାଳୟ —୧୯୬୪), ୨—ଭାରତୀୟ ପ୍ରତ୍ନତତ୍ତ୍ୱ (ଅନୁବାଦ—୧୯୬୦), ୩—ପ୍ରବନ୍ଧ ମାନସ, କିତାବ ମହଲ, ୧୯୭୨, ୪—ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର (ବିରଜା ବକ୍ତୃତାମାଳା—୧, ନରସିଂହ ଚୌଧୁରୀ ମହାବିଦ୍ୟାଳୟ, ଯାଜପୁର), ୫—ସାରଳା

Digitized by srujanika@gmail.com

ମହାଭାରତରେ ଐତିହାସିକ ତଥ, ପ୍ରଜାତନ୍ତ୍ର ପ୍ରେସ, କଟକ-୨, ୬—ମୋ ସମୟର ଓଡ଼ିଶା, କିତାବ ମହଲ, କଟକ, ୧୯୭୭, ୭—ସାହିତ୍ୟ ଓ ସଂସ୍କୃତି (ଯନ୍ତ୍ରସ୍ଥ) । English :—1—Political Status of the Feudatory Status of Orissa and Chhatishgarh 2—Arhaeological Remains at Bhubaneswar Orient Longman, Calcutta, 1961. 3—Chronology of the Bhaumakaras and Somavamsies of Orissa, Madras, 1961 4—SaralaDas (Makers of Indian Literature Series—Sahitya Akademi, New Delhi, 1976). 5—History of Orissa (Hindu Period) Kitab Mahal, Cuttack, 1981. 6—Bhauma Arts and Artitecture of Orissa—Arts Asiatique, vol· IV, No-4, 1957. Large number of research articles of vern high quality have been published in Journal of Asiatic Society, Calcutta, Indian Historical quarterly, Cal· Journal of Bihar Society, Patna, J· H. R. Ranchi. Ancient India, New Delhi; Epigraphia India, Urkamund, J. I. H· Trivendrum; J.O.S. Madras; J.A H.—R.S., Rajhmahendre; O.H.R.J. Bhubaneswar, J. K. H. R S.A —Asiatique, Paris; Modern Review, Amrit Bazar Patrika, Hindustan Times, Search light, Decean Harald Bombay cronicles, Proceedings of the International Seminar on Busdhism and Jainism, Orissa Review etc..

ଏତଦ୍‌ବ୍ୟତୀତ ବହୁ ଉଚ୍ଚକୋଟୀର ପ୍ରବନ୍ଧାବଳୀ ଶଙ୍ଖ, ନବଭାରତ, ଡଗର, ଚନ୍ଦ୍ରିକା, ସତ୍ୟବାଦୀ, ସମାଜ—ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା, ପ୍ରଜାତନ୍ତ୍ର, ଝଙ୍କାର, ସମତା ଇତ୍ୟାଦିରେ ପ୍ରକାଶିତ । କୃଷ୍ଣଚନ୍ଦ୍ର ସ୍ମରଣିକା, ବା.ସା. ସଂସଦ-୧୯୯୩)

**୩୭ । ଗିରବାଳା ମହାନ୍ତି :**

ପିତାଙ୍କର ନାମ ଯୁଧିଷ୍ଠିର ଓ ମାତା କାତ୍ୟାୟନୀ ଦେବୀ । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ନିକଟସ୍ଥ ନାମ୍ପୋ ଗ୍ରାମରେ ଲେଖିକା ଜନ୍ମଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଡିଗ୍ରୀ ହାସଲ କରି ଓଡ଼ିଆ ଭାଷା, ସାହିତ୍ୟ ଓ ଅଧ୍ୟାପନାରେ ନିୟୁକ୍ତ । [illegible]

Digitized by srujanika@gmail.com

ଲିଖିତ ପୁସ୍ତକ—(୧) ତୋ ପାଇଁ ମୁଁ ବୃନ୍ଦାବନ (କବିତା—୧୯୮୨), (୨) ଭ୍ରମ ନ ଆସିବା ନେଇ (କବିତା—୧୯୮୯), (୩) ସ୍ତ୍ରୀ ଲୋକ (କବିତା—୧୯୯୦), (୪) ଟିକି ନାଆର ନାହିଁ (ଯନ୍ତ୍ରସ୍ଥ), (୫) ଗଙ୍ଗାଓ୍ୱା ଗଙ୍ଗା ମାଇ (ଯନ୍ତ୍ରସ୍ଥ) ପ୍ରକାଶିତ । ଅପ୍ରକାଶିତ (୧) କବିତା ଚର୍ଚ୍ଚା (ସମାଲୋଚନା), (୨) ଆଧୁନିକ ଓଡ଼ିଆ କବିତାର ସୌନ୍ଦର୍ଯ୍ୟ ତାତ୍ତ୍ୱିକ ମୂଲ୍ୟାୟନ (ଗବେଷଣା ନିବନ୍ଧ), (୩) ଜନନୀ (ଗଳ୍ପ ସଙ୍କଳନ) । ସାହିତ୍ୟ ସାଧନାର ସ୍ୱୀକୃତି ସ୍ୱରୂପ ଶ୍ରୀମତୀ ମହାନ୍ତି ୧୯୬୮ ମସିହାରେ ପ୍ରଜାତନ୍ତ୍ର ପୁରସ୍କାର ଓ ୧୯୯୦ ମସିହାରେ ଫକୀର ମୋହନ ପୁରସ୍କାର ଲାଭ କରିଛନ୍ତି ।

## ୩୮ । ଗୀତା ହୋତା :

ପିତାଙ୍କର ନାମ ପୂର୍ଣ୍ଣଚନ୍ଦ୍ର ଓ ମାତା ପ୍ରମଦା ଦେବୀ । ମୟୂରଭଞ୍ଜ ଜିଲ୍ଲାର ବାଙ୍ଗିରିପୋଷି ଥାନା ଅନ୍ତର୍ଗତ ଜଗନ୍ନାଥ ଖୁଣ୍ଟା ଗ୍ରାମରେ ୧୯୩୬ ମସିହା ସେପ୍ଟେମ୍ବର ୯ ତାରିଖରେ ଲେଖିକା ଜନ୍ମଗ୍ରହଣ କରିଛନ୍ତି । ଜଣେ ଆଦର୍ଶ ମହିଳା ଭାବରେ ସମାଜ ସେବା ଓ ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ସୁପ୍ରତିଷ୍ଠିତା । ଲେଖିକାଙ୍କର ପୁସ୍ତକ ହେଲା— (୧) ଅପୂଜା ଫୁଲ (ଗଳ୍ପ—୧୯୮୩ , (୨) ରଙ୍ଗମଞ୍ଚ (ଗଳ୍ପ—୧୯୮୬), (୩) ମନ ବୀଣା (ଉପନ୍ୟାସ—୧୯୭୮), (୪) ବିଶ୍ୱାସ ଏକ ଅନ୍ଧ ଗଳି (ଗଳ୍ପ—୧୯୮୯), (୫) ବୁଦ୍ଧି ଥିଲେ ଉପାୟ ଘଣେ (ଶିଶୁ ଗଳ୍ପ—୧୯୮୯), (୬) ଝୁନ୍ନ ପାହାଡ଼ (ଶିଶୁ ଗଳ୍ପ-୧୯୮୯) । ୧୯୮୧ ମସିହାରୁ 'ଅମୃତାୟନ' ମାସିକ ସାହିତ୍ୟ ପତ୍ରିକାର ସମ୍ପାଦନା କରୁଅଛନ୍ତି । ସେ ଚଳାପଥ ଓ ବାଣୀ ଊର୍ମି ଅନୁଷ୍ଠାନ ପକ୍ଷରୁ ସମ୍ମାନ ଓ ସ୍ୱୀକୃତି ଲାଭ କରିଅଛନ୍ତି ।

## ୩୯ । ଗୌର ମୋହନ ମହାପାତ୍ର :

ପିତାଙ୍କର ନାମ ପୁରୁଷୋତ୍ତମ ଓ ମାତା ରୂପା ଦେବୀ । ମୟୂରଭଞ୍ଜ ଜିଲ୍ଲାର ବାରିପଦା ନିକଟସ୍ଥ ପଟିମାରି ଗ୍ରାମରେ ୧୯୨୦ ମସିହାରେ ଅଗଷ୍ଟ ୨୬ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ସେ ଓଡ଼ିଆ ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ । ବାରିପଦାର ପ୍ରସିଦ୍ଧ ଆଇନଜୀବୀ ଭାବରେ ସେ ସୁପ୍ରତିଷ୍ଠିତ । ତାଙ୍କ ଲିଖିତ ପୁସ୍ତକ—ଭାବାଞ୍ଜଳି (କବିତା—୧୯୭୯) । ଏତଦ୍ ବ୍ୟତୀତ ଜାଗରଣ, ଡଗର, ବର୍ତ୍ତିକାର୍ମି, ଚରୈବେତି ଓ ପ୍ରତିଶ୍ରୁତି ପ୍ରଭୃତି ବିଭିନ୍ନ ପତ୍ରପତ୍ରିକା ଓ ଛଡ଼ ସ୍ମରଣିକାରେ କବିତା ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ ପ୍ରକାଶିତ । 'ଚଇତାଳି ଓ ଅନ୍ୟାନ୍ୟ କବିତା' ଅପ୍ରକାଶିତ ପୁସ୍ତକ ।

## ୪୦ । ଗୌରୀ ଶଙ୍କର ଜେନା :

ବାଲେଶ୍ୱର ଜିଲ୍ଲା ବାଲିଆପାଳ ଥାନାନ୍ତର୍ଗତ ଅଗ୍ନି ଗ୍ରାମରେ ୧୯୪୭ ମସିହା ଜାନୁଆରୀ ୧ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ପିତାଙ୍କର ନାମ ଦାଇଧର ଓ ମାତା

Digitized by srujanika@gmail.com

ତ୍ରିପୁରା ଦେବୀ । ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା ବୃତ୍ତିରେ ନିଯୁକ୍ତ ରହି ସାହିତ୍ୟ ସାଧନାରେ ବ୍ରତୀ । ପ୍ରକାଶିତ ପୁସ୍ତକ—ସାହିତ୍ୟ ଚିନ୍ତା ଓ ଚେତନା (୧୯୭୯), ଓଡ଼ିଆ ସାହିତ୍ୟ ଇତିହାସର କେତେକ ଦିଗ ଓ ଦୃଷ୍ଟି (୧୯୮୮) । ଏତଦ୍ ବ୍ୟତୀତ ବିଦଗ୍ଧ ଚିନ୍ତାମଣି, ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, ବ୍ରହ୍ମାଣ୍ଡ ଭୂଗୋଳ ପ୍ରଭୃତି ଗ୍ରନ୍ଥର ଆଲୋଚନା ପୁସ୍ତକ ପ୍ରକାଶିତ । କେତେଗୋଟି ପ୍ରବନ୍ଧ କେତେକ ପତ୍ରିକାରେ ପ୍ରକାଶିତ ।

**୪୧ । ଚନ୍ଦ୍ର ମୋହନ ମହାରଣା :**

ସାହିତ୍ୟ ଅଧ୍ୟାୟରେ ଆଲୋଚିତ ।

**୪୨ । ଚନ୍ଦ୍ରାମଣି ବୈଦେହୀ :**

ପିତାଙ୍କର ନାମ ଉଦୟ ନାଥ ଓ ମାତା ମାଣିକ୍ୟ ଦେବୀ । ମୟୂରଭଞ୍ଜ ଜିଲ୍ଲାର ଜାମଡ଼ିହା ଗ୍ରାମରେ ୧୯୨୯ ମସିହା ଫେବୃୟାରୀ ୨ ତାରିଖରେ ଲେଖକ ଜନ୍ମଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସାହିତ୍ୟରେ ଉଚ୍ଚଶିକ୍ଷା ଲାଭ କରି ବିଭିନ୍ନ କ୍ଷେତ୍ରରେ ସରକାରୀ କାର୍ଯ୍ୟରେ ନିଯୁକ୍ତ । ଜଣେ ଉଚ୍ଚକୋଟୀର ସାରସ୍ୱତ ସାଧକ ଭାବରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସୁପ୍ରତିଷ୍ଠିତ ହୋଇଛନ୍ତି । ତାଙ୍କର ପୁସ୍ତକ ଗୁଡ଼ିକ ।

**ସମାଲୋଚନା**—କାବ୍ୟ ଓ କଳାକାର, ବିଦଗ୍ଧ ପାଠକ, ଆଧୁନିକତାର କଥା ଓ ଅନ୍ୟାନ୍ୟ ଆଲୋଚନା, କଳା ଦୃଷ୍ଟି (୧୯୮୨), ସାହିତ୍ୟ ଚିନ୍ତା (୧୯୯୨) ।

**କବିତା**—ଶ୍ୱେତପଦ୍ମ, ସ୍ପର୍ଦ୍ଧିକା, ନୂତନ ସ୍ୱାକ୍ଷର, ତୃତୀୟ ଚକ୍ଷୁ, ହେ ବୈଦେହୀ, ଭୁଲିଯାଅ, ନୀଳ ଲୋହିତ ।

**ଅନୁବାଦ**—ବିଶ୍ୱ ମାନବର ପଥେ (ରବୀନ୍ଦ୍ରନାଥ ଠାକୁର) ଓଡ଼ିଆ,
ନୀବିଡମାଳା—୨ୟ ଭାଗ (ରବୀନ୍ଦ୍ର ଠାକୁର) ଓଡ଼ିଆ,
କେଣୁ ଗଉଡ଼ର ଗଳ୍ପ (ସନ୍ତୋଷ ଘୋଷଙ୍କର 'କେନୁ ଗୁଆଲର ଗଳ୍ପ') ଓଡ଼ିଆରେ ଅନୁବାଦ ।

**ସଂକଳନ**—ଓଡ଼ିଆ କବିତା ସଂକଳନ—(୧) ଆଧୁନିକ କବିତା (୨) ସ୍ୱର ଓ ସ୍ୱାକ୍ଷର (୩) ବିଂଶ ଶତାବ୍ଦୀର ଶ୍ରେଷ୍ଠ କବିତା ।

ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ସେ 'ତୃତୀୟ ଚକ୍ଷୁ' କବିତା ପୁସ୍ତକ ନିମନ୍ତେ ୧୯୭୬ ମସିହା ଓ 'କଳାଦୃଷ୍ଟି' ସମାଲୋଚନା ପୁସ୍ତକ ନିମନ୍ତେ ୧୯୮୫ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ଏତଦ୍‌ବ୍ୟତୀତ ଧରିତ୍ରୀ ବାର୍ଷିକ

Digitized by srujanika@gmail.com

ସମ୍ମାନ (୧୯୭୯), ପ୍ରଜାତନ୍ତ୍ରର ବିଷୁବ ପୁରସ୍କାର (୧୯୯୦) ଲାଭ କରିଛନ୍ତି ଓ ସୋରର ରାଧାନାଥ ପାଠାଗାର ଦ୍ୱାରା ୧୯୯୨ରେ ସମ୍ମାନିତ ହୋଇଛନ୍ତି ।

**୪୩ । ଜଗନ୍ନାଥ ପ୍ରଧାନ :**

୧୯୪୧ ମସିହା ଜୁଲାଇ ମାସ ୨୧ ତାରିଖରେ ବାଲେଶ୍ୱର ଜିଲ୍ଲା ପାଟିଦପା ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନାରେ ନିଯୁକ୍ତ ରହି ମଧ୍ୟ ଜଣେ ସଫଳ ସାହିତ୍ୟିକ ରୂପେ ପ୍ରତିଷ୍ଠିତ । ବାର୍ତ୍ତା ଅନୁଷ୍ଠାନ ଓ ଉତ୍ତର ଓଡ଼ିଶା ସାହିତ୍ୟ ସମ୍ମେଳନ ତରଫରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ତାଙ୍କ ଲିଖିତ ବହୁ ଗଳ୍ପ, କବିତା, ପ୍ରବନ୍ଧ ବିଦ୍ୟାର୍ଥୀ, ବନଫୁଲ, କୋକନଦ ଓ ଆସନ୍ତାକାଲି ପ୍ରଭୃତି ପତ୍ର-ପତ୍ରିକାରେ ପ୍ରକାଶିତ ।

**୪୪ । ଜୀବନ କୃଷ୍ଣଦାସ ଅଧିକାରୀ :**

ବାଲେଶ୍ୱର ଜିଲ୍ଲା ଜଲେଶ୍ୱର ବଡ଼ ବଜାରରେ ୧୯୪୮ ମସିହା ଜୁନ୍ ୧୭ ତାରିଖରେ ଲେଖକ ଜନ୍ମଗ୍ରହଣ କରିଛନ୍ତି । କୃଷି କାର୍ଯ୍ୟକୁ ପେଷା ରୂପେ ଗ୍ରହଣ କରି ମଧ୍ୟ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ଅସଂଖ୍ୟ କବିତା ଓ ଗଳ୍ପ ସମକାଳୀନ ସାହିତ୍ୟ, ପ୍ରଭା, ସନ୍ଧ୍ୟାଦୂତ, ଅଳକାନନ୍ଦା, ଧ୍ୱନି ପ୍ରତିଧ୍ୱନି, ଇନ୍ଦୁ, କାକଳି ପ୍ରଭୃତି ପତ୍ରିକାରେ ପ୍ରକାଶିତ । ତନ୍ମଧ୍ୟରୁ ଜୀବନ ଜିଜ୍ଞାସା, ଧୂମମନ୍ଥନ ଏକ ପରାସ୍ତ ଆତ୍ମାର, ସର୍ଜନା ଆଗାମୀ କାଲିକୁ ବିଶେଷ ଖବର, ଏକାକୀ ଅଶ୍ୱାରୋହୀ, କୁମାରୀ ସ୍ୱାଧୀନତା ପ୍ରଭୃତି କବିତା, ନେତା ହେବାର ସ୍ୱପ୍ନ ଦେଖୁଥିବା ମଣିଷଟିଏ, ଅନୁଚାରିତ ସଂଳାପ, ଆପଣମାନେ କହନ୍ତୁ ପ୍ରଭୃତି ଗଳ୍ପ ପ୍ରକାଶିତ ।

**୪୫ । ଜୀବନ ପାଣି :**

ଜଣେ ସଫଳ ଗୀତିକାର ଓ ନୃତ୍ୟନାଟ୍ୟ ନିର୍ଦ୍ଦେଶକ ଭାବେ ସୁପ୍ରତିଷ୍ଠିତ ।

**୪୬ । ଜୀମୂତ ବାହନ ମହାପାତ୍ର :**

ସିଂଭୂମ୍‌ର ବାହାଡ଼ା ଗୋଡ଼ାର ପଞ୍ଚରୁଳିଆ ଗ୍ରାମରେ ୧୯୦୬ ମସିହାରେ ଜନ୍ମ-ଗ୍ରହଣ କରି ୧୯୮୬ ମସିହାରେ ଇହଧାମ ତ୍ୟାଗ କରିଛନ୍ତି । ତାଙ୍କ ଲିଖିତ ପୁସ୍ତକ "ପଞ୍ଚ ଦେବତା ସ୍ତୁତି" ପ୍ରକାଶିତ । ଏତଦ୍‌ବ୍ୟତୀତ କେତେକ ଜଣାଣ ମଧ୍ୟ ପ୍ରକାଶ ପାଇଅଛି ।

**୪୭ । ତାରକେଶ୍ୱର :**

୧୯୬୦ ମସିହାରେ ଜଲେଶ୍ୱର ନିକଟବର୍ତ୍ତୀ ଛଇ ମଉଜ ଗ୍ରାମରେ ଜନ୍ମ । ବଙ୍ଗଳାର 'ଦେବୀ ଚୌଧୁରାଣୀ'କୁ ଓଡ଼ିଆରେ ଅନୁବାଦ କରିଛନ୍ତି । ଏହାଛଡ଼ା ତାଙ୍କର 'କୁନାଲ' ଓ 'ଜୟ ଯାତ୍ରା' ଦୁଇଖଣ୍ଡ ନାଟକ ଅପ୍ରକାଶିତ ଅଛି ।

Digitized by srujanika@gmail.com

**୪୮ । ଦୀନକୃଷ୍ଣ ଦାସ :**

ପ୍ରାଚୀନ କବି ରୂପେ ସୁପରିଚିତ । ଏହାଙ୍କ ବିଷୟରେ ଏ ଗ୍ରନ୍ଥର ସାହିତ୍ୟ ଅଧ୍ୟାୟରେ ଆଲୋଚନା ହୋଇଛି ।

**୪୯ । ଦୀପକ କୁମାର ଷଡ଼ଙ୍ଗୀ :**

ପିତାଙ୍କର ନାମ ତାରାପଦ ଓ ମାତା ସର୍ବେଶ୍ୱରୀ ଦେବୀ । ବିହାର ପ୍ରଦେଶର ପୂର୍ବ ସିଂହଭୂମି ଜିଲ୍ଲାର ଗଣ୍ଡାନଟା ଗ୍ରାମରେ ୧୯୩୬ ମସିହା ସେପ୍‌ଟେମ୍ବର ମାସ ୫ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି ସେ ଓଡ଼ିଶା ଶିକ୍ଷା ବିଭାଗରେ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ । ଉଚ୍ଚକୋଟିର ପ୍ରାବନ୍ଧିକ ଭାବରେ ଓଡ଼ିଆ ଓ ଇଂରାଜୀ ଭାଷାରେ ବହୁ ପ୍ରବନ୍ଧ ବିଭିନ୍ନ ସ୍ମରଣିକା, ସାମୟିକ ଓ ଦୈନିକ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ।

ତାଙ୍କର ପିତା ଇଂରାଜୀରେ 'ସିଂହଭୂମ' ପୁସ୍ତକ ରଚନା କରିବା ସହିତ 'ଜନ୍ମଭୂମି' ନାମରେ ଓଡ଼ିଆ ପତ୍ରିକାର ସମ୍ପାଦନା କରିଥିଲେ । ଭାଇ ଦଲ୍ଲୀପ ଓ ଦେବଦାସ କବିତା ଲେଖି ପ୍ରସିଦ୍ଧି ଅର୍ଜ୍ଜନ କରିଥିବାର ଜଣାଯାଏ । ଦଲ୍ଲୀପ ବାବୁଙ୍କର କବିତା ପୁସ୍ତକ 'ନିମ୍ବଗଛ କଥା କହୁଛି' ଅପ୍ରକାଶିତ । ସାହିତ୍ୟ ପତ୍ର 'କଳ୍ପନା'ରେ ସମ୍ପାଦନା ସହ ସମାଜସେବା ଓ ଆଇନଜୀବୀ ଭାବରେ ପ୍ରସିଦ୍ଧି ଅର୍ଜ୍ଜନ କରିଛନ୍ତି ।

**୫୦ । ଦୀପ୍ତି ବିଶ୍ୱାଳ କୁଣ୍ଡୁ :**

ପିତାଙ୍କର ନାମ ସତ୍ୟସୁନ୍ଦର ଓ ମାତା ଭବାନୀ ଦେବୀ । ବାଲେଶ୍ୱରର ନଗାପାଳ ଗାଁରେ ୧୯୪୩ ମେ ୯ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି ସେ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ । ତାଙ୍କର ପୁସ୍ତକଗୁଡ଼ିକ ଅପ୍ରକାଶିତ ଭାବରେ ଅଛି । ଆସନ୍ତାକାଲି, ପ୍ରଜାତନ୍ତ୍ର, ସ୍ୱରାଜ୍ୟ, ସୁଚରିତା ପ୍ରଭୃତି ପତ୍ରପତ୍ରିକାରେ ବହୁ କ୍ଷୁଦ୍ରଗଳ୍ପ ପ୍ରକାଶିତ ।

**୫୧ । ଦେବୀ କୁମାର ପଣ୍ଡା :**

ପିତାଙ୍କର ନାମ ଯଜ୍ଞେଶ୍ୱର ଓ ମାତା ସ୍ୱର୍ଣ୍ଣମୟୀ ଦେବୀ । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ନିକଟସ୍ଥ ଶାଳ କୋଠା ଗ୍ରାମରେ ୧୯୪୬ ମାର୍ଚ୍ଚ ୧୪ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି କୃଷି କାର୍ଯ୍ୟରେ ବ୍ୟସ୍ତ ରହି ମଧ୍ୟ ସାହିତ୍ୟ ସାଧନାରେ ବ୍ରତୀ । ଜଣେ ସଫଳ ଲେଖକ ଭାବରେ ସେ ବିଭିନ୍ନ ତରଫରୁ ପୁରସ୍କୃତ ହୋଇଛନ୍ତି । ତାଙ୍କ ଲିଖିତ ପୁସ୍ତକ—(୧) ଶେଷପତ୍ର (ଉପନ୍ୟାସ), (୨) ସିଦ୍ଧ ସାଧକ (ଜୀବନୀ),

Digitized by srujanika@gmail.com

(୩) ଅନ୍ଧ ଗାଁର ଗଳ୍ପ ଝନା (ଦାଲର୍ଦ୍ଧ ଧର୍ମୀ କବିତା), (୪) ମହାବାହୁ (ନାଟକ) (୫) ସୁବର୍ଣ୍ଣ ରେଖାରୁ ଶ୍ରୀକ୍ଷେତ୍ର (କବି ଦୀନକୃଷ୍ଣଙ୍କର ଜୀବନୀ ଉପରେ ଆଧାରିତ ନାଟକ) (୬) ମୁକ୍ତି ସଂଗ୍ରାମରେ ଜଳେଶ୍ୱର (ପ୍ରବନ୍ଧ) ।

**୫୨ । ଦୈତାରି ଦାସ :**

ତାଙ୍କର ଲିଖିତ ସରଳ ନୀତିଶିକ୍ଷା ୧୯୧୪ ମସିହାରେ ବାଲେଶ୍ୱରର ସାମନ୍ତ ପ୍ରେସ୍‌ରେ ମୁଦ୍ରିତ ଓ ପ୍ରକାଶିତ ।

**୫୩ । ନବକିଶୋର କର ଶାସ୍ତ୍ରୀ :**

କଟକ ଜିଲ୍ଲାର ପୁରୁଷୋତ୍ତମପୁର ଶାସନ୍‌ରେ ୧୯୦୭ ମସିହାରେ ଜନ୍ମଗ୍ରହଣ କରିଥିଲେ । ସଂସ୍କୃତ ଭାଷାର ବିଶାରଦ ଭାବରେ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ । ମହାକବି କାଳିଦାସ କୃତ ଅଭିଜ୍ଞାନ ଶାକୁନ୍ତଳମ୍‌ର କିଶୋର କେଲୀ ଟୀକା (୧୯୩୨), ସହୃଦୟା ନନ୍ଦ କାବ୍ୟର ଟୀକା (୧୯୫୩), ବିଭିନ୍ନ ସ୍ତୋତ୍ର ଓ ଅଷ୍ଟକାବଳି ରଚନା କରିଛନ୍ତି । ମୟୂରଭଞ୍ଜ ରାଜ୍ୟର ଶିକ୍ଷା ବିଭାଗରେ ଅଧ୍ୟାପନା କରି ବାରିପଦାରେ ସ୍ଥାୟୀ ଭାବରେ ବାସ କରିଥିଲେ ।

**୫୪ । ନରେନ୍ଦ୍ରନାଥ ମିଶ୍ର :**

ପିତାଙ୍କର ନାମ ଭଗବାନ ଓ ମାତା ପାର୍ବତୀ ଦେବୀ । ୧୯୨୯ ମସିହା ଅକ୍ଟୋବର ୨୩ ତାରିଖରେ ବାଲେଶ୍ୱରର ଗିଲଦାଠାରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ବିଶ୍ୱବିଦ୍ୟାଳୟ ସ୍ତରରେ ଅଧ୍ୟାପନା କ୍ଷେତ୍ରରେ ନିଯୁକ୍ତ ଓଡ଼ିଆ ଭାଷାରେ ଉତ୍କୃଷ୍ଟ ପ୍ରବନ୍ଧ ରଚନାର ସ୍ୱୀକୃତି ସ୍ୱରୂପ ୧୯୮୮ ମସିହାରେ ସେ କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର ଲାଭ କରିଛନ୍ତି । ତାଙ୍କ ଲିଖିତ ପୁସ୍ତକ (୧) ବଳରାମ ଦାସ ଓ ଓଡ଼ିଆ ରାମାୟଣ, (୨) ଜ୍ଞାନ କୋଷ, (୩) ଶୈଳ ଓ ସୀମାନ୍ତ, (୪) ଓଡ଼ିଆ ଭାଷା ଓ ସାହିତ୍ୟ, (୫) ଆଧୁନିକତା ଓ ଆଧୁନିକ ସାହିତ୍ୟ, (୬) ଓଡ଼ିଆ କଥା ସାହିତ୍ୟ, (୭) ମନୀଷୀ ନୀଳକଣ୍ଠ (ଜୀବନୀ ଓ କୃତି), (୮) ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିଯୁଗ), (୯) ଆଧୁନିକ ଓଡ଼ିଆ କାବ୍ୟଧାରା (ନବ ଜାଗରଣ ଯୁଗ) (୧୦) କଳାପାଣି (ଭ୍ରମଣ କାହାଣୀ) । ବହୁ ଉଚ୍ଚକୋଟୀର ଗଳ୍ପ ଓ କବିତା ନବଭାରତ ଓ ସହକାରରେ (କବି ମାନବେନ୍ଦ୍ର ଛଦ୍ମ ନାମରେ) ପ୍ରକାଶିତ । ଏତଦ୍‌ବ୍ୟତୀତ ଅନୁବାଦ ଗଳ୍ପ ଓ କବିତା କ୍ଷେତ୍ରରେ ମଧ୍ୟ ଲେଖକଙ୍କର ସ୍ମରଣୀୟ ଅବଦାନ ରହିଅଛି ।

**୫୫ । ନରେନ୍ଦ୍ରନାଥ ଦାସ ମହାପାତ୍ର :**

ପିତାଙ୍କ ନାମ ଅକ୍ଷୟ ନାରାୟଣ । ବାଲେଶ୍ୱର ଜିଲ୍ଲାର ଅଲଲପୁର ଗ୍ରାମରେ ୧୮୬୫ ମସିହା ଆଷାଢ଼ ୨୬ ଦିନ ଶୁକ୍ରବାର ତ୍ରୟୋଦଶୀ ତିଥିରେ ଜନ୍ମଗ୍ରହଣ କରି

Digitized by srujanika@gmail.com

୧୯୪୭ ମସିହା କାର୍ତ୍ତିକ ମାସ ଦ ୫ ନ କୃଷ୍ଣ ଏକାଦଶୀ ତିଥିରେ ଇହଧାମ ତ୍ୟାଗ କରିଛନ୍ତି । ତାଙ୍କ ଲିଖିତ ରଚନା ସମୂହ ତାଙ୍କର ସୁଯୋଗ୍ୟ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ସନ୍ତାନ ଶ୍ରୀ ଗୌରୀ ଶଙ୍କର ଦାସ ମହାପାତ୍ର ଓ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ଶିକ୍ଷକ କବି ଶ୍ରୀ ହାରାଧନ ଭକ୍ତଙ୍କ ଦ୍ୱାରା ସଂଗୃହୀତ ଓ ସମ୍ପାଦିତ ହୋଇ ନରେନ୍ଦ୍ର ଗ୍ରନ୍ଥାବଳୀ ରୂପେ ପ୍ରକାଶିତ ହୋଇଅଛି । ଗ୍ରନ୍ଥାବଳୀର ପ୍ରଥମ ଭାଗରେ 'ସଙ୍ଗୀତ ରତ୍ନମାଳା' (କବିତା), 'ସୂକ୍ତି ମାଳା' (ଅନୁଦିତ କବିତା) ଓ 'ଅବସର ସହଚର' (କବିତା) ସ୍ଥାନିତ ହୋଇଅଛି । ଗ୍ରନ୍ଥାବଳୀର ଦ୍ୱିତୀୟ ଭାଗରେ 'ପାପର ପରିଣାମ' ଓ 'ଅହଲ୍ୟା ଉଦ୍ଧାର' (ନାଟ୍ୟାଭିନୟ) ସନ୍ନିବେଶିତ ହୋଇଛି ।

**୫୭ । ନନୀ ଗୋପାଳ ଷଡପଥୀ :**

ଗ୍ରାମ—କଖଡ଼ା, ଜିଲ୍ଲା—ବାଲେଶ୍ୱର । ଲିଖିତ ପୁସ୍ତକ—ସଚିତ୍ର ଚନ୍ଦନେଶ୍ୱର ମହାତ୍ମ୍ୟ (୧୩୬୯ ସାଲ) ।

**୫୮ । ନିରଞ୍ଜନ ପ୍ରସାଦ ବାରିକ :**

ପିତାଙ୍କର ନାମ ମୁରଲୀଧର ଓ ମାତା କମଳ କୁମାରୀ ଦେବୀ । ୧୯୫୭ ମସିହା ଜାନୁୟାରୀ ୨୫ ତାରିଖରେ ବାଲେଶ୍ୱରର କମାର ପାଳ ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ଜଣେ ସଙ୍କଳକ ଭାବରେ ସେ ପରିଚିତ । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା ବୃତ୍ତିରେ ନିଯୁକ୍ତ ରହିବା ସହିତ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କର ଲିଖିତ ପୁସ୍ତକ ଶିଶୁ ମନ-ଲାଖି ବହୁ ଗଳ୍ପ ଓ କବିତା । ରୂପା ଥାଳିଆ, ଝୁଲିକୁ ମୁଠି, ବଙ୍କାନ ପ୍ରଭା, ଆମ ସୁନା ଗୃହ, ଧରିତ୍ରୀ, ରାଷ୍ଟ୍ରଦୂତ, ନୂତନ ବାର୍ତ୍ତା, ଆର୍ଯ୍ୟବାଣୀ ପ୍ରଭୃତି ପତ୍ର ପତ୍ରିକାରେ ପ୍ରକାଶିତ । ରୂପାଥାଳିଆ (ଶିଶୁ କିଶୋର ପତ୍ରିକା)'ର ସମ୍ପାଦନା । 'ଅଞ୍ଜଳି' ଶିଶୁ କବିତା ସଂକଳନ । 'ଚନ୍ଦ୍ର ଚନ୍ଦ୍ର ସପନ' (୧୯୯୨) ପ୍ରକାଶିତ ।

**୫୯ । ନିରୁପମା କର :**

ପିତାଙ୍କ ନାମ ତାରା ପ୍ରସନ୍ନ ଓ ମାତା ସୁହାସିନୀ ଦେବୀ । ସିଂହଭୂମି ଜିଲ୍ଲାର ଶାସନ ଗ୍ରାମରେ ୧୯୫୦ ମସିହା ଜୁନ ୧୭ ତାରିଖରେ ଜନ୍ମ ଗ୍ରହଣ କରି ବାରିପଦାର ବାସିନ୍ଦା । ଜଣେ ସୁଗୃହିଣୀ ଓ ସାହିତ୍ୟିକ ଭାବେ ସୁପରିଚିତା । ତାଙ୍କର ଲେଖାମାନ ସଂସାର, ଝୁଲିକୁମୁଠି, ରୂପା ଥାଳିଆ, ସୁନା ବୋଇତ, ଝୁମୁକା, ହାସ୍ୟଫୁଲ, ପ୍ରତିଶ୍ରୁତି, ବାର୍ତ୍ତାଉର୍ମି, ଉଦ୍ୟମ, ମୟୂରରାକ୍ଷୀ, ପ୍ରଜାତନ୍ତ୍ର ଓ ଭକ୍ତପ୍ରଭା ପ୍ରଭୃତି ପତ୍ର ପତ୍ରିକାରେ ପ୍ରକାଶିତ । ଏତଦ୍‌ବ୍ୟତୀତ ବାରିପଦା ଆକାଶବାଣୀର ବିଭିନ୍ନ କାର୍ଯ୍ୟକ୍ରମରେ ଲେଖା-ମାନ ପ୍ରସାରିତ ହୋଇଛି ।

Digitized by srujanika@gmail.com

ବାଲେଶ୍ୱର 'ବାର୍ତ୍ତାବହ' ପ୍ରତିଷ୍ଠାନରୁ ମହିଳା ଆଲୋଚକା, ରୂପା ଥାଳିଆ ଅନୁଷ୍ଠାନରୁ ଶିଶୁ ସାହିତ୍ୟିକା ଓ ମଙ୍ଗଳ ବାରିଆ ସାହିତ୍ୟ ଆସର, ବାରିପଦାରୁ କବି ଭାବରେ ସମ୍ମାନ ଲାଭ କରିଛନ୍ତି ।

**୭୦ । ନିମାଇଁ ମହାନ୍ତି :**

ବାରିପଦାର ପୁରୁଣା ହାଟ ସାହିରେ ଜନ୍ମ ଗ୍ରହଣ କରି ଆଇନ ବ୍ୟବସାୟ ଓ ସାହିତ୍ୟ ସାଧନା ସହ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ । ଜଣେ ପ୍ରାବନ୍ଧିକ ଓ ଗୀତି କବି ଭାବରେ ପ୍ରତିଷ୍ଠିତ । ଚଇତ ଚଢ଼େଇ ଓ ରଙ୍ଗଣୀ ଫୁଲ ଗୀତ କବିତାର ଦୁଇଗୋଟି କେସେଟ ପ୍ରସାରିତ 'ବାର୍ତ୍ତା ଭୂମି' ପ୍ରତିଷ୍ଠାନ ଦ୍ୱାରା ସମ୍ମାନିତ ।

**୭୧ । ନିବାରଣ ଜେନା :**

ପିତାଙ୍କର ନାମ ରାଧାନାଥ ଓ ମାତା ଦ୍ରୌପଦୀ ଦେବୀ । ୧୯୫୭ ମସିହା ବାରୁଣୀସ୍ଥାନ ଦନ ବାଲିଆପାଳର ଜାମୁକୁଣ୍ଡା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଖଣ୍ଡିଏ ଗଳ୍ପ ଗ୍ରନ୍ଥ 'ଅରଣ୍ୟର ଅଜଗର' (୧୯୮୮) ପ୍ରକାଶିତ । ଏତଦ୍‌ବ୍ୟତୀତ ବିଭିନ୍ନ ପତ୍ର ପତ୍ରିକା ଓ ସଙ୍କଳନରେ ଗଳ୍ପ ଓ କବିତା ପ୍ରକାଶିତ ।

**୭୨ । ନୀଳକଣ୍ଠ ମିଶ୍ର :**

ପିତାଙ୍କର ନାମ ସୁରେନ୍ଦ୍ର ନାଥ ଓ ମାତା ଯଶୋଦା ଦେବୀ । ମୟୂରଭଞ୍ଜ ଜିଲ୍ଲାର ଦହିକୋଟି ଗ୍ରାମରେ ୧୯୫୭ ମାର୍ଚ୍ଚ ୧୧ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ଓ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ କବିତା ଓ ରମ୍ୟ ରଚନା ସମୂହ ଲହରୀ, ଭଞ୍ଜ ରଶ୍ମି, ପୁଷ୍ପାଞ୍ଜଳି, ଯୁବଶ୍ରୀ, ପୂଜ୍ୟପୂଜା ପ୍ରଭୃତି ପତ୍ରିକାରେ ପ୍ରକାଶିତ ଓ ମଙ୍ଗଳବାରିଆ ସାହିତ୍ୟ ଆସରରେ ପଠିତ । ସେ ମଙ୍ଗଳ ବାରିଆ ସାହିତ୍ୟ ଆସର ବାରିପଦାରୁ ସମ୍ମାନିତ ।

**୭୩ । ନିହାର ରଞ୍ଜନ ହୋତା :**

ପିତାଙ୍କର ନାମ ଶିବଶଚନ୍ଦ୍ର ଓ ମାତା ଶଶୀପ୍ରିୟା ଦେବୀ । ୧୯୩୫ ମସିହା ସେପଟେମ୍ବର ୧୫ ତାରିଖରେ ମୟୂରଭଞ୍ଜ ଜିଲ୍ଲା ବାଙ୍ଗିରିପୋଷି ଥାନା ଅନ୍ତର୍ଗତ ପାଦଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷାଲାଭ କରି ଭାରତୀୟ ପ୍ରଶାସନିକ ସେବା ସଂସ୍ଥାରେ ଜଣେ ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀ ଭାବେ ଅବସ୍ଥାପିତ । ତାଙ୍କ ଲିଖିତ 'ଅସ୍ତି ଭାଗୀରଥୀ ତୀରେ' ଗଳ୍ପ ସଙ୍କଳନ (୧୯୬୮) ପ୍ରକାଶିତ । ଏତଦ୍‌ବ୍ୟତୀତ କେତୋଟି ଗଳ୍ପ, କବିତା ଓ ଅନ୍ୟ ରଚନା ଅପ୍ରକାଶିତ ରହିଅଛି ।

Digitized by srujanika@gmail.com

**୭୪ । ନୂତନ କୁମାର ବେହେରା :**

ପିତାଙ୍କର ନାମ କାର୍ତ୍ତିକ ଓ ମାତା ଲକ୍ଷ୍ମୀ ଦେବୀ । ମୟୂରଭଞ୍ଜର କୋଦ୍ଧ ଗ୍ରାମରେ ୧୯୬୧ ମସିହା ମେ ୧୯ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ ପରେ ଅଧ୍ୟାପନା କରିବା ସଙ୍ଗେ ସଙ୍ଗେ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ନାଟକ—(୧) ମୁଁ ତନାପୁତ କାହିଁକି, (୨) ଏମାନଙ୍କୁ ଆରେଷ୍ଟ କର, (୩) ପ୍ରଦୀପଶିଖା, (୪) ଶଇତାନମାନଙ୍କ ପଛେ ପଛେ, (୫) କାହାଣୀ ମୋ ଭଙ୍ଗା ସଂସାରର, (୬) ଘେଷା ନାଗୀ, ଟାଉଟରୀ, (୭) ବାପ ପୁଅ ହେଲେ ଶ୍ୱଶୁର ଜୋଇଁ ଓ କ୍ଷୁଦ୍ର ନାଟିକା—(୧) ସରପଞ୍ଚ ଚକାଡ଼ୋଲା, (୨) ଜେଜେମା' ଆଜି ହସୁଛୁ, (୩) ଜୀଅନ୍ତା ଭୂତ, (୪) ପ୍ରତିବାଦ, (୫) ଆଜି ମୋ ସ୍ୱାମୀଙ୍କ ଚଉଠି ରାତି, (୬) ପରିବର୍ତ୍ତନ ଅତି ଜରୁରୀ, (୭) ସମ୍ବାଳୁଆ, (୮) ଫୁଲ ବଉଳ ବେଣୀ । କେତେକ ନାଟକ ଓ କ୍ଷୁଦ୍ର ନାଟିକା ଗ୍ରାମାଞ୍ଚଳର ବିଭିନ୍ନ ସ୍ଥାନରେ ବହୁଥର ମଞ୍ଚସ୍ଥ ହୋଇଥିଲେ ହେଁ ପ୍ରକାଶିତ ହୋଇ ନାହିଁ । ଏତଦ୍‌ବ୍ୟତୀତ ଲେଖକଙ୍କ କବିତା 'ଚନ୍ଦନ ଚମ୍ପା'ରେ ପ୍ରକାଶିତ ହୋଇଛୁ ।

**୭୫ । ପଦ୍ମଲୋଚନ ଦେ :**

ପିତାଙ୍କର ନାମ ନରହରି ଓ ମାତା କ୍ଷେତ୍ରମଣି ଦେବୀ । ୧୩୨୯ ସାଲ ଭାଦ୍ରମାସ ୨୮ ଦିନ କୃଷ୍ଣପକ୍ଷ ୮ମୀ ତିଥିରେ ବାଲେଶ୍ୱର ଜିଲ୍ଲାର ବାଲିଆପାଳ ନିକଟସ୍ଥ ମହିଁପାମୁଣ୍ଡା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଉଚ୍ଚ ଶିକ୍ଷାଲାଭ କରି ଅଧ୍ୟାପନା କାର୍ଯ୍ୟ ସହ ସାହିତ୍ୟ ସାଧନାରେ ଜୀବନ ବିତାଇ ଥିଲେ । ୧୯୮୧ ମସିହା ମେ ୨୬ ତାରିଖରେ ଇହଧାମ ତ୍ୟାଗ କରିଛନ୍ତି । ତାଙ୍କ ଲିଖିତ କ୍ଷୁଦ୍ର ପୁସ୍ତିକା—(୧) ପତ୍ରମାଳା ସିରିଜ ୧ମ ଖଣ୍ଡ (୧୯୫୫), (୨) ପତ୍ରମାଳା ସିରିଜ ୨ୟ ଖଣ୍ଡ (୩) ଗ୍ରାମ ଗାଁ କଥା, (୪) ମନେ ପାଗେ ପ୍ରଭୃତି ଲେଖା (କ୍ଷୁଦ୍ର ପୁସ୍ତିକା) ପ୍ରକାଶିତ । ଧର୍ମୀୟ (ଗଦ୍ୟ ରଚନା) ଗଳ୍ପ—କଣ୍ଟକ ଶାଢ଼ୀ, ନବ ବଧୂ, ବେଦନ, ଏମ୍. ଏଲ୍. ଏ, ମରଣ କାଳେ, ପ୍ରଣୟିନୀ, କବିତା—ସଜନୀ ଅଗ୍ରଗତିର ପଥେ ପ୍ରଭୃତି ରଚନା ଅପ୍ରକାଶିତ ।

**୭୬ । ପୀତାମ୍ବର ମହାପାତ୍ର :**

ବାଲେଶ୍ୱର ଜିଲ୍ଲାର କଣିମିଳା ଗ୍ରାମରେ ୧୯୨୮ ମସିହା ଜୁଲାଇ ୧ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ଓ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ଅନେକ କବିତା 'ବାଣୀ', 'ଭାରତୀ', ଓ 'କୁରୁକ୍ଷେତ୍ର' ପତ୍ରିକାରେ ପ୍ରକାଶିତ । ଏତଦ୍‌ବ୍ୟତୀତ ପ୍ରାଥମିକ ବିଦ୍ୟାଳୟ ପର୍ଯ୍ୟାୟର କେତେକ ପାଠ୍ୟ ପୁସ୍ତକ ରଚନା କରିଛନ୍ତି । ବାର୍ତ୍ତା ପ୍ରତିଷ୍ଠାନରୁ ସାହିତ୍ୟ ସାଧନା ପାଇଁ ମାନପତ୍ର ଲାଭ କରିଛନ୍ତି ।

Digitized by srujanika@gmail.com

**୭୭ । ପୀତାମ୍ବର ମହାକୁଳ :**

୧୯୪୩ ମସିହା ସେପ୍‌ଟେମ୍ବର ୨୯ ତାରିଖରେ ଇଞ୍ଚୁଡ଼ିଠାରେ ଜନ୍ମ । ଅଧ୍ୟାପନା ସାଙ୍ଗକୁ ଜଲେଶ୍ୱରର ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ସମ୍ପୃକ୍ତ । ତାଙ୍କ ରଚିତ 'ପୁରୁଷୋତ୍ତମ ମାଂ‌ଧୁରୀ' (୧୯୮୭) ଗୀତି କବିତା ପୁସ୍ତକ ପ୍ରକାଶିତ ହୋଇଛି । ଶ୍ରୀ ଶ୍ରୀ ଠାକୁର ଅନୁକୂଳ ଚନ୍ଦ୍ରଙ୍କ ଭାବଧାରା ସମ୍ବଳିତ କେତେକ ରଚନା ଉର୍ଦ୍ଧ୍ୱନା, ଆନନ୍ଦ ବିପ୍ଳବ, ଦୀନକୃଷ୍ଣ ପ୍ରଭୃତି ପତ୍ରିକାରେ ପ୍ରକାଶିତ ।

**୭୮ । ପୁଣ୍ଡରୀକାକ୍ଷ ମିଶ୍ର :**

ପିତାଙ୍କ ନାମ ରାମଚନ୍ଦ୍ର ଓ ମାତା ଜଗଦ୍ଧାତ୍ରୀ ଦେବୀ । ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନାନ୍ତର୍ଗତ ଜମ୍ବୁରାମପୁର ଗ୍ରାମରେ ୧୯୧୩ ମସିହା ମାର୍ଚ୍ଚ ୧୮ ତାରିଖରେ ଜନ୍ମଗ୍ରହଣ କରି ୧୯୮୭ ଜୁଲାଇ ୯ ତାରିଖରେ ଇହଧାମ ତ୍ୟାଗ କରିଛନ୍ତି । ସଂସ୍କୃତ ଭାଷା ଓ ସାହିତ୍ୟରେ ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା ସହ ସାରସ୍ୱତ ସାଧନାରେ ସମଗ୍ର ଜୀବନ ବିତାଇଛନ୍ତି । ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ସଂସ୍କୃତ ଅଭିଭାଷଣ ତାଙ୍କର ସାରସ୍ୱତ ଜୀବନକୁ ଗଭୀର ପ୍ରଭାବିତ କରିଛି । ତାଙ୍କ ଲିଖିତ ପୁସ୍ତକ : (ନାଟକ) ସୁଧା ହରଣ (୧୯୬୯), ବାତା ହରଣ (୧୯୬୧), ସୁଭଦ୍ରା ହରଣ (୧୯୬୨) ଓ ସୁଦାମ ଚରିତମ୍ (କାବ୍ୟ—୧୯୮୭) । ଏତଦ୍‌ବ୍ୟତୀତ ନିର୍ମାଲ୍ୟ, ସୁଧର୍ମା, ଜଗନ୍ନାଥ ଜ୍ୟୋତି, ଦେବଭାଷା, ଜାହ୍ନବୀ, ଦିଗ୍ ଦର୍ଶିନୀ ଓ ମନୋରମା ଆଦି ପତ୍ରିକାରେ ବହୁ ଉଚ୍ଚକୋଟୀର ପ୍ରବନ୍ଧ, ଅସଂଖ୍ୟ ସଂସ୍କୃତ ଶ୍ଳୋକ/ସ୍ତବ/କବିତା ପ୍ରକାଶିତ ।

୧୯୭୧ ମସିହାରେ ଆଦର୍ଶ ସଂସ୍କୃତ ବିଦ୍ୟାନ ଭାବରେ ରାଷ୍ଟ୍ରପତି ପୁରସ୍କାର ଓ ୧୯୮୭ ମସିହାରେ ସାହିତ୍ୟ ସାଧନା ନିମନ୍ତେ 'ଦୀନକୃଷ୍ଣ ସ୍ମୃତି ପରିଷଦ' ତରଫରୁ ମାନପତ୍ର ପ୍ରାପ୍ତ ।

**୭୯ । ପୁରୁଷୋତ୍ତମ ଭୂୟାଁ :**

ପିତାଙ୍କ ନାମ ରାଧାମୋହନ ଓ ମାତା ରାଧାମଣି ଦେବୀ । ବାଲେଶ୍ୱର ଜିଲ୍ଲା ନରଶପୁର ଗ୍ରାମରେ ୧୯୪୭ ମସିହା ରାହାସ ପୂର୍ଣ୍ଣିମାରେ ଜନ୍ମ । ପଡ଼ୁଆଁପଦା (ବାଲେଶ୍ୱର)ଠାରେ ସ୍ଥାୟୀ ବାସିନ୍ଦା । ଅଧ୍ୟାପନା ବୃତ୍ତି ସହ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ଲିଖିତ ନାଟକ ଓ ନାଟିକାଗୁଡ଼ିକର ନାମ । ଯଥା—(୧) କାହା ଆଗେ କୁହନା, (୨) ପଥ ବିପଥ, (୩) ରାଜକନ୍ୟା ରଜନୀଗନ୍ଧା, (୪) ମନ ଅରଣ୍ୟର ଇତିକନ୍ୟା, (୫) ବାଲିଝଡ଼, (୬) ସ୍ୱର୍ଗକୁ ସିଢ଼ି, (୭) ପରାସ୍ତ ସମ୍ରାଟ, (୮) ପଡ଼ୋଶୀ ରାଧା, (୯) ଯିଏ ଯାହା କହୁ, (୧୦) ମାନସୀର ମୃତ୍ୟୁ, (୧୧) କେତେ ଯେ କୁହୁଡ଼ି ସତେ, (୧୨) ନିଃସଙ୍ଗ ସୈନିକ, (୧୩) କହିଲେ ଲାଜ, (୧୪) ନଷ୍ଟ ନୀଡ଼ର ପକ୍ଷୀ, (୧୫) ଅହଲ୍ୟା, (୧୬) ବର୍ଷା-

Digitized by srujanika@gmail.com

ସହର ଡାକ୍ର, (୧୭) ଦେବତା, (୧୮) ସାଧୁ ସାବଧାନ, (୧୯) ରକ୍ତାର୍ଘ ସେହ୍ନଲ (ଶୈବଲ୍ଲାସିକା), (୨୦) ପ୍ଲାଟ୍‌ଫର୍ମ, (୨୧) ମୁଁ ଈଶ୍ୱର, (୨୨) ଅବ୍ୟକ୍ତ (ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଆନୁକୂଲ୍ୟରେ ଅଭିନୀତ) ।

ଶ୍ରେଷ୍ଠ ନାଟକ—(୨୩) ଚମ୍ପା ଗଛ, (୨୪) ଶବମାନଙ୍କର ଶୋଭାଯାତ୍ରା, (୨୫) ମହାନଗରୀ, (୨୬) ତାମ୍ର ଫଳକ, (୨୭) ନଗ୍ନ ନାୟକ, (୨୮) କପଟ ମିଛ; (୨୯) ଛୁଞ୍ଚି, (୩୦) ନାୟିକା ଲାଗି, (୩୧) କୂଳବଧୂ, (୩୨) ଅନୁତାପ, (୩୩) ବାଂଧା ସନ୍ତାନ, (୩୪) ବାଦୁଡ଼ି ଓ ବରଫଳ, (୩୫) ଆଜି ଯେ ରାଜେନ୍ଦ୍ରାର୍ପଣେ, (୩୬) ଦଗ୍‌ଧ ମନର ଇତକଥା (୩୭) କାଞ୍ଚନ କନ୍ୟା । ନୃତ୍ୟ ନାଟିକା—(୧) ଅଭିଶପ୍ତ ଈଶ୍ୱର, (୨) ଲଳିତ ଲବଙ୍ଗ ଲତା । ଉପରୋକ୍ତ ନାଟକ/ନାଟିକା ମଧ୍ୟରୁ କେତେକ ପ୍ରକାଶିତ । ଏତଦ୍‌ବ୍ୟତୀତ କେତେକ କ୍ଷୁଦ୍ର ଗଳ୍ପ ଓ କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଅଛି ।

ସାଧନାର ସ୍ୱୀକୃତି ସ୍ୱରୂପ ନାଟ୍ୟକାର ୧୯୭୮ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ କଟକଠାରେ ଅନୁଷ୍ଠିତ ନିଖିଳ ଓଡ଼ିଶା ନାଟ୍ୟ ଶିଳ୍ପୀ ସମାରୋହରେ ଶ୍ରେଷ୍ଠ ନାଟ୍ୟକାର ରୂପେ 'ବାଣୀ' ଅନୁଷ୍ଠାନ ଦ୍ୱାରା ଶ୍ରେଷ୍ଠ ନାଟ୍ୟକାର ରୂପେ, ୧୯୮୨ ମସିହାରେ କଟକଠାରେ ଅନ୍ନପୂର୍ଣ୍ଣା ଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟ୍ୟକାର ରୂପେ ଓ ରାଜ୍ୟସ୍ତରୀୟ ଓ ଆଞ୍ଚଳିକ ବହୁ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟ୍ୟକାର ରୂପେ ସମ୍ବର୍ଦ୍ଧିତ ଓ ପୁରସ୍କୃତ ହୋଇଛନ୍ତି ।

## ୭୦ । ପୁଷ୍ପାଞ୍ଜଳି ନାୟକ :

ପିତାଙ୍କର ନାମ ଉମେଶ ଚନ୍ଦ୍ର ଓ ମାତା ଶୈଳବାଳା ଦେବୀ । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱରଠାରେ ୧୯୫୫ ମସିହା ଡିସେମ୍ବର ୨୫ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ ପରେ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକ : (ଗଳ୍ପ)—(୧) ପୂର୍ବ ରାଗ (୧୯୮୫), (୨) ଅଶ୍ରୁ ନଦୀର ସ୍ରୋତ, (ଉପନ୍ୟାସ)—(୩) କପଟ ପଣ (୧୯୮୫), (୪) ସୁବର୍ଣ୍ଣରେଖାର ପୃଥବୀ, (୫) ମାଟିର ପ୍ରହରୀମାନେ । ତାଙ୍କର ବହୁ କ୍ଷୁଦ୍ର ଗଳ୍ପ ନବଲିପି, ଝଙ୍କାର, ସୁଚରିତା, ନବରବି, ଆସନ୍ତାକାଲି ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି ।

ଶ୍ରୀମତୀ ନାୟକ ୧୯୮୦ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ଜୀବନ ରଙ୍ଗ ସାହିତ୍ୟ ପତ୍ରିକା ତରଫରୁ, ୧୯୯୦ ମସିହାରେ ଫକୀର ମୋହନ ସାହିତ୍ୟ ପରିଷଦ ଓ ୧୯୯୨ରେ 'ସୁଚରିତା' ତରଫରୁ ଗଳ୍ପ ସାହିତ୍ୟକୁ ଅବଦାନର ସ୍ୱୀକୃତି ସ୍ୱରୂପ ପୁରସ୍କୃତ ହୋଇଛନ୍ତି ।

Digitized by srujanika@gmail.com

## ୬୧ । ପୂର୍ଣ୍ଣଚନ୍ଦ୍ର ଓଝା :

ପିତାଙ୍କର ନାମ କାର୍ତ୍ତିକ ଚନ୍ଦ୍ର ଓ ମାତା ସୁଭଦ୍ରା ଦେବୀ । ଜଳେଶ୍ୱର ନିକଟବର୍ତ୍ତୀ ଚକହରି ଗ୍ରାମରେ ୧୯୪୭ ମସିହା ସେପ୍‌ଟେମ୍ବର ୨୭ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଜଣେ କୃତୀ ପ୍ରାଥମିକ ଶିକ୍ଷକ ଓ ସାହିତ୍ୟ ସାଧକ ଭାବେ ସୁପ୍ରତିଷ୍ଠିତ । ତାଙ୍କ ଲିଖିତ ପୁସ୍ତକ—ଗାନ୍ଧିବାଣୀ, ପିଲଙ୍କ ଚିଗଚିମାଳି (୧୯୮୧), ତଥି ନିମିତ୍ତ ଖାଦ୍ୟ, ଆଦର୍ଶ ଗ୍ରାମର ଗୁଣ ଓ ପିଲଙ୍କ ସହଜ ଓଡ଼ିଆ ବ୍ୟାକରଣ ପ୍ରଭୃତି ପ୍ରକାଶିତ । ଏତଦ୍ ବ୍ୟତୀତ ତାଙ୍କ ଲିଖିତ କେତେକ ଗଳ୍ପ, କବିତା ଓ ପ୍ରବନ୍ଧ, ଶିକ୍ଷା ଜ୍ୟୋତି, ଗୌରବ, ପ୍ରଭା, ଜନ୍ମଭୂମି, ରାଷ୍ଟ୍ରଦୂତ, ଶ୍ରଦ୍ଧାଞ୍ଜଳି, ମୀନା, ସୁବର୍ଣ୍ଣା ଓ କବିତା ଶତକ ପ୍ରଭୃତି ପତ୍ରିକା ଏବଂ ସାମୟିକ ସଂକଳନରେ ପ୍ରକାଶିତ ହୋଇଛି ।

## ୭୨ । ପୂର୍ଣ୍ଣଚନ୍ଦ୍ର ପ୍ରଧାନ :

ପିତାଙ୍କ ନାମ ଗୁରୁପ୍ରସାଦ ଓ ମାତା ଶାରଦାମଣି ଦେବୀ । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ଥାନାନ୍ତର୍ଗତ ଗୋପ ଗ୍ରାମରେ ୧୯୦୨ ମସିହା ଅକ୍ଟୋବର ୨୫ ତାରିଖରେ ଜନ୍ମଗ୍ରହଣ ଓ ୧୯୮୮ ମସିହା ସେପ୍‌ଟେମ୍ବର ୨ ତାରିଖରେ ମୃତ୍ୟୁବରଣ କରିଥିଲେ । ଅଧ୍ୟାପନା, ହୋମିଓପାଥି, ଚିକିତ୍ସା ଓ ସାହିତ୍ୟ ସାଧନାରେ ସମଗ୍ର ଜୀବନ ଅତିବାହିତ କରିଛନ୍ତି । ସ୍ୱଭାବ କବି ଭାବରେ କବି ପୂର୍ଣ୍ଣଚନ୍ଦ୍ରଙ୍କ କୃତି—(୧) କବିତା କଳିକା, (୨) ମଗଧ ଲକ୍ଷ୍ମୀ, (୩) ରାଜବନ୍ଦୀର ଆତ୍ମ ନିଷ୍କୃତି, (୪) ସୁବର୍ଣ୍ଣରେଖା, (୫) ଗୋପ ମାତୃକା । 'ଗୋପ ମାତୃକା' ଖଣ୍ଡ କାବ୍ୟ ୧୯୮୫ରେ ପ୍ରକାଶିତ । ଅନ୍ୟ ରଚନା ସମୂହ ଅପ୍ରକାଶିତ ଭାବରେ ରହିଅଛି ।

## ୭୩ । ପୂର୍ଣ୍ଣଚନ୍ଦ୍ର ବିଦ୍ଧାଣୀ :

ପିତାଙ୍କ ନାମ ଚନ୍ଦ୍ରମୋହନ । ୧୯୨୪ ମସିହା ଅଗଷ୍ଟ ୨୪ ତାରିଖରେ ବାଣପଦାର ଦେଉଳ ସାହିରେ ଜନ୍ମଗ୍ରହଣ କରିଛନ୍ତି । ଏକାଧାରରେ ଜଣେ ଆଲୋକ ଚିତ୍ରଶିଳ୍ପୀ, ବଂଶୀ ବାଦକ, ସାମ୍ବାଦିକ, ବ୍ୟଙ୍ଗକାର, ଅଭିନେତା ଓ ସାହିତ୍ୟିକ ରୂପେ ସୁପ୍ରତିଷ୍ଠିତ । ସାହିତ୍ୟ ରଚନା : ବ୍ୟଙ୍ଗ ନାଟକ—ବାଘ, ଶିଶୁ ନାଟକ—ଗୁମ୍ଫା, ଡିଟେକ୍ଟିଭ ଉପନ୍ୟାସ—ସର୍ଦ୍ଦାର । ଜଣେ ଉତ୍କୃଷ୍ଟ ଚିତ୍ରଶିଳ୍ପୀ ଭାବରେ ୧୯୮୮ ମସିହାରେ ଭାରତର ରାଷ୍ଟ୍ରପତିଙ୍କ ଦ୍ୱାରା ଜାତୀୟ ପୁରସ୍କାର ଲାଭ କରି ସମ୍ମାନିତ ହୋଇଛନ୍ତି । ଶ୍ରେଷ୍ଠ ଆଲୋକ ଚିତ୍ରଶିଳ୍ପୀ ଭାବେ ପଣ୍ଡିଚେରୀରେ ଅନୁଷ୍ଠିତ ଆନ୍ତର୍ଜାତିକ ଫଟୋଗ୍ରାଫି (୧୯୬୫) ସେଲୁନ ଦ୍ୱାରା ସମ୍ମାନିତ । ଏତଦ୍‌ବ୍ୟତୀତ ବହୁ କ୍ଷେତ୍ରରେ ନିଜର କୃତିତ୍ୱ ନିମନ୍ତେ ରାଜ୍ୟ ଓ ଜିଲ୍ଲା ସ୍ତରୀୟ ବହୁ ପୁରସ୍କାର ଓ ସମ୍ମାନ ଲାଭ କରିଛନ୍ତି ।

Digitized by srujanika@gmail.com

୭୪ । ପୂର୍ଣ୍ଣଚନ୍ଦ୍ର ସେନାପତି :

ଜଳେଶ୍ୱର ଥାନାନ୍ତର୍ଗତ ଶାନ୍ତୁଆ ଗ୍ରାମରେ ସନ ୧୩୨୭ ୧୯୨୦ ଭାଦ୍ର ୨୮ ଦିନ ଜନ୍ମଗ୍ରହଣ କରିଛନ୍ତି । ପିତାଙ୍କ ନାମ ରାମହରି ଓ ମାତା ପାର୍ବତୀ ଦେବୀ । ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସାହିତ୍ୟିକ ଭାବରେ ସଫଳ ଜୀବନର ଅଧିକାରୀ । ତାଙ୍କ ଲିଖିତ କ୍ଷୁଦ୍ର ପୁସ୍ତିକା—(୧) ଅଶ୍ରୁଆଁ ଜଏ. (୨) ବାପୁଜୀ ଓ (୩) ଜଳେଶ୍ୱରରେ ଗୁଳିକାଣ୍ଡ ପ୍ରଭୃତି ପ୍ରକାଶିତ ରଚନା ।

୭୫ । ପ୍ରତିଭା ସୁନ୍ଦରୀ ଓତା :

ପିତାଙ୍କ ନାମ ପୁରୁଷୋତ୍ତମ ଓ ମାତା ଚମ୍ପକ ମଞ୍ଜରୀ ଦେବୀ । ବାରିପଦାର ଦହିକୋଟି ଗ୍ରାମରେ ୧୯୩୫ ମସିହା ଜୁନ୍ ୧୪ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ସରକାରୀ କାର୍ଯ୍ୟରେ ନିଯୁକ୍ତା ଓ ସାହିତ୍ୟ ସାଧନାରେ ବ୍ରତୀ । କ୍ଷୁଦ୍ର ଗଳ୍ପ, କବିତା, ରମ୍ୟ ରଚନା, ପ୍ରବନ୍ଧ ବ୍ୟତୀତ ଶିଶୁ ଉପଯୋଗୀ କବିତା ଓ ଗଳ୍ପ ରଚନା କରି ସୁପରିଚିତା । ଏତଦ୍‌ବ୍ୟତୀତ ଆଶାପୂର୍ଣ୍ଣା ଦେବୀଙ୍କର 'ବାଲୁଚରୀ' ଉପନ୍ୟାସ (ବଙ୍ଗଳା) ଓଡ଼ିଆ ଭାଷାରେ ଅନୁବାଦ କରି ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି । ପ୍ରଜାତନ୍ତ୍ର, 'ମା', 'ସୁନାପିଲା', କଳିଙ୍ଗ ଯୁଗମାନବୀ, ପୂଜ୍ୟପୂଜା ପ୍ରଭୃତି ପତ୍ରପତ୍ରିକା ଓ ଆକାଶବାଣୀର ବିଭିନ୍ନ କେନ୍ଦ୍ରରୁ ଲେଖାମାନ ପ୍ରକାଶିତ ଓ ପ୍ରଚାରିତ ହୋଇଛି ।

ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ୧୯୬୭ ମସିହାରେ ପୁରସ୍କୃତ ହୋଇଛନ୍ତି ।

୭୬ । ପ୍ରଭାକର ପାତ୍ର :

ପିତାଙ୍କର ନାମ ଶ୍ରୀଦାମ ଓ ମାତା ୰ କ୍ଷୀରମଣୀ ଦେବୀ । ମୟୂରଭଞ୍ଜର ଶୂଳିଆ-ପଦା ନିକଟସ୍ଥ କାଳଟିଆ ଗ୍ରାମରେ ତା ୨୧୦୧୯୪୧ ରିଖରେ ଜନ୍ମଗ୍ରହଣ କରିଛନ୍ତି । ଅଧ୍ୟାପନା ସହିତ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକ—(୧) ପ୍ରତିପ୍ରାଣା ଚନ୍ଦ୍ରକାନ୍ତୀ, (୨) ଶୋକଗ୍ରସ୍ତା, (୩) ନଳନୀଳ ଭଞ୍ଜନ (୧ମ, ୨ୟ, ୩ୟ ଭାଗ), (୪) ପ୍ରତିପ୍ରାଣା ନାରୀ, (୫) ହେମବତୀ ରୋଦନ । ଏତଦ୍‌ବ୍ୟତୀତ କେତେକ କବିତା ବିଭିନ୍ନ ପତ୍ରିକାରେ ପ୍ରକାଶିତ । ୧୯୯୧ ମସିହାରେ ବାର୍ତ୍ତା ପ୍ରତିଷ୍ଠାନ ତରଫରୁ ପୁରସ୍କୃତ ଏବଂ ବିପ୍ଳବୀ କବି ମୂଷଣ୍ଡା ପୁରସ୍କାର ଲାଭ । ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନରେ ସମ୍ମାନିତ ହୋଇଛନ୍ତି ।

୭୭ । ପ୍ରକାଶଚନ୍ଦ୍ର ବ୍ରହ୍ମା :

ପିତାଙ୍କ ନାମ ରାଜକିଶୋର ଓ ମାତା ପଦ୍ମାମଣି ଦେବୀ । ମୟୂରଭଞ୍ଜ ଜିଲ୍ଲାର ଅମର୍ଦ୍ଦା ଗ୍ରାମରେ ୧୯୧୦ ମସିହା ନଭେମ୍ବର ୧୦ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି ।

Digitized by srujanika@gmail.com

ଉଚ୍ଚଶିକ୍ଷା ଲାଭକରି ସରକାରୀ କର୍ମରୁ ଅବସର ଗ୍ରହଣ କରିଥିଲେ ହେଁ ସାରସ୍ୱତ ସାଧନାରେ ବ୍ରତୀ । ପ୍ରକାଶିତ ପୁସ୍ତକ, ଉପନ୍ୟାସ—ବିନ୍ଦୁ ୧ମ ଖଣ୍ଡ । ବିନ୍ଦୁର ୨ୟ ଖଣ୍ଡ ଓ ଶତାଧିକ କବିତା ଅପ୍ରକାଶିତ ରହିଅଛି । ୧୯୪୭ ମସିହାରେ ମୟୁରଭଞ୍ଜ ମହାରାଜାଙ୍କ ଜନ୍ମ ବାର୍ଷିକୀ ଉତ୍ସବରେ ଶ୍ରେଷ୍ଠ ନାଟ୍ୟକାର ରୂପେ ପ୍ରଥମ ପୁରସ୍କାର ପ୍ରାପ୍ତ ।

### ୭୮ । ପ୍ରଭାସଚନ୍ଦ୍ର ଶତପଥୀ :

ପିତାଙ୍କ ନାମ ସୀତାରାମ ଓ ମାତା ପାର୍ବତୀ ଦେବୀ । ମୟୁରଭଞ୍ଜର ଆନନ୍ଦ ବୃନ୍ଦାବନପୁର ଗ୍ରାମରେ ୧୯୨୯ ମସିହା ମାର୍ଚ୍ଚ ୧୫ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଜଣେ ଶିକ୍ଷିତ ବ୍ୟକ୍ତି ହୋଇ ଗୃହ କାର୍ଯ୍ୟକୁ ବୃତ୍ତି ଭାବରେ ଗ୍ରହଣ କରିଥିଲେହେଁ ସାହିତ୍ୟ ସାଧନାରେ ବ୍ରତୀ । ଜଣେ ସଫଳ ଅନୁବାଦକ ରୂପେ ସର୍ବଜନ ପରିଚିତ । ଅନୁଦିତ ଗଳ୍ପ ଓ ଉପନ୍ୟାସ—ଚେଖଫ୍‌ଙ୍କ ଗଳ୍ପ, ମୋ ପାସାଙ୍କ ଗଳ୍ପ,, ପାପ ଓ ପ୍ରାୟଶ୍ଚିତ, ଗୋର୍କି-ଚରିତ ପ୍ରଭୃତି ପ୍ରକାଶିତ ।

### ୭୯ । ପ୍ରମୋଦକୁମାର ତ୍ରିପାଠୀ :

ପିତାଙ୍କ ନାମ ଗୌରାଙ୍ଗ ଓ ମାତା ରୁକ୍ମଣୀ ଦେବୀ । ସମ୍ବଲପୁର ଜିଲ୍ଲାର ଅନୁପାଲି ଗ୍ରାମରେ ୧୯୫୭ ମସିହା ଫେବୃୟାରୀ ୧୦ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଇଂରାଜୀ ସାହିତ୍ୟରେ ଉଚ୍ଚ ଶିକ୍ଷା ଲାଭ କରି ମହାବିଦ୍ୟାଳୟ ସ୍ତରରେ ଅଧ୍ୟାପନା କାର୍ଯ୍ୟ ସହିତ ନାଟକ ଓ ପ୍ରବନ୍ଧ ରଚନାରେ ବ୍ରତୀ । ତାଙ୍କ ଲିଖିତ ଓ ପ୍ରକାଶିତ ନାଟକ—ଗୋଟିଏ ବୁଲା କୁକୁରର ଜନ୍ମ ବୃତ୍ତାନ୍ତ, ଶୁଣ ପରୀକ୍ଷ ଦଣ୍ଡଧାରୀ, କେନସର, ବ୍ୟୋମ କାଳିଆ ଉବାଚ, ସବୁଠୁ ଗରିବ ଲୋକ ଇତ୍ୟାଦି । ଷାଠିଏରୁ ଊର୍ଦ୍ଧ୍ୱ ନାଟକ ଲେଖକ ଓ ପ୍ରାବନ୍ଧିକ ଭାବେ ପ୍ରତିଷ୍ଠିତ । ୧୯୮୭ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ ଓ କାଲିଚରାଲ ଏକାଡେମୀ ରାଉର କେଲା ତରଫରୁ ବହୁବାର ଶ୍ରେଷ୍ଠ ନାଟ୍ୟକାର ଭାବେ ପୁରସ୍କୃତ ।

### ୮୦ । ପ୍ରଫେସର ସତ୍ୟନାରାୟଣ ନନ୍ଦ :

ବାପା ଲକ୍ଷ୍ମୀନାରାୟଣ ଓ ମାଆ ସାବିତ୍ରୀ ଦେବୀ । ୧୯୪୩ ମସିହା ସେପଟେମ୍ବର ମାସ ୭ ତାରିଖରେ ବାଲେଶ୍ୱର ଜିଲ୍ଲାର ରାଜନୀଲଗିରିଠାରେ ଜନ୍ମ । ଇଂରାଜୀ ସାହିତ୍ୟରେ ଉଚ୍ଚଶିକ୍ଷା ଲାଭ କରି ସରକାରୀ ଚାକିରୀ, ସମ୍ପାଦନା ସହିତ ସାରସ୍ୱତ ସାଧନାରେ ବ୍ରତୀ । ରଚିତ ଗ୍ରନ୍ଥ : ଭଗ୍ନାଂଶ (କବିତା—୧୯୬୨), ମାଳହଂସର ଜ୍ୱାଳା (୧୯୬୯), ଅଧଃପତନର ଛନ୍ଦ (୧୯୭୨), ଜୀଅନ୍ତା ଶାଳଗ୍ରାମ (୧୯୭୬), ଗବ ସଙ୍ଗମ ଓ ଅନ୍ୟାନ୍ୟ କବିତା (୧୯୭୭), ପେଷ୍ଟାଲସ ଅବ ଲଭ୍ (ଇଂ) ୧୯୮୦, ସପ୍ତଦ୍ୱୀପା ବସୁନ୍ଧରା

Digitized by srujanika@gmail.com

(୧୯୮୬) ସନେଟ୍ ସା (୧୯୮୬), ହରଣ୍ଟଙ୍କ ପାଉଣ (୧୯୯୦), ହରଣ୍ଟଙ୍କ ସବିତା ରଥେନା (୧୯୯୦), ବର୍ଷାର ପାଦରେ ନୂପୁର (୧୯୯୬), ଦ ଇଣ୍ଡିମେନ୍ ସର୍କଲ ପ୍ରଭୃତି ପ୍ରକାଶିତ । ନାଟକ—ଆଣତ ଉଡ଼୍ ପେନ୍‌ସିଲ୍, ପ୍ରବନ୍ଧ—ଆଧୁନିକ କବିତା : ଅର୍ଥ—ଅନୁଶୀଳନ । ଉପନ୍ୟାସ—ବଦଶାର କଣ୍ଠସ୍ୱର, ଇଚ୍ଛାର ଅନ୍ୟନାମ, ହଂସପାଦ ସୂର୍ଯ୍ୟଦ୍ୱୀପର ମାଳ, ଗଳ୍ପ—ବର୍ଷାର ଟ୍ରେନ୍ ଓ ଅନ୍ୟାନ୍ୟ ଭକ୍ତ ସଙ୍ଗୀତ—ପ୍ରହ୍ଲାଦ ସତ୍ୟନାରାୟଣଙ୍କ ଗୀତଗୁଚ୍ଛ । ନାଟ—ସୂର୍ଯ୍ୟମୁଖୀ ଓ ଅନ୍ୟାନ୍ୟ ନୃତ୍ୟ ନାଟିକା । କବିତା—ହାତରେ ମଶାଲ ଧର, ସମୁଦ୍ର : ବଦଶା : ମୁଁ , ଗୀତ ଗୋବିନ୍ଦ, ଦଶବତାର ଓ ଅନ୍ୟାନ୍ୟ କବିତା । ସମାଲୋଚନା—'ଶ୍ରୀରାଧା' ପୁସ୍ତିକାର ଆଲୋଚନା ପ୍ରଭୃତି ଅପ୍ରକାଶିତ ।

## ୮୧ । ପ୍ରହ୍ଲାଦ ଚରଣ ମହାନ୍ତି :

ପିତାଙ୍କ ନାମ ଭଗବାନ ଚରଣ ଓ ମାତା ଇନ୍ଦ୍ରାଣୀ ଦେବୀ । ବାଲେଶ୍ୱର ଜିଲ୍ଲାର ଗଡ଼ସାହି ଗ୍ରାମରେ ୧୯୩୭ ମସିହା ଫେବୃୟାରୀ ୨୪ ତାରିଖରେ ଜନ୍ମ ଗ୍ରହଣ କରି ବାଲେଶ୍ୱର ସହରର ଗୋପାଳ ଗାଁଠାରେ ସ୍ଥାୟୀ ଭାବରେ ବାସ କରୁଛନ୍ତି । ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଡିଗ୍ରୀ ଲାଭ କରି ମହାବିଦ୍ୟାଳୟ ସ୍ତରରେ ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ—ଚମ୍ପାର ଭାଗବତ ପାଠ (ପ୍ରବନ୍ଧ), ରକ୍ତାଭ ଜ୍ୟୋତ୍ସ୍ନା (କବିତା), ଓଡ଼ିଆ ଯାତ୍ରା ଓ ଲୋକ ନାଟକ । ଯୁଗ୍ମ ସଙ୍କଳକ/ସମ୍ପାଦକ ଭାବରେ କିଛି କଥା ଅନେକ ସାନ୍ତ୍ୱନା (ଗଳ୍ପ), ସ୍ମାରକୀ, ମିନି କବିତା ଶତକ, ମିନି ଗଳ୍ପ ଶତକ, ସେନାପତି ସାହିତ୍ୟାଲୋକ, କାନ୍ତକବି ସାହିତ୍ୟାଲେଖ୍ୟ, ମହା ମାନବର ସାଗରତୀରେ, ଓଡ଼ିଶାର ସାଂସ୍କୃତିକ ପରମ୍ପରା ୧ମ ଓ ୨ୟ, ନଗର କଟକ ୧ମ ଓ ୨ୟ ସ୍ତବକ । ଏତଦ୍‌ବ୍ୟତୀତ ବିଭିନ୍ନ ପତ୍ର ପତ୍ରିକା, ସଙ୍କଳନ, ସ୍ମରଣିକାରେ ଗଳ୍ପ, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ଗଳ୍ପ ପ୍ରକାଶିତ । କେତେକ ପାଠ୍ୟ ପୁସ୍ତକ ରଚୟିତା ଭାବରେ ଆଦୃତ । ଫକୀରମୋହନ ୧୫୦ ତମ ଜୟନ୍ତୀ ସ୍ମରଣୀକା ସଙ୍କଳନର ମୁଖ୍ୟ ସମ୍ପାଦକ ।

## ୮୨ । ଫକୀର ମୋହନ ସେନାପତି :

ମାତାଙ୍କ ନାମ ତୁଳସୀ ଦେଈ ଓ ପିତା ଲକ୍ଷ୍ମଣଚରଣ । ବାଲେଶ୍ୱର ସହରର ମଲ୍ଲିକାଶପୁର ଗ୍ରାମରେ ସନ ୧୨୫୦ ସାଲ ଇଂରାଜୀ ୧୮୪୩ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସ ମକର ସଂକ୍ରାନ୍ତି ଶୁକ୍ରବାରଦିନ ଜନ୍ମ ଗ୍ରହଣ କରି ୧୯୧୮ ମସିହା ଜୁନ ମାସ ୧୪ ତାରିଖରେ ଅମର ଧାମକୁ ଯାତ୍ରା କରିଛନ୍ତି । ଆଧୁନିକ ଓଡ଼ିଆ କଥା ସାହିତ୍ୟ ସମ୍ରାଟ ଫକୀରମୋହନଙ୍କ ଅମର କୃତିସମୂହ ନିମ୍ନରେ ଉଲ୍ଲେଖ କରୁଅଛୁ ।

Digitized by srujanika@gmail.com

| | ଗ୍ରନ୍ଥର ନାମ | ସଂସ୍କରଣ | କେଉଁ ତାରିଖରେ ପ୍ରକାଶିତ |
|---|---|---|---|
| ୧ । | ଜୀବନ ଚରିତ (ଅନୁବାଦ) | ୧ମ | ୧୮୬୬ |
| ୨ । | ଭାରତ ବର୍ଷର ଇତିହାସ ୧ମ ଭାଗ ଓ ୨ୟ ଭାଗ | ୧ମ | ୧୮୬୯ ଓ ୧୮୭୦ |
| ୩ । | ଅଙ୍କମାଳା | | |
| ୪ । | ରାମାୟଣ ୭ କାଣ୍ଡ (ପଦ୍ୟାନୁବାଦ) | ୨ୟ | ୧୮୭୦ |
| | ବାଲକାଣ୍ଡ ,, | ୨ୟ | ୧୮୮୪ |
| | ଅଯୋଧ୍ୟା କାଣ୍ଡ ,, | ୨ୟ | ୧୮୮୪ |
| | ଆରଣ୍ୟ କାଣ୍ଡ ,, | ୧ମ | ୧୮୮୩ |
| | କିଷ୍କିନ୍ଧ୍ୟା କାଣ୍ଡ ,, | ୧ମ | ୧୮୮୫ |
| | ସୁନ୍ଦର କାଣ୍ଡ ,, | ୧ମ | ୧୮୮୭ |
| | ଲଙ୍କା କାଣ୍ଡ ,, | ୧ମ | ୧୮୯୦ |
| | ଉତ୍ତର କାଣ୍ଡ ,, | ୧ମ | ୧୮୯୫ |
| ୫ । | ମହାଭାରତ (ପଦ୍ୟାନୁବାଦ) | | |
| | ଆଦିପର୍ବ | ୧ମ | ୧୮୮୭ |
| | ସଭାପର୍ବ | ୧ମ | ୧୮୮୬ |
| | ବନ ପର୍ବ | ୧ମ | ୧୯୦୪ |
| | ବିରାଟ ପର୍ବ | ୧ମ | ୧୯୦୫ |
| | ଅନ୍ୟାନ୍ୟ ପର୍ବ–ଅପ୍ରକାଶିତ | | |
| ୬ । | ଶ୍ରୀମଦ୍‌ଭାଗବତ୍‌ଗୀତା (ପଦ୍ୟାନୁବାଦ) | ୧ମ | ୧୮୮୬ |
| ୭ । | ଉତ୍କଳ ଭ୍ରମଣ (କାବ୍ୟ) | ୧ମ | ୧୮୯୨ |
| ୮ । | ପୁଷ୍ପମାଳା (କାବ୍ୟ) | ୧ମ | ୧୮୯୪ |
| ୯ । | ଉପହାର (କାବ୍ୟ) | ୧ମ | ୧୮୯୫ |
| ୧୦ । | ଛମାଣ ଆଠଗୁଣ୍ଠ | ୧ମ | ୧୯୦୨ |
| ୧୧ । | ଶ୍ରୀ ହରିବଂଶ (ପଦ୍ୟାନୁବାଦ) | ୧ମ | ୧୯୦୨ |
| ୧୨ । | ଉପନିଷଦ ସଂଗ୍ରହ (ପଦ୍ୟାନୁବାଦ) | ୧ମ | ୧୯୦୫ |

Digitized by srujanika@gmail.com

| ଗ୍ରନ୍ଥର ନାମ | ସଂସ୍କରଣ | କେଉଁ ତାରିଖରେ ପ୍ରକାଶିତ |
|---|---|---|
| ୧୩ । ଅବସର ବାସରେ (କାବ୍ୟ) | ୧ମ | ୧୯୦୮ |
| ୧୪ । ବୌଦ୍ଧାବତାର କାବ୍ୟ | ୧ମ | ୧୯୦୯ |
| ୧୫ । ପୁନର୍ମୂଷିକୋଽଭବ (ଉପନ୍ୟାସ) | ୧ମ | ୧୯୦୯ |
| ୧୬ । ପୂଜା ଫୁଲ (କାବ୍ୟ) | ୧ମ | ୧୯୧୨ |
| ୧୭ । ପ୍ରାର୍ଥନା (ସଙ୍ଗୀତ) | ୪ର୍ଥ | ୧୯୧୨ |
| ୧୮ । ଧୂଳି (କାବ୍ୟ) | ୧ମ | ୨୦-୧୧-୧୯୧୨ |
| ୧୯ । ମାମୁ (ଉପନ୍ୟାସ) | ୧ମ | ୮-୯-୧୯୧୨ |
| ୨୦ । ଗ୍ରଣ୍ଠି ଘୂଅ ଅନନ୍ତା | ୧ମ | ୧୯୧୩ |
| ୨୧ । ଲଛମା (ଉପନ୍ୟାସ) | | ୩୦-୪-୧୯୧୪ |
| ୨୨ । ବ୍ରାହ୍ମଣାନାଂ ସନ୍ଧ୍ୟା ପଦ୍ଧତି | ୧ମ | ୧୯୧୪ |
| ୨୩ । ପ୍ରାୟଶ୍ଚିତ୍ତ (ଉପନ୍ୟାସ) | ୧ମ | ୧୦-୯-୧୯୧୫ |
| ୨୪ । ସମବାୟ ଋଣ ସମିତି ପ୍ରସଙ୍ଗ (ପଦ୍ୟାନୁବାଦ) | ୧ମ | ୬-୩-୧୯୧୬ |
| ୨୫ । ଛାନ୍ଦୋଗ୍ୟ ଉପନିଷଦ | | ୨୧-୬-୧୯୧୬ |
| ୨୬ । ଗଳ୍ପ ସ୍ୱଳ୍ପ | ୧ମ | ୧୮-୧୦-୧୯୧୬ |
| ୨୭ । ଆତ୍ମ-ଜୀବନ ଚରିତ | ୧ମ | ୧୯୨୭ |

**୮୩ । ବନମାଳୀ ଦାସ :**

ଜଳେଶ୍ୱର ନିକଟସ୍ଥ କାଶୀଡିହା ଗ୍ରାମରେ ୧୯୦୩ ମସିହାରେ ଜନ୍ମ ଗ୍ରହଣ କରି ୧୯୬୫ ମସିହାରେ ଇହଧାମ ତ୍ୟାଗ କରିଛନ୍ତି । ଜଣେ ଆଶୁ କବି ଓ ଗୀତିକାର ଭାବେ ଏ ଅଞ୍ଚଳରେ ଖ୍ୟାତିଲାଭ କରିଥିଲେ । ଲିଖିତ ଗୀତ କବିତା ସବୁ ଛୋଟ ଛୋଟ ପୁସ୍ତିକା ଆକାରରେ ଛପାଇ ହାଟ, ବଜାର, ମେଳା ଯାତ୍ରା ଆଦିରେ ଗୀତ ଗାଇ ବିକ୍ରି କରି ପ୍ରଚାର କରୁଥିଲେ । ତାଙ୍କ ରଚିତ ଅସଂଖ୍ୟ ପୁସ୍ତିକା ଗୁଡ଼ିକ ମଧ୍ୟରୁ କେତେ ଗୋଟି ପ୍ରଦତ୍ତ ହେଲା । ଶ୍ରୀ ଶ୍ରୀ ଚନ୍ଦନେଶ୍ୱର ସ୍ତୁତି, ଆମ ଗାନ୍ଧୀବାବା, ଜଳକେଳି ଓ ବସ୍ତ୍ର ହରଣ, ଆଧୁନିକ ଫାର୍ସ, ଭାରତ ମାତା ଶୋକ, ମହାପୁରୁଷ ସନ୍ଥ ବିନୋବାଜୀ, ଗୃହିଣୀ ମୂଲିଆ, ଆଦର୍ଶ ନାରୀ, ତୋଫାନ ଗୀତ, ଦ୍ୱାନବାଲୀ ଚଉତିଶା, କୁଞ୍ଜ ପ୍ରଦର୍ଶନୀ, ରେବତୀ ରୋଦନ ଓ ଅଖାଇ ନାମୀ ପ୍ରଭୃତି । ଗୀତିକବି ବନମାଳୀଙ୍କର କେତେକ କବିତା ପୁସ୍ତକ ସୀମାନ୍ତ ବଙ୍ଗଳା ଅଞ୍ଚଳରେ ବଙ୍ଗ ଲିପିରେ ମୁଦ୍ରିତ ଓ ପ୍ରକାଶିତ ହୋଇ ପଠିତ ହେଉଥିବାର ଦେଖାଯାଏ ।

Digitized by srujanika@gmail.com

**୮୪ । ବନମାଳୀ ସେନାପତି :**

ପିତାଙ୍କ ନାମ ଶ୍ରୀନାଥ ଓ ମାତା କ୍ଷୀରମଣି ଦେବୀ । ବାଲେଶ୍ୱର ଜିଲ୍ଲା ଖଇ-ବଣିଆ ଥାନାନ୍ତର୍ଗତ ବେଲବାଣିଆ ଗ୍ରାମରେ ୧୯୩୧ ମସିହା ମାର୍ଚ୍ଚ ୨୪ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଆୟୁର୍ବେଦ ଶାସ୍ତ୍ରରେ ଶିକ୍ଷାଲାଭ କରି ଚିକିତ୍ସକ ରୂପେ ଜୀବିକାର୍ଜ୍ଜନ ସହ ଆଜୀବନ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକାବଳୀ ପ୍ରଣତ ନଳିନୀ (୧୯୫୦), ପରିବାର, ହିମାଳୟ ଅଭିଯାନ (୧୯୫୩), ମେଘରୁଦ୍ର (୧୯୬୦), ନିର୍ବାଚିତ କବିତା (୧୯୬୮) ଯନ୍ତ୍ରଣାର କାବ୍ୟ (୧୯୭୩), ସୂର୍ଯ୍ୟ ଶିଖା (୧୯୮୭), କବିତା ବାଳିଆ ମାଳ (୧୯୮୭,) ସ୍ୱରପୁରର ମନୋରମ ଗଳ୍ପ (୧୯୮୮), ନୀଳ କଣ୍ଠ ଓ ରକ୍ତ କଣ୍ଠର ଗଳ୍ପ (୧୯୮୯) ଅଗ୍ନିଫୁଲ (୧୯୯୦), କବିତାର ନାମ ଟହ୍ଲାଡ଼ୋ (୧୯୯୧), ଅମୃତ ୧୯୯୨ । ସେନାପତି ଗ୍ରନ୍ଥାବଳୀ କବିତା ଖଣ୍ଡ-୧୯୯୨ (୧୯୯୦) ।

କବି ସାଧନାର ସ୍ୱୀକୃତି ସ୍ୱରୂପ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ଯଦୁମଣି ସାହିତ୍ୟ ସଂସଦ, (ଉଦୟପୁର, ନୂଆଗାଁ, ପୁରୀ) ସ୍ୱପ୍ନଦୂତ (ବାଲେଶ୍ୱର) ପ୍ରତିଭା ସାହିତ୍ୟ ପରିଷଦ କଟକ ଓ ବାର୍ତ୍ତା ଉର୍ମି (ବାଲେଶ୍ୱର) ପ୍ରଭୃତି ଅନେକ ଅନୁଷ୍ଠାନରୁ ସମ୍ବର୍ଦ୍ଧନା, ସମ୍ମାନ, ଉପାୟନ, ମାନପତ୍ର ଓ ପୁରସ୍କାର ଲାଭ କରିଛନ୍ତି ।

**୮୪ । ମହାପାତ୍ର :**

ପିତାଙ୍କ ନାମ ନିତ୍ୟାନନ୍ଦ ଓ ମାତା ଚନ୍ଦ୍ରାବତୀ ଦେବୀ । ବାଲେଶ୍ୱର ଜିଲ୍ଲା ହାତୀଗଡ଼ଠାରେ ୧୯୩୪ ମସିହା ମେ ମାସ ୧୫ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଜଣେ ବୈଷୟିକ ଶିକ୍ଷାବିତ୍ ଭାବରେ କାର୍ଯ୍ୟ କରିବା ସହିତ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକ : ଉଦାସୀ ବାବା, ମରମ ଗାର-ଉପନ୍ୟାସ, ହସକଲ୍ଲୋଳ, ରମ୍ୟ-ରଚନା ଓ ନାଟକ ପ୍ରଭୃତି ରଚନା ପ୍ରକାଶିତ । ଏତଦ୍‌ବ୍ୟତୀତ ବହୁ ପାଲା, ନାଟକ, ଗୀତିନାଟ୍ୟ, ଓଡ଼ିଆ, କବାଲି, ଭଜନ, ଜଣାଣ ଆଦି ରଚନା କରିଛନ୍ତି । କାଦନା, ଆସନ୍ତା କାଲି, ନୂଆଁ ଖୁଣ୍ଟା, କୃଷକ, ସୀମନ୍ତ, ତରୁଲତା ପ୍ରଭୃତି ପତ୍ର ପତ୍ରିକା ଓ ଆକାଶ ବାଣୀରେ ତାଙ୍କର ରଚନା ପ୍ରକାଶିତ ଓ ପ୍ରସାରିତ ହୋଇଛି । ସାହିତ୍ୟ ସାଧନାର ସ୍ୱୀକୃତି ସ୍ୱରୂପ ଉତ୍ତର ଓଡ଼ିଶା ସାହିତ୍ୟ, ସଂସ୍କୃତି ସମ୍ମେଳନୀ ଓ ବାର୍ତ୍ତାଉର୍ମି ପ୍ରତିଷ୍ଠାନ ବାଲେଶ୍ୱର ତରଫରୁ ସମ୍ମାନିତ ହୋଇଛନ୍ତି ।

**୮୫ । ବରେନ୍ଦ୍ରନାଥ ବାରିକ :**

ପିତାଙ୍କ ନାମ କୈଳାଶଚନ୍ଦ୍ର ଓ ମାତା ସରସ୍ୱତୀ ଦେବୀ । ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନା ଅନ୍ତର୍ଗତ ବାଳିନ୍ଦୁପୁର ଗ୍ରାମରେ ଜନ୍ମ ଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷାଲାଭ

Digitized by srujanika@gmail.com

କରି ଅଧ୍ୟାପନା ସହ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକ—ବିଧାତ୍ରୀ (କବିତା) ଶ୍ରୀଶ୍ରୀ ରାମକୃଷ୍ଣ ପରମହଂସ (ଜୀବନୀ) ମାନବରୁ ଦାନବ ନୃତ୍ୟେ ମାଧବ (ଦାର୍ଶନିକ ପ୍ରବନ୍ଧ) ପ୍ରକାଶିତ ଗ୍ରନ୍ଥ ।

## ୮୭ । ବସନ୍ତ କୁମାର ଶତପଥୀ :

ପିତାଙ୍କ ନାମ ଭୋଳାନାଥ ଓ ମାତା ରୁକ୍ମଣୀ ଦେବୀ । ମୟୂରଭଞ୍ଜ ଜିଲ୍ଲାର ପାଲଡ଼ା ଗ୍ରାମରେ ୧୯୧୩ ମସିହା ଜୁନ ୨୬ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଇଂରେଜୀ ସାହିତ୍ୟରେ ଉଚ୍ଚ ଶିକ୍ଷା ଲାଭ କରି ବିଭିନ୍ନ ମହାବିଦ୍ୟାଳୟ ସ୍ତରରେ ଅଧ୍ୟାପନା ବୃତ୍ତି ସହ ଆଜୀବନ ସାହିତ୍ୟ ସାଧନାରେ ବ୍ରତୀ । ଲେଖକଙ୍କ ଗ୍ରନ୍ଥ ସମୂହର ନାମ—ନବ ନାଟିକା (ଏକାଙ୍କିକା) ୧୯୬୦, ଏଣ୍ଡି ରୋମାଣ୍ଟିକ (ରମ୍ୟ) ଓ. ସା. ଏକାଡେମୀ ପୁରସ୍କାର ପ୍ରାପ୍ତ-୧୯୬୬, ଚମ୍ପା ଛ'ମାଣ ଆଗୁର ନାଟ୍ୟ ରୂପ-୧୯୬୦ ଦୁଇଟି ଭ୍ରମଣ କାହାଣୀ (ଅନୁବାଦ)-୧୯୬୦, ସଚୟନ ଓ କବିତା ସଙ୍କଳନ ୧୯୬୮, ଲେମ୍ବଙ୍କ ସେକ୍ସପିଅର କାହାଣୀ ମାଳା-(ଅ) ୧୯୭୨, ଗୁଜା (ଅନୁ) ୧୯୭୯, ଗଙ୍ଗା ଓ ଗାଙ୍ଗୀ (ଗ) ୧୯୮୧, ହାଇଦ୍ରାବାଦ ଅଂଗୁର (ଗ) ୧୯୮୨, ମାଂସାଶୀ ମାନଙ୍କ ଉଦ୍ଦେଶ୍ୟରେ ୧୯୮୩, ଗୋଟିଏ ଆଳୁ ୧୯୮୬, ଜାତ୍ରାଗ୍ରସ୍ତୀ ୧୯୮୩, ଆକାଶୀ ଫୁଲ ୧୯୮୩, ଅଜାଗା ଘାଆ ୧୯୮୩ ମେକର ଅପାରେଶନ ୧୯୯୧, Fakirmohan. His life and literature 1984 7. 2. 1960 Sir Roger and test cricket (Illustrated) Articles in Indian literature Nila Saila 1969-2. One or Two out standing Books.

3. Neither Boms no whimper.

4. Much paper more poverty

ଅପ୍ରକାଶିତ ପୁସ୍ତକ :

ପୁଅ ପାର୍ଟି ଜିଅ (ଗ) ବାସନ୍ତ (ରମ୍ୟ ରଚନା ମାଳା-୧), ଅକାଳେ ସକାଳେ States man ର Now and Again ସ୍ତମ୍ଭରୁ ବାସନ୍ତ ରମ୍ୟ ରଚନା ମାଳା-(୨) ବାସନ୍ତ ରମ୍ୟ ରଚନା ମାଳା, (୩) ବୁଢ଼ାବାବୁ ଓ ଅନ୍ୟାନ୍ୟ, ଆଇନ୍‌ଷ୍ଟାଇନ୍ ଦସ୍ତା କରି ଓ ଅନ୍ୟାନ୍ୟ । ଏତଦବ୍ୟତୀତ ଗାଳ୍ପିକଙ୍କର ଅନେକ ଗଳ୍ପ ଇଂରାଜୀ, ହିନ୍ଦୀ ଓ ତେଲୁଗୁରେ ଅନୂଦିତ ହୋଇ ପ୍ରକାଶିତ ହୋଇଛି ।

Digitized by srujanika@gmail.com

**୮୭ । ବସନ୍ତ କୁମାର ପଣ୍ଡା :**

ବାଲେଶ୍ୱର ଜିଲ୍ଲା ସୋରଗ୍ରାମ ଅଞ୍ଚଳରେ ୧୮୮୪ ମସିହାରେ ଜନ୍ମଗ୍ରହଣ କରି ୧୯୬୭ ମସିହାରେ ଇହଲୀଳା ସାଙ୍ଗ କରିଛନ୍ତି । ଚିତ୍ରକଳାରେ ଉଚ୍ଚଶିକ୍ଷା ଲାଭ କରିବା ସହିତ କଳାକୁ ଆଜୀବନ ସାଧନା ରୂପେ ଗ୍ରହଣ କରି ବହୁ ସିଦ୍ଧିର ଅଧିକାରୀ ହୋଇଛନ୍ତି । ସେ ବିହାର-ଓଡ଼ିଶା ସରକାରଙ୍କ ତରଫରୁ ଚିତ୍ରକଳା ପାଇଁ ସ୍ୱର୍ଣ୍ଣପଦକ ଲାଭ କରିଛନ୍ତି । ସାଧନାର ସ୍ୱୀକୃତି ସ୍ୱରୂପ ଆର୍ଟ ଏକାଡ଼େମୀ, କଲିକତା; ଓଡ଼ିଶା ଲଳିତକଳା ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**୮୮ । ବାଞ୍ଛାନିଧି ଦାସ :**

ପିତାଙ୍କ ନାମ ପଦ୍ମଲୋଚନ ଓ ମାତା ନେତ୍ରମଣି ଦେବୀ । ବାଲେଶ୍ୱର ଜିଲ୍ଲାର ଅମର୍ଦ୍ଦାରୋଡ଼ ନିକଟବର୍ତ୍ତୀ ଘୁଷୀପଡ଼ା ଗ୍ରାମରେ ୧୯୫୦ ମସିହା ମେ ୨୦ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି ଜୀବନବୀମା ନିଗମରେ ଚାକିରୀ ସହିତ ସାହିତ୍ୟ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଝଡ଼ର ବଂଶୀ (୧୯୭୭), ରଣ ସଙ୍ଗୀତ ଗଣ ସଙ୍ଗୀତ (୧୯୮୩), ନିଦ୍ରିତ ଭାରତ ଜାଗେ (୧୯୮୪), ବନ୍ଧୁ କଣ୍ଠେ (୧୯୮୮), ଉତ୍କଳ ଭ୍ରମଣଂ (୧୯୮୮) ଆଦି କବିତା ପୁସ୍ତକ ପ୍ରକାଶିତ । Essays on Mayurbhanja Chhau (1994)—ପ୍ରବନ୍ଧ ପୁସ୍ତକ ପ୍ରକାଶିତ । ଏତଦ୍‌ବ୍ୟତୀତ ଦୁଇଗୋଟି ଉପନ୍ୟାସ ଓ ଗୋଟିଏ ଶିଶୁ କବିତା ଗ୍ରନ୍ଥ ଅପ୍ରକାଶିତ । ବିଭିନ୍ନ ପତ୍ର-ପତ୍ରିକାରେ ପ୍ରବନ୍ଧ ପ୍ରକାଶିତ । ସମ୍ପାଦନା : 'ଅଲକାନନ୍ଦା' ସାହିତ୍ୟ ପତ୍ରିକା ।

**୮୯ । ବିକର୍ତ୍ତନ ମହାପାତ୍ର :**

ପିତାଙ୍କ ନାମ ଦାଶରଥି ଓ ମାତା ବ୍ରହ୍ମାମଣି ଦେବୀ । ବାଲେଶ୍ୱର ଜିଲ୍ଲା ବସ୍ତା ଥାନାର ବଡ଼ଖଣ୍ଡି ଗ୍ରାମରେ ସନ ୧୩୦୭ ସାଲ ଦୋଳପୂର୍ଣ୍ଣିମାରେ ଜନ୍ମଗ୍ରହଣ କରି ସନ ୧୩୭୭ ସାଲ ବୈଶାଖ ମାସ ୧୩ ଦିନରେ ଇହଧାମ ତ୍ୟାଗ କରିଛନ୍ତି । ଓଡ଼ିଶାର ଉତ୍ତରାଞ୍ଚଳରେ ଜଣେ ପ୍ରସିଦ୍ଧ ପାଲା ଗାୟକ ଭାବରେ ବହୁ ପ୍ରସିଦ୍ଧିର ଅଧିକାରୀ ହୋଇ-ଥିଲେ । ପାଲା ଗାୟନ କଳାରେ ସ୍ୱୀକୃତି ସ୍ୱରୂପ ସେ 'ବୀରସିଂହ' ଉପାଧିରେ ଭୂଷିତ ହୋଇଥିବାର ଜଣାଯାଏ ।

**୯୦ । ବିଜୟ କୁମାର ଗିରି :**

ବାଲେଶ୍ୱର ସହରର ନୂଆବଜାରରେ ତା ୧୪-୪-୧୯୨୮ ଖ୍ରୀଷ୍ଟରେ ଜନ୍ମ । ଚିକିତ୍ସା ବିଜ୍ଞାନରେ ଉଚ୍ଚଶିକ୍ଷା ଲାଭ କରି ବ୍ୟବସାୟ ସହିତ ସାରସ୍ୱତ ସାଧନାରତ । ସେ ମୁଖ୍ୟତଃ ଆବୃତ୍ତି ଓ ଅଭିନୟ କଳାରେ ପ୍ରବୀଣ । ଏତଦ୍‌ବ୍ୟତୀତ କେତେକ ଗୀତି କବିତା ଓ ପ୍ରବନ୍ଧ ରଚନା କରିଥିବାର ଜଣାଯାଏ ।

Digitized by srujanika@gmail.com

**୯୧ । ଶରତ୍ କୁମାର ପାଠୀ :**

ପିତାଙ୍କ ନାମ ବୃନ୍ଦାବନ ଓ ମାତା ମେନକା ଦେବୀ । ବାଲେଶ୍ୱର ଜିଲ୍ଲାର ବାଲିଆପାଳ ଥାନା ଅନ୍ତର୍ଗତ ଗେଙ୍ଗୁଟିଆ ଗ୍ରାମରେ ୧୯୪୮ ମସିହା ସେପ୍ଟେମ୍ବର ୨୨ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ସଂସ୍କୃତ ସାହିତ୍ୟରେ ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା ସହ ଜଣେ ସୁଦକ୍ଷ ପାଲି ଗାୟକ ଭାବେ ସୁପ୍ରତିଷ୍ଠିତ । ସେ ଶତାଧିକ ଆସରରେ ପାଲି ପରିବେଷଣ କରି ସୁଖ୍ୟାତି ଅର୍ଜନ କରିଛନ୍ତି । ବସ୍ତାଠାରେ ପାଲି ପ୍ରତିଯୋଗିତାରେ (୧୯୮୫) ସେ ପ୍ରଥମ ହୋଇ ସ୍ୱର୍ଣ୍ଣ ପଦକ ଲାଭ କରିଛନ୍ତି ।

**୯୨ । ଶରତ୍ କୁମାର ବାରିକ :**

ପିତାଙ୍କ ନାମ ନୀଳମଣି ଓ ମାତା ସୁରବାଳା ଦେବୀ । ମୟୂରଭଞ୍ଜ ଜିଲ୍ଲାର ବାରିପଦାର କାଳି ମନ୍ଦିର ସାହିରେ ୧୯୪୪ ମସିହା ଜାନୁୟାରୀ ୨୪ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଓକିଲାତି ଓ ପ୍ରେସ ବ୍ୟବସାୟରେ ନିଯୁକ୍ତ ଥାଇ ମଧ୍ୟ ସାରସ୍ୱତ ସାଧନା ବ୍ରତୀ । ତାଙ୍କ ଲିଖିତ ପୁସ୍ତକ :—ଚନ୍ଦ୍ରାନ୍ତ, ଅରୁନ୍ଧତୀଙ୍କ ଚିଠି, ଅରୁନ୍ଧତୀର ଇତିକଥା, ରାଗ ପୁରବୀ ୧ମ ଓ ୨ୟ ଖଣ୍ଡ; ନାରୀ ମନର କଥା, ଝୁମ୍ପା କ୍ୟାପଟେନ୍, ସେ ରାଧା ଅଭିମାନିନୀ, ସତୀ ସୀତାର ଅଶ୍ରୁ, ବଭ୍ରୁ ଖୁନ୍, ପ୍ରଥମ ପ୍ରଶ୍ନ ଇତ୍ୟାଦି (ଉପନ୍ୟାସ) । ଶେଷ ଚିଠି (ନାଟକ ନୂତନ ଲେଖକ) କବାଟ (କ୍ଷୁଦ୍ର ଗଳ୍ପ), ଶୀତଋତୁ ଓ ତାହାଣୀ (କ୍ଷୁଦ୍ରଗଳ୍ପ), ବାଳସ୍ୱ ଗଳ୍ପ ବଚନା, ୧ମ, ୨ୟ ଓ ତୃତୀୟ ଭାଗ ପ୍ରକାଶିତ ।

ମଙ୍ଗଳ ବାରିଆ ସାହିତ୍ୟ ସଂସଦ, ବାରିପଦାରୁ ସାହିତ୍ୟ ସାଧନା ନିମନ୍ତେ ସମ୍ମାନିତ ।

**୯୩ । ଶରତ ଚନ୍ଦ୍ର ଦ୍ୱାରୀ ବଶ୍ୱାଳ :**

ପିତାଙ୍କ ନାମ ହରେନ୍ଦ୍ର ନାଥ ଓ ମାତା ଲକ୍ଷ୍ମୀପ୍ରିୟା ଦେବୀ । ବାଲେଶ୍ୱର ଜିଲ୍ଲାର ମୁଣ୍ଡରୁଣିଆଠାରେ ୧୯୪୫ ମସିହା ଅକ୍ଟୋବର ୧୦ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା ସହ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ କବିତା ପୁସ୍ତକ—ପରିଚୟ (୧୯୬୭) ଓ ସଙ୍କଳିତ ପୁସ୍ତକ—ବାଲେଶ୍ୱରର ଇତିବୃତ୍ତି ପ୍ରଥମ ଖଣ୍ଡ, ଉତ୍କଳ କେଶରୀ, ମଣିପୁରୁଷ, ବାଲେଶ୍ୱରର ଅନାଲୋଚିତ ପ୍ରବନ୍ଧ । ସମ୍ପାଦନା—ସମକାଳୀନ ସାହିତ୍ୟ, ସଙ୍କଳ ଓ କ-ଙ-ଗ । ଲେଖକଙ୍କ ଉଦ୍ୟମରେ ଏ ଅଞ୍ଚଳର ପରଲୋକଗତ ବରିଷ୍ଠ ସାରସ୍ୱତ ସାଧକଙ୍କ ନାମରେ "ଶ୍ରଦ୍ଧାଞ୍ଜଳୀ'' ସ୍ମରଣିକା ପ୍ରକାଶ ପାଇଛି । 'ବାଲେଶ୍ୱର ଇତିବୃତ୍ତ', ୨ୟ ଖଣ୍ଡ ଓ 'ବାଲେଶ୍ୱରର ଅନାଲୋଚିତ ପ୍ରବନ୍ଧ' ସଙ୍କଳନ ଅପ୍ରକାଶିତ ଗ୍ରନ୍ଥ ।

Digitized by srujanika@gmail.com

**୯୪ । ବିବେକାନନ୍ଦ ନାୟକ :**

ପିତାଙ୍କ ନାମ ମନ୍ମଥ କୁମାର ଓ ମାତା ନାରାୟଣୀ ଦେବୀ । ବାଲେଶ୍ୱର ଜିଲ୍ଲାର କାଶୀଡ଼ିହା ଗ୍ରାମରେ ୧୯୪୭ ମସିହା ଅକ୍ଟୋବର ୯ ତାରିଖରେ ଜନ୍ମ ଲାଭ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ଲିଖିତ ନିଜସ୍ୱ କବିତା ପୁସ୍ତକ :—(୧) ଲୋହିତ ଦିଗନ୍ତ, ଲୋହିତ ପୂର୍ବାଶା, ଅଭିଯାତ୍ରୀ, ବହ୍ନିଶିଖା ଇତ୍ୟାଦିର ସମ୍ପାଦନା ।

**୯୫ । ବିଭୂତି ଭୂଷଣ ମଲ୍ଲିକ :**

ପିତାଙ୍କ ନାମ ଭଗବତ ଓ ମାତା କ୍ଷେତ୍ରମଣି ଦେବୀ । ବାଲେଶ୍ୱର ଜିଲ୍ଲାର ଗ୍ରଇବଣିଆ ଥାନା ଅନ୍ତର୍ଗତ ମହୁଡ଼ମୁମା ଗ୍ରାମରେ ୧୯୩୫ ମସିହା ଏପ୍ରିଲ ୧୨ ତାରିଖରେ ଜନ୍ମଗ୍ରହଣ କରିଥିଲେ । କୃଷି କାର୍ଯ୍ୟରେ ନିଯୁକ୍ତ ଥାଇ ମଧ୍ୟ ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକ ଗୁଡ଼ିକ :—(୧) ଦସ୍ୟୁ ବୃତ୍ତିର ପରିଣାମ, (୨) ଦୋର୍ଷୀକାହାର, (୩) ହତ୍ୟାକାରୀ ମୁଁ, (୪) ପ୍ରେମର ଜୟ, (୫) ରକ୍ତ ତୀର୍ଥରେ ଦିନେ (୬) ସତ୍ୟର ଜୟ (ଉପନ୍ୟାସ) । କବିତା :—(୧) ନିଆଁ ବାଣ (୨) ପିତାଙ୍କ ପଦତଳେ (୩) ଅକାଳ ମୃତ୍ୟୁ ପ୍ରଭୃତି ପ୍ରକାଶିତ । ଏତଦ୍‌ବ୍ୟତୀତ କେତେକ ଗଳ୍ପ ଓ କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । 'ଉତ୍ତର ଓଡ଼ିଶା ସାହିତ୍ୟ, ସଂସ୍କୃତି ସମ୍ମେଳନ' ଓ 'ବାର୍ତ୍ତା' ପ୍ରତିଷ୍ଠାନ ବାଲେଶ୍ୱରରୁ ପୁରସ୍କୃତ ଓ ସମ୍ମାନିତ ।

ତାଙ୍କର ପୁତ୍ର ଶ୍ରୀ ଅନନ୍ତ କୁମାର ମଲ୍ଲିକ ଜଣେ ଉଦୀୟମାନ ନିର୍ଦ୍ଦେଶକ—କଳାକାର । କନ୍ୟା ଅନ୍ନପୂର୍ଣ୍ଣା ଓ ପୁତ୍ରବଧୂ ଶ୍ରୀମତୀ ସୁନନ୍ଦା ଉଭୟ ସୁଲେଖିକା ଭାବେ ପରିଚିତା ।

**୯୬ । ବିଶ୍ୱନାଥ ମହାପାତ୍ର :**

ମେଦିନୀପୁର ଜିଲ୍ଲା ଝାଡ଼ଗ୍ରାମ ଥାନାନ୍ତର୍ଗତ ଗୋପୀବଲ୍ଲଭପୁର ଗ୍ରାମରେ ୧୯୦୧ ମସିହାରେ ଜନ୍ମଗ୍ରହଣ କରି ୧୯୮୪ ମସିହାରେ ଇହଧାମ ତ୍ୟାଗ କରିଛନ୍ତି । ଜଣେ କୃତୀ ଶିକ୍ଷକ ଭାବରେ ଅଧ୍ୟାପନା ସହ ସାହିତ୍ୟ ସଙ୍ଗୀତ ସାଧନାରେ ସମଗ୍ର ଜୀବନ ଅତିବାହିତ କରିଛନ୍ତି । କେତେକ ଗୀତର ରଚନା ଓ ସଙ୍ଗୀତ ସ୍ୱରଲିପି ସମ୍ପର୍କୀୟ ପୁସ୍ତକ ରଚନା କରିଥିବାର ଜଣାଯାଏ ।

**୯୭ । ବିଶ୍ୱନାଥ ରଥ :**

ପିତାଙ୍କ ନାମ କୃଷ୍ଣଚରଣ ଓ ମାତା ମାଣିକ୍ୟ ଦେବୀ । ବାଲେଶ୍ୱର ଜିଲ୍ଲାର ସୁନହଟ ଗ୍ରାମରେ ତା ୩୦-୧୦-୧୮୯୩ ରିଖରେ ଜନ୍ମଗ୍ରହଣ କରି ତା ୧୮-୧୧-୧୯୬୫ ରିଖରେ ଇହଧାମ ତ୍ୟାଗ କରିଛନ୍ତି । ସେ ବାଲେଶ୍ୱର ସୁନହଟ ଗ୍ରାମରେ ସ୍ଥାୟୀ ଭାବରେ ବାସ କରିଥିଲେ । ଜୀବନକାଳ ମଧ୍ୟରେ ଅଧ୍ୟାପନା ସହିତ ସାରସ୍ୱତ ସାଧନାରେ ବ୍ରତୀ

Digitized by srujanika@gmail.com

ଥିଲେ । ତାଙ୍କର ଲିଖିତ ପୁସ୍ତକ : 'ସୂକ୍ତି ଶତକ ବା ମୁକ୍ତି, ଶତକ, ଶିବରାତ୍ରି ବ୍ରତ କଥା ପ୍ରକାଶିତ ।

**୯୮ । ବିଶ୍ୱନାଥ ସିଂହ :**

ପିତାଙ୍କ ନାମ ଗୋକୁଳ ଓ ମାତା ରୁକ୍ମଣୀ ଦେବୀ । ମୟୁରଭଞ୍ଜ ଜିଲ୍ଲାର ବାରିପଦା ନିକଟସ୍ଥ ପୋଡ଼ା ଅସ୍ତିଆ ଗ୍ରାମରେ ୧୯୫୫ ମସିହା ମାର୍ଚ୍ଚ ୮ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ଉଚ୍ଚଶିକ୍ଷା ଲାଭ କରି ସରକାରୀ କର୍ମଚାରୀ ରୂପେ ପ୍ରତିଷ୍ଠିତ । ତାଙ୍କ ଲିଖିତ କେତୋଟି ପ୍ରକାଶିତ ପ୍ରବନ୍ଧ :—(୧) ମୟୁରଭଞ୍ଜର କରମ ପୂଜା, (୨) ମୟୁରଭଞ୍ଜ ! ଦାଶାଏଁ ନାଚ, (୩) "ସାନ୍ତାଳୀ ସମାଜ : ଗବେଷଣା ଅପେକ୍ଷାରେ ।" ଇତ୍ୟାଦି ।

**୯୯ । ବୃନ୍ଦାବନ ଦାଶ :**

ପିତାଙ୍କ ନାମ ଶିବପ୍ରସାଦ ଓ ମାତା ରତ୍ନମଣି ଦେବୀ । ମୟୁରଭଞ୍ଜ ଜିଲ୍ଲାର ଆମ୍ବଡ଼ାଲି ଶାସନ ଗ୍ରାମରେ ୧୯୪୦ ମସିହା ମେ ୫ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା ସହ ସାରସ୍ୱତ ସାଧନାର ବ୍ରତୀ । ତାଙ୍କ ଲିଖିତ ପୁସ୍ତକ; ସଂଯୁକ୍ତା (ପାଲି କାବ୍ୟ) ପ୍ରକାଶିତ । ପୂଜ୍ୟପୂଜା, ପ୍ରତିଶ୍ରୁତି, ମୟୁରାକ୍ଷୀ, ଭଞ୍ଜ ପ୍ରଭା, ବାର୍ତ୍ତାଉର୍ମି, ରବିବାର ଚିତ୍ର ଦର୍ପଣ, କୁରୁକ୍ଷେତ୍ର, ଉଦ୍ୟମ, ପ୍ରେମିକ, ରୂପା ଥାଳିଆ, ଶିଶୁ ସଙ୍ଗାତ ପ୍ରଭୃତି ବିଭିନ୍ନ ପତ୍ରପତ୍ରିକାରେ ବହୁ କବିତା, ପ୍ରବନ୍ଧ, ଗଳ୍ପ ଆଦି ପ୍ରକାଶିତ । 'ମୁନାଗୃହ' 'ବାର୍ତ୍ତାଉର୍ମି' ଓ ପୂଜ୍ୟପୂଜା ସାହିତ୍ୟ ସଙ୍ଗଠନରୁ ସମ୍ବର୍ଦ୍ଧିତ ଓ ସମ୍ମାନିତ ।

**୧୦୦ । ବୃନ୍ଦାବନ ଦାସ ଅଧିକାରୀ :**

ପିତାଙ୍କ ନାମ ନିତ୍ୟାନନ୍ଦ ଓ ମାତା ବିଷ୍ଣୁପ୍ରିୟା ଦେବୀ । ବାଲେଶ୍ୱର ଜିଲ୍ଲାର ବାଲିଆପାଳ ନିକଟବର୍ତ୍ତୀ ଇକଡ଼ପାଳ ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ଜଣେ ଗୀତିକାର, ନାଟ୍ୟକାର ଓ ସଙ୍ଗୀତ ନିର୍ଦ୍ଦେଶକ ଭାବେ ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ସେ ୧୯୫୦ ମସିହା ପାଖରୁ ଅଦ୍ୟାବଧି ଦୀର୍ଘ ୪୨ ବର୍ଷ ବାଲେଶ୍ୱର, ମୟୁରଭଞ୍ଜ ତଥା ମେଦିନୀପୁର ଜିଲ୍ଲାର ବିଭିନ୍ନ ସ୍ଥାନର ବିଭିନ୍ନ ନାଟ୍ୟାନୁଷ୍ଠାନରେ ସଙ୍ଗୀତ ନିର୍ଦ୍ଦେଶନା ଗୀତ ଓ ନାଟକ ରଚନା କରିଛନ୍ତି । ଜଣେ ଅପ୍ରତିଦ୍ୱନ୍ଦ୍ୱୀ କଳାକାର ଭାବରେ ସୁବର୍ଣ୍ଣ-ରେଖା ଅପେରା, ହରଗୌରୀ ଅପେରା, ଗୌରାଙ୍ଗ ଜିଉ ଅପେରା, ଅନନ୍ତ ପୁରୁଷୋତ୍ତମ କ୍ଲବ, ଶ୍ରୀ ଦୁର୍ଗା କ୍ଲବ, ଭୋଗରାଇ ଶ୍ୟାମସୁନ୍ଦର ରିକ୍ରେସନ ସେଣ୍ଟର ଚନ୍ଦ୍ରାପୁର କାଳିମାତା ନାଟ୍ୟ ସଂସଦ ଏବଂ ରୂପସା ଅପେରା ବ୍ୟତୀତ ସାନ ବଡ଼ ପ୍ରାୟ ଶହରୁ ଅଧିକ ନାଟ୍ୟାନୁଷ୍ଠାନ ସହିତ ସଂପୃକ୍ତ ।

Digitized by srujanika@gmail.com

ଅର୍ଥାଭାବରୁ ପ୍ରକାଶ ପାଇନଥିବା ନାଟକ ସବୁ କେବଳ ରଙ୍ଗମଞ୍ଚ ଏବଂ ଅପେରାରେ ଅଭିନୀତ । ନାଟକଗୁଡ଼ିକର ନାମ :—(୧) ଭକ୍ତ କବି ଜୟଦେବ, (୨) ପଣ ମୁକ୍ତି, (୩) ୧୯୪୨, (୪) ମାୟା ମରୀଚିକା, (୫) ଛଦ୍ମବେଶୀ, (୬) ଲୁହାର କାଳ, (୭) ମା ଓ ଜନନୀ ଏବଂ କବି ଚନ୍ଦ୍ରାବତୀ ଇତ୍ୟାଦି । ସେ 'ସଙ୍ଗୀତ ସୋପାନ' ନାମକ ସଙ୍ଗୀତ ଶାସ୍ତ୍ର ରଚନା କରିଥିବା ଜଣାଯାଏ ।

**୧୦୧ । ବ୍ରଜନାଥ ରଥ :**

ପିତାଙ୍କ ନାମ ରଘୁନାଥ ଓ ମାତା ଭାଗ୍ୟମଣି ଦେବୀ । ବାଲେଶ୍ୱର ଜିଲ୍ଲାର ସୁନହଟ ଗ୍ରାମରେ ୧୯୩୬ ମସିହା ଜାନୁୟାରୀ ୧୨ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । କୃଷି ଓ ମୁଦ୍ରଣ ଶିଳ୍ପ ବ୍ୟବସାୟ ସହ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ଲିଖିତ ପୁସ୍ତକାବଳୀ :—କବିତା ସଞ୍ଚୟନ—(୧) ମରୁ ଗୋଲାପ (୧୯୬୦), (୨) ନିଜସ୍ୱ ସଂଳାପ (୧୯୬୯), (୩) ମରୁ ଗୋଲାପ ଓ ଅନ୍ୟାନ୍ୟ କବିତା (ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ—୧୯୭୨), (୪) ନିଃଶବ୍ଦ ପ୍ରତିବାଦ (୧୯୭୭), (୫) ସଭ୍ୟତାର ମୁହଁ (୧୯୭୯) (୬) ମନର ମାନଚିତ୍ର (୧୯୮୩, (୭) ହେ ମହା ଜୀବନ (୧୯୯୧), (୮) କାଁଚକା ଘର (ନିଜସ୍ୱ କବିତାର ହିନ୍ଦୀ ଅନୁବାଦ—୧୯୭୭) । ସଂକଳିତ ଗ୍ରନ୍ଥ— ୧) ଧରିତ୍ରୀ (କବିତା ସଙ୍କଳନ—୧୯୫୭), (୨) ସମସାମୟିକ ଓଡ଼ିଆ ପ୍ରେମ କବିତା (୧୯୭୨), (୩) କନ୍ଧେଇ ନାମା (୧୯୭୬), (୪) ରଘୁନାଥ ଦାସ ପରିକ୍ରମା (୧୯୮୭), (୫ କାନ୍ତକବି ସାହିତ୍ୟା-ନେଷ୍ୟ (୧୯୯୦), (୬) ଭକ୍ତ ଡାଥ ସ୍ମାରକୀ (୧୯୯୦', (୭) ଓଡ଼ିଆ ଶିଶୁ ସାହିତ୍ୟ ପରିକ୍ରମା (୧୯୯୧), (୮) Phakirmohan : His life and Literature (1984) । ପାଣ୍ଡୁଲିପି ପ୍ରକାଶ ଅପେକ୍ଷାରେ—(୧) ଲଘୁ ଶତକ (ସାହିତ୍ୟ—ସଂସ୍କୃତି ଓ ସାମାଜିକ ବ୍ୟଙ୍ଗଧର୍ମୀ ଲଘୁ କବିତା ସଞ୍ଚୟନ), (୨) ଶିଶିର କଣାରେ ସୂର୍ଯ୍ୟ (ଏକପଦୀ କବିତା ସଞ୍ଚୟନ), (୩) ଗଡ଼ ଗଡ଼ ଗଲି ବଲ୍ (ଶିଶୁ ଓ କିଶୋର କବିତା ସଞ୍ଚୟନ , ୪) ବିମ୍ବିତ ଆକାଶ (ଅନୁବାଦ କବିତା ସଞ୍ଚୟନ), (୫) କେଉଁ ସ୍ୱପ୍ନ ନେଇ ଠିଆ ହୋଇଛୁ ବସୁଧା ! (ଆଧୁନିକ କବିତା ସଞ୍ଚୟନ) । ଏତଦ୍‌ବ୍ୟତୀତ ବହୁ ଲେଖା ଶତାଧିକ ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରକାଶିତ । ଆକାଶବାଣୀର ଆଞ୍ଚଳିକ ଓ ଜାତୀୟ କାର୍ଯ୍ୟକ୍ରମରେ ବହୁ କବିତା ପ୍ରସାରିତ ଓ ପ୍ରସାରିତ ହୋଇଛି ।

କବି ଶ୍ରୀ ରଥ ୧୯୭୪ ମସିହାରେ ଶ୍ରେଷ୍ଠ କବି ଭାବେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ 'ବିଷୁବ ପୁରସ୍କାର' ୧୯୮୪ ମସିହାରେ 'ମନର ମାନଚିତ୍ର' କାବ୍ୟ ଗ୍ରନ୍ଥ ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିବା ସହିତ ୧୯୮୮ରେ 'ସହକାର ମାତୃଭୂମି ମଙ୍କର ମିଳନ ଅଭିନନ୍ଦନ', ଜୀବନରଙ୍ଗ, ଶାରଳା ସ୍ମାରକୀ,

Digitized by srujanika@gmail.com

ସୋର ରାଧାନାଥ ପାଠାଗାର, ଜାଜ୍ଜ ସାହିତ୍ୟ ପରିଷଦ ଓ ମାଧ୍ୟମିକ ଶିକ୍ଷକ ସଂଘ ପକ୍ଷରୁ ସମ୍ମାନିତ ହୋଇଛନ୍ତି ।

**୧୦୨ । ବ୍ରଜକିଶୋର ନନ୍ଦଶର୍ମା :**

ବାଲେଶ୍ୱର ସୋଧପାଟଣାରେ ଜନ୍ମ । ଲିଖିତ ଉପନ୍ୟାସ : ମାନସୀ, ସେଦିନ ଆଜି ନାହିଁ । ଏହି ଅଗଷ୍ଟ ପନ୍ଦର ଇତ୍ୟାଦି ପ୍ରକାଶିତ ।

**୧୦୩ । ବ୍ରଜେନ୍ଦ୍ରନାଥ ଦତ୍ତ :**

ପିତାଙ୍କ ନାମ ଦ୍ୱାରକାନାଥ ଓ ମାତା କୁମୁଦିନୀ ଦେବୀ । ବାଲେଶ୍ୱର ଜିଲ୍ଲା ଜଲେଶ୍ୱର ନିକଟସ୍ଥ ନିହୁଣ୍ଡିର ଗ୍ରାମରେ ୧୩୪୦ ସାଲ ପୌଷ ସଂକ୍ରାନ୍ତି (୧୯୩୦) ଦିନ ଜନ୍ମ । ଅଧ୍ୟାପନା ଓ କୃଷି କାର୍ଯ୍ୟ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ବନିଦ୍ର ଉର୍ମି (କବିତା—୧୯୮୯), ରାଣୀ ମେଘାମ୍ବୁରୀ (ଭ୍ରମଣ ବୃତ୍ତାନ୍ତ—୧୯୯୨), ସୁମ ପାହାଡ଼ର କୁହୁ (ଉପନ୍ୟାସ—୧୯୮୦), ନାବ ଚଲେ ହୋ ମୟୂରପଙ୍ଖୀ (କ୍ଷୁଦ୍ରଗଳ୍ପ) ଇତ୍ୟାଦି ପ୍ରକାଶିତ । ସାଧନାର ସ୍ୱୀକୃତି ସ୍ୱରୂପ ବାଲେଶ୍ୱରର ବାଣୀ ପ୍ରତିଷ୍ଠାନରୁ ସମ୍ମାନିତ । ପିତାଙ୍କ ସାଧନାର ପ୍ରଭାବରେ ତାଙ୍କର ପୁତ୍ର କନ୍ୟାଗଣ ଲେଖନୀ ଚାଳନା କରୁଛନ୍ତି । ତନ୍ମଧ୍ୟରୁ କନ୍ୟା ବୀଣାପାଣିଙ୍କ ଅବଦାନ ଉଲ୍ଲେଖନୀୟ ।

**୧୦୪ । ବୈଦ୍ୟନାଥ ମିଶ୍ର :**

ସିଂଭୂମ ଜିଲ୍ଲା ଶାସନ ଗ୍ରାମରେ ୧୯୧୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ ଭାବରେ ସୁପ୍ରତିଷ୍ଠିତ । ଲିଖିତ ପୁସ୍ତକ : ଶ୍ରମବୋଉ, ବଳିପ୍ରଥା ସପକ୍ଷରେ ଗୋପବନ୍ଧୁଙ୍କ ବିଶ୍ୱବୋଧ ପ୍ରଭୃତି ପ୍ରବନ୍ଧ ପୁସ୍ତକ ପ୍ରକାଶିତ ଓ 'ସାହିତ୍ୟ ଏକାଡେମୀ ଦ୍ୱାରା' ସାହିତ୍ୟ ସାଧନା ପାଇଁ ସମ୍ମାନିତ ।

**୧୦୫ । ଭଗବାନ ଚନ୍ଦ୍ର ପାତ୍ର :**

ବାଲେଶ୍ୱର ଜିଲ୍ଲା ଶାଳବଣି ଗ୍ରାମରେ ତା ୧୭-୮-୧୯୧୧ ରଖରେ ଜନ୍ମଗ୍ରହଣ କରି ୧୯୬୭ ମସିହା ଫାଲଗୁନ ଦୋଳ ପୂର୍ଣ୍ଣିମାରେ ଇହଧାମ ତ୍ୟାଗ କରିଛନ୍ତି । ଲିଖିତ ଗ୍ରନ୍ଥ : ନାଟକ—ପୃଥ୍ୱୀରାଜ ଜୟଚନ୍ଦ୍ର, ଶ୍ରୀ ଶ୍ରୀ ଶୀତଳା ମହାତ୍ମ୍ୟ, ତୀର୍ଥ ଯାତ୍ରା, ଦାନ ମୁକ୍ତି, ବନଗୃହୀ, ବୀରବାଳା, ବୀର ମାତା, ଗୁପ୍ତ ମିଳନ, ପ୍ରତିହିଂସା, ଚକ୍ଷୁଦାନ, ଜାତିର ଟେକ, ପିତୃ ମୁକ୍ତି, ଅନୁଧ୍ରୁଜ, ଦେବାସୁର ପ୍ରଭୃତି । କାବ୍ୟ—ଉଷା, କବିତା ରତ୍ନପେଡ଼ି ପ୍ରଭୃତି । ସାହିତ୍ୟ ଅଧ୍ୟାୟରେ ଆଲୋଚିତ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

**୧୦୭ । ଉପେନ୍ଦ୍ର ନାଥ ମହାପାତ୍ର ଶର୍ମା :**

ପିତାଙ୍କ ନାମ ଗୋକୁଳାନନ୍ଦ ଓ ମାତା ଲକ୍ଷ୍ମୀ ଦେବୀ । ବାଲେଶ୍ୱର ଜିଲ୍ଲାର କୁରୁଡ଼ା ଅନ୍ତର୍ଗତ ମେଘଡ଼ମ୍ବରୁ ଗ୍ରାମରେ ୧୯୨୯ ମସିହା ଡିସେମ୍ବର ୨୩ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ ପରେ ଅଧ୍ୟାପନା ବୃତ୍ତିରୁ ଅବସର ଗ୍ରହଣ କରି ବର୍ତ୍ତମାନ କୃଷି କାର୍ଯ୍ୟ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଅପୂର୍ବ ନିଷ୍ପତ୍ତି—୧୯୫୧, କାଉଁଚ କାକୁଡ଼ି (ଗୀତ କବିତା—୧୯୬୧), ଅର୍ଘ୍ୟ—୧୯୬୨, ଚିଟାଉ—୧୯୬୩, ରଜନୀଗନ୍ଧା (ନାଟକ—୧୯୬୫), ଭକ୍ତ ଭୂମି ଦର୍ଶନେ (କାବ୍ୟ—୧୯୭୭), କ୍ଷୀର ଦ୍ୱୈପ (ନାଟକ—୧୯୮୧), ମଣି ଉପାଖ୍ୟାନ—୧୯୭୮, ସମସ୍ତରେଖା—୧୯୬୪, ସ୍ମରଣିକା—୧୯୭୪ । ପ୍ରବନ୍ଧ ସମୀକ୍ଷା ଓ ଅନୁଶୀଳନ, ଜୀବନାଦର୍ଶ ବିବର୍ତ୍ତିତ ବିଶ୍ୱ ସଂସ୍କୃତି, ଶକ୍ତି ପୂଜକ, ମାଧବ ପୂଜାର ପୃଷ୍ଠଭୂମିରେ ରେମୁଣା, ଶ୍ରୀ ଚୈତନ୍ୟ ଦେବ, କୁନ୍ତାଶ୍ରମ, ଓଡ଼ିଆ ସାହିତ୍ୟର ପରିସର, ଲେଖକର ହିଡ଼ହିଡ଼ା, ସମ୍ପାଦକ ଓ ସମ୍ପାଦନା । ଭ୍ରମଣ କାହାଣୀ :—ହରେଶ୍ୱର ବାଦ । ଅପ୍ରକାଶିତ ପୁସ୍ତକ :—ଜୀବନ ପାଦପ (ଆତ୍ମ ଜୀବନୀ), ଯେ ନଦୀ ବହିଯାଏ (ଶିଶୁ ଗଳ୍ପ), କର୍ମ ଚତୁର୍ଦ୍ଦଶୀ, ବଳାଙ୍ଗୀ ରୁଠେ, ଗଭସ୍ତି—କାବ୍ୟ, ପଲ୍ଲବ—(କବିତା), ପାଥେୟ (ଭଜନ), ସ୍ୱେଦ ଓ ରକ୍ତ, ଶୋଣିତ ସିନ୍ଦୂର, ମୁଖଶାଳା—(ନାଟକ) ଶଙ୍ଖନାଦ ସିଗ୍ନଳ, ଧନୁଭଙ୍ଗ, ଧାଈ ପାଲ୍ଲା, ବୃନ୍ତ ଓ ବୃତ୍ତି, ବେଡ଼୍ ନଂ-୪୩ ଫେରି ଗୃହାନା—(ଉପନ୍ୟାସ), ଦିଗବଳୟ ପଦଧୂଳି—(କ୍ଷୁଦ୍ରଗଳ୍ପ) ପ୍ରଭୃତି ଅନେକ ଅପ୍ରକାଶିତ ରଚନା ।

ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ସେ ଭାଗବତ ସେବା ସମିତି ବାଲେଶ୍ୱର (୧୯୫୭), ଗ୍ରନ୍ଥଦୂତ (୧୯୬୬), ବାଲେଶ୍ୱର ପୌରସଂସ୍ଥା (୧୯୭୮), ଯଦୁମଣି ସାହିତ୍ୟ ସଂସଦ (୧୯୭୯), ଓଡ଼ିଆ ପତ୍ରପତ୍ରିକା ସମ୍ମିଳନୀ (ପୁରୀ—୧୯୮୫), ଚନ୍ଦ୍ର ଦର୍ପଣ, ଚନ୍ଦ୍ରଭାଗା ଓ ଦୀନକୃଷ୍ଣ ସ୍ମୃତି ପରିଷଦ, ଗା ମଜ୍‌ଲିସ ସାହିତ୍ୟ ସଂସଦ ପ୍ରଭୃତି ସାରସ୍ୱତ ସଙ୍ଗଠନରୁ ପୁରସ୍କାର, ଉପାସ୍ୟନ ଓ ସମ୍ମାନ ଲାଭ କରିଛନ୍ତି । ବାର୍ତ୍ତା ପ୍ରତିଷ୍ଠାନ ଗଠନ କରି ଦୀର୍ଘ ୧୩ ବର୍ଷ ଧରି ବାର୍ତ୍ତାଭୂମି ପତ୍ରିକା ପ୍ରକାଶ କରୁଛନ୍ତି ।

**୧୦୭ । ଭାଗବତ ପ୍ରସାଦ ଲେଙ୍କା :**

ପିତାଙ୍କ ନାମ ପୁରୁଷୋତ୍ତମ ଓ ମାତା କନକଲତା ଦେବୀ । ବାଲେଶ୍ୱର ଜିଲ୍ଲାର ଲଙ୍ଗଳେଶ୍ୱର ନିକଟସ୍ଥ ଶଙ୍ଖୁଆ ଗ୍ରାମରେ ତା ୨୮-୬-୧୯୪୧ ରିଖରେ ଜନ୍ମ-ଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଶିକ୍ଷା ଲାଭ କରି ଅଧ୍ୟାପନା ସହ ସାହିତ୍ୟ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ :—କବିତା—ଆମ୍ଭେ ହିରି ମୋତି ମାଣିକ (୧୯୮୫)

Digitized by srujanika@gmail.com

ସ୍ୱପ୍ନ ଶେଫାଳିର ମହକ (୧୯୮୭), ଗଜମୁକ୍ତା (୧୯୯୨), ଉପନ୍ୟାସ—ମନ କପୋତ୍ତ ଝୁରେ । ଗଳ୍ପ—ନୀଳ ସାଗର ସବୁଜ ସଙ୍କେତ—୧୯୮୦), ସୁନା ପତ୍ରର ରୁପା କଣ୍ଢେଇ (୧୯୮୩), ବାଜିକି ଶଙ୍ଖ ମଞ୍ଜୁଷା (୧୯୮୮), ସାଗର କନ୍ୟାର କୁହୁକ ଚୂଡ଼ି, ଯେଉଁମାନେ ଗଲେ ପାପାଲି କାଳି, ଆଦିବାସୀ ଲୋକକଥା (୧ମ ଭାଗ), ଆଦିବାସୀ ଲୋକକଥା (୨ୟ ଭାଗ), ରୂପ ନଗରର ରାଜକେମା, ଅଭୟାରଣ୍ୟର ସୁନା ହରିଣୀ (୧୯୮୯) ରାଜକୁମାରୀ କାହାନାରୀ, ଆମେ ଶିଳ୍ପୀ କାରିଗର । ନାଟକ :—(ଗୀତିନାଟ୍ୟ) ବନଦେବୀ କାନ୍ଦେ '୧୯୮୭), ନାଟକ—ଏକ ଦେଶ ଏକ ଜାତି, ସୂର୍ଯ୍ୟ ପୂଜା । ସଙ୍ଗୀତ—ଭକ୍ତ ଗୌରବ । ନାଟ—କୁଳ ରକ୍ଷାର ମୂଳ ଶିକ୍ଷା (ଧାଙ୍ଗଡ଼ା ଧାଙ୍ଗଡ଼ୀ ନାଟ) । ଜୀବନୀ—ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବ । ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ । ପ୍ରବନ୍ଧ—ମୟୂରଭଞ୍ଜର ପର୍ବପର୍ବାଣୀ, ଶେଫାଳି ପ୍ରବନ୍ଧମାଳା, ଆଲୋକର ପଥେ, ଆଦିବାସୀଙ୍କ ଦିଅଁ ଦେବତା ଓ ପର୍ବପର୍ବାଣି । ସମୀକ୍ଷା—ସାହିତ୍ୟ ସମୀକ୍ଷା, ହିନ୍ଦୀ ସମୀକ୍ଷା । ଗବେଷଣାତ୍ମକ ପୁସ୍ତକ—ଓଡ଼ିଆ ଶିଶୁ ସାହିତ୍ୟିକ ଜୀବନୀ ସଙ୍କଳନ (୧୯୯୨), ଓଡ଼ିଶାର ଯୋଦ୍ଧା ସମ୍ପ୍ରଦାୟ, ସ୍ୱର୍ଣ୍ଣଯୁଗ ପ୍ରବର୍ତ୍ତକ ରାଜର୍ଷି ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ (୧୯୯୩) ଓଡ଼ିଶାର ଆଦିବାସୀ ସମାଜ ଓ ସଂସ୍କୃତି । ମୟୂରଭଞ୍ଜ ଇତିହାସ : ଏକ ଅନୁଧ୍ୟାନ (୧୯୯୩) ।

ଏତଦ୍‌ବ୍ୟତୀତ ଓଡ଼ିଆ ଓ ଇଂରାଜୀରେ କେତେକ ଶିକ୍ଷାନୀତି ବିଷୟକ ପାଠ୍ୟପୁସ୍ତକ ରଚନା କରିଛନ୍ତି । ଡକ୍ଟର ଲେଙ୍କା ବାର୍ତ୍ତା ପ୍ରତିଷ୍ଠାନ—ବାଲେଶ୍ୱର : ଫୁଲ ବନ୍ଧନ—କେଉଁଝର ଗଡ଼; ବିଶ୍ୱ ସଂସ୍କୃତି ପରିଷଦ ବାରିପଦା ଶାଖା; ମୟୂରଭଞ୍ଜ ସାହିତ୍ୟ ପରିଷଦ, ବାରିପଦା; କେନ୍ଦୁଝର ଜିଲ୍ଲାସ୍ତରୀୟ ଶିଶୁ ସାହିତ୍ୟ ସଂସଦ; ରାଜ୍ୟ ସ୍ତରୀୟ ଶିଶୁ ସାହିତ୍ୟ ସଂସଦ; ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ ତରଫରୁ ସମ୍ମାନିତ ଓ ପୁରସ୍କୃତ ।

**୧୦୭ । ଭାଗବତ ଲେଙ୍କା :**

ପିତାଙ୍କ ନାମ ଭୋଳାନାଥ ଓ ମାତା କାଶମଣୀ ଦେବୀ । ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ନହଙ୍ଗ ଗ୍ରାମରେ ତା ୧-୨-୧୯୬୮ ରିଖରେ ଜନ୍ମଗ୍ରହଣ କରି ରେମୁଣା ନିକଟ କାଳୁଗଞ୍ଜରେ ବାସ କରୁଛନ୍ତି । ଶ୍ରୀ ଲେଙ୍କା ଅଧ୍ୟାପନା ସହିତ ସାରସ୍ୱତ ସାଧନାରେ ବ୍ରତୀ :—ଲିଖିତ ପୁସ୍ତକ—ଗଳ୍ପ ସ୍ୱପ୍ନ । ତୀର୍ଥକ୍ଷେତ୍ର କୁମାରୀ ୧୯୮୫), ସ୍ୱାଗତ ଚର୍ଯ୍ୟା, ସମ୍ପର୍କର କେତେ ବନ୍ଧ ଉକ୍ତି, ସ୍ୱାଗତିକା (୧୯୮୯) ପ୍ରଭୃତି କବିତା ଓ ଓଡ଼ିଆ ସାହିତ୍ୟରେ ଗୁରୁ ପରମ୍ପରା ପ୍ରଭୃତି ଗ୍ରନ୍ଥ ପ୍ରକାଶିତ । ସମ୍ପାଦନା—ଗଳ୍ପ ସ୍ୱପ୍ନ, ବ୍ୟାସ ପ୍ରଦୀପ—(୧୯୮୭-୯୧), ବ୍ୟାସ ପ୍ରଦୀପ (୧୯୯୧), ତାଙ୍କ କାମ୍ୟ କ ପ୍ରତିଭା । ଏତଦ୍-

Digitized by srujanika@gmail.com

ବ୍ୟତୀତ ସ୍ରଷ୍ଟ୍ରଦୂତ, ଆଜକାଲ, ନୂତନ ବାର୍ତ୍ତା, ଆଜିର ବାର୍ତ୍ତା, ଧ୍ୱନି ପ୍ରତିଧ୍ୱନି, ସାଗରିକା, ବେଲା, ଖଇରାଣୀ, ବାର୍ତ୍ତାଉର୍ମି; ପ୍ଲାବନ, କାକଳୀ, ରୂପା ଥାଳିଆ, ଅଞ୍ଜଳୀ, ପ୍ରଗତି-ବାଦୀ, ଜନଲିପି, ସ୍ରଷ୍ଟ୍ରଭାଷା, ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନ, ଲଇଟି, ଲୋକକଥା, ଶାମୁକା, ବ୍ୟାସ ପ୍ରଦୀପ ପ୍ରଭୃତି ପତ୍ରପତ୍ରିକାରେ ବହୁ ପ୍ରବନ୍ଧ, କବିତା ଓ ଗଳ୍ପ ପ୍ରକାଶିତ ।

**୧୦୮ । ସନତ୍କୁମାରଣ ବାରିକ :**

ପିତାଙ୍କ ନାମ ନରସିଂହ ଓ ମାତା ସୁବାସିନୀ ଦେବୀ । ବାଲେଶ୍ୱର ଜିଲ୍ଲାର ବେଲବାରିଆ ଗ୍ରାମରେ ତା ୩-୨-୧୯୪୮ ରିଖରେ ଜନ୍ମଗ୍ରହଣ କରିଛନ୍ତି । ବିଶ୍ୱ-ବିଦ୍ୟାଳୟ ସ୍ତରରେ ଶିକ୍ଷା ସମାପ୍ତି ପରେ ଅଧ୍ୟାପନା ସହ ସାହିତ୍ୟ ସାଧନାରେ ବ୍ରତୀ । ବହୁ କବିତା ଓ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ମାଳଞ୍ଚ (କବିତା), ଐତିହ୍ୟ ମଣ୍ଡିତ ବାଲେଶ୍ୱର (ପ୍ରବନ୍ଧ) ପ୍ରଭୃତି ଅପ୍ରକାଶିତ ପୁସ୍ତକ ।

**୧୦୯ । ଭୂପେନ ଦାସ ମହାପାତ୍ର :**

ପିତାଙ୍କ ନାମ କୃତ୍ତିବାସ ଓ ମାତା କ୍ଷେମଙ୍କରୀ ଦେବୀ । ବାଲେଶ୍ୱର ଜିଲ୍ଲା ଜଲେଶ୍ୱର ଥାନାନ୍ତର୍ଗତ କୋଟସାହି ଗ୍ରାମରେ ତା ୩-୮-୧୯୩୫ ମସିହାରେ ଜନ୍ମ-ଗ୍ରହଣ କରିଛନ୍ତି । ସରକାରୀ ଚାକିରୀ ସହ ସାହିତ୍ୟ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ: —ଗଳ୍ପ ସଙ୍କଳନ—ପୃଥିବୀ ଓ ପୃଥିବୀ (୧୯୮୭); ଗୋଟିଏ ମେଣ୍ଢାଫଳ (୧୯୯୧), ପ୍ରମିଳା (୧୯୯୪) । ଅପ୍ରକାଶିତ ପୁସ୍ତକ—ଉପତ୍ୟକାର ଉପକଥା (ଭ୍ରମଣ କାହାଣୀ) । ଏତଦ୍‌ବ୍ୟତୀତ ଦୀର୍ଘ ୨୫ ବର୍ଷ ଧରି ଝଙ୍କାର, କଥା, ନବପତ୍ର, ସୌରଭ, ପ୍ରଗତିବାଦୀ, ସମ୍ବାଦ ଓ ରାଉରକେଲା ରିପୋର୍ଟ ପ୍ରଭୃତି ପତ୍ରପତ୍ରିକାରେ ବହୁ ଗଳ୍ପ, କବିତା, ପ୍ରବନ୍ଧ, ଭ୍ରମଣ କାହାଣୀ ପ୍ରକାଶ ପାଇଛି ।

**୧୧୦ । ମଧୁସୂଦନ କର :**

ପିତାଙ୍କ ନାମ କୃତ୍ତିବାସ ଓ ମାତା ଯଶୋଦା ରାଣୀ ଦେବୀ । ବାଲେଶ୍ୱର ଜିଲ୍ଲାର ଛମୌଜ ଗ୍ରାମରେ ତା ୧୫-୩-୧୯୪୦ ରିଖରେ ଜନ୍ମଗ୍ରହଣ କରିଛନ୍ତି । ଶିକ୍ଷା ବିଭାଗରେ ଅଧ୍ୟାପନା ଓ ପ୍ରଶାସନିକ ଦାୟିତ୍ୱ ସହ ସାହିତ୍ୟ ସାଧନାରେ ବ୍ରତୀ । ଲିଖିତ କ୍ଷୁଦ୍ର ପୁସ୍ତକ —(୧) ଭଜନମାଳା (୧ମ ଭାଗ), ୨) ଭଜନମାଳା (୨ୟ ଭାଗ), (୩) ହରିଓଁ କୀର୍ତ୍ତିନାବଳୀ (୧୯୭୭), (୪) କୀର୍ତ୍ତିନାବଳୀ (୨ୟ ଭାଗ) । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ 'ବାର୍ତ୍ତାଉର୍ମି ପ୍ରତିଷ୍ଠାନ'ରୁ ସମ୍ମାନିତ ହୋଇଛନ୍ତି ।

Digitized by srujanika@gmail.com

**୧୧୧ । ମଧୁସୂଦନ ଦାସ :**

ପିତାଙ୍କ ନାମ ଶ୍ୟାମ ଚରଣ ଓ ମାତା ମନୋରମା ଦେବୀ । ବାଲେଶ୍ୱର ଜିଲ୍ଲାର ଭୋଗରାଇ ନିକଟସ୍ଥ ଦେଉଳା ଗ୍ରାମରେ ୧-୩-୧୯୪୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟ ସ୍ତରରୁ ଉଚ୍ଚତର ଡିଗ୍ରୀ ଲାଭ କରି ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ :—(୧) ନିମଗ୍ନ ବହ୍ନି (୧୯୭୮ କବିତା), (୨) ଦେଶ ବିଦେଶର ପୁରାଣ କାହାଣୀ (୧୯୭୮ ଶିଶୁ ସାହିତ୍ୟ), (୩) ଅମର ପ୍ରେମ (୧୯୭୮—ଇଂରାଜୀରୁ ଅନୁବାଦିତ ଗଳ୍ପ ସଙ୍କଳନ), (୪) ସେବା ଧାର୍ମିକ ଓ କପଟ ? (୧୯୯୨—ହିନ୍ଦୀରୁ ଅନୁବାଦିତ ଆଧୁନିକ ବାସ୍ତବ ଗ୍ରାମ ରାଜ୍ୟର କଥା) (୫) ଆସନ୍ତୁ ଆର୍. ଏସ୍. ଏସ୍‌କୁ ଶେଷ କରିଦେବା (୧୯୯୨—ବଙ୍ଗଳାରୁ ଅନୁଦିତ ଦେଶାତ୍ମ ବୋଧକ ପୁସ୍ତକ) । ପ୍ରକାଶ ଅପେକ୍ଷାରେ—(୧) ତିକ୍ତ-ମଧୁର (ହାସ୍ୟ-ବ୍ୟଙ୍ଗ ରଚନାବଳୀ), (୨) ମୃଦଙ୍ଗ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ ସଙ୍କଳନ), (୩) କବିତା ନିହୁନ (ହାସ୍ୟ ବ୍ୟଙ୍ଗାତ୍ମକ ପାଞ୍ଚ ଧାଡ଼ିଆ କବିତା ଲଘୁ ପଞ୍ଚକ-ଶତକ) ଆକାଶବାଣୀରେ କବିତା, ଗଳ୍ପ, ସଂଳାପ ଓ ନାଟକ ଏବଂ ଲଘୁ ପଞ୍ଚକ ପ୍ରସାରିତ ହେଉଅଛି । ଝଙ୍କାର, ଡଗର, ନବଜୀବନ, ଜନରଙ୍ଗ, ଦିଗନ୍ତ ମରୁତୀର୍ଥ, ଯୁଗଭେରୀ, ବେଲା, ବନଫୁଲ, ଚୁମ୍ବକ, ଗୋକର୍ଣ୍ଣିକା, ବାର୍ତ୍ତାବହ, ବନ୍ଧୁ; ସମାଜ, ପ୍ରଜାତନ୍ତ୍ର, ମାତୃଭୂମି, ପ୍ରଗତିବାଦୀ, ଶାନ୍ତିଦୂତ, ଶାନ୍ତିଦୀପ, କଥା, ଦକ୍ଷିଣା ବିକ୍ (ବଙ୍ଗଳା), Sun Times (ଇଂରାଜୀ), Orissa Review ଇଂରାଜୀ ଇତ୍ୟାଦି ପତ୍ରପତ୍ରିକା 'କବିତା ଶତକ', 'ମିନି ଗଳ୍ପ ଶତକ' ସମନ୍ୱୟ (କବିତା) କବିତା ଆଜି ଓ କାଲିର Indian Poetry Today (ଇଂରାଜୀ) ଇତ୍ୟାଦି ଅନେକ ପ୍ରତିନିଧିମୂଳକ ବିଭିନ୍ନ କବି ଲେଖକମାନଙ୍କ ରଚନା ସଙ୍କଳନରେ ଲେଖା କବିତା, ଗଳ୍ପ, ଏକାଙ୍କିକା, ହାସ୍ୟ ବ୍ୟଙ୍ଗାତ୍ମକ କବିତା, ରମ୍ୟ ରଚନା, ଅନୁବାଦ, ଗବେଷଣାତ୍ମକ ପ୍ରବନ୍ଧ ଇତ୍ୟାଦି ସ୍ଥାନ ପାଇଛି ।

ଦୀନକୃଷ୍ଣ ସାହିତ୍ୟ ସଂସଦ ଓ ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ।

**୧୧୨ । ମନ୍ମଥ କୁମାର ଜେନା :**

ପିତାଙ୍କ ନାମ ଭବଶଙ୍କର ଓ ମାତା ମନୋରମା ଦେବୀ । ବାଲେଶ୍ୱର ଜିଲ୍ଲାର ପାଞ୍ଚରା ଗ୍ରାମରେ ତା ୨୭-୧-୧୯୬୮ ମସିହାରେ ଜନ୍ମ ଗ୍ରହଣ କରିଛନ୍ତି । ସଙ୍ଗୀତ ଶାସ୍ତ୍ରରେ ଉଚ୍ଚ ଶିକ୍ଷା ଲାଭ ପରେ କ୍ଷେତ୍ରର ସହିତ ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ ଅଧ୍ୟାପନାରତ । ଜଣେ ବରିଷ୍ଠ କଳାକାର ଭାବେ ପ୍ରତିଷ୍ଠା ଲାଭ କରିଛନ୍ତି ।

**୧୧୩ । ମନ୍ମଥ ନାଥ ଦାସ :**

ପିତାଙ୍କ ନାମ ମଧୁସୂଦନ ଓ ମାତା କାଦମ୍ବିନୀ ଦେବୀ । ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନାନ୍ତର୍ଗତ ଶଙ୍ଖାରୀ ଗ୍ରାମରେ ୧୯୨୭ ମସିହା ଜାନୁୟାରୀରେ ଜନ୍ମଗ୍ରହଣ

Digitized by srujanika@gmail.com

କରିଛନ୍ତି । ଉଚ୍ଚତମ ଡ଼ିଗ୍ରୀ ହାସଲପରେ ବିଶ୍ୱବିଦ୍ୟାଳୟ ସ୍ତରରେ ଅଧ୍ୟାପନା କରି ଅବସର ଗ୍ରହଣ କରିଥିଲେ ହେଁ ସାହିତ୍ୟ ସାଧନାରେ ବ୍ରତୀ । ଜଣେ ପ୍ରଖ୍ୟାତ ଐତିହାସିକ ଓ ଓ ଗବେଷକ ଭାବରେ ସୁପ୍ରତିଷ୍ଠିତ । ପ୍ରଫେସର ଦାସଙ୍କ ଓଡ଼ିଆ ପୁସ୍ତକ—(୧) ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା (୧୯୫୧), (୨) ଅସ୍ତରାଗ (ଉପନ୍ୟାସ ୧୯୫୩), (୩) ଅସ୍ପଷ୍ଟ ଆଖ୍ୟାନ (ନାଟକ-୧୯୭୨), (୪) ସପ୍ତ ସାଗର ତଳେ (୧୯୮୧) । ଅପ୍ରକାଶିତ ପୁସ୍ତକ—ସମ୍ରାଟ ଅଶୋକ, କଳିଙ୍ଗ ଯୁଦ୍ଧରୁ ସାର୍ବଜନୀନ ଶାନ୍ତି । ଓ ଐଶୀ ପୁରୁଷଙ୍କ ଦୈବୀଶକ୍ତି । ଇଂରାଜୀ ପୁସ୍ତକଗୁଡ଼ିକ ହେଲା—

(1) Glimpses of Kalinga History, 1950 (2) Social and Economic Development of India (1848-56), 1957 (3) The political philosophy of Jawaharlal Nehru, (1961 and 1662), (4) India Under morley & minto, Politics Behind Revolution, Repression & Reforms, (1964), (5) Social, cultural & Economic History of India (Modern period), 1971. (6) Indian National Congress versus the British,(1977) (7) Partition & Independence of India; Inside story of the Mountbatten Days, (1982) (8) End of the British Indian Empire; Politics of Divide & Quit (Select Documents), (1983), (9) English Novel; Keep the story secret, (1967), (10) Latest publication: The odyssey of Emperor Asoka Maurya; Kalinga war to Universal Peace, (1992), (11) Miracles of mankinds great Saviours. (1992), ଓ ସଂକଳିତ ପୁସ୍ତକ : (1) Side light on History & culture of Orissa, (1978), (2) Orissa Bibliography, 1981, (3) A Centenary History of the Indian National Congress, vol. III (Released on the occasion of the centenary celebrations of the Indian National congress on 28th December 1985 at Bombay).

Several research papers published in Journals and articles published in Encyclopaedia Britannica and Grolier Encyclopaedia.

Digitized by srujanika@gmail.com

**୯୬୦ । ମନୋଜ ଦାସ :**

ବାଲେଶ୍ୱର ଜିଲ୍ଲା ଶଙ୍ଖାରୀ ଗ୍ରାମରେ ୧୯୩୪ ମସିହାରେ ଜନ୍ମ ଗ୍ରହଣ କରିଛନ୍ତି । ମନୋଜ ବାବୁ ପ୍ରଫେସର ମନ୍ମଥ ନାଥ ଦାସଙ୍କ ସାନଭାଇ । ଇଂରାଜୀ ସାହିତ୍ୟରେ ଉଚ୍ଚ ଶିକ୍ଷା ଲାଭ କରି ପଣ୍ଡିଚେରୀ ଠାରେ ଶ୍ରୀ ଅରବିନ୍ଦ ଆଶ୍ରମରେ ଅଧ୍ୟାପନା ସାଙ୍ଗକୁ ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ଓଡ଼ିଆ ବ୍ୟତୀତ ଇଂରେଜୀ ସାହିତ୍ୟରେ ମନୋଜ ବାବୁ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ସାରସ୍ୱତ ସାଧକ ଓ ବହୁ ସମ୍ମାନର ଅଧିକାରୀ । ଏଠାରେ ତାଙ୍କର କୃତି ସମୂହ କେବଳ ଉଲ୍ଲେଖ କରି ତାଙ୍କ ପ୍ରତି ଗଭୀର ସମ୍ମାନ ଜଣାଉଛୁ ମାତ୍ର । ପ୍ରକାଶିତ ଗଳ୍ପ ଓ କବିତା ପୁସ୍ତକ; (୧) ସମୁଦ୍ରରେ କ୍ଷୁଧା-୧୯୫୧ ଏନ୍. ସ୍କୁ, ପ୍ରେସ ବାଲେଶ୍ୱର, (୨) ଜୀବନର ସ୍ୱାଦ-ନବଯୁଗ ଗ୍ରନ୍ଥାଳୟ କଟକ ୧୯୫୩, (୩) ବିଷ କନ୍ୟାର କାହାଣୀ, ପୁରୀ ୧୯୫୪, (୪) ଆରଣ୍ୟକ-ଫ୍ରେଣ୍ଡସ ପବ୍ଲିଶର୍ସ କଟକ, ୧୯୬୧ (୫) ଶେଷ ବସନ୍ତର ଚିଠି, ବିଦ୍ୟାପୁରୀ, କଟକ (୧୯୬୬), (୬) ମନୋଜ ଦାସଙ୍କ କଥା ଓ କାହାଣୀ, ଫ୍ରେଣ୍ଡସ ପବ୍ଲିଶର୍ସ, କଟକ ୧୯୭୧, (୭) ଲକ୍ଷ୍ମୀର ଅଭିସାର, ଗ୍ରନ୍ଥମନ୍ଦିର, କଟକ (୧୯୭୪), (୮) ଆବୁ ପୁରୁଷ, ଗ୍ରନ୍ଥମନ୍ଦିର, କଟକ ୧୯୭୫, (୯) ଧୂମ୍ରାଭ ଦିଗନ୍ତ, ଗ୍ରନ୍ଥ ମନ୍ଦିର, କଟକ (୧୯୭୭), (୧୦) ମନୋଜ ପଞ୍ଚବିଂଶତି ଗ୍ରନ୍ଥ ମନ୍ଦିର, କଟକ ୧୯୮୩, (୧୧) ଭିନ୍ନ ମଣିଷ—ଫ୍ରେଣ୍ଡସ ପବ୍ଲିଶର୍ସ, କଟକ, ୧୯୮୬, (୧୨) ତୁଳଟ୍ରୋଜରର୍—ଚତୁରଙ୍ଗ ପ୍ରକାଶନୀ, ଭୁବନେଶ୍ୱର, ୧୯୮୯ କବିତା, (୧୩) ଶତାବ୍ଦୀର ଆର୍ତ୍ତନାଦ• ଏନ• ସ୍କୁ. ପ୍ରେସ, ବାଲେଶ୍ୱର, ୧୯୪୯, (୧୪) ବିପ୍ଳବୀ ଫକୀର ମୋହନ, ୧୯୪୯, (୧୫) ପଦଧ୍ୱନୀ, ନବଯୁଗ ଗ୍ରନ୍ଥାଳୟ କଟକ, ୧୯୫୪, (୧୬) ଦଧିବାମନର ମାଝୀ—ଦାଶରଥୀ ପୁସ୍ତିକାଳୟ, କଟକ, ୧୯୫୬, (୧୭) ଉପକଣ୍ଠେ ଜଗନ୍ନାଥ ରଥ, କଟକ, ୧୯୬୬ ଭ୍ରମଣ କାହାଣୀ, (୧୮) ଇଣ୍ଡୋନେସିଆ ଅନୁଭୂତି—ଜନଶକ୍ତି ପୁସ୍ତକାଳୟ, କଟକ, ୧୯୫୬, (୧୯) ଦୂର ଦୂରାନ୍ତର ଗ୍ରନ୍ଥ ମନ୍ଦିର, କଟକ, ୧୯୭୩ ରମ୍ୟ ରଚନା, (୨୦) କେତେ ଦିଗନ୍ତ—ପ୍ରଥମ ଭାଗ ଗ୍ରନ୍ଥ ମନ୍ଦିର, କଟକ, ୧୯୮୬, (୨୧) କେତେ ଦିଗନ୍ତ—ଦ୍ୱିତୀୟ ଭାଗ, ଗ୍ରନ୍ଥ ମନ୍ଦିର, କଟକ, ୧୯୮୬ ଇଂରାଜୀରେ ଲିଖିତ ଗଳ୍ପ ଗ୍ରନ୍ଥ—

A song for Sunday and other, stories, Higginbothams, Madras. 1967.

Short stories by Manoj Das Triveni publishers, Madras 1969.

The crocodile's lady and other stories, Sterling Publishers, New Delhi; 1975.

Digitized by srujanika@gmail.com

Fables and fantasies for adults, Orient paper backs, New Delhi 1978.

Man who lifted the mountain and other stories Fareham; Spectre Press, 1979.

The vengeance and other stories. Sterling Publishers, New Delhi; 1980.

The submerged valley and other stories, Malmerbury; Batstone Books, 1986, Bulldozers; B. R. Publishing.

The dusky horizon and other stories B. R. Publishing Corpn, New Delhi; 1989 and A tiger at Twilight (Novel) penguin Books.

Temples of India, Bombay; India Book house, 1970.

Stories of light and delight, National Book Trust, New Delhi; 1970.

Tales from many lands, India Book house, Bombay; 1972.

Persian tales of wit and delight, India Book house, Bombay; 1972.

Books for ever, National Book Trust, New Delhi; 1973,

Rivers of India, India Book house, Bombay; 1975.

A bride inside a casket and other stories, Singapore : Times Books International, 1981; and International Edition, W H Allen, London : 1985.

Digitized by srujanika@gmail.com

Sri Aurobindo in the first decade of the century, Pondicherry : Sri Aurobindo Ashram Trust, 1972.

Sri Aurobindo, (Novel) New Delhi : Sahitya Akademi, 1972.

Cyclones, New Delhi : London New York : Sterling Publishers, Orient University Press, Facet Books International, 1987.

ମନୋଜ ବାବୁ ୧୯୬୨ରେ ଡଗର ରୌପ୍ୟଜୟନ୍ତୀ ଗଳ୍ପ ପୁରସ୍କାର, ୧୯୬୫ରେ ଓଡ଼ିଆ ଗଳ୍ପ ସାହିତ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୭୧ରେ ଗଳ୍ପ ନିମନ୍ତେ ପ୍ରଜାତନ୍ତ୍ର ବିଷୁବ ମିଳନ ପୁରସ୍କାର, ୧୯୭୨ରେ ଭାରତୀୟ ଗଳ୍ପ ସାହିତ୍ୟରେ ଜଣେ ସଫଳ ସ୍ରଷ୍ଟାରୂପେ ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୮୦ରେ ସାରଳା ପୁରସ୍କାର, ୧୯୮୬ରେ ବିଷୁବ ସ୍ୱତନ୍ତ୍ର ପୁରସ୍କାର, ୧୯୮୯ରେ ପ୍ରବନ୍ଧ ସାହିତ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରି ସମ୍ମାନିତ ।

**୧୧୫ । ମନ୍ମଥ ନାଥ କର :**

ପିତାଙ୍କ ନାମ କ୍ଷେତ୍ରମୋହନ, ମାତା ଭୁବନେଶ୍ୱରୀ ଦେବୀ । ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନାନ୍ତର୍ଗତ ଚଣ୍ଡୀପୁର ଗ୍ରାମରେ ବିଂଶ ଶତକର ପ୍ରଥମ ଦଶକରେ ଜନ୍ମ ଓ ଅଶୀ ଦଶକରେ ଇହଧାମ ତ୍ୟାଗ କରିଛନ୍ତି । ବାଲେଶ୍ୱରର ଅଭିନୟ ଜଗତରେ ବହୁବର୍ଷ ଧରି ଅଭିନୟ ଓ ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ ।

**୧୧୬ । ମନୋରମା ବିଶ୍ୱାଳ ମହାପାତ୍ର :**

ପିତାଙ୍କ ନାମ ପ୍ରାଣକୃଷ୍ଣ ଓ ମାତା ହେମମଣୀ ଦେବୀ । ବାଲେଶ୍ୱର ଜିଲ୍ଲାର ବାଲିଆପାଳ ଥାନା ନିକଟସ୍ଥ କଗେଇ ଗ୍ରାମରେ ୧୯୪୮ ଅପ୍ରେଲ ୧୬ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି ମହାବିଦ୍ୟାଳୟ ସ୍ତରରେ ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : କବିତା ଗ୍ରନ୍ଥ—କିଶଳୟ (୧୯୬୩), ବ୍ରତତୀ (୧୯୬୫), ଫୁଲ ଫୁଟା ମୁହୂର୍ତ୍ତ (୧୯୭୮), ସ୍ୱାତୀ ଲଗ୍ନ (୧୯୬୯), ଋତୁ ଶ୍ରାବଣ ପ୍ରତିବିମ୍ବ (୧୯୭୯), ଜହ୍ନ ଘରର ମୁହଁ (୧୯୮୧), କେତେ କଥା କେତେ ଗୀତ (ଶିଶୁ ସାହିତ୍ୟ—୧୯୮୩), ଆମେ ସବୁ ଛିଙ୍କି ଫୁଲ (ଶିଶୁ ସାହିତ୍ୟ—୧୯୮୮),

Digitized by srujanika@gmail.com

କବିତା—ଏ କଲି କଇର ଗୀତ (୧୯୯୦) ସ୍ୱାଗ ଲଗ୍ନ (ହିନ୍ଦୀ ଅନୁବାଦ—୧୯୯୦), ମେଘ ହସ୍ତେ ଆବାର ଫିରବେ (ବଙ୍ଗଳା ଅନୁବାଦ—୧୯୯୨), ମାନସିଂହଙ୍କ କାବ୍ୟ କାନ୍ତି (ପ୍ରବନ୍ଧ—୧୯୯୨), ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର (ରମ୍ୟ ରଚନା—୧୯୯୨), ଜୀବନ ଚମ୍ପୂ (ଗୀତି କବିତା—୧୯୯୨), They will come as clouds again (ଇଂରାଜୀ ଅନୁବାଦ—୧୯୯୨), ଅପ୍ରକାଶିତ ପୁସ୍ତକ : (୧) ଥରେ ଖାଲି ଡାକ ଦେଲେ (କବିତା), (୨) ଟିକି ବଗିଗ୍ଲର ଟିକି ଚଢ଼େଇ (ଶିଶୁ ସାହିତ୍ୟ) । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ 'ଜୀବନ ରଙ୍ଗ ସମ୍ମାନ' (୧୯୭୧), ବିଷୁବ ସମ୍ମାନ (୧୯୭୯), ଗୋ କର୍ଣ୍ଣିକା ସମ୍ମାନ (୧୯୮୮) ଲାଭ କରିଛନ୍ତି ।

୧୧୭ । **ମହମ୍ମଦ ମୂଷା ଖାଁ** :

ବାଲେଶ୍ୱର ସହର ଅନ୍ତର୍ଗତ ଗୋଲା ପୋଖରୀ ନିକଟରେ ଜନ୍ମଗ୍ରହଣ କରିଥିଲେ । ସରକାରୀ କାର୍ଯ୍ୟ ସହ ସାହିତ୍ୟ ସାଧନାରେ ରତ ଥିଲେ । ତାଙ୍କର ଲିଖିତ କବିତା ପୁସ୍ତକ 'ମୀନାର' (୧୯୫୫)ରେ ପ୍ରକାଶିତ ହୋଇଛି ।

୧୧୮ । **ମହାବିଦ୍ୟା ବହୁଦାର** : (୧୯୨୭—୧୯୮୫)

ବାଲେଶ୍ୱର ସହର ଅନ୍ତର୍ଗତ ସୁନହଟ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ 'ମହାଜୀବନ ବାଲେଶ୍ୱରୀ' ଛଦ୍ମ ନାମରେ ଓଡ଼ିଆ ଭାଷାରେ ଗଜଲ ଲେଖି ପ୍ରଶଂସିତ ହୋଇଥିଲେ । ପୂର୍ବାଗିର, ଆସନ୍ତାକାଲି ପ୍ରଭୃତି ପତ୍ରପତ୍ରିକାରେ ଏସବୁ ପ୍ରକାଶିତ ହୋଇଥିବାର ଜଣାଯାଏ ।

୧୧୯ । **ମୁରଲୀ ମୋହନ ସାହୁ** :

ପିତାଙ୍କ ନାମ ନାକଫୁଲ ଓ ମାତା ଶୁକମଣି ଦେବୀ । ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନାନ୍ତର୍ଗତ ହରିପୁର ଗ୍ରାମରେ ୧୯୩୬ ମସିହା ଡିସେମ୍ବର ୨୧ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଶିକ୍ଷା ଲାଭ ପରେ ଅଧ୍ୟାପନା ସହ ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : (୧) ଶିଶିର ବିନ୍ଦୁ (୧୯୬୨), (୨) ଅଶ୍ରୁ ଧୂନ (୧୯୬୪), (୩) ଶାନ୍ତିର ଉପାନ୍ତେ (୧୯୬୬), (୪) ପୁଷ୍ପିତ ଅନ୍ଧାର : ଅଦୃଶ୍ୟ ଋତୁ (୧୯୮୩) । ଏତଦ୍ ବ୍ୟତୀତ କେତେକ କବିତା, ଗଳ୍ପ ଓ ନିବନ୍ଧ ପୁସ୍ତକ ଅପ୍ରକାଶିତ ରହିଅଛି ।

କବି ଶ୍ରୀ ସାହୁ ୧୯୬୨ରେ ଆକାଶବାଣୀ ଦ୍ୱାରା ଅନୁଷ୍ଠିତ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ କବି ସମ୍ମିଳନୀରେ ଯୋଗ ଦେବାକୁ ଓଡ଼ିଶାରୁ ନିର୍ବାଚିତ କବି । ୧୯୮୮ରେ ମୀନକୃଷ୍ଣ ସ୍ମୃତି ପରିଷଦ ଜଳେଶ୍ୱରର ବିଷୁବ ସାରସ୍ୱତ ଉତ୍ସବରେ ମାନପତ୍ର ଓ ଉପାୟନ ଲାଭ କରିଛନ୍ତି ।

Digitized by srujanika@gmail.com

୧୨୦ । **ମୃତ୍ୟୁଞ୍ଜୟ ମହାପାତ୍ର :**

ପିତାଙ୍କ ନାମ କପିଳେଶ୍ୱର ମହାପାତ୍ର । ବାଲେଶ୍ୱର ଜିଲ୍ଲା ଗୃଷୀପଡ଼ାଠାରେ ତା ୨୨-୨-୧୯୫୭ ଖ୍ରୀଃରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ କରି କୃଷିକାର୍ଯ୍ୟ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଯୁଗ ଜ୍ୟୋତି ଫକୀର ମୋହନ (ଗୀତିନାଟ୍ୟ), କଥା ବାହକା (ଗଳ୍ପ ସଂକଳନ) । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ସେ ଯଦୁମଣି ସାହିତ୍ୟ ସଂସଦ ତରଫରୁ ପୁରସ୍କୃତ ହୋଇଛନ୍ତି ।

୧୨୧ । **ମୋହିନୀ ମୋହନ ସେନାପତି** : (୧୮୮୧—୧୯୪୫)

ବ୍ୟାସକବି ଫକୀର ମୋହନଙ୍କ ପୁତ୍ର । ସେ ଜଣେ ନିରୀଶ୍ୱରବାଦୀ ଦାର୍ଶନିକ ଭାବରେ ପ୍ରଖ୍ୟାତ । ଅଧ୍ୟାପନା ସହିତ ବିଭିନ୍ନ ଦାର୍ଶନିକ ପ୍ରବନ୍ଧ ରଚନା କରିଥିଲେ । ଉତ୍କଳ ସାହିତ୍ୟ, ସହକାର ଓ ମୁକୁର ପ୍ରଭୃତିରେ ତାଙ୍କର ବହୁ ଉଚ୍ଚକୋଟୀର ପ୍ରବନ୍ଧ ପ୍ରକାଶିତ । 'ବିବିଧ ପ୍ରସଙ୍ଗ'—ପ୍ରକାଶିତ ପୁସ୍ତକ ।

୧୨୨ । **ଯଜ୍ଞେଶ୍ୱର ସେଠୀ :**

ପିତାଙ୍କ ନାମ ରାମଚନ୍ଦ୍ର ଓ ମାତା ରୁକ୍ମଣୀ ଦେବୀ । ବାଲେଶ୍ୱର ଜିଲ୍ଲାର ଷ୍ଟେଗରାଇ ଥାନା ଅନ୍ତର୍ଗତ ମହମ୍ମଦ ପୁର ଗ୍ରାମରେ ତା ୩-୨-୧୯୪୧ ଖ୍ରୀଃରେ ଜନ୍ମ ଗ୍ରହଣ କରିଛନ୍ତି । ଶିକ୍ଷା ଲାଭ ପରେ ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : କବିତା—ଭୂଷଣ୍ଡେଶ୍ୱର, ଦ୍ରୌପଦୀ ବସ୍ତ୍ର ହରଣ, ଯଉତୁକ, ତରଣୀ-ସେନ ବଧ, ଉଷା । ଅପ୍ରକାଶିତ ନାଟକ—ପରିଚୟ, ଭାଗ୍ୟରବି । ଗୀତିନାଟ୍ୟ—ପୂତନା ବଧ, କପିଳେନ୍ଦ୍ରଦେବ, ସେତୁବନ୍ଧ ପ୍ରତିଷ୍ଠା, ଧାରା ଶ୍ରାବଣ ଆଦି ପ୍ରଭୃତି । ଏତଦ୍‌ବ୍ୟତୀତ ଅନେକ କବିତା ମୀନାବଜାର, ପ୍ରଜାତନ୍ତ୍ର, ଜନ୍ମଭୂମି ଓ ଶିକ୍ଷକ ଦର୍ପଣରେ ପ୍ରକାଶିତ ।

୧୨୩ । **ସଚୀନ୍ଦ୍ର ନାଥ ହୁଇ :**

ପିତାଙ୍କ ନାମ ଉପେନ୍ଦ୍ର ନାଥ ଓ ମାତା ଉତ୍ସବନୀ ଦେବୀ । ବାଲେଶ୍ୱର ଜିଲ୍ଲାର ଶାହାପୁର ଗ୍ରାମରେ ତା ୭-୧୧-୧୯୨୭ ଖ୍ରୀଃରେ ଜନ୍ମଗ୍ରହଣ କରିଛନ୍ତି । ସରକାରୀ କର୍ମରୁ ଅବସର ଗ୍ରହଣ କରି ବର୍ତ୍ତମାନ କୃଷିକାର୍ଯ୍ୟ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ସଙ୍ଗୀତ ମଞ୍ଜୁଷା (୧୯୮୩), ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସ୍ତୁତି (୧୯୮୩) । ଏତଦ୍‌ବ୍ୟତୀତ ରାଷ୍ଟ୍ରଦୂତ, ବାର୍ତ୍ତାଉର୍ମି, ଚନ୍ଦ୍ର ଦର୍ପଣ, ସାରଣିକା, ନୀଳଚକ୍ର, ଜହ୍ନ, ବନ୍ଧୁ ବଳୟ, ରୂପା ଥାଳିଆ, ବାଣୀଚନ୍ଦ୍ର, ଶିଶୁ ସଂସାର, ବାଳ ବିକାଶ ପ୍ରଭୃତି ବିଭିନ୍ନ ପତ୍ରପତ୍ରିକା ଓ ସଂକଳନରେ ବହୁ ଗଳ୍ପ, କବିତା ପ୍ରକାଶିତ ଓ ଆକାଶବାଣୀରେ ପ୍ରସାରିତ ହୋଇଛି ।

Digitized by srujanika@gmail.com

ସାଧନାର ସ୍ୱୀକୃତି ସ୍ୱରୂପ ଜଗତସିଂହପୁର ନାଟ୍ୟ ସଂସଦ ତରଫରୁ ଶ୍ରେଷ୍ଠ ଅଭିନେତା ଭାବେ ୧୯୭୬ ମସିହାରେ, ଆକାଶବାଣୀ ଗୀତିକାର ଭାବେ ସ୍ୱୀକୃତି (୧୯୮୩), ବାର୍ତ୍ତିଭୂମି ପ୍ରତିଷ୍ଠାନ (୧୯୮୩-୮୪), ଚନ୍ଦ୍ର ଦର୍ପଣ (୧୯୮୩) ବାଲେଶ୍ୱର ଓ ବାଣୀଚକ୍ର ଭୁବନେଶ୍ୱର ପ୍ରଭୃତି ବିଭିନ୍ନ ପ୍ରତିଷ୍ଠାନରୁ ପୁରସ୍କାର ସ୍ୱରୂପ ପଦକ, ମାନପତ୍ର ପ୍ରାପ୍ତି ସହ ଅଭିନନ୍ଦିତ ହୋଇଛନ୍ତି ।

**୧୨୪ । ଯଦୁନାଥ ଦାଶ ମହାପାତ୍ର :**

ପିତା ରାଜନାରାୟଣ ମାତା ରୂପମଣି (ପାଳକ ପିତା ଶ୍ୟାମସୁନ୍ଦର ପାଳକ ମାତା ସାବିତ୍ରୀ) ଦେବୀ । ନିବାସ ସ୍ଥାନ ନୂଆବଜାର, ବାଲେଶ୍ୱର । ଜନ୍ମସ୍ଥାନ—ସୋର ଥାନାନ୍ତର୍ଗତ କୁଞ୍ଜାଇ ଗ୍ରାମ, ଜି-ବାଲେଶ୍ୱର । ୧୯୨୯ ମସିହା ମାର୍ଚ୍ଚ ପହିଲାରେ ଜନ୍ମଗ୍ରହଣ । ଉଚ୍ଚଶିକ୍ଷା ଲାଭ ପରେ ଆଇନ ବ୍ୟବସାୟ ଓ ରାଜନୀତି ସହ ସାରସ୍ୱତ ସାଧନାରେ ବ୍ରତୀ । ସୁସାହିତ୍ୟିକ ଯଦୁନାଥ ଉପନ୍ୟାସ, ଗଳ୍ପ, କବିତା, ନାଟକ, ଆଲୋଚନା, ଶିଶୁ ସାହିତ୍ୟ, ଅନୁବାଦ ପ୍ରଭୃତି ବିଭାଗରେ ନିଜର ସଫଳତା ପ୍ରଦର୍ଶନ କରି ଯଶସ୍ୱୀ ହୋଇଛନ୍ତି । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ନାଟ୍ୟ ସାହିତ୍ୟ ପୁରସ୍କାର 'ଅଥବା ଅନ୍ଧାର'—(୧୯୭୮ ମସିହା ପାଇଁ) ୧୯୮୪ ମସିହାରେ ଶ୍ରେଷ୍ଠ ନାଟ୍ୟକାର ଭାବେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ବହୁ ଅନୁଷ୍ଠାନରୁ ସମ୍ମାନିତ ଓ ପୁରସ୍କୃତ ।

ସାଧନାଗତ ଅବଦାନ : **ଉପନ୍ୟାସ**—ପ୍ରଳୟ ପୟୋଧି ଜଳେ (୧୯୫୬), ମୃତ ବନ୍ଦରର ଇତିକଥା (୧୯୫୭), ଟିକଏ ଭୁଲପାଇଁ (୧୯୫୮), ବହିଃଶିଖା (ଡ଼ିଟେକ୍ଟିଭ୍ ୧୯୫୮), ମଣିଷ ଜଙ୍ଗଲର ପଶୁ (୧୯୬୦), ଗ୍ରାମ୍ୟ ନଦୀର ତୀରେ (୧୯୬୨), ଭଗ୍ନ ମାନସୀ (୧୯୬୪), ନୀଡ଼ର ସନ୍ଧାନେ (୧୯୬୭), ମାଘ ଶେଷ ମେଘ ଶେଷ (୧୯୬୮), ଲୁହର ଫୁଲ (୧୯୬୯), ଅନ୍ୟାନ୍ୟ ଓ ପ୍ରେମର ପ୍ରଥମ ସମ୍ବୋଧନ (୧୯୭୨), ସାତତାଳ ପଙ୍କ (୧୯୭୪), ସନ୍ତାନ ସେତୁ (୧୯୮୧), କାହାଣୀ କୁବେର ପୁତ୍ରର (୧୯୮୩), ଏ ଦେହ ଦେବାଳୟ (୧୯୮୬), ଶେଷ ସଂଲାପ (୧୯୯୧), ଆଦ୍ୟ ମଧ୍ୟ ପ୍ରାନ୍ତ ୧୯୯୫ ।

**ଗଳ୍ପ** :—ଦୁଇଟି ବୃନ୍ତରେ ଆଠଟି ଫୁଲ (୧୯୫୦ ଲେ—ଯଦୁନାଥ ଓ କଣ୍ଡୁର ଚରଣ ଦାସ) ଜୀବନଜ୍ୱାଳା ଓ ଅନ୍ୟାନ୍ୟ ଗଳ୍ପ (୧୯୫୯), ମୋର ଗଳ୍ପ (୧୯୬୪), କବିତା ଓ ଗଳ୍ପ (୧୯୬୭), ନିଷିଦ୍ଧ ନୈହ୍ରଦ (୧୯୬୯), ସୀତାର ଅଭିଶାପ (୧୯୮୧),

Digitized by srujanika@gmail.com

ନବ୍ଧତ ଚାନ୍ଦ୍ରମା (୧୯୮୧), ମୁଖ ଦର୍ପଣ (୧୯୮୩); ସୂର୍ଯ୍ୟ ଛାପରେ ଜଳୁଥିବା କୁନ୍ତୀ (୧୯୮୮), ନବାଚତ ଗଳ୍ପ (୧୯୯୪) ।

**କବିତା** :—ରକ୍ତମୁଖୀ (୧୯୫୦), ସାର୍ଥକ କବିତା (୧୯୬୧), ଯନ୍ତ୍ରଣାର ଅନ୍ୟନାମ (୧୯୭୪), ହେ ଦୂରନ୍ତ ଝଡ଼ (୧୯୭୭), ମେଘବର୍ଣ୍ଣା (୧୯୮୧), ନଜ ଚଉଡ଼ିରେ ନଜେ (୧୯୮୪), ମନ କନ୍ୟା (୧୯୮୮), ଏବଂ ସମୁଦ୍ର (୧୯୮୮), ନବାଚତ କବିତା (୧୯୯୦) ।

**ନାଟକ** :—ପଥ ଭୁକାଶ (ଏକାଙ୍କିକା—୧୯୫୮), ପରଶମଣି (ଶିଶୁ ନାଟକ ୧୯୫୯), ନୂଆ କଛ ନୁହେଁ, ସୂର୍ଯ୍ୟ ମନ୍ଦର (୧୯୬୨), ସଂଗ୍ରାମ (୧୯୬୪), ଭୁଲ ହୁଏନା (୧୯୬୫), କ୍ଷମା କରିବେ କ (୧୯୭୧), ରାତ୍ରି ଗୋ ତୁମେ କଥା କୁହ (୧୯୭୧), ସେତୁବନ୍ଧ (୧୯୭୩), ଅଥବା ଅନ୍ଧାର (୧୯୭୪), ଅଶ୍ୱାରୋହୀ (ଏକାଙ୍କିକା —୧୯୮୩), ଅଶାନ୍ତ ଦ୍ରୌପଦୀ (୧୯୮୧), ବନ୍ଦୀ ବେଗମ ବାଦ୍‌ଶାହ (୧୯୯୦), କଂସ (୧୯୯୧), କ୍ଷୀର ଚୋର ଗୋପୀନାଥ (ଗୀତନାଟ୍ୟ—୧୯୮୨) ।

**ଶିଶୁ ସାହିତ୍ୟ** :—ଜାଦୁର ବାପୁଜୀ, ପିଲାଏ ଶୁଣ, ପଶୁପକ୍ଷୀ ମଣିଷ, ସୀମା ଟପିଲେ, ବଘଡ଼ଠୁ ସିଂହ, ଘନ ଧୀର, ଏଇ ଦେଶ ଏଇ ମାଟି ।

ଅନୁବାଦ : ଅନ୍ନଦା ଶଙ୍କର ରାୟଙ୍କର 'ସୁଖ' ଓ 'ରାଜ ଅତିଥି' ଉପନ୍ୟାସ ।

ଅନୁବାଦିତ : ସୂର୍ଯ୍ୟ ମନ୍ଦର (ନାଟକ—ହିନ୍ଦୀ), ବକ୍‌ସ (ଶିଶୁ ଗଳ୍ପ—ହିନ୍ଦୀ), wings of the past. (କଛ କବିତାର ଇଂରାଜୀ ଅନୁବାଦ—ଜୟନ୍ତ ମହାପାତ୍ରଙ୍କ ଦ୍ୱାରା ଅନୁବାଦିତ) ।

**ଆଲୋଚନା** : ଓଡ଼ିଆ ନାଟକ ପ୍ରସଙ୍ଗ (୧୯୭୨), ଓଡ଼ିଆ ସାହିତ୍ୟରେ ତ୍ରିବେଣୀ ଯୁଗ ପ୍ରଭୃତି ପ୍ରକାଶିତ ପୁସ୍ତକ ।

୧୨୫ । **ଯୋଗେଶଚନ୍ଦ୍ର ଜେନା** :

ପିତା ଗୌରୀଶଙ୍କର ଓ ମାତା ଉର୍ବଶୀ ଦେବୀ । ବାଲେଶ୍ୱର ଜିଲ୍ଲା ନାମୋ ଗ୍ରାମରେ ତା ୧-୩-୧୯୧୮ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଛନ୍ତି । ଅଧ୍ୟାପନା, ରାଜନୀତି, ପୁଣି ଅଧ୍ୟାପନା ସହ ସାମୟିକ ଭାବେ ସାହିତ୍ୟ ସେବା । ଲିଖିତ ପୁସ୍ତକ : 'ଝରଣା', 'ପଲ୍ଲବ' (କବିତା) ପ୍ରକାଶିତ । ସହକାର, ଦୈନିକ ଆଶା, ପ୍ରଭା, ଶିକ୍ଷକ ଦର୍ପଣ ପ୍ରଭୃତି ପତ୍ରିକାରେ କଛ ଲେଖା ପ୍ରକାଶିତ । ଏତଦ୍‌ବ୍ୟତୀତ ହାତଲେଖା ପତ୍ରିକା ସମ୍ପାଦନା କରିଥିବାର ମଧ୍ୟ ଜଣାଯାଏ ।

୧୨୬ । **ରତନ୍ ମହାନ୍ତ** :

ବାଲେଶ୍ୱର ଜିଲ୍ଲାର ରାଇବଣିଆ ଗ୍ରାମରେ ୧୯୫୧ ମସିହାରେ ଜନ୍ମଗ୍ରହଣ କରିଛନ୍ତି । ଗ୍ରନ୍ଥାବସ୍ଥାରେ ୧୯୭୪ ମସିହାରୁ ୧୯୭୭ ପର୍ଯ୍ୟନ୍ତ ଅଭିନୟ ନିର୍ଦ୍ଦେଶକ ଭାବେ

Digitized by srujanika@gmail.com

ଫଙ୍କୀର ମୋହନ କଲେଜର ନାଟ୍ୟ ପରିଷଦରୁ ମାନପତ୍ର ଲାଭ କରିଛନ୍ତି । ୧୯୭୪ ମସିହାରୁ ଆଜି ପର୍ଯ୍ୟନ୍ତ ଶତାଧିକ ନାଟକରେ ନିର୍ଦ୍ଦେଶନା ଦେଇଥିବାର ଜଣାଯାଏ । ଅଭିନୟରେ ସଫଳତାର ସ୍ୱୀକୃତି ସ୍ୱରୂପ ବହୁ ଆଞ୍ଚଳିକ ପୁରସ୍କାର ଓ ମାନପତ୍ର ପାଇବା ସହିତ ୧୯୮୯ ମସିହାରେ ରାଜ୍ୟ ସ୍ତରୀୟ ନାଟ୍ୟ ଶିଳ୍ପୀ ସମାରୋହରେ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ତରଫରୁ ଶ୍ରେଷ୍ଠ ନିର୍ଦ୍ଦେଶକ ରୂପେ ସମ୍ମାନିତ ହୋଇଛନ୍ତି । (ଅଳକାନନ୍ଦା) ।

୧୨୭ । **ରମାକାନ୍ତ ବେହେରା :**

ପିତାଙ୍କ ନାମ ଭଗବାନ ଚନ୍ଦ୍ର ଓ ମାତା ମୋକ୍ଷଦାମଣି ଦେବୀ । ବାଲେଶ୍ୱର ଜିଲ୍ଲା ଭେରଗାଇ ଗ୍ରାମରେ ତା ୭-୨-୧୯୪୪ ରିଖରେ ଜନ୍ମଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଡିଗ୍ରୀ ହାସଲ କରି ମହାବିଦ୍ୟାଳୟ ସ୍ତରରେ ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଉପନ୍ୟାସ—ଜୀବନର ଘୂର୍ଣ୍ଣି, (ଅପ୍ରକାଶିତ) ଅନେକ ଇତ୍ୟାଦି ପରେ (ପ୍ରକାଶିତ) (୧୯୭୪) । ଅପ୍ରକାଶିତ ନାଟକ—ନାଗବଂଶ । ଗଳ୍ପ ସଂକଳନ—ବିଷାକ୍ତ ବସନ୍ତ । କବିତା ସଂକଳନ—ଆବେଦନ । ପ୍ରକାଶିତ ପ୍ରବନ୍ଧ ସମାଲୋଚନା—ଆମ ବୁଦ୍ଧିଜୀବୀ , ଆମ ସମସ୍ୟ କିଛି ବିଶ୍ୱର ବିଶ୍ଳେଷଣ, ସ୍ୱଳନ୍ତା କାଶ୍ମୀର—ଏକ ଆଗ୍ନେୟ ଦୃଷ୍ଟିପାତ, ସାହିତ୍ୟ ସାଧକ ମହାଭାବ, ସଂକଳନ—ଗଳ୍ପ ଶତକ, କବିତା ଶତକ (ଉତ୍ତର ଓଡ଼ିଶା) । ସମ୍ପାଦନା—ଶଙ୍ଖବେଳା । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ୧୯୮୪ ମସିହାରେ ପ୍ରଜାତନ୍ତ୍ର ତରଫରୁ ବିଷୁବ ସାହିତ୍ୟ ପୁରସ୍କାର, ୧୯୮୫ ମସିହାରେ ବାର୍ତ୍ତାଉର୍ମି ସାହିତ୍ୟ ପ୍ରତିଷ୍ଠାନ ପୁରସ୍କାର ଓ ୧୯୯୧ ମସିହାରେ 'ରଶ୍ମିଦୀପ' ସାହିତ୍ୟ ପୁରସ୍କାର ଲାଭ କରିଛନ୍ତି ।

୧୨୮ । **ରମେଶ ଚନ୍ଦ୍ର ଦତ୍ତ :**

ବାଲେଶ୍ୱର ଜିଲ୍ଲା ଆମୃଡ଼ିହା ଗ୍ରାମରେ ୧୯୧୫ ମସିହା ଫେବୃୟାରୀ ୩ ତାରିଖରେ ଜନ୍ମଗ୍ରହଣ କରି ତା ୧୫-୩-୮୦ ରିଖରେ ଇହଧାମ ପରିତ୍ୟାଗ କରିଛନ୍ତି । ଶିକ୍ଷା ଲାଭ ପରେ ଅଧ୍ୟାପନା ସହିତ ସାରସ୍ୱତ ସାଧନାରେ ବ୍ରତୀ ଥିଲେ । ଲିଖିତ ପୁସ୍ତକ —କବିତା କୁସୁମ (୧୯୭୦), ଆଜିର ବିକ୍ଷିପ୍ତ ଭାବନା (ପ୍ରବନ୍ଧ ସଂକଳନ—୧୯୭୩) ପ୍ରଭୃତି ପ୍ରକାଶିତ ।

୧୨୯ । **ରମେଶ ଚନ୍ଦ୍ର ମହାନ୍ତି :**

ବାଲେଶ୍ୱର ସହର ଅନ୍ତର୍ଗତ ପୁନହାଟ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସମ୍ବାଦପତ୍ର ସମ୍ପାଦକ ଭାବେ ସୁପରିଚିତ ଥିଲେ । ବାଲେଶ୍ୱରରୁ ପ୍ରଜାତନ୍ତ୍ର ପ୍ରକାଶିତ ହେଉଥିବା ସମୟରେ ସେ ତା'ର ସମ୍ପାଦନା କରୁଥିଲେ । ପରେ

Digitized by srujanika@gmail.com

ଦୈନିକ ଆଶାର ସମ୍ପାଦନା କାର୍ଯ୍ୟ ତୁଲାଇଥିଲେ । ‘ଡଗର’ ପତ୍ରିକାର ସହ ସମ୍ପାଦକ ଭାବେ କିଛିବର୍ଷ କାର୍ଯ୍ୟ କରିଥିବାର ଜଣାଯାଏ । ତାଙ୍କ ଲିଖିତ ‘ସ୍ୱର୍ଣ୍ଣଫୁଲ’ କବିତା ସଂକଳନ ପ୍ରକାଶିତ ।

୧୩୦ । **ରଖାଲ ଚନ୍ଦ୍ର ଦାସ :**

ବାଲେଶ୍ୱର ଜିଲ୍ଲା ବାଲିଆପାଳ ଥାନାନ୍ତର୍ଗତ ପଶ୍ଚିମବାଡ଼ ଗ୍ରାମରେ ତା ୯-୧୦-୧୯୪୪ ରିଖରେ ଜନ୍ମଗ୍ରହଣ କରିଛନ୍ତି । କୃଷି କାର୍ଯ୍ୟ ସହ ଜଣେ କୀର୍ତ୍ତନ ଗାୟକ ଭାବେ ସୁପରିଚିତ । ସେ ବଙ୍ଗଳା ଓ ଓଡ଼ିଆ ପଦାବଳି କୀର୍ତ୍ତନ, ନିମାଇଁ ପାଲା, ରାଧାର ମାନଭଞ୍ଜନ, କୀର୍ତ୍ତନ ଓ ଭଜନ ଇତ୍ୟାଦି ଗାନ କରି ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

୧୩୧ । **ରାଘବ ଚୌଧୁରୀ :**

ଏହାଙ୍କ ସମ୍ପର୍କରେ ସାହିତ୍ୟ ଅଧ୍ୟାୟରେ ଆଲୋଚିତ ।

୧୩୨ । **ରାଜକିଶୋର ନାୟକ :**

ପିତାଙ୍କ ନାମ ସୁନା ଓ ମାତା ଆଶାମଣି ଦେବୀ । ମୟୂରଭଞ୍ଜ ଜିଲ୍ଲାର ଦରିପାଳ ଗ୍ରାମରେ ୧୯୫୦ ମସିହା ଜୁନ୍ ୫ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ ପରେ ସରକାରୀ ଚାକିରୀ ସହ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ଲିଖିତ ବହୁ କ୍ଷୁଦ୍ର ଗଳ୍ପ, ଶିଶୁ ଗଳ୍ପ, କବିତା ଓ ପ୍ରବନ୍ଧ ଅଧୁନା, ହୁତାଶନ, ଗଳ୍ପଘର, ବନାନୀ, ବାଇଶି ପାହାଚ, ପ୍ରେମ ଓ ପ୍ରେମ ଗଳ୍ପ, ଶ୍ରୀ ପର୍ଣ୍ଣୀ, ଆସନ୍ନାକାଳ, ପ୍ରତିଶ୍ରୁତି, ପ୍ରଜାତନ୍ତ୍ର, ଶିଶୁଲେଖା ସୁନା ବୋଇତ, ପ୍ରତିଶ୍ରୁତି, ନିକୃଣ, ସ୍ମୃତି, କବିତା—୧୯୮୨, ଆଜିର ଓଡ଼ିଆ ପ୍ରେମ କବିତା, ସଜନୀରେ ବସନ୍ତ ଆସିଛି—୧୯୮୭; ବନଜା, ଅମୃତାୟନ, ପୌରୁଷ, Mayurbhanj District Festival, Souvenir 1992. ପ୍ରଭୃତି ସାମୟିକ ପତ୍ରପତ୍ରିକା, ସଂକଳନ ଓ ସ୍ମରଣିକାରେ ପ୍ରକାଶିତ ହୋଇଛି ।

୧୩୩ । **ରାଧା ମୋହନ ଦାସ ବାବାଜୀ :**

ବାଲେଶ୍ୱର ଜିଲ୍ଲା ସୁଗୋ ଗ୍ରାମରେ ରାଧାମୋହନ ଦାସ ବାବାଜୀ ଜନ୍ମଗ୍ରହଣ କରିଛନ୍ତି । ତାଙ୍କ ରଚିତ ‘ବ୍ରହ୍ମଗୁହ୍ୟ ଗୀତା’ ପ୍ରକାଶିତ ହୋଇଛି ।

୧୩୪ । **ରାଧା ମୋହନ ମହାନ୍ତି :**

ପିତାଙ୍କ ନାମ ଗୋବିନ୍ଦ ଚନ୍ଦ୍ର ଓ ମାତା ମୋତି ଦେଇ । ୧୯୧୧ ମସିହାରେ କଟକ ଜିଲ୍ଲାର ଗୋଲ୍ ନଗରଠାରେ ଜନ୍ମଗ୍ରହଣ କରି ବାରିପଦା ସହରର ସ୍ଥାୟୀ

Digitized by srujanika@gmail.com

ବାସିନ୍ଦା । ସରକାରୀ ଚାକିରୀରୁ ଅବସର ନେଇ ସାହିତ୍ୟ ସାଧନାରେ ବ୍ରତୀ । ଓଡ଼ିଆ ଇଂରେଜୀରେ ଲିଖିତ ଅନେକ ପ୍ରବନ୍ଧ ଛନ୍ଦ ସ୍ମରଣିକା, ପୂଜ୍ୟପୂଜା, ସମ୍ବାଦ ପ୍ରଭୃତି ପତ୍ରପତ୍ରିକା ସ୍ମରଣିକା ଓ ସମ୍ମେଳନରେ ପ୍ରକାଶିତ/ଉପସ୍ଥାପିତ ହୋଇଛି ।

୧୩୫ । **ରାଧାନାଥ ଶତପଥୀ** : (୧୯୩୦—୧୯୮୬)

ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନାନ୍ତର୍ଗତ କଖଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଏକାଧାରରେ ଜଣେ ସୁଦକ୍ଷ ଅଭିନେତା, ଗୀତକାର, ସଙ୍ଗୀତଜ୍ଞ, ସ୍ୱର ନିର୍ଦ୍ଦେଶନା, ସୁଗାୟକ ଭାବରେ ଜୀବନ ଅତିବାହିତ କରିଛନ୍ତି । ତାଙ୍କ ସମ୍ପର୍କରେ 'ବାଲେଶ୍ୱରର ଇତିବୃତ୍ତ' ପୁସ୍ତକରେ ଲିଖିତ ଯଥାର୍ଥ ମନ୍ତବ୍ୟଟି ଉଦ୍ଧାର କରି ସମ୍ମାନ ଜଣାଉଛୁ ମାତ୍ର । "ତାଙ୍କ କଣ୍ଠରୁ ଓଡ଼ିଆ, ବଙ୍ଗଳା ଏବଂ ହିନ୍ଦୀର ଭଜନ, କୀର୍ତ୍ତନ, ଖେଆଲ, ଠୁଙ୍‌ରୀ ଧ୍ରୁପଦ ଆଦି ରାଗରାଗିଣୀ ଓ ସଙ୍ଗୀତ ଯେ ଥରେ ଶୁଣିଛି ସେ କେବେ ଭୁଲିପାରି ନାହିଁ ।"

୧୩୬ । **ରାଧାମୋହନ ସାହୁ** :

ବାଲେଶ୍ୱର ଜିଲ୍ଲା ପଶ୍ଚିମବାଡ଼ ଗ୍ରାମରେ ତା ୨୮-୨-୧୯୫୭ ରିଖରେ ଜନ୍ମ ଗ୍ରହଣ କରିଛନ୍ତି । ଜଣେ ସଙ୍ଗୀତଜ୍ଞ ଓ ଗୀତିକାର ଭାବରେ ସୁପରିଚିତ । ତାଙ୍କ ରଚିତ ଗୀତିକାଗୁଡ଼ିକ : ସାକ୍ଷୀ ଗୋପାଳ, ରାମ ବନବାସ, ପୂର୍ଣ୍ଣମିଳନ, ଲକ୍ଷ୍ମୀ ବର୍ଜନ, କାହିଁକି ମୁଁ ବେଶ୍ୟା ହେଲି, ଜରତା ବେଶ୍ୟା, ଦୁର୍ମିଳାପୁର ବଧ, ରାମରାଜ୍ୟ ନୁହେଁ ଯମରାଜ୍ୟ ପ୍ରଭୃତି ଅପ୍ରକାଶିତ ଗୀତିକା ।

୧୩୭ । **ରାମକୃଷ୍ଣ ମହାପାତ୍ର** :

ପିତାଙ୍କ ନାମ ପ୍ରାଣକୃଷ୍ଣ ମହାପାତ୍ର । ବାଲେଶ୍ୱର ଜିଲ୍ଲାର ରାଇପୁର ଗ୍ରାମରେ ତା ୫-୯-୧୯୫୬ ରିଖରେ ଜନ୍ମଗ୍ରହଣ କରିଛନ୍ତି । ବାଣୀପଦାରେ ଅଧ୍ୟାପନା ସହ ସାରସ୍ୱତ ସଙ୍ଗଠନ ଓ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଡକ୍ଟର ଭୀମା ରାଓ ରାମଜୀ ଆମ୍ବେଦକର (ଓଡ଼ିଆ ରୂପାନ୍ତର ୧୯୧୨) ପ୍ରକାଶିତ । ମହାରାଜା ଶ୍ରୀ ରାମଚନ୍ଦ୍ରଙ୍କ ମୟୂରଭଞ୍ଜ ଶାସନ ଓ 'ଛିନ୍ନ ବୀଣା' (ଗଳ୍ପ ସଂକଳନ) ଅପ୍ରକାଶିତ ରଚନା ।

୧୩୮ । **ରାମଚନ୍ଦ୍ର ମହାପାତ୍ର** :

ପିତାଙ୍କ ନାମ ନାରାୟଣ ପ୍ରସାଦ ଓ ମାତା ବିଦୁମଣି ଦେଈ । ବାଲେଶ୍ୱର ଜିଲ୍ଲା ରାଜନୀଳଗିରିର ନୀଳଗଡ଼ ଗ୍ରାମରେ ୧୯୨୯ ମସିହା ଜୁଲାଇ ୧୫ ତାରିଖରେ ଜନ୍ମ ଗ୍ରହଣ କରିଛନ୍ତି । ସଙ୍ଗୀତ ଶାସ୍ତ୍ରରେ ଉଚ୍ଚଶିକ୍ଷା ଲାଭ କରି ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ବାଲେଶ୍ୱର ସହରର ସ୍ୱର ସଙ୍ଗୀତ ପ୍ରତିଷ୍ଠା କ୍ଷେତ୍ରରେ ଶ୍ରୀ ମହାପାତ୍ରଙ୍କ ଭୂମିକା

Digitized by srujanika@gmail.com

ଉଲ୍ଲେଖନୀୟ । ଜଣେ ଉଚ୍ଚ କୋଟୀର ଛଉ ନୃତ୍ୟ ଶିଳ୍ପୀ । ଓଡ଼ିଶୀ ଓ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତର ପ୍ରବୀଣ ଅଧ୍ୟାପକ କଳାକାର ଭାବରେ ସୁପ୍ରତିଷ୍ଠିତ ।

୧୩୯ । **ଲକ୍ଷ୍ମଣ କୁମାର ଜେନା :**

ପିତାଙ୍କ ନାମ ଦିବାକର ଓ ମାତା ବାଣୀ ଦେଈ । ବାଲେଶ୍ୱର ଜିଲ୍ଲାର ଶିଖରପୁର ଗ୍ରାମରେ ତା ୨୩-୧-୧୯୪୩ ଋଷରେ ଜନ୍ମଗ୍ରହଣ କରିଛନ୍ତି । ଚିକିତ୍ସା ଶାସ୍ତ୍ରରେ ଉଚ୍ଚଶିକ୍ଷା ଲାଭ କରି ସ୍ୱାଧୀନ ଚିକିତ୍ସା ବ୍ୟବସାୟ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଜାଲ (ନାଟକ—୧୯୮୭), ଝିଏଫୁଲ (ଗୀତ କବିତା—୧୯୯୨) ପ୍ରକାଶିତ । ଅପ୍ରକାଶିତ ପୁସ୍ତକ : ପରଦାର ଅନ୍ତରାଳେ (ନାଟକ), ଚଲାପଥ, ଆଜିର ଦୁନିଆଁ (ଏକାଙ୍କିକା), ମୁଁ ଓ ମୋ କବିତା, ଗୀତ ମାଳା, କବିତା ମୋ ଆସନ୍ତାକାଲିର (କବିତା), ରକ୍ତ ନଦୀର ଢେଉ (ଉପନ୍ୟାସ) ପ୍ରଭୃତି ।

ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ୧୯୮୯ ମସିହାରେ ବାର୍ତ୍ତା ଅନୁଷ୍ଠାନ ତରଫରୁ ସମ୍ମାନିତ ହୋଇଛନ୍ତି ।

୧୪୦ । **ଲକ୍ଷ୍ମଣ ମହାନ୍ତ :**

ପିତାଙ୍କ ନାମ ଦେବ ଓ ମାତା ଜାଗିଶ ଦେବୀ । ମୟୂରଭଞ୍ଜ ଜିଲ୍ଲାର କାଳୁଡ଼ିହା ଗ୍ରାମରେ ତା ୧୨-୧-୧୯୫୦ ଋଷରେ ଜନ୍ମଗ୍ରହଣ କରିଛନ୍ତି । ଅଧ୍ୟାପନା ସାଙ୍ଗକୁ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : 'ଅ—ଆ—କ—କ୍ଷ' (୧୯୯୧) ପ୍ରକାଶିତ । ଅପ୍ରକାଶିତ ରଚନା : ବାଣୀ ଦର୍ପଣ, ବ୍ରହ୍ମ ତତ୍ତ୍ୱ ଜିଜ୍ଞାସା, ଶ୍ରୀଶ୍ରୀ ଶିବଗୀତା, ଶ୍ରୀ ଶ୍ରୀ ବ୍ୟାଧ ଗୀତା, ଭାରତର ମହାପୁରୁଷ, ଜଗନ୍ନାଥାଷ୍ଟକ, ଭଜନଶତକମ୍ ଗାଁ ଗହଳି, ଧୂଳିମାଟି, କରମ ତୀର୍ଥ ପ୍ରଭୃତି ପ୍ରବନ୍ଧ, ପଦ୍ୟ, ନାଟକ, ଉପନ୍ୟାସ, ଗୀତି-ନାଟ୍ୟ, ଗୀତ ପ୍ରଭୃତି ବହୁ ରଚନା ଅନ୍ତର୍ଭୁକ୍ତ ।

୧୪୧ । **ଲକ୍ଷ୍ମୀ କୁମାରୀ ଦାସ :**

ପିତାଙ୍କ ନାମ ହରିହର ପ୍ରସାଦ ଓ ମାତା ଚିନ୍ତାମଣି ଦେବୀ । ବାଲେଶ୍ୱର ଜିଲ୍ଲା ରେମୁଣା ଥାନାନ୍ତର୍ଗତ ହାତୀଆଗଣ୍ଡ ଗ୍ରାମରେ ତା ୧୭ ୭-୧୯୨୮ ଋଷରେ ଜନ୍ମଗ୍ରହଣ କରିଛନ୍ତି । ଜଣେ ଆଦର୍ଶ ଗୃହିଣୀ ଭାବରେ ସାରସ୍ୱତ ସାଧନାରେ ଜୀବନ ଅତିବାହିତ କରିଛନ୍ତି । ଲିଖିତ ପୁସ୍ତକ : 'ପୂଜା ଫୁଲ' ପ୍ରକାଶିତ । ଅପ୍ରକାଶିତ ପାଣ୍ଡୁଲିପି ବଣଫୁଲ(କବିତା)—ନୀଳ କହି (ଗଳ୍ପ) । ଏକାଙ୍କିକା ପରିବର୍ତ୍ତନ । ଏତଦ୍‌ବ୍ୟତୀତ ମୟୂରଶିଖି, କୁଙ୍କୁମ, ଆସନ୍ତାକାଲି, ଚରୈବେତି ପ୍ରଭୃତି ପତ୍ରପତ୍ରିକାରେ ପ୍ରବନ୍ଧ ପ୍ରକାଶିତ । ଆକାଶବାଣୀରେ ଗାୟିକା ଗୀତିକାର ଭାବରେ ସୁପରିଚିତା । ସାଧନାର ସ୍ୱୀକୃତି ସ୍ୱରୂପ ସେ ଦୀନକୃଷ୍ଣ ସାହିତ୍ୟ ପରିଷଦ ଜଳେଶ୍ୱର, ଉଦୟପୁର ସାହିତ୍ୟ ପରିଷଦ, ପ୍ରତିଶ୍ରୁତି ପ୍ରତିଷ୍ଠାନ ତରଫରୁ ମାନପତ୍ର ଲାଭ କରିଛନ୍ତି ।

Digitized by srujanika@gmail.com

୧୪୨ । **ଲକ୍ଷ୍ମୀଧର ମହାନ୍ତ :**

ପିତାଙ୍କ ନାମ ଶ୍ରେଷ୍ଠଲାଲ ମହାନ୍ତ । ମୟୂରଭଞ୍ଜ ଜିଲ୍ଲା ଚନ୍ଦଡ଼ା ଗ୍ରାମରେ ତା ୨୨-୫-୧୯୫୩ ରିଖରେ ଜନ୍ମଗ୍ରହଣ କରିଛନ୍ତି । ଜଣେ ଦକ୍ଷ ଛଉନୃତ୍ୟ ଶିଳ୍ପୀ ଭାବରେ ପ୍ରାକ୍‌ପରେ ଭାରତ ଉତ୍ସବ (୧୯୮୩-୮୪)ରେ ଯୋଗଦାନ କରି ନୃତ୍ୟ ପରିବେଷଣ କରି ପ୍ରଶଂସିତ । ଏତଦ୍‌ବ୍ୟତୀତ ସେ ମୟୂରଭଞ୍ଜର ଜଗତେଶ୍ୱର, ବଡ଼ ଜାମବଣୀ, ଜପୋଇ, ନୂଆ ଗାଁ ଦକ୍ଷିଣ ସାହି, ଫୁଲ ବାଡ଼ିଆ, ଆଣୁଆଁ, ଯୋଗି ନୂଆଗାଁ, ଡଲନାଳ, ବାଣୀଶ୍ରୀ, ଛଉନୃତ୍ୟ ପ୍ରତିଷ୍ଠାନ, (ଓଡ଼ିଶା) ଅଦୂର ଡାଙ୍ଗା, ପୋଖରିଆ ଗାଡ଼ର ଗ୍ରାମର ଛଉ ନୃତ୍ୟ ପ୍ରତିଷ୍ଠାନ (ଝାଡ଼ ଗ୍ରାମ—ମେଦନୀପୁର) ସମୂହରେ ନୃତ୍ୟ ଗୁରୁ ରୂପେ ଶିକ୍ଷା ପ୍ରଦାନ କରୁଛନ୍ତି । ସେ କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗ ଆନୁ-କୂଲ୍ୟରେ ୧୯୮୩-୮୪ ମସିହାରେ ବୃତ୍ତି ଲାଭ କରିଥିଲେ ।

୧୪୩ । **ଲକ୍ଷ୍ମୀ ନାରାୟଣ ମହାରଣା :**

ପିତାଙ୍କ ନାମ ମୋହନ ଓ ମାତା ଆଦରମଣି ଦେବୀ । ବାଲେଶ୍ୱର ଜିଲ୍ଲାର ଖୁସାଲଗଞ୍ଜ ଗ୍ରାମରେ ୧୯୨୬ ମସିହା ଅପ୍ରେଲ ୩ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା କରି ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ସାହିତ୍ୟ ସାଧନାରେ ରତ । ଲିଖିତ ପୁସ୍ତକ : ଝନା-ବରିହ ମିହିର, ପ୍ରେମାଞ୍ଜଳି, ସାରିକା (୧୯୬୩), ଯନ୍ତ୍ର ତରୁମଙ୍ଗାଇ (୧୯୮୬), କ୍ଷୀରଶ୍ରେଣୀ-ରସିକ-ବିନୋଦ ପ୍ରଭୃତି ପ୍ରକାଶିତ କାବ୍ୟ ଗ୍ରନ୍ଥ । ଅପ୍ରକାଶିତ ପୁସ୍ତକ : ମୁଗ୍‌ଧ ମାନସ, ମୁକୁନ୍ଦମାଳା, କମଳା ଚରିତ, ସ୍ପନ୍ଦନ, ବ୍ରଜେଶ୍ୱରୀ ଶ୍ରୀରାଧା ପ୍ରବନ୍ଧ (ସପ୍ତର୍ଷି ୧୯୮୪) ଓ ଜ୍ୟୋତିପ୍ରଭା ପତ୍ରିକାରେ ପ୍ରକାଶିତ ମ୍ୟାଜିକ । ସତ୍ ଓ ଅନ୍ୟାନ୍ୟ ଗଳ୍ପ, ମନ୍ଦିର, ଚଲପଥର ସ୍ମୃତି ପ୍ରଭୃତି କାବ୍ୟ, କବିତା, ଜଣାଣ, ଗଳ୍ପ, ପ୍ରବନ୍ଧ ଓ ଆତ୍ମଜୀବନୀ ଅନ୍ତର୍ଭୁକ୍ତ ।

ସାଧନାର ଶ୍ରୀକୃଷ୍ଣ ସ୍ୱରୂପ, ଚନ୍ଦ୍ରପଥ, ବୈଷ୍ଣବ ମିଳନ, କ୍ଷୀର ଶ୍ରେଣୀ ବୋଇତ ବନ୍ଦାଣ ସମିତି, ବାର୍ତ୍ତା ପ୍ରତିଷ୍ଠାନ ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନ, ଫକୀର ମୋହନ ସ୍ମୃତି ପରିଷଦ ଓ ଦୀନକୃଷ୍ଣ ସ୍ମୃତି ପରିଷଦ ତରଫରୁ 'ଲଳିତ କବି' ରୂପେ ମାନପତ୍ର ପ୍ରାପ୍ତି ଓ ସମ୍ବର୍ଦ୍ଧନା ଲାଭ କରିଛନ୍ତି ।

୧୪୪ । **ଲକ୍ଷ୍ମୀ ନାରାୟଣ ସାହୁ :**

ପିତାଙ୍କ ନାମ କ୍ଷେତ୍ରମୋହନ ସାହୁ । ୧୮୯୦ ମସିହା ଅକ୍ଟୋବର ମାସ ୩ ତାରିଖରେ ବାଲେଶ୍ୱର ସହର ବାରବାଟୀରେ ଜନ୍ମଗ୍ରହଣ କରି ୧୯୬୬ ମସିହାରେ ପରଲୋକ ଗମନ କରିଛନ୍ତି । ଜଣେ ସ୍ୱାଧୀନ ଚେତା, ତ୍ୟାଗୀ, ସମାଜସେବୀ ଆଦର୍ଶ

Digitized by srujanika@gmail.com

ପ୍ରସୂତ ଥିଲେ । ସେ ଜୀବନରେ ବହୁଦର୍ଶୀ ଭାବରେ ବହୁ ବିଦ୍ୟା ଅଧ୍ୟୟନ କରିଥିଲେ । ଉଚ୍ଚକୋଟୀର ଗବେଷକ ରୂପେ ବହୁ ପ୍ରବନ୍ଧ ପୁସ୍ତକ ରଚନା କରିଥିଲେ । ଲିଖିତ ପୁସ୍ତକ : ବୀଣା (୧୯୪୩), ବହୁରୂପା (୧୯୫୫), ଓଡ଼ିଶାର ଜୈନଧର୍ମ (୧୯୫୮), ମୋର ବାଉଁଳିଆ ଜୀବନ, ସ୍ତ୍ରୀ ଶିକ୍ଷା, ଦଣ୍ଡନୀତି, ଅରବିନ୍ଦ, ହୃଦୟ ପୃଷ୍ଠ, କାଳନ୍ଦୀ କମଳା, ମଧୁ ବୈଶ୍ୟ, ମଧୁରେଖା, ପ୍ରତିବିମ୍ବ, ନାରୀ କବି ମାଧବୀ, ଓଡ଼ିଶା, ଗଡ଼ଜାତ, ଛିନ୍ନପତ୍ର, ଅଗ୍ନିଲତା ପ୍ରଭୃତି ୭୦ ଖଣ୍ଡ ପୁସ୍ତକ । ସହକାର ଓ ବୈତରଣୀ ପ୍ରଭୃତି ପତ୍ରିକାର ପ୍ରତିଷ୍ଠାତା ସଦସ୍ୟ ।

### ୧୪୫ । ରାଜ ମୋହନ ମହାପାତ୍ର :

ପିତାଙ୍କ ନାମ ରାମହରି ଓ ମାତା ମାଳତୀ ଦେବୀ । ମୟୂରଭଞ୍ଜ ଜିଲ୍ଲାର ବାଙ୍ଗିରିପୋଷି ଥାନାନ୍ତର୍ଗତ ପଣସଡ଼ିହା ଗ୍ରାମରେ ୧୯୦୦ ମସିହା ମାର୍ଚ୍ଚ ୧୫ ତାରିଖରେ ଜନ୍ମଗ୍ରହଣ କରି ୧୯୮୦ ମସିହା ଏପ୍ରିଲ ୪ ତାରିଖରେ ଇହଲୋକ ତ୍ୟାଗ କରିଛନ୍ତି । ଜୀବନକାଳ ମଧ୍ୟରେ ସରକାରୀ ଚାକିରୀ ସହିତ ସାହିତ୍ୟ ସାଧନାରେ ରତ ଥିଲେ । ଲିଖିତ ପୁସ୍ତକ : 'ଅପୂର୍ବ ମିଳନ' (ଉପନ୍ୟାସ), ଗଳ୍ପ କଳ୍ପତରୁ (ଗଳ୍ପ ସଂକଳନ) ଓ କେତେକ କବିତା ପ୍ରକାଶିତ । ଅପ୍ରକାଶିତ ରଚନା : ଚାକର, ସ୍ୱପ୍ନ ନା ସତ୍ୟ (ଉପନ୍ୟାସ) ବ୍ୟତୀତ ଅନେକ କ୍ଷୁଦ୍ର ଗଳ୍ପ, ପ୍ରବନ୍ଧ—ଶ୍ରୀମଦ୍ ଭଗବତ୍ ଗୀତାର ଓଡ଼ିଆ ପଦ୍ୟାନୁବାଦ ଓ ଇଂରେଜୀରେ ଶ୍ରେଷ୍ଠ ଶ୍ରେଷ୍ଠ କବିତା ପ୍ରଭୃତି ରଚନା କରିଛନ୍ତି ।

### ୧୪୬ । ଶ୍ୟାମସୁନ୍ଦର ମହାପାତ୍ର :

ପିତାଙ୍କ ନାମ ଭଗବାନ ଓ ମାତା କନକମଣି ଦେବୀ । ମୟୂରଭଞ୍ଜ ଶିଆଳ-ମୁଣ୍ଡଲୀ ଗ୍ରାମରେ ୧୯୪୩ ମସିହା ସେପ୍ଟେମ୍ବର ୧୯ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଇଂରାଜୀ ଓ ଓଡ଼ିଆ ସାହିତ୍ୟରେ ଉଚ୍ଚତର ଡିଗ୍ରୀ ଲାଭ କରି ବିଶ୍ୱବିଦ୍ୟାଳୟ ସ୍ତରରେ ଅଧ୍ୟାପନା ସାଙ୍ଗକୁ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : (୧) ଭଙ୍ଗ ନନା (ଇଂରାଜୀ ଏକାଙ୍କିକା ଅନୁବାଦ—୧୯୭୮), (୨) ଇଂରେଜୀ ସାହିତ୍ୟର ଇତିହାସ (ଓଡ଼ିଆ ୧୯୭୯), (୩) ଶ୍ୱେତ ହଂସୀର ଜ୍ୱାଳା (ପୋଲାଣ୍ଡ ଦେଶୀୟ କବିତା (ଅନୁବାଦ—୧୯୮୧), (୪) ଓଡ଼ିଆ ଲୋକ ସାହିତ୍ୟ (ପ୍ରବନ୍ଧ ସଂକଳନ—୧୯୮୨), (୫) A study of Oriya Folk-Ballads-1988, (୬) ପାଶ୍ଚାତ୍ୟ ପୁରାଣ ପ୍ରଦର୍ଶିକା—୧୯୯୦, (୭) ସାନ୍ତାଳ ଲୋକ କାହାଣୀ (ଓଡ଼ିଆ ଅନୁବାଦ ସହ—୧୯୯୧), (୮) ସାହିତ୍ୟ ସ୍ୱାନ (ପ୍ରବନ୍ଧ ସଂକଳନ—୧୯୯୧) ପ୍ରଭୃତି ପ୍ରକାଶିତ । ଅପ୍ରକାଶିତ ରଚନା : 'ବାଙ୍ଗ ଗୃହିଣୀ, (୨) A comparative study of Oriya and Santal

Digitized by srujanika@gmail.com

Foik Tales. ଏତଦ୍‌ବ୍ୟତୀତ ଉତଳ, ସୌରଭ ପ୍ରଭୃତିରେ ବହୁ ରମ୍ୟ ରଚନା ପ୍ରକାଶିତ । ଡଃ. ମହାପାତ୍ର ଇଂରାଜି ଭାଷାର ଜଣେ ଉଚ୍ଚକୋଟୀର ସମାଲୋଚକ ଓ ପ୍ରାବନ୍ଧିକ । ବହୁ ଇଂରେଜୀ ପ୍ରବନ୍ଧ ଫୋକଲର, ବିଶ୍ୱଭାରତୀ ରିସର୍ଚ୍ଚ ଜୋର୍ନାଲ, ବିଶ୍ୱଭାରତୀ କ୍ୱାଟାର୍ଲି ପ୍ରଭୃତିରେ ପ୍ରକାଶିତ । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ୧୯୮୩ ମସିହାରେ ସରସ ସାହିତ୍ୟ ସମିତି ତରଫରୁ 'ରସରାଜ' ଉପାଧି ପ୍ରାପ୍ତ ।

### ୧୪୭ । କ୍ଷିତୀଶ ଚନ୍ଦ୍ର ପଣ୍ଡା :

ପିତାଙ୍କ ନାମ କୃଷ୍ଣ ମୋହନ ଓ ମାତା ରୁକ୍ମଣୀ ଦେବୀ । ମୟୂରଭଞ୍ଜ ଜିଲ୍ଲା ବେତନଟୀଠାରେ ଜନ୍ମଗ୍ରହଣ କରିଛନ୍ତି । ପଶୁ ଚିକିତ୍ସା ଶାସ୍ତ୍ରରେ ଶିକ୍ଷା ଲାଭ କରି ସରକାରୀ ଚାକିରୀ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ମାନବ ସଭ୍ୟତାକୁ ମତ୍ସ୍ୟ ଦେଶର ଦାନ—୧ମ—(୧୯୮୨) ଓ ୨ୟ ଖଣ୍ଡ (୧୯୮୭)ରେ ପ୍ରକାଶିତ । ଅପ୍ରକାଶିତ ନାଟକ : ବେଙ୍ଗ ବଣିର ଧାରେ । ଇତିହାସ—ବ୍ରହ୍ମର୍ଷି ଦେଶର ବାର୍ତ୍ତା । ଏତଦ୍‌ବ୍ୟତୀତ ପୂଜ୍ୟପୂଜା, ପ୍ରତିଶ୍ରୁତି, ରାଷ୍ଟ୍ରଦୀପ ପ୍ରଭୃତିରେ କେତେକ ପ୍ରବନ୍ଧ, କବିତା ଓ ଗଳ୍ପ ପ୍ରକାଶିତ ହୋଇଛି ।

### ୧୦୮ । ଶ୍ରୀହରି ଚରଣ ମହାନ୍ତି :

ପିତାଙ୍କ ନାମ ରାମ ନାରାୟଣ ଓ ମାତା କୃଷ୍ଣପ୍ରିୟା ଦେବୀ । ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନାନ୍ତର୍ଗତ କଟିସାହି ଗ୍ରାମରେ ୧୯୩୪ ମସିହା ଫେବୃୟାରୀ ୭ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା କାର୍ଯ୍ୟରୁ ଅବସର ଗ୍ରହଣ କରି ସାରସ୍ୱତ ସାଧନାରେ ରତ ରହିଛନ୍ତି । ଲିଖିତ ପ୍ରବନ୍ଧ ପୁସ୍ତକ : ପୁଣ୍ୟ ଭୂମିର ଗାଥା (୧୯୯୧) ପ୍ରକାଶିତ । ତାଙ୍କ ଲିଖିତ କେତେକ ଗଳ୍ପ, କବିତା ଓ ପ୍ରବନ୍ଧ ପ୍ଲାବନ, ତାର୍ତ୍ତାଉର୍ମି, ରାଷ୍ଟ୍ରଦୂତ, ସମକାଳୀନ ସାହିତ୍ୟ, ଜଙ୍କାସୁ, ଚନ୍ଦ୍ରରେଖା, ସୁବର୍ଣ୍ଣରେଖା, ଶିକ୍ଷା, ପ୍ରତାପ, ସୀମାଶ୍ରୀ, ପ୍ରଭା, ଗୁଞ୍ଜ, କଲ୍ୟାଣ, ମୀନା, ପ୍ରଜାତନ୍ତ୍ର, କବିତା ଶତକ ପ୍ରଭୃତି ପତ୍ରପତ୍ରିକା, ସଂକଳନ ପ୍ରଭୃତିରେ ପ୍ରକାଶିତ । ଏତଦ୍‌ବ୍ୟତୀତ କେତେକ ପ୍ରବନ୍ଧ ଅପ୍ରକାଶିତ ରହିଅଛି । ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ବାର୍ତ୍ତା ପ୍ରତିଷ୍ଠାନ ବାଲେଶ୍ୱର ତରଫରୁ ଦକ୍ଷ ପ୍ରାବନ୍ଧିକ ଭାବେ ମାନପତ୍ର ପ୍ରାପ୍ତି ।

### ୧୪୯ । ଶୁରେନ୍ଦ୍ର ମୋହନ ଦାସ :

ପିତାଙ୍କ ନାମ ଲଳିତ ମୋହନ ମାତା ତାରାମଣି ଦେବୀ । ବାଲେଶ୍ୱର ଜିଲ୍ଲା କୁପାରୀ ନିକଟସ୍ଥ ଅସ୍ତପାଳ ଗ୍ରାମରେ ୧୯୩୭ ମସିହା ଜୁନ୍ ୨୫ ତାରିଖରେ ଜନ୍ମ । ଇଂରାଜୀ ସାହିତ୍ୟରେ ଉଚ୍ଚ ଶିକ୍ଷା ଲାଭ ପରେ ଅଧ୍ୟାପନା ସହ ସାରସ୍ୱତ ସାଧନାରେ ରତ । ଲିଖିତ ପୁସ୍ତକ : କବିତା ସଂକଳନ ସବୁ ଶବ୍ଦ ହଜିଯାଏ (୧୯୯୧) । 'ଓନୋଟି

Digitized by srujanika@gmail.com

ନିଶ୍ୱାସର ଆକାଶ'—(ତିନିଜଣ କବିଙ୍କର ୧୭ଟି ଲେଖାଏଁ କବିତା ସଂକଳନ—୧୯୭୫) ପ୍ରକାଶିତ । ଏତଦ୍‌ବ୍ୟତୀତ ଝଙ୍କାର, ନବରବି, ଆସନ୍ତାକାଲି, ସମାବେଶ, ଦିଗନ୍ତ, ଏକାମ୍ର, ଜୀବନରଙ୍ଗ, ଡଗର, ପ୍ରଜାତନ୍ତ୍ର ପ୍ରଭୃତି ପତ୍ରପତ୍ରିକା ବହୁ ସ୍ମରଣିକାରେ କବିତା, ଗଳ୍ପ ଓ ପ୍ରବନ୍ଧ ପ୍ରକାଶିତ । ଅପ୍ରକାଶିତ ପ୍ରବନ୍ଧ ପାଣ୍ଡୁଲିପି—'ସାହିତ୍ୟ ଓ ସାହିତ୍ୟିକ' ।

୧୫୦ । **ସତ୍ୟଜିତ୍‌ ଦାଶ ମହାପାତ୍ର :**

ପିତାଙ୍କ ନାମ ଯଦୁନାଥ ଓ ମାତା ଲକ୍ଷ୍ମୀପ୍ରିୟା ଦେବୀ । ବାଲେଶ୍ୱର ଜିଲ୍ଲାର ନୂଆବଜାରରେ ୧୯୬୨ ମସିହା ମେ ୧୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଉଚ୍ଚଶିକ୍ଷା ଲାଭ କରି ଅଧ୍ୟାପନା ସାଙ୍ଗକୁ ସାହିତ୍ୟ ସାଧନାରେ ବ୍ରତୀ । ଲିଖିତ କବିତା ସଂକଳନ—ଭଙ୍ଗା ଝର୍କାରେ ସୂର୍ଯ୍ୟୋଦୟ (ଗ୍ରନ୍ଥ ମନ୍ଦିର) ।

୧୫୧ । **ସଦାନନ୍ଦ ଦାସ :**

ପିତାଙ୍କ ନାମ ଇନ୍ଦ୍ରନାରାୟଣ ଓ ମାତା ସୁପ୍ରଭା ଦେବୀ । ବାଲେଶ୍ୱର ଜିଲ୍ଲାର ବାରବାଟି ନିକଟସ୍ଥ ମଣ୍ଡଳଶ୍ରୀ ଠାରେ ୧୯୨୮ ମସିହା ଏପ୍ରିଲ ୨୮ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଶିକ୍ଷା ଲାଭ ପରେ ସରକାରୀ ଚାକିରିରୁ ଅବସର ଗ୍ରହଣ କରି ସାହିତ୍ୟ ସାଧନାରେ ରତ ରହିଛନ୍ତି । ଲିଖିତ ପୁସ୍ତକ : (୧) ଫସଲ (ଗଳ୍ପ—୧୯୫୨), (୨) ମନ ସମୁଦ୍ର (ଗଳ୍ପ—୧୯୫୬), (୩) ମୟୂର କଣ୍ଠୀ (ଗଳ୍ପ—୧୯୯୨) ପ୍ରକାଶିତ ଓ ଜୀବନାଲେଖ୍ୟ (ଗଳ୍ପ ସଂକଳନ) ଅପ୍ରକାଶିତ । ଏତଦ୍‌ବ୍ୟତୀତ ବହୁ ଗଳ୍ପ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ସାଧନାର ସ୍ୱୀକୃତି ସ୍ୱରୂପ ବାର୍ତ୍ତାଦର୍ଶ ପ୍ରତିଷ୍ଠାନ ତରଫରୁ ସମ୍ମାନିତ ହୋଇଛନ୍ତି ।

୧୫୨ । **ସନତ ଦାସ ପଟ୍ଟନାୟକ :**

ପିତାଙ୍କ ନାମ ଶରତ୍‌ଚନ୍ଦ୍ର ଓ ମାତା ବିଷ୍ଣୁପ୍ରିୟା ଦେବୀ । ମୟୂରଭଞ୍ଜ ଜିଲ୍ଲା ବାରିପଦା ସହରର ପୁରୁଣା ହାଟ ସାହିରେ ୧୯୪୭ ମସିହା ଫେବୃଆରୀ ୪ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ କବିତା ସଂକଳନ : (୧) ବିଷ ସାରଙ୍ଗ (୧୯୮୩), (୨) ଚଣ୍ଡିତାମୃତ (୧୯୮୯) ପ୍ରକାଶିତ । ଏତଦ୍‌ବ୍ୟତୀତ କେତେକ ସାମୟିକ ସମାଲୋଚନା/ପ୍ରବନ୍ଧ ରଚିତ ।

୧୫୩ । **ସୁବ୍ରତାରାଣୀ ପାଢ଼ୀ :**

ପିତାଙ୍କ ନାମ ସୁରେନ୍ଦ୍ର କୁମାର ଓ ମାତା ଶୈଳବାଳା ଦେବୀ । ବାଲେଶ୍ୱର ଜିଲ୍ଲାର ଷୋଇ ସାହିଠାରେ ୧୯୩୫ ମସିହା ଅକ୍ଟୋବର ୮ ତାରିଖରେ ଜନ୍ମ । ସରକାରୀ

Digitized by srujanika@gmail.com

ଗୃହକର୍ତ୍ତୀ ସହ ସାହିତ୍ୟ ସାଧନା । ପ୍ରକାଶିତ ପୁସ୍ତକ : 'ତୁମ ପାଇଁ' ଶିଶୁ ସାହିତ୍ୟ । ଏତଦ୍‌ବ୍ୟତୀତ କେତେକ କବିତା ଓ ଗଳ୍ପ ଗଣ୍ଡୁଦୂତ, ଆଜକାଲି, ବାର୍ତ୍ତାବହିଁ ଓ ଝିଲୁଆନନା ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ ଏବଂ ଆକାଶବାଣୀରେ ପ୍ରସାରିତ ହୋଇଛି । ସାହିତ୍ୟ ସାଧନା ନିମନ୍ତେ ଯଦୁମଣି ସାହିତ୍ୟ ସଂସଦ ଓ ବାର୍ତ୍ତାବହିଁ ପ୍ରତିଷ୍ଠାନରୁ ସମ୍ମାନିତା ହୋଇଛନ୍ତି ।

୧୫୪ । **ସମରେନ୍ଦ୍ର ନାୟକ :**

ପିତାଙ୍କ ନାମ ଗୋକୁଳାନନ୍ଦ ଓ ମାତା ସତ୍ୟଭାମା ଦେବୀ । ବାଲେଶ୍ୱର ଜିଲ୍ଲା ଛାଲବଣୀ ଗ୍ରାମରେ ୧୯୫୦ ମସିହା ନଭେମ୍ବର ୬ ତାରିଖରେ ଜନ୍ମ । ବଲେଶ୍ୱର ସହରରେ ବ୍ୟବସାୟ ସହ ସାହିତ୍ୟ ସାଧନାରେ ବ୍ରତୀ । ପ୍ରକାଶିତ ପୁସ୍ତକ : ବାରୁଦ ସ୍ତୂପର (କବିତା—୧୯୭୧), Two Poems on Baliapal (1986), ଆଉ ଚୁପ୍ ରୁହେଁ (୧୯୮୮) । ଅପ୍ରକାଶିତ ରଚନା : ଶୀତର ପକ୍ଷୀ ଓ କୃଷ୍ଣଚିଲ ବରଫ ଫୁଲ, ତୈଳକ୍ଷେତ୍ର-ରଣ କ୍ଷେତ୍ର ଓ ଅନ୍ୟାନ୍ୟ କବିତା, ଯେଉଁଦିନ କବିତା ଲେଖି ହୁଏନି ଓ ବିଭିନ୍ନ କବିତା, ଆମ ସମୟ ଲେଖକ ଏ ଫେନିକସ (ଫିଚର) ଓ ଧଳା ବେଣୀର ଫୁଲ ଓ କେତୋଟି ଗଳ୍ପ ପ୍ରଭୃତି । ଏତଦ୍ ବ୍ୟତୀତ ନାଟକ, ଉପନ୍ୟାସ, ପ୍ରବନ୍ଧ ଓ ସଙ୍ଗୀତ ରଚନା କରିଥିବାର ଜଣାଯାଏ । ସାହିତ୍ୟ ସାଧନାର ସ୍ୱୀକୃତି ସ୍ୱରୂପ ୧୯୮୬ ମସିହାରେ ବାର୍ତ୍ତା ପ୍ରତିଷ୍ଠାନ ଓ ୧୯୯୬ରେ ଆଜକାଲି ପ୍ରତିଷ୍ଠାନ ତରଫରୁ ସମ୍ମାନିତ ହୋଇଛନ୍ତି ।

୧୫୫ । **ସାତକଡ଼ି ହୋତା :**

ପିତାଙ୍କ ନାମ ବିଶ୍ୱେଶ୍ୱର ଓ ମାତା କାଞ୍ଚନ ଦେବୀ । ମୟୂରଭଞ୍ଜ ଜିଲ୍ଲା ବାଙ୍କିସ୍ଥି-ପୋଷି ଥାନାନ୍ତର୍ଗତ ଜଗନ୍ନାଥ ଝୁଣ୍ଡା ଗ୍ରାମରେ ୧୯୨୯ ମସିହା ଅକ୍ଟୋବର ୨୯ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଉଚ୍ଚ ପଦସ୍ଥ ସରକାରୀ କର୍ମରୁ ଅବ୍ୟାହତି ନେଇ ଅବସର ଜୀବନ ଯାପନ କରିବା ସହିତ ଆଜୀବନ ସାରସ୍ୱତ ସାଧନାରେ ରତ ଅଛନ୍ତି । ତାଙ୍କର ୧୪ ଗୋଟି ଉପନ୍ୟାସ, ୧୪ ଗୋଟି ଗଳ୍ପ ସଂକଳନ, ଗୋଟିଏ କବିତା ସଂକଳନ ପ୍ରକାଶିତ । ଏତଦ୍ ବ୍ୟତୀତ ଶତାଧିକ ପ୍ରବନ୍ଧ ରଚନା କରିଥିବାର ଜଣାଯାଏ ।

ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ 'ଅଶାନ୍ତ ଅରଣ୍ୟ' (ଉପନ୍ୟାସ) ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ଲିଖିତ ପୁସ୍ତକ : ଗଳ୍ପ— (୧) ଫୁଲର ଅନେକ ସୁରଭି—(୧୯୭୭), (୨) ଶୋଣିତର ସ୍ୱପ୍ନ (୧୯୭୮), (୩) ବେଗମ ସାହେବ (୧୯୬୮), (୪) କବରଗୁରର କନ୍ୟା (୧୯୮୦), (୫) ଜଗନ୍ନାଥଙ୍କ ହସ (୧୯୮୬), (୬) ନୀଳାଚଳକୁ ରାସ୍ତା (୧୯୮୨), (୭) ମଧୁଲଗ୍ନ (୧୯୮୨), (୮) ଅସତର୍କ ମୁହୂର୍ତ୍ତ

Digitized by srujanika@gmail.com

(୧୯୮୨), (୯) ମହାସ୍ନାନ (୧୯୮୧), (୧୦) ମୋ ଗଳ୍ପର ନାୟକ (୧୯୮୪), (୧୧) ସାହାନ୍ତର ଶୋଭା (୧୯୮୨), (୧୨) ଲଙ୍ଗଳା ରଜା (୧୯୮୧) । ଉପନ୍ୟାସ—(୧୩) ବ୍ୟାକୁଳ ହୃଦୟ (୧୯୬୬), (୧୪) ସ୍ୱପ୍ନ ଶିଉଳି (୧୯୬୭), (୧୫) ଏତେ ସ୍ୱପ୍ନ ଏତେ ଆଲୋକ (୧୯୭୬), (୧୬) ଅନେକ ଦିଗନ୍ତ (୧୯୮୧), (୧୭) ଅଶାନ୍ତ ଅରଣ୍ୟ (୧୯୮୪), (୧୮) ଶତାବ୍ଦୀର ଶୋଷ (୧୯୮୭), (୧୯) ପ୍ରଥମ ଅଧ୍ୟାୟ (୧୯୮୭), (୨୦) ରାଜଧାନୀର ରଙ୍ଗ (୧୯୮୮), (୨୧) କଣ୍ଟକଶିକ୍ଷ (୧୯୮୯), (୨୨) ପ୍ରଶ୍ନପର ପ୍ରଶ୍ନ (୧୯୮୮), (୨୩) ଭଙ୍ଗା କାଚ (୧୯୮୮), (୨୪) ସୂର୍ଯ୍ୟ ଉଇଁଲେ ସ୍ୱପ୍ନ (୧୯୮୯), (୨୫) ଅସମୟ (୧୯୮୯), (୨୬) ମୁହାଁମୁହିଁ (୧୯୯୨) । କବିତା—ମଧୁଚ୍ଛନ୍ଦା (୧୯୬୬) । ଗଳ୍ପ—ସବା· ଶେଷରେ (୧୯୯୧), ଶେଷ ସମ୍ବଳ (୧୯୯୧) ଉପନ୍ୟାସ—ମର୍ତ୍ତ୍ୟନଗର ଓ ଓ ଆକାଶରେ ଘର (୧୯୯୨) ।

୧୫୬ । **ସୁକୁମାର ଦାସ :**

ପିତାଙ୍କ ନାମ ·ପୀତବାସ ଓ ମାତା ଅନ୍ନପୂର୍ଣ୍ଣା ଦେବୀ । ବାଲେଶ୍ୱର ଜିଲ୍ଲା ଆରୁହାବୃତ୍ତି ଗ୍ରାମରେ ତା ୫-୨-୧୯୬୧ ରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ସରକାରୀ କାର୍ଯ୍ୟ ଓ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ କବିତା ପୁସ୍ତକ : ମମତାର ଫୁଲ (୧୯୮୮), ଶତାବ୍ଦୀର ସ୍ୱର (୧୯୯୦) ପ୍ରକାଶିତ । ଏତଦ୍‌ବ୍ୟତୀତ ଓଡ଼ିଶାର ପ୍ରତିଷ୍ଠିତ ପତ୍ରପତ୍ରିକାରେ ଗଳ୍ପ ଓ କବିତା ପ୍ରକାଶିତ । ଗୀତିକାର ଭାବରେ କେତେକ କବିତା ଆକାଶବାଣୀ କେନ୍ଦ୍ରମାନଙ୍କରେ ପ୍ରସାରିତ । ଏହାଛଡ଼ା କେତେକ ରଚନା ଅପ୍ରକାଶିତ ଭାବରେ ରହିଅଛି । ସାଧନାର ସ୍ୱୀକୃତି ସ୍ୱରୂପ କେତେକ ସାହିତ୍ୟ ସଂସ୍ଥା ତରଫରୁ ସମ୍ମାନିତ । ସର୍ବଭାରତୀୟ କବି ସମ୍ମିଳନୀରେ ଭାରତର ବହୁ ସ୍ଥାନରେ ଯୋଗଦାନ ।

୧୫୭ । **ସୁଧାଂଶୁ ଶେଖର ପ୍ରଧାନ :**

ପିତାଙ୍କ ନାମ ବଂଶୀଧର ମାତା ଲକ୍ଷ୍ମୀପ୍ରିୟା ଦେବୀ । ବାଲେଶ୍ୱର ଜିଲ୍ଲା ଶାଳ-କୋଠା ଗ୍ରାମରେ ତା ୧୬-୬-୧୯୪୯ ରିଖରେ ଜନ୍ମ । ଉଚ୍ଚତର ଶିକ୍ଷା ଲାଭ କରି ଅଧ୍ୟାପନା କାର୍ଯ୍ୟ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଉତ୍ତର ଓଡ଼ିଶାର ଲୋକନାଟ୍ୟ (୧୯୭୯), ଏମିତି ଆସେ (ଏକାଙ୍କିକା—୧୯୭୯), ତାକୁ ଖୋଜିଲି କଏ ଓ ଅନ୍ୟାନ୍ୟ ଗଳ୍ପ (୧୯୮୦), ଉତ୍ତରାଶାର ନୀଳ ଲୋହିତ (କାବ୍ୟ—୧୯୮୦), ତୃତୀୟ ପୁରୁଷ (ଏକାଙ୍କିକା—୧୯୮୧), ଜନମାନସର ଗଦାଧର (ଜୀବନୀ—୧୯୮୮), ଗଣିତ ଗଳ୍ପ କଥାରେ ସଙ୍ଗୀତ ଓ ପାଥେୟ (ନାଟକ), 'ଦକ୍ଷିଣେଶ୍ୱର ବୃତ୍ତାନ୍ତ' ମଧ୍ୟରୁ କେତେକ ପ୍ରକାଶିତ । କେତେକ ଏକାଙ୍କିକା ଅଭିନୀତ ଓ ଅପ୍ରକାଶିତ ରହିଅଛି । ସାହିତ୍ୟ ସାଧନାର

Digitized by srujanika@gmail.com

ସ୍ୱୀକୃତ ସ୍ୱରୂପ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଓ ଓଡ଼ିଶା ସାହିତ୍ୟ ଏକାଡେମୀରୁ ପ୍ରମାଣପତ୍ର ଲାଭ କରିଛନ୍ତି । ଜଣେ ନାଟ୍ୟକାର, କବି, ଗାଳ୍ପିକ ଓ ଜୀବନୀ ଲେଖକ ଭାବେ ସୁପ୍ରତିଷ୍ଠିତ ।

୧୫୮ । **ସୁରେନ୍ଦ୍ର ନାଥ ଦାସ :**

ପିତାଙ୍କ ନାମ କୃଷ୍ଣ କୁମାର ଓ ମାତା ଦୁର୍ଗାବତୀ ଦେଈ । ସନ ୧୯୩୪ ମସିହା ଚତୋଉ ଅମାବାସ୍ୟା ତିଥିରେ କଟକ ଜିଲ୍ଲାର କଣ୍ଡାବଣିଆ ଗ୍ରାମରେ ଜନ୍ମ । ମୋହରିର କାର୍ଯ୍ୟ ସହ ସାହିତ୍ୟ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ସମସ୍ୱର ସ୍ୱପ୍ନ (ଗଳ୍ପ— ୧୯୮୧) ପ୍ରକାଶିତ । ଗାଈ ଲଙ୍ଗୁ ଧାରେ ଲୁହ (ଗଳ୍ପ), କବିତା ଗୁଚ୍ଛ, ଜୟଦେବ ଓ ଶକୁନ୍ତଳା (ନୃତ୍ୟ ନାଟିକା) ଏବଂ କେତେକ ଉପନ୍ୟାସ ଅପ୍ରକାଶିତ । ସାଧନାର ସ୍ୱୀକୃତି ସ୍ୱରୂପ କେତେକ ଆନୁଷ୍ଠାନିକ ପୁରସ୍କାର ଲାଭ କରିଛନ୍ତି । ଭକ୍ତପ୍ରଭା, ପୂଜ୍ୟପୂଜା, ପ୍ରଭୃତିରେ ଲେଖାମାନ ପ୍ରକାଶିତ । ଜଣେ ସଫଳ ଅଭିନେତା ଭାବେ ମଧ୍ୟ ପ୍ରତିଷ୍ଠିତ ।

୧୫୯ । **ସୁରେନ୍ଦ୍ର ନାଥ ମହାନ୍ତି :**

ପିତାଙ୍କ ନାମ କୃଷ୍ଣ ମୋହନ ଓ ମାତା ଉଦୟମଣି ଦେବୀ । ମୟୂରଭଞ୍ଜ ଜିଲ୍ଲାର କୁଆମରାଠାରେ ୧୯୦୪ ମସିହାରେ ଜନ୍ମ । ଅଧ୍ୟାପନା କର୍ମରୁ ଅବସର ଗ୍ରହଣ କରି ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଭକ୍ତ ଲକ୍ଷ୍ମୀ ବଳାଙ୍ଗୀ (୧୯୮୫), ମୟୂରଭଞ୍ଜ ମହାରାଜା ଶ୍ରୀ ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ (୧୯୮୮), ପୀୟୂଷ ନିର୍ଝର (୧୯୯୧), କୃଷ୍ଣାବତାର (୧୯୯୧) ପ୍ରଭୃତି କାବ୍ୟ ପ୍ରକାଶିତ । କବିଙ୍କର ବହୁ ଲେଖା ବାର୍ତ୍ତାଉର୍ମି, ପ୍ରତିଶ୍ରୁତି, ମେଦାଯନ, ଚତୁର୍ବେଦ ପ୍ରଭୃତି ସାମୟିକ ପତ୍ରପତ୍ରିକାରେ ପ୍ରକାଶିତ । ସାଧନାର ସ୍ୱୀକୃତି ସ୍ୱରୂପ ବାର୍ତ୍ତାଉର୍ମି, ବାଲେଶ୍ୱରର ପୂଜ୍ୟପୂଜା, (ବାରିପଦା) ନିଖିଳ ଉତ୍କଳ ଲେଖକ ସମ୍ମିଳନୀ ଓ ଉତ୍କଳମଣି ଶତବାର୍ଷିକ କମିଟି ମୟୂରଭଞ୍ଜ ତରଫରୁ ପୁରସ୍କୃତ ଓ ମାନପତ୍ର ପ୍ରାପ୍ତ ।

୧୬୦ । **ସୁରେଶ ଚନ୍ଦ୍ର କର :**

ପିତାଙ୍କ ନାମ ଦେବାନନ୍ଦ ଓ ମାତା ଜାହ୍ନବୀ ଦେବୀ । ମୟୂରଭଞ୍ଜ ଜିଲ୍ଲା ଝାଡ଼ପୋଖରିଆ ଥାନାନ୍ତର୍ଗତ କେନ୍ଦୁଆ ଗ୍ରାମରେ ୧୯୨୩ ମସିହା ଏପ୍ରିଲ ୨୩ ତାରିଖରେ ଜନ୍ମ । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା କାର୍ଯ୍ୟରୁ ଅବସର ଗ୍ରହଣ କରିଛନ୍ତି । ୧୯୩୮-୩୯ ମସିହାରୁ ଭକ୍ତରଶ୍ମି, ପୂଜ୍ୟପୂଜା, ଚତୁର୍ବେଦ, ମୟୂରାକ୍ଷୀ ପ୍ରଭୃତି ପତ୍ରିକାରେ ଅନେକ କବିତା ଓ ପ୍ରବନ୍ଧ ପ୍ରକାଶିତ ।

୧୬୧ । **ସୁଭାଷ ଚନ୍ଦ୍ର ହୋତା :**

ପିତାଙ୍କ ନାମ ମନ୍ମଥ ନାଥ ଓ ମାତା ପ୍ରତିମା ଦେବୀ । ସିଂହଭୂମ ଜିଲ୍ଲାର ବହଡ଼ାଗୋଡ଼ା ଥାନାର ଖମାର ଗ୍ରାମରେ ତା ୨୫-୧୦-୧୯୪୦ ରିଖରେ ଜନ୍ମ । ଅଧ୍ୟାପନା

Digitized by srujanika@gmail.com

ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ବିପ୍ଳବୀ, ପଞ୍ଚସ୍ୱାମୀ (୧୯୮୬), ରକ୍ତ କଳିକା (୧୯୮୭), ଭାରତ ଜୟନ୍ତୀ ପ୍ରଭୃତି ପ୍ରକାଶିତ ଓ ପୁରସ୍କୃତ । ଅପ୍ରକାଶିତ ନାଟକ : ଭଞ୍ଜ ଭୂମିରେ କାଳିଆ, ଅନୁତାପ, ଅମର ଶହୀଦ, ଦଶଭୂଜା, ରକ୍ତେ ହ୍ୱରି ମାରେ କଏ, ମୁଁ ହାରି ଯାଇଛି, ଭୁଲ, ହାସାସ୍ୟ ଖେଳଅ ମାସ୍ଥାମ୍, ଭକ୍ତ ପ୍ରହ୍ଲାଦ, ଆଲୋକ ଶିଖା, ଝଡ଼, ପ୍ରେମ ଶିକାର, ଶାନ୍ତ ଉତ୍କଳେ ଅଶାନ୍ତିର କୋହ, ଜୀବନ ଗତି ପ୍ରଭୃତି । ଏତଦ୍‌ବ୍ୟତୀତ ଅନେକ କବିତା ଓ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକା, ସଂକଳନ, ସ୍ମରଣିକାରେ ପ୍ରକାଶ ପାଇଛି । ସାହିତ୍ୟ ସାଧନା ବ୍ୟତୀତ ଶ୍ରୀ ହୋତା ଏକାଧାରରେ ଜଣେ ସଙ୍ଗୀତଜ୍ଞ, ଗାୟକ, ବାଦକ ଓ ସୁଦକ୍ଷ ଅଭିନେତା ଭାବରେ ପ୍ରତିଷ୍ଠିତ ।

ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ବହୁ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

୧୬୨ । **ସୌରୀନ୍ଦ୍ର ନାଥ ବାରିକ :**

ପିତାଙ୍କ ନାମ ଦୈତାରି ଓ ମାତା ଶଙ୍କରୀ ଦେବୀ । ୧୯୩୮ ମସିହା ଅକ୍ଟୋବର ୩ ତାରିଖରେ ବାରିପଦା ସହରର ଲାଲ ବଜାରରେ ଜନ୍ମଗ୍ରହଣ କରିଛନ୍ତି । ଇଂରେଜୀ ସାହିତ୍ୟରେ ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା ସହ ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ କବିତା ପୁସ୍ତକ : ସମାନ୍ୟ କଥନ—(୧୯୬୫), ଉପସଂହାର (୧୯୮୧), ଗୁଣୁ ଗୁଣୁ ଚହଟ (୧୯୮୭), ଆକାଶ ପରି ନିବିଡ଼, ଲହୁଠୁ ବି ଅନ୍ତରଙ୍ଗ, ଅଳ୍ପ ଭାରତ (୧୯୯୦), ଆମେ ଦୁହେଁ (୧୯୯୧) । **ସମାଲୋଚନା**—ଅନ୍ୱେଷାର ସ୍ୱର (୧୯୮୨), ଚେତନାର ସ୍ନେହଦ (୧୯୮୩), ସତ୍ୟର କୁହୁକ (୧୯୯୦), ବାମନର ପାଦ (୧୯୯୧), ବୈକୁଣ୍ଠନାଥ ପଟ୍ଟନାୟକ (୧୯୯୦—ମେକର ଅବ୍ ଇଣ୍ଡିଆନ ଲିଟରେଚର— ଇଂରେଜୀରେ ଲିଖିତ । **ଅନୁବାଦ**—ବିଗ୍ରହ (୧୯୮୯—କାଫ୍‌କା ଦ ଟ୍ରାଏଲ), ମହାନ୍ ଓ ସୁନ୍ଦର ଧାରଣାର ମୂଳ ଉତ୍ସ—ଏକ ତାତ୍ତ୍ୱିକ ଆଲୋଚନା (୧୯୭୫) । (ଏଡ଼ମଣ୍ଡ ବାର୍କଙ୍କର ଫିଲଜଫିକାଲ ଇନ୍‌କ୍ୱାରୀ ଇନ୍ ଟୁ ଦ ଓରିଜିନ ଅଫ୍ ଆଓ୍ୱାର ଆଇଡ଼ିଆଜ୍ ଅଫ୍ ଦ ସବଲିମ ଆଣ୍ଡ ବିଉଟିଫୁଲ) ।

ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ୧୯୮୮ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ଏତଦ୍‌ବ୍ୟତୀତ ଓଡ଼ିଶା ସାହିତ୍ୟ ଏକାଡେମୀ; ପ୍ରଜାତନ୍ତ୍ର ସମିତିର ବିଷୁବ ସମ୍ମେଳନ ଓ ଧରିତ୍ରୀ ତରଫରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

୧୬୩ । **ହରନାରାୟଣ ମିଶ୍ର :**

ପିତାଙ୍କ ନାମ ବୈଦ୍ୟନାଥ ଓ ମାତା କମ୍ବୁପ୍ରିୟା ଦେବୀ । ମୟୂରଭଞ୍ଜ ଜିଲ୍ଲାର ବାରିପଦା ସହରରେ ୧୯୬୩ ମସିହା ସେପ୍ଟେମ୍ବର ୧୦ ତାରିଖରେ ଜନ୍ମଗ୍ରହଣ

Digitized by srujanika@gmail.com

କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ମୂର୍ଛନା (ଗୀତି କବିତା—୧୯୮୭), ନବ ମଲ୍ଲିକା (କବିତା—୧୯୯୦), ଇଂରାଜୀ 'ଦି ଟେଲିଗ୍ରାଫ' ପତ୍ରିକାରେ 'Tho Go' କବିତା ପ୍ରକାଶିତ । ଆକାଶବାଣୀ ବାରିପଦାରେ ବକ୍ତୃତା ପ୍ରସାରିତ ।

୧୬୪ । **ହରିପଦ ମହାନ୍ତ** :

ପିତାଙ୍କ ନାମ ମୃତ୍ୟୁଞ୍ଜୟ ଓ ମାତା ଚଞ୍ଚଳୋଇମା ଦେବୀ । ବାଲେଶ୍ୱର ଜିଲ୍ଲା ନରିଗ୍ରାବାଦ ଗ୍ରାମରେ ୧୯୪୭ ମସିହା ଅଗଷ୍ଟ ୨୩ ତାରିଖରେ ଜନ୍ମ । ଅଧ୍ୟାପନା ସାଙ୍ଗକୁ ସାହିତ୍ୟ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଓଡ଼ିଆ ଭଜନ ଓ ଜଣାଣ (୧୯୮୮) ପ୍ରକାଶିତ । ଏତଦ୍‌ବ୍ୟତୀତ 'ଅନାଗତର ସନ୍ଧାନେ' ଗଳ୍ପ ଲେଖି ପୁରସ୍କୃତ ହୋଇଛନ୍ତି ।

୧୬୫ । **ହରି ପ୍ରସାଦ ଦାସ** :

ସୁନହଟ, ବାଲେଶ୍ୱର । ଲିଖିତ ପୁସ୍ତକ : ସ୍ତବମାଳା (ଅନୁବାଦ ୨ୟ ସଂକଳନ——୧୯୦୯), ଧ୍ରୁବ ଚରିତ—(ପଦ୍ୟ, ୨ୟ—୧୯୧୯), ବିଳାପ ପଞ୍ଚକ (୧ମ—୧୯୩୦), ସ୍ତୋତ୍ର ଚନ୍ଦ୍ରିକା—(୧୯୨୮), ହଂସ ଦୂତ (ପଦ୍ୟାନୁବାଦ—୧୯୩୭), ସାବିତ୍ରୀ (ଖଣ୍ଡ କାବ୍ୟ—୧୯୩୩), ଇଂରାଜୀ ଓଡ଼ିଆ ବ୍ୟାକରଣ, ଭୂଗୋଳ ସାର ସଂଗ୍ରହ ପ୍ରଭୃତି ରଚନା ପ୍ରକାଶିତ ।

୧୬୬ । **ହରିଶ୍ଚନ୍ଦ୍ର ଦାସ** :

ପିତାଙ୍କ ନାମ ବାଛନ ଚରଣ ଦାସ ଓ ମାତା ଶୁକମଣି ଦେବୀ । ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନାନ୍ତର୍ଗତ ଚଣ୍ଡୀପୁର ଗ୍ରାମରେ ୧୯୩୫ ମସିହା ଜୁଲାଇ ୧ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଡିଗ୍ରୀ ଲାଭ କରି ଉଚ୍ଚପଦସ୍ଥ ସରକାରୀ ଚାକିରୀ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ ଓଡ଼ିଆ—(୧) ଦଶ ମହାବିଦ୍ୟା; (୨) ଶ୍ରୀକୃଷ୍ଣ ଚୈତନ୍ୟ, (୩) ତନ୍ତ୍ର ଦର୍ଶନ, (୪) ଦେବୀ ରହସ୍ୟ । ଇଂରାଜୀ :—(1) Resourses and Responses in Orissan villages. 2—Tantricism : A study of Yogini cult, 3—Cultural Development in Orissa 4—Military History of Kalinga 5—A Guide to Khiching Museum (1991), 6—Iconography of Sakta Divinities 7—Buddhism and Jainism (Ed), 2-Folk-Music and Dance (Ed) 8—Sri Jagannath in Religious Life of India (Ed)

Digitized by srujanika@gmail.com

9—Sri Chaitanya in the Religious life of India (Ed) 10—Tribal Culture of India (1991). 11—A Guide to Orissa State Museum (Ed), 12—Glimpses of History and Culture of Balasore (Ed), 13—1000 years of Cuttack(Ed) 14—History and Culture of Bhadrak (ed. jointly), 1991. Published more than 400 research papers in English and Oriya on history, architeeture, religion, tribal culture and music· One of the Editors of the Orissa Historical Research Journal. ଏତଦ୍‌ବ୍ୟତୀତ ଅନେକ ଜାତୀୟ ଓ ଆନ୍ତର୍ଜାତୀୟ ସେମିନାରରେ ଅଂଶ ଗ୍ରହଣ ସହ ପ୍ରବନ୍ଧ ଉପସ୍ଥାପିତ ।

**୨୬୭ । ହରିଶ୍ଚନ୍ଦ୍ର ସରକାର :**

୨୯୦୫ ମସିହାରେ ବାଲେଶ୍ୱର ସହରରେ ଜନ୍ମ । ଲିଖିତ ପୁସ୍ତକ : ବାଲେଶ୍ୱର (ପଦ୍ୟ), ସତୀ ଗଙ୍ଗା ଓ ଅନୁପ ସହର (ପଦ୍ୟ), ଶିବାଜୀ, ଭାରତବର୍ଷର ଇତିହାସ, ସାର ସଂଗ୍ରହ, ରାମାୟଣ ମହାଭାରତ ସାର ସଂଗ୍ରହ, ଅଙ୍କସୂତ୍ର, ଶିଶୁର ଶରୀର ପାଳନ ।

**୨୬୮ । ହରିଶ୍ଚନ୍ଦ୍ର ବଡ଼ାଳ :**

ପିତାଙ୍କ ନାମ କୃଷ୍ଣମୋହନ ଓ ମାତା ହୀରାମଣି ଦେବୀ । ବାଲେଶ୍ୱର ଜିଲ୍ଲାର ବଟେଶ୍ୱର ଗ୍ରାମରେ ୨୯୦୪ ମସିହା ଏପ୍ରିଲ ୨୨ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଉଚ୍ଚ ପଦସ୍ଥ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : (୧) ଦେଶର ଡାକ (ନାଟକ), (୨) ଲୀଳା ସଙ୍ଗିନୀ (ଗୀତନାଟ୍ୟ), (୩) ପ୍ରବାସ—ପ୍ରଣୟ (ଉପନ୍ୟାସ), (୪) ଅନାବନା (ଗଳ୍ପ), (୫) ସ୍ୱାମୀ ବାବା ଓ (୬) ଚିଠିର ଜବାବ ରମ୍ୟ ରଚନା) । ସାଧନାର ସ୍ୱୀକୃତି ସ୍ୱରୂପ ଶ୍ରୀ ବଡ଼ାଳ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ସୁପ୍ରସିଦ୍ଧ ସବୁଜ ସମିତି ଓ ସର୍ବଭାରତୀୟ ପି ଇ·ଏନ୍· ସାହିତ୍ୟ ସଂସ୍ଥାର ସଦସ୍ୟ ଭାବେ ଶ୍ରୀ ବଡ଼ାଳ ସୁପରିଚିତ ।

**୨୬୯ । ହରେକୃଷ୍ଣ ଦେ :**

ପିତାଙ୍କ ନାମ ଝାଡ଼େଶ୍ୱର ଓ ମାତା ରାଧାମଣି ଦେବୀ । ବାଲେଶ୍ୱର ଜିଲ୍ଲା ବାଲିଆପାଳ ଥାନାନ୍ତର୍ଗତ ଇକଡ଼ପାଳ ଗ୍ରାମରେ ତା ୩-୮-୧-୧୯୨୪ ରିଖରେ ଜନ୍ମ-ଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା କାର୍ଯ୍ୟରୁ ଅବସର ଗ୍ରହଣ କରିଛନ୍ତି । ଲିଖିତ ପୁସ୍ତକ : ଛଅ ଖଣ୍ଡିଆ, କନ ଆପଣ (୧୯୬୫), ପ୍ରକାଶିତ । ଅପ୍ରକାଶିତ କ୍ଷୁଦ୍ର

Digitized by srujanika@gmail.com

କବିତା ପୁସ୍ତକ : ସୁବର୍ଣ୍ଣରେଖା (କାବ୍ୟ). ଉତ୍ତର ବାଲେଶ୍ୱରର ଇତିହାସ (କବିତା) । କେତେକ ନାଟକ, ନାଟିକା ଓ ବହୁ ସଙ୍ଗୀତ ରଚନା, ନାଟ୍ୟାନୁଷ୍ଠାନମାନଙ୍କରେ ଅଭିନୀତ ଓ ଗୀତ ହୋଇଥିବାର ଜଣାଯାଏ । ପାଠ୍ୟପୁସ୍ତକ—ଟେନ୍‌ସ ଆଣ୍ଡ ଟ୍ରାନ୍‌ସ୍ଲେସନ ।

**୧୬୦ । ହରେକୃଷ୍ଣ ମହାନ୍ତି :**

ବାଲେଶ୍ୱରର ଶିଆଳପୁର ଗ୍ରାମରେ ୧୯୩୨ ମସିହାରେ ଜନ୍ମ । ଲିଖିତ ଉପନ୍ୟାସ : ଚିଥିଲିପି, ପଦ ସେବକା, ନାରୀ ଓ ନରକ, କୁଆଁରୀ ମନର ଚେଉ ଇତ୍ୟାଦି ।

**୧୬୧ । ହାରାଧନ ଭଞ୍ଜ :**

ପିତାଙ୍କ ନାମ ମହେନ୍ଦ୍ର ଭଞ୍ଜ । ବାଲେଶ୍ୱର ଜିଲ୍ଲାର ଅଲାଲପୁର ଗ୍ରାମରେ ୧୯୧୪ ମସିହା ଜୁଲାଇ ୨୮ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ଜଣେ କୃତୀ ଶିକ୍ଷକ ଭାବେ ଜାତୀୟ ସ୍ତରରେ ପୁରସ୍କୃତ ଓ ସମ୍ମାନିତ । ଅଧ୍ୟାପନା ସହିତ ଆଜୀବନ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ମାନସୀ (ଗୀତାଭିନୟ—୧୯୬୬), ଶ୍ରୀମଦ୍ଭଗବଦ୍ ଗୀତାର ଶରୀର ତତ୍ତ୍ୱ, ଓଡ଼ିଆ ଭାଇ ହିନ୍ଦୁ କଏ ହରିବୋଲ, ଅଗ୍ରନ୍ଥର (ବଙ୍ଗଳା), ଅବୁନ୍ଧତୀ (ବଙ୍ଗୀୟ କବିତା), ଅମୃତୀପ (ନାଟକ), ଗୀତା ସାରତତ୍ତ୍ୱ, କବିତା କୁସୁମ ପ୍ରଭୃତି । ସାଧନାର ସ୍ୱୀକୃତି ସ୍ୱରୂପ ଦୀନକୃଷ୍ଣ ସ୍ମୃତି ପରିଷଦ, ଜଳେଶ୍ୱର, ବାର୍ତ୍ତାଉର୍ମି ପ୍ରତିଷ୍ଠାନ, ବାଲେଶ୍ୱର ଓ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗରୁ ପୁରସ୍କୃତ ଓ ସମ୍ମାନିତ ।

**୧୬୨ । ହିମାଂଶୁ ଶେଖର ନନ୍ଦୀ :**

ପିତାଙ୍କ ନାମ ଭୂପତି ଚରଣ ନନ୍ଦୀ । ୧୯୩୯ ମସିହା ଫେବୃୟାରୀ ୨ ତାରିଖରେ ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ଥାନାନ୍ତର୍ଗତ ତକବନ୍ଧୁ ଗ୍ରାମରେ ଜନ୍ମ । ରାଜନୀତି ସହିତ ସାହିତ୍ୟ ସାଧନା । ଲିଖିତ ଗଳ୍ପ ଗ୍ରନ୍ଥ : ହେ ମହାପ୍ଳାବନ (୧୯୫୬) । ଆସନ୍ତାକାଲି ଅଗ୍ରଦୂତ, ଜନବାଣୀ ପ୍ରଭୃତି ପତ୍ରିକାରେ କବିତା ପ୍ରକାଶିତ ।

**୧୬୩ । ହିମାଂଶୁ ଶେଖର ଦାସ :**

ପିତାଙ୍କ ନାମ ଶଶାଙ୍କ ଶେଖର ଓ ମାତା ବନ୍ଧୁପ୍ରିୟା ଦେବୀ । ବାଲେଶ୍ୱର ଜିଲ୍ଲା ନାମ୍ପୋ ଗ୍ରାମରେ ତା ୩-୭-୧୯୪୩ ମସିହାରେ ଜନ୍ମ । ଦକ୍ଷ ଅଭିନେତା ଭାବରେ ଓଡ଼ିଆ ଓ ବଙ୍ଗଳା ଚଳଚ୍ଚିତ୍ରରେ ଅଭିନୟ ସହିତ କାହାଣୀ, ଚିତ୍ରନାଟ୍ୟ ଲେଖକ ଓ ନିର୍ଦ୍ଦେଶକ । 'ମୁକ୍ତିତୀର୍ଥ' ଚଳଚ୍ଚିତ୍ରର କାହାଣୀ ଲେଖକ । ଲିଖିତ କବିତା, ଗଳ୍ପ ଓ ନାଟକ ଅପ୍ରକାଶିତ ରହିଅଛି ।

Digitized by srujanika@gmail.com

୧୭୪ । **ହୃଷିକେଶ ପଣ୍ଡା :**

ପିତାଙ୍କ ନାମ ତ୍ରୈଲୋକ୍ୟ ନାଥ ଓ ମାତା ଅନ୍ନପୂର୍ଣ୍ଣା ଦେବୀ । ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ଥାନାନ୍ତର୍ଗତ ପଶ୍ଚିମବାଡ଼ ଗ୍ରାମରେ ତା ୫-୯-୧୯୫୩ ମସିହାରେ ଜନ୍ମ । ଉଚ୍ଚତର ଡ଼ିଗ୍ରୀ ଲାଭ କରି ସରକାରୀ ଚାକିରୀ ସହ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ : ଗଳ୍ପ—ତେଲୋଟି ନିଶ୍ୱାସର ପୃଥିବୀ (୧୯୮୪), ଅନ୍ତରଙ୍ଗ ସକାଳ (୧୯୮୭), ପ୍ରତ୍ୟୟର ପ୍ରତିଶ୍ରୁତି (୧୯୮୮), ଝରକା ନଥିବା ଘର ଓ ଜହ୍ନ ଗୀତ (୧୯୯୧), ଦେହର ନଉକା ଓ ରକ୍ତର ଗଙ୍ଗା (୧୯୯୧), ପ୍ରବନ୍ଧ ଓ ସମାଲୋଚନା—ରବୀନ୍ଦ୍ର ସମକାଳୀନ ଓଡ଼ିଆ କବିତା (୧୯୮୯), ଉପନ୍ୟାସ—ନ ଜାଣୁତେ (୧୯୯୨); ଶିଶୁ ସାହିତ୍ୟ—ରାଜକେମା ଓ ନୀଳ କଇଁର କାହାଣୀ (୧୯୯୧); ବଡ଼ ମଣିଷଙ୍କ ପିଲାଦିନ (୧୯୯୧), ଦୂରରୁ କିଏ ଡାକେ (୧୯୯୨); ସଂକଳନ : ଆଧୁନିକ ଓଡ଼ିଆ ଶିଶୁ କବିତା (୧୯୯୧), ଅନୁବାଦ—ହରନାଥ ଦେ (1991-N.B.T)— ନାଟକ—ସୂର୍ଯ୍ୟାସ୍ତର କବିତା (୧୯୯୧), ଗୀତିଗୁଚ୍ଛ—ନୀଳ ଶତଦଳ (୧୯୯୨) । ଏତଦ୍‌ବ୍ୟତୀତ ବହୁ ଗଳ୍ପ, କବିତା, ପ୍ରବନ୍ଧ, ନାଟକ, ବକ୍ତୃତା ପ୍ରଭୃତି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ହିନ୍ଦି, ଇଂରାଜୀ, ବଙ୍ଗଳା ଭାଷାରେ ଅନୂଦିତ ଓ ପ୍ରକାଶିତ ।

ସାରସ୍ୱତ ସାଧନାରେ ସ୍ୱୀକୃତି ସ୍ୱରୂପ ଆକାଶବାଣୀର ବାର୍ଷିକ ପ୍ରତିଯୋଗିତା (୧୯୯୦)ରେ ଜାତୀୟ ପୁରସ୍କାର, ଜୀବନରଙ୍ଗ ରୌପ୍ୟ ଜୟନ୍ତୀ ପୁରସ୍କାର, ଦୀନକୃଷ୍ଣ ସ୍ମୃତି ସଂସଦ ପକ୍ଷରୁ ନରେନ୍ଦ୍ର ଚନ୍ଦ୍ର ନାଟ୍ୟକଳା ପୁରସ୍କାର, ଯଦୁମଣି ସାହିତ୍ୟ ସଂସଦ, ବାର୍ତ୍ତା ପ୍ରତିଷ୍ଠାନ, କୋରାଇ ସାହିତ୍ୟ ମଣ୍ଡଳ, ବାଙ୍କୀ ସାହିତ୍ୟ ସମାଜ ପକ୍ଷରୁ ପୁରସ୍କୃତ ଓ ସମ୍ମାନିତ । ଏତଦ୍‌ବ୍ୟତୀତ ନୀଳଶୈଳର ଯୁବରତ୍ନ ପୁରସ୍କାର ଲାଭ କରିଛନ୍ତି ।

୧୭୫ । **ହୃଷିକେଶ ବେହେରା :**

ପିତାଙ୍କ ନାମ ଗଦାଧର ଓ ମାତା ଉମା ସୁନ୍ଦରୀ । ମୟୂରଭଞ୍ଜ ଜିଲ୍ଲାର ହାଲଦି-ପାଳ ଗ୍ରାମରେ ତା ୧-୮-୧୯୫୩ ଖ୍ରୀଃରେ ଜନ୍ମ । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା ସହ ସାରସ୍ୱତ ସାଧନା । ଲିଖିତ ଗଳ୍ପ/କବିତା : 'ରାକା', ନିର୍ଯ୍ୟାସ, ଭକ୍ତପ୍ରଭା, ଓଡ଼ିଆ ଲେଖକ ପାଠକ ସମ୍ମିଳନ, ଅରଣ୍ୟ ଅରଣ୍ୟ, ଅରଣ୍ୟର ସ୍ୱର, ଝରଣୀ ପ୍ରଭୃତି ପତ୍ରପତ୍ରିକା, ସ୍ମରଣିକା ଓ ସଂକଳନରେ ପ୍ରକାଶିତ । ଅପ୍ରକାଶିତ ଗଳ୍ପ ଗ୍ରନ୍ଥ : ନଳିପଦ୍ମ, ଗ୍ରହ ନକ୍ଷତ୍ର, ପଦ୍ମତୋଳା ।

ଏତଦ୍‌ବ୍ୟତୀତ ଗୀତିକବି ଗୌରୀଶଙ୍କର ଦାସ ମହାପାତ୍ର (ଜଳେଶ୍ୱର), କବି ନନ୍ଦନନ୍ଦନ ପାଣି, କବି ଓ ପ୍ରାବନ୍ଧିକ ଶ୍ୟାମସୁନ୍ଦର ଷଡ଼ଙ୍ଗୀ (ବାରିପଦା), ପ୍ରାବନ୍ଧିକ ଡଃ ଦୁର୍ଗାପ୍ରସନ୍ନ ପଣ୍ଡା (ବାଲେଶ୍ୱର), ଡଃ ପଦ୍ମଶ୍ରୀ ଦାସ (ବାରିପଦା), କବି ବିଧୁଭୂଷଣ ଜେନା

Digitized by srujanika@gmail.com

(ଖେଗସାଇ), ପ୍ରାବନ୍ଧିକ ଡଃ ମନ୍ମଥ କୁମାର ପ୍ରଧାନ (ଜଳେଶ୍ୱର), ଗାଳ୍ପିକ ବିଭୂତି-ଭୂଷଣ ମହାପାତ୍ର, କବି ବିଭୂତିଭୂଷଣ ମହାନ୍ତି, ବିଭୂତିଭୂଷଣ ଦାସ (ଜଳେଶ୍ୱର), କବି ଶ୍ରୀ କୁମାର (ଖେଗସାଇ), ଗାଳ୍ପିକ ପ୍ରଫୁଲ୍ଲ କୁମାର ନନ୍ଦୀ (ରାଇବଣିଆ), କବି ଓ ଗାଳ୍ପିକ ମନୋରଞ୍ଜନ ମହାନ୍ତି (ଚଣ୍ଡଡ଼ା), ସନାତନ ଦାସ (ବାରିପଦା), ଚନ୍ଦ୍ରମଣି ପାତ୍ର (ଶୃଙ୍ଖଳାପଦା), ପ୍ରାବନ୍ଧିକ ଅବନୀ କୁମାର କୁଣ୍ଡୁ (ବାରିପଦା), ପ୍ରାବନ୍ଧିକ ରସିକା-ନନ୍ଦ ମହାନ୍ତି (ରସ ଗୋବିନ୍ଦପୁର), ନଗେନ୍ଦ୍ର ନାଥ ଦାସ (ଶୃଙ୍ଖଳାପଦା), ଆଲୋଚକ ଶିଶିର ମହାପାତ୍ର (ବାରିପଦା), * ଗୀତିକବି ସୀତାରାମ ଦାସ (ଜଳେଶ୍ୱର), ନାଟ୍ୟକାର ଶ୍ରୀ ପ୍ରଭାକର ଆଚାର୍ଯ୍ୟ, ଶ୍ରୀ ସୁଧାଂଶୁ ଶେଖର ନାୟକ (ଜଳେଶ୍ୱର), ଗାଳ୍ପିକ ମୃତ୍ୟୁଞ୍ଜୟ ମହାପାତ୍ର (ଅମର୍ଦ୍ଦା ରୋଡ଼), କବି ସିଦ୍ଧେଶ୍ୱର ପଣ୍ଡା (ବାଲିଆପାଳ), ପ୍ରାବନ୍ଧିକ ଶ୍ରୀମତି ଉମାରାଣୀ ପାତ୍ର (ଖେଗସାଇ), ଚିତ୍ରଶିଳ୍ପୀ ନୃତ୍ୟ ନାରାୟଣ ଷଡ଼ଙ୍ଗୀ, ଶିବାନୀ ଷଡ଼ଙ୍ଗୀ, ରାଜବଲ୍ଲଭ ସାହୁ (ଜଳେଶ୍ୱର), ପ୍ରଫୁଲ୍ଲ କୁମାର ଭୁଞ୍ଜ (ଶୃଙ୍ଖଳାପଦା), ଗାଳ୍ପିକ ଜଗନ୍ନାଥ ପାତ୍ର (ୟୁକୋ ବ୍ୟାଙ୍କ, ଦେଉଳି; ମୟୂରଭଞ୍ଜ) * କବି ସୂର୍ଯ୍ୟେନ୍ଦୁ ଦାଶ (ଜଳେଶ୍ୱର); ଶିଶୁ କବି ଓ ନାଟ୍ୟକାର ଶ୍ରୀ ନରେନ୍ଦ୍ର ଜେନା (ବସ୍ତା); ଗୀତି ନାଟ୍ୟକାର ସନ୍ତୋଷ କୁମାର ନାଏକ (ସାନ କଚମୂଳ, ମୟୂରଭଞ୍ଜ), ପ୍ରାବନ୍ଧିକ ଅଧ୍ୟାପକ ଶ୍ରୀ ନିରଞ୍ଜନ ପାଢ଼ୀ (ଜଳେଶ୍ୱର), ସୁବକ୍ତା ଶ୍ରୀ ଦୁର୍ଗାପ୍ରସନ୍ନ ଚାନ୍ଦ (ଅମର୍ଦ୍ଦା ରୋଡ଼) ପ୍ରଭୃତି ସାରସ୍ୱତ ସାଧକଗଣ ଏ ଅଞ୍ଚଳରେ ଭାଷା, ସାହିତ୍ୟ ଓ ସଂସ୍କୃତିର ପରିପୁଷ୍ଟି ସାଧନରେ ବ୍ରତୀ ହୋଇଛନ୍ତି ।

## ପରବର୍ତ୍ତି ସଂଯୋଜନ

୧୭୬ । **ଅବ୍‌ଦୁଲ ରହିମ :**

ଖ୍ରୀ· ୧୮୯୪ ଜୁନ୍ ତା ୧୪ ରିଖ ବୁଧବାର ବାଲେଶ୍ୱର ଜିଲ୍ଲାର ଖେଗସାଇ ଗ୍ରାମରେ ଜନ୍ମଗ୍ରହଣ କରି ୧୯୭୧ ମସିହା ଜୁନ୍ ୧୩ ରିଖ ରବିବାର ଦିନ ଇହଧାମ ତ୍ୟାଗ କରିଛନ୍ତି । ବିଦ୍ୟାଳୟ ଶିକ୍ଷା ସମାପ୍ତ କରି ଅମିନ ଶିକ୍ଷା ଲାଭ କରି ଗଡ଼ଜାତ ରାଜ୍ୟମାନଙ୍କରେ ଅମିନ ରୂପରେ ଓ ପରେ ସ୍ୱତନ୍ତ୍ର ଓଡ଼ିଶାର ସୀମା ମାପ କରିବାରେ ମୁଖ୍ୟ ଅମିନ ଭାବରେ ଅବସ୍ଥାପିତ ହେବା ସହ ସାରସ୍ୱତ ସାଧନାରେ ବ୍ରତୀ ରହିଥିଲେ । ସାହିତ୍ୟିକ ଅବଦାନ : ଉପନ୍ୟାସ—ପଦ୍ମାବତୀ, *ସ୍ନେହଲତା, *କନକଲତା, ସୁକୁମାରୀ, ପଦ୍ମରେଖା, କାଳୀ କନ୍ୟା ଲକ୍ଷ୍ମୀ, ଅମୃତ କୁମାରୀ ଇତ୍ୟାଦି । ଗଳ୍ପ—ବିଶ୍ୱରଞ୍ଜନ, ଶାଶୁ ବୋହୂ, ଲାହୋର, ମୋ ମାଉସୀ ଓ ସତୀତ୍ୱ । ନାଟକ—ମଗଧ ନନ୍ଦିନୀ । ପ୍ରବନ୍ଧ ଗନ୍ଧମାର୍ଦ୍ଦନ, ଖେଗସାଇର କଥା ୧ମ ଓ ୨ୟ ପ୍ରଭୃତି ସମସ୍ତ ଅପ୍ରକାଶିତ ରଚନା ।

୧୭୭ । **ଅଶ୍ୱିନୀ କୁମାର ରାଉତ :**

ପିତାଙ୍କ ନାମ କୃଷ୍ଣଚନ୍ଦ୍ର ଓ ମାତା ରାଧାମଣି ଦେବୀ । ଶୃଙ୍ଖଳାପଦା ଥାନାନ୍ତର୍ଗତ ଭାଲିଆଶୋଳ ଗ୍ରାମରେ ତା ୧୮-୨-୧୯୫୫ ରିଖରେ ଜନ୍ମ ଲାଭ କରିଛନ୍ତି । ବିଦ୍ୟାଳୟ

* ସରକାରୀ କର୍ମଚାରୀ ରୂପେ ଏ ଅଞ୍ଚଳରେ ଅସ୍ଥାୟୀ ବାସିନ୍ଦା ।

Digitized by srujanika@gmail.com

ଶିକ୍ଷା ସମାପ୍ତି ପରେ ଅଧ୍ୟାପନା ସାଙ୍ଗକୁ ସାରସ୍ୱତ ସାଧନାରେ ବ୍ରତୀ । ଶିଶୁ ଉପଯୋଗୀ କେତେଗୋଟି ଗଳ୍ପ ଓ ନାଟକ ରଚନା କରିଛନ୍ତି । ତନ୍ମଧ୍ୟରୁ ଅଳସୁଆର ବଂଶ ବୁଡ଼ିଲା, ଘ୍ରୋଟ ମୁଣ୍ଡରେ ବଡ ବୁଦ୍ଧି, ସୁନା ସଂସାର ହସିଲା, ଅଦ୍ଭୁତ ବଗ୍ଘ ର ପ୍ରଭୃତି ଗଳ୍ପ ମଗଜ ଲଡ଼ୁ ଓ ସୁନା ବୋଇତ ପତ୍ରିକାରେ ପ୍ରକାଶିତ । 'ଗଜପତି ପୁରୁଷୋତ୍ତମ ଦେବ' (ନାଟକ) ଆକାଶବାଣୀ କଟକ କେନ୍ଦ୍ର ଦ୍ୱାରା ୧୯୮୪ ମସିହାରେ ପ୍ରସାରିତ । ଏତଦ୍-ବ୍ୟତୀତ 'ମୟୂରଭଞ୍ଜରେ ଶ୍ରୀ ଜଗନ୍ନାଥ', 'ସମ୍ରାଟ୍ ହର୍ଷବର୍ଦ୍ଧନ', 'ଭକ୍ତ ଅମ୍ବରୀଷ', 'ପୁରୀରୁ କଲିକତା' ଓ ଅନୁବାଦ (ବଙ୍ଗଳା) ନାଟକ ଭାବେ 'ନୀଳ କୋଠି'; ମାଆ ଓ ପୁଅ' ପ୍ରଭୃତି ଅପ୍ରକାଶିତ ରଚନା ।

୧୭୮ । **କେଦାର ନାଥ ଦାସ ଗୋସ୍ୱାମୀ :**

ବାଲେଶ୍ୱର ଜିଲ୍ଲାର ସୋରଗଡ଼ ଥାନାନ୍ତର୍ଗତ ଦେଉଳା ଗ୍ରାମରେ ୧୯୧୮ ମସିହାରେ ନାଟ୍ୟକାର ଶ୍ରୀ ଦାଶ ଗୋସ୍ୱାମୀ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଛନ୍ତି । ଦୀର୍ଘ ବର୍ଷ ଧରି ସେ ନାଟ୍ୟ ଜଗତ ସହ ଜଡ଼ିତ । ଏକାଧାରରେ ଜଣେ ସଫଳ ନାଟ୍ୟକାର, ନିର୍ଦ୍ଦେଶକ, ଅଭିନେତା, ଗୀତିକାର, କୁଶଳୀ ସଙ୍ଗୀତଜ୍ଞ ଓ ନିପୁଣ ତବଲା ବାଦକ । ବାଲେଶ୍ୱର, ମୟୂରଭଞ୍ଜ, କଟକ, ପୁରୀ, କେନ୍ଦୁଝର, ରାଉରକେଲା ଓ ମେଦିନୀପୁରର ବହୁ ନାଟ୍ୟ ସଂସ୍ଥା ସହ ଜଡ଼ିତ । ଜଣେ କୁଶଳୀ କଳାକାର ଓ ସାରସ୍ୱତ ସାଧକ ଭାବରେ ଓଡ଼ିଶାର ବହୁ ନାଟ୍ୟସଂସ୍ଥା ତରଫରୁ ସମ୍ମାନିତ । (ପ୍ରଜାତନ୍ତ୍ର ସାପ୍ତାହିକୀ, ଅକ୍ଟୋବର ୨୭-୨୩, ୧୯୯୩) ।

୧୭୯ । **ଗିରିଜାଶଙ୍କର ଦାସ ମହାପାତ୍ର :**

ପିତା ସୁ-ସାହିତ୍ୟିକ ସ୍ୱର୍ଗତ ନରେନ୍ଦ୍ରନାଥ ଓ ମାତା ଶାରଦାମଣି ଦେବୀ । ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ଥାନାନ୍ତର୍ଗତ ଅଲଳପୁର ଗ୍ରାମରେ ୧୯୧୮ ମସିହା ଫେବୃୟାରୀ ତା ୧ ରିଖରେ ଜନ୍ମଲାଭ କରିଛନ୍ତି । ବିଦେଶରୁ ଉଚ୍ଚ ଶିକ୍ଷା ଲାଭ କରି ଶୈଳୀ ଚିକିତ୍ସାବିଦ୍ ରୂପେ ପ୍ରସିଦ୍ଧି ଅର୍ଜନ କରିଥିବା ଚିକିତ୍ସକ ସାରସ୍ୱତ ସାଧନାରେ ବ୍ରତୀ । ତାଙ୍କ ରଚିତ ପ୍ରକାଶିତ ପୁସ୍ତକ 'ସମର୍ପଣ' (୧୯୯୨), ମାନବ ସ୍ରୋତ (୧୯୯୩) ଓ ବନ୍ଧନୀ (ଅପ୍ରକାଶିତ) ପ୍ରଭୃତି କବିତା ସଂକଳନ ତାଙ୍କୁ ଜଣେ ସଫଳ ଗୀତିକବି ରୂପେ ପରିଚିତ କରାଇଛି ।

୧୮୦ । **ଗୌରାଙ୍ଗ ଚରଣ ସୋମ :**

ବାଲେଶ୍ୱର ଜିଲ୍ଲା ସୋରଗଡ଼ ଥାନାନ୍ତର୍ଗତ ମହାଗବ ଗ୍ରାମରେ ୧୯୨୨ ମସିହାରେ ଜନ୍ମଗ୍ରହଣ କରିଛନ୍ତି । ଶାନ୍ତିନିକେତନରୁ କଳାରେ ଉଚ୍ଚଶିକ୍ଷା ଲାଭକରି ରାଜସ୍ଥାନରେ ଅବସ୍ଥାନ କରି ନିଜ କଳା ପ୍ରତିଭାର ପୂର୍ଣ୍ଣ ବିକାଶ ଘଟାଇଛନ୍ତି । ତାଙ୍କର

Digitized by srujanika@gmail.com

ପ୍ରଖ୍ୟାତ ସୃଷ୍ଟି ମଧ୍ୟରେ ମଥୁରା ଯାତ୍ରା, ଶିବ ଧନୁ ଭଙ୍ଗ, ଭରତ ଶକୁନ୍ତଳା, ନୃତ୍ୟଶୀଳା ରମଣୀର ଏକପାଦ ଭ୍ରମଣ୍ଣ ଭଙ୍ଗୀ ପ୍ରଭୃତି ଶିଳ୍ପ ଜଗତରେ ଏକ ଏକ ଅମୂଲ୍ୟ ସମ୍ପଦ ରୂପେ ପରଗଣିତ । ଚିତ୍ରକଳା କ୍ଷେତ୍ରରେ ଶ୍ରୀ ରେମ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ବ୍ୟକ୍ତିତ୍ୱ । 'ଉତ୍କଳୀୟ ଚିତ୍ରକଳାର ବିବର୍ତ୍ତନ ବିଷୟରେ ଆଲୋଚନା କଲାବେଳେ ଶିଳ୍ପୀ ଗୌରାଙ୍ଗ ସୋମଙ୍କର କଥା ଆପେ ଆପେ ଆସିଯାଏ'—ସୁଦକ୍ଷ ଶିଳ୍ପୀ ଶ୍ରୀ ଅଶୋକ ମହାନ୍ତିଙ୍କର ଏ ଉକ୍ତି ଯଥାର୍ଥ । ଚିତ୍ରକଳା ସାଧନାର ସ୍ୱୀକୃତି ସ୍ୱରୂପ ପ୍ରଫେସର ରେମ ଓଡ଼ିଶା ଲଳିତ କଳା ଏକାଡେମୀ ତରଫରୁ ସମ୍ବର୍ଦ୍ଧିତ ହୋଇଛନ୍ତି ।

୧୮୧ । **ଚଣ୍ଡୀ ଚରଣ କର :**

ପିତାଙ୍କ ନାମ ମୃତ୍ୟୁଞ୍ଜୟ ଓ ମାତା ସନ୍ତୋଷିନୀ ଦେବୀ । ମେଦିନୀପୁର ଜିଲ୍ଲା ଗୋପୀବଲ୍ଲଭପୁର ଅଞ୍ଚଳର ସଡ଼ୋ ଗ୍ରାମରେ ତା ୧୮ । ୧ । ୧୯୪୨ ଖ୍ରୀଷ୍ଟାବ୍ଦରେ ଜନ୍ମଲାଭ କରିଛନ୍ତି । ଉଚ୍ଚଶିକ୍ଷା ଲାଭକରି ଅଧ୍ୟାପନା ବୃତ୍ତି ସହ ସାରସ୍ୱତ ସାଧନାରେ ବ୍ରତୀ । ଓଡ଼ିଶାର ପ୍ରାୟ ସବୁ ଲବ୍ଧ ପ୍ରତିଷ୍ଠା ପତ୍ରପତ୍ରିକାରେ ତାଙ୍କର ବହୁ କବିତା, ଗଳ୍ପ ଓ ପ୍ରବନ୍ଧ ପ୍ରକାଶିତ । କବିତା ପୁସ୍ତକ : ପୃଥକ ପୃଥିବୀ; ଜରୁ ଗୃହର ବନ୍ଦୀ, ଅନୂଦିତ ଉପନ୍ୟାସ—ନୀଳକଣ୍ଠ, ଅଗ୍ନିଗିରି ଉର୍ଦ୍ଧ ପାଦ (ମୂଳ ବଙ୍ଗଳା) ମୃତ୍ୟୁଞ୍ଜୟ (ମୂଳ ମରାଠୀ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ'; ଆଲୋଚନା ଗ୍ରନ୍ଥ :—ଆଧୁନିକ ଓଡ଼ିଆ କାବ୍ୟ ପରିଚୟ, ମୋ ସମକାଳୀନ ଓଡ଼ିଆ କବି, ଓଡ଼ିଶାର ଶକ୍ତି ଉପାସନା ଓ ଶାକ୍ତ ସାହିତ୍ୟ (ସନ୍ଦର୍ଭ) ପ୍ରଭୃତି । ପ୍ରକାଶିତ ଗ୍ରନ୍ଥ ଧର୍ମରାଜ ଯୁଧିଷ୍ଠିର—୧ (ପୁରାଣ ପ୍ରଦୀପ ଗ୍ରନ୍ଥମାଳା) ଚୌର ପଞ୍ଚାଶିକା—ଓଡ଼ିଆ ପଦ୍ୟାନୁବାଦ, ପ୍ରାଚୀନ ଭାରତୀୟ ପ୍ରେମ କବିତା—ସଂସ୍କୃତ ଭାଷାର ୧୦୮ ଗୋଟି କବିତାର ଓଡ଼ିଆ ଅନୁବାଦ ସଂକଳନ ।

୧୮୨ । **ଚନ୍ଦ୍ରକୁମାର ମହାନ୍ତି :**

ପିତାଙ୍କ ନାମ ଦିବାକର, ମାତା ପାର୍ବତୀ ଦେବୀ । ବାଲେଶ୍ୱର ଜିଲ୍ଲା କାଳିପୁର ସାମିଲ ମଧୁସୂଦନପୁର ଗ୍ରାମରେ ୧୯୩୬ ସାଲ ଚୈତ୍ର ମାସ ଦ୍ୱିନରେ ଜନ୍ମ । ଆଇନ ବ୍ୟବସାୟ ସହ ସାରସ୍ୱତ ସାଧନାରତ । ରଚିତ କବିତା ଗ୍ରନ୍ଥ—ଆଲୋକିତ ଅନ୍ଧକାର (୧୯୯୧), ଦିଗ ଦିଗନ୍ତ (ଯନ୍ତ୍ରସ୍ଥ) । ଝଙ୍କାର, ଡଗର, ଦିଗନ୍ତ, ଆସନ୍ତା କାଲି, ନବରବି, ନବୀନ ରଙ୍ଗ, ମରୁଡୀର୍ଥ ପ୍ରଭୃତି ଓଡ଼ିଆ ପତ୍ରପତ୍ରିକାରେ ବହୁ କବିତା ପ୍ରକାଶିତ । ସାଧନାର ସ୍ୱୀକୃତି ସ୍ୱରୂପ ୧୯୬୫ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ସମ୍ମାନିତ ହୋଇଛନ୍ତି ।

୧୮୩ । **ଚନ୍ଦ୍ରଭାନୁ ଶତପଥୀ :**

ପିତାଙ୍କ ନାମ ଗୋକୁଳଚନ୍ଦ୍ର, ମାତାଙ୍କ ନାମ ହର୍ଷମୟୀ ଦେବୀ । ୧୯୪୮ ମସିହା ଜାନୁୟାରୀ ତା ୧୪ରିଖରେ କଟକରେ ଜନ୍ମ । ସ୍ଥାୟୀ ବାସସ୍ଥାନ—ଶଥର ସାହି,

Digitized by srujanika@gmail.com

ବାରିପଦା । ଉଚ୍ଚତର ଶିକ୍ଷାଲାଭ କରି ଭାରତୀୟ ପୁଲିସ୍ ସେବାରେ ନିଯୁକ୍ତ । ସମ୍ପ୍ରତି ସେହି ବିଭାଗର ଜଣେ ଉଚ୍ଚ ପଦାଧିକାରୀ ଭାବେ ନୂଆ ଦିଲ୍ଲୀରେ ଅବସ୍ଥାନ ଓ ସାରସ୍ୱତ ସାଧନାରେ ବ୍ରତୀ । ଜଣେ ସଫଳ ଗାଳ୍ପିକ ଭାବରେ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ । ପ୍ରକାଶିତ ଗ୍ରନ୍ଥ-ହିସାବର, କିଛି ହସ କିଛି ଲୁହ ... ଗ୍ରନ୍ଥମନ୍ଦିର) । ଏତଦ୍‌ବ୍ୟତୀତ ଆକାଶବାଣୀ ଦ୍ୱାରା ସ୍ୱୀକୃତ ଗୀତିକାର ଭାବରେ ଗୀତ, ଗଜଲ ଓ ଭଜନ ରଚୟିତା ରୂପେ ସମ୍ମାନିତ ।

୧୮୪ । **ନଗେନ୍ଦ୍ରନାଥ ଗିରି :**

ପିତା ସ୍ୱନାମଧନ୍ୟ ସାହିତ୍ୟିକ ରାଧାମାଧବ ଗିରି । ଗ୍ରାମ-ସୁନାରୋଷ୍ଠି, ବାଲେଶ୍ୱର ଲିଖିତ କବିତା ପୁସ୍ତକ-ଉପକୂଳର ଅନୁପ୍ରାସ । ଶିଶୁ କବିତା-ପୁଷ୍ପରେଣୁ । ଉପନ୍ୟାସ— ଗୋଟିଏ ଦୀପ ଓ କୋଟିଏ ବଳିତା । ଗୀତିନାଟ୍ୟ—ଜୀବନାୟନ । ଏତଦ୍‌ବ୍ୟତୀତ 'କୁଙ୍କୁମ' ପତ୍ରିକାରେ କେତେଗୋଟି ଗଳ୍ପ ପ୍ରକାଶିତ ।

୧୮୫ । **ନଗେନ୍ଦ୍ରନାଥ ମହାପାତ୍ର :**

ପିତା ସ୍ୱର୍ଗୀୟ ଭଗବତ ଚନ୍ଦ୍ର ଓ ମାତା ହାରମଣି ଦେବୀ । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ଥାନାନ୍ତର୍ଗତ ବାଣିଦା ଗ୍ରାମରେ ୧୯୫୨ ମସିହା ଫେବୃୟାରୀ ତା ୧୨ ରିଖରେ ଜନ୍ମ । ଉଚ୍ଚ ଶିକ୍ଷା ଲାଭ କରି ଅଧ୍ୟାପନା ଓ ସାରସ୍ୱତ ସାଧନାରେ ବ୍ରତୀ । ଲିଖିତ ପୁସ୍ତକ—ଉପାନ୍ତ ଅଞ୍ଚଳ (ଓଡ଼ିଶାର ଉତ୍ତର ପୂର୍ବାଞ୍ଚଳ)ରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି, ଛନ୍ଦନୃତ୍ୟ-ଏକ ସାଂସ୍କୃତିକ ଅଧ୍ୟୟନ, ଲକ୍ଷ୍ମୀ ( ଖଣ୍ଡକାବ୍ୟ ) ଅପ୍ରକାଶିତ । ଏତଦ୍‌ବ୍ୟତୀତ ଝଙ୍କାର, କୋଣାର୍କ, ନବପତ୍ର, ରଙ୍ଗଭୂମି, ଆସନ୍ତାକାଲି, ସମାଜ (ଦୈନିକ ସାପ୍ତାହିକ), ଉଦୀଚୀ (ବଙ୍ଗଳା), ପ୍ରଭୃତି ପତ୍ର ପତ୍ରିକା ଓ କେତେକ ସ୍ମରଣିକା ଏବଂ ସଂକଳନରେ କତିପୟ ପ୍ରବନ୍ଧ, କ୍ଷୁଦ୍ରଗଳ୍ପ ଓ କବିତା ପ୍ରକାଶିତ ।

୧୮୬ । **ନରେନ୍ଦ୍ରନାଥ କର :**

ପିତାଙ୍କ ନାମ ରାଧାକାନ୍ତ । ଜନ୍ମସ୍ଥାନ ସଡ଼ୋ, ଗୋପୀବଲ୍ଲଭପୁର, ମେଦିନୀପୁର, ୧୮୧୮ ମସିହା ମାଘମାସରେ ଜନ୍ମଲାଭ ଓ ୧୯୫୯ ମସିହା ଫାଲ୍‌ଗୁନ ମାସରେ ଇହଧାମ ତ୍ୟାଗ କରିଛନ୍ତି । ବିଦ୍ୟାଳୟ ଶିକ୍ଷାଲାଭ ପରେ ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ ରହି ସୀତା ବନବାସ, ସମୁଦ୍ର ମନ୍ଥନ ପ୍ରଭୃତି ବହୁ ଅଭିନୀତ ଯାତ୍ରା ନାଟକ, ଆଖ୍ୟାୟିକାତ୍ମକ ଲକ୍ଷ୍ମୀ ପୁରାଣ ଓ ଶ୍ରୀମାଧୀବର ପ୍ରଭୃତି କାବ୍ୟ ରଚନା କରିଛନ୍ତି ।

୧୮୭ । **ପଞ୍ଚାନନ ଦାଶ :**

ପିତାଙ୍କର ନାମ ରମାନାଥ ଓ ମାତା ଯଶୋଦା ଦେବୀ । ବାଲେଶ୍ୱର ଜିଲ୍ଲାର ପଦ୍ମପୁର ଗ୍ରାମରେ ତା ୧୦ । ୧ । ୧୯୪୨ ରିଖରେ ଜନ୍ମଲାଭ କରିଛନ୍ତି । ସରକାରୀ

Digitized by srujanika@gmail.com

ସ୍ବକଣ୍ଠ ବୃତ୍ତି ସହ ସାହିତ୍ୟ ସାଧନାରେ ରତ ରହି ନିମ୍ନଲିଖିତ ଗ୍ରନ୍ଥ ସବୁ ରଚନା କରିଛନ୍ତି । କବିତା ସଂକଳନ :—ଅସଫଳ ଇଚ୍ଛାର ସହର (୧୯୮୦), ଗୁରୁ ବୁଧବାର ବେଳ (୧୯୮୩) ପ୍ରକାଶିତ । ଗଳ୍ପ :—ଗୁଡ଼ି ଆଳୁଅର ଖେଳ ଓ କବିତା—ସେ ନଗରକୁ ଯାଆନାରେ ପକ୍ଷୀ—ଅପ୍ରକାଶିତ ଗ୍ରନ୍ଥ । ସଂପାଦନା—ଏଇ ଦଶକର କବିତା (୧୯୭୮), କନ୍ଧେଇନାମା (୧୯୭୮), ଆବୃତ୍ତି ନିମନ୍ତେ ଫକୀରମୋହନଙ୍କ କବିତା (୧୯୯୨), କାନ୍ତକବି ସାହିତ୍ୟାଲେଖ୍ୟ (୧୯୯୧) । ବନ୍ଧୁ, ଏକକ, ତ୍ରିବେଣୀ ଓ ଅକ୍ଷପାଦ ସାହିତ୍ୟ ପତ୍ରିକାର ସହ ସଂପାଦକ । ଆସନ୍ତାକାଲି, ନବରବି, ପ୍ରତିବେଶୀ, ଝଙ୍କାର, ଇସ୍ତାହାର, ଜୀବନରଙ୍ଗ, ଗୋକର୍ଣ୍ଣିକା, ଅକ୍ଷପାଦ ପ୍ରଭୃତି ପତ୍ରପତ୍ରିକାରେ ବହୁଲେଖା ପ୍ରକାଶିତ । କଟକ ଦୂର ଦର୍ଶନ ଓ ଆକାଶ ବାଣୀରେ ବହୁବାର କବିତା ପ୍ରସାରିତ ।

ସାରସ୍ବତ ସାଧନାର ସ୍ୱୀକୃତି ସ୍ୱରୂପ 'ଅକ୍ଷପାଦ' (୧୯୮୦), 'ଚଳପଥ (୧୯୮୨), 'ବାର୍ତ୍ତାଉର୍ମି'—(୧୯୮୫) ପ୍ରଭୃତି ସାହିତ୍ୟ ସଂଗଠନ ଦ୍ୱାରା କବି ଭାବରେ ସମ୍ମାନ ଲାଭ କରିଛନ୍ତି ।

୧୮୮ । **ପଞ୍ଚାନନ ପାତ୍ର :**

ପିତାଙ୍କ ନାମ ନନ୍ଦକିଶୋର ଓ ମାତା ଆଶାଲତା ଦେବୀ । ମୟୂରଭଞ୍ଜ ଜିଲ୍ଲାର ମାଣଦା ନିକଟବର୍ତ୍ତୀ କୋଡ଼ମୁଣ୍ଡା ଗ୍ରାମରେ ୧୯୪୩ ମସିହା ମାର୍ଚ୍ଚମାସ ତା ୮ ଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ ପରେ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପନା ବୃତ୍ତି ଗ୍ରହଣ, ପି.ଏଚ୍.ଡି. ଲାଭ ଓ ସାରସ୍ବତ ସାଧନାରେ ବ୍ରତୀ । ଛାତ୍ରାବସ୍ଥାରୁ କବିତା, ଗଳ୍ପ, ଉପନ୍ୟାସ ରଚନା କ୍ଷେତ୍ରରେ ଲେଖନୀ ଚାଳନା କରିଥିଲେ ହେଁ ପରବର୍ତ୍ତୀ କାଳରେ ଜଣେ ସଫଳ ନାଟ୍ୟକାର ଭାବରେ ବହୁ ପ୍ରସିଦ୍ଧିର ଅଧିକାରୀ ହୋଇଛନ୍ତି । ସାଧନାର ସ୍ୱୀକୃତି ସ୍ୱରୂପ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ତିନଥର ଶ୍ରେଷ୍ଠ ନାଟ୍ୟକାର ଭାବରେ ସମ୍ମାନିତ ହୋଇଛନ୍ତି । ଅଖିଳ ଭାରତୀୟ ବେତାର ନାଟକ ପ୍ରତିଯୋଗିତା (୧୯୮୯)ରେ ଦ୍ୱିତୀୟ ଶ୍ରେଷ୍ଠ ନାଟ୍ୟକାର ଭାବେ ପୁରସ୍କୃତ ହୋଇଛନ୍ତି । ରଚିତ ନାଟକ : ଜ୍ୱାଳାମୁଖୀ (୧୯୭୫), ଆରଣ୍ୟକ (୧୯୭୮), ନିକୁମ୍ଭିଳା (୧୯୭୯), ସ୍ୱର୍ଣ୍ଣ ଯୁଗର ସନ୍ଧ୍ୟା (୧୯୮୦), ନରଃ ନରୌ ନରାଃ (୧୯୮୧), ପୋଡ଼ାମୁହଁ (୧୯୮୨), କ୍ଳାନ୍ତ ମହୁମାଛି (୧୯୮୩), ନାଗାସାକିର ପ୍ରେତ (୧୯୮୩), ଖୋଲି ଝରକା (୧୯୮୬), ପ୍ରତିଦ୍ୱନ୍ଦୀ (୧୯୮୫), ନିଃଶବ୍ଦ କାକଳି (୧୯୮୭), ବନ୍ଦ ଘଣ୍ଟାରେ ସମୟ (୧୯୮୭), ପଦ୍ମତୋଳା (୧୯୯୦), ପ୍ରତିବିମ୍ବ (୧୯୯୧), ବିବର୍ଣ୍ଣ ବସୁଧା (୧୯୯୨), ଯାଜ୍ଞସେନୀ ଏ ନନ୍ଦନର ଘର (୧୯୯୨), ଗୁପ୍ତ ଉପତ୍ୟକା (୧୯୯୩), ପାହାନ୍ତି ତାହାକୁ ଚଠି, ସୂତ୍ରଧର, ପାଣ୍ଡୁଲିପି ପୃଷ୍ଠାରୁ ଚିଙ୍କି ମାରଥିବା ଗୁଡ଼ିଏ ବିଶୃଙ୍ଖଳ ଚରିତ୍ର, ପରିଚୟ ହରାଇଥିବା ଇଶ୍ୱର, ଚେତାବନୀ, କାଦମ୍ବରୀ, ପରିଚୟ, ହରଭାଇ, ଗୀତା ପଣ୍ଡା, ଶୁନଃ ଶେପ, ଲବ

Digitized by srujanika@gmail.com

କୁଣ, ନଟକେଟା, ଖଜୁରୀ ଗଛର ଗୁଇ, ଶୁକଶାରୀ ସମ୍ବାଦ, କେତେ ଦୂରେ ଏଇ ପୃଥିବୀ, ନରବାନର ସମ୍ବାଦ ପ୍ରଭୃତି ବହୁ ମଞ୍ଚ ନାଟକ, ବେତାର ନାଟକ ଓ ଶିଶୁ ନାଟିକାର ରଚୟିତା । ଏ ଭିତରୁ ଅନେକ କରଞ୍ଜିଆ ମହାବିଦ୍ୟାଳୟର ନାଟ୍ୟ ପରିଷଦ, କଳିଙ୍ଗ ଏକାଡ଼େମୀ, ରାଉରକେଲା, ପଲ୍ଲିଶ୍ରୀ କରଞ୍ଜିଆ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେ଼ମୀ—ଭୁବନେଶ୍ୱର, ବହୁରୂପୀ—ବାରିପଦା ଓ ଆକାଶବାଣୀ କଟକ, ଜୟପୁର ଓ କେନ୍ଦୁଝର କେନ୍ଦ୍ର ମାଧ୍ୟମରେ ବହୁବାର ମଞ୍ଚସ୍ଥ ଓ ପ୍ରସାରିତ ହୋଇଛି ।

୧୮୯ । **ପରମାନନ୍ଦ ଆଚାର୍ଯ୍ୟ :**

ପିତାଙ୍କ ନାମ ଛକଡ଼ି ଓ ମାତା ଶାନ୍ତି ଦେବୀ । ମୟୂରଭଞ୍ଜ ଜିଲ୍ଲାର ବଡ଼ସାହି ଥାନାନ୍ତର୍ଗତ ବୀରେଶ୍ୱରପୁର ଗ୍ରାମରେ ୧୮୯୩ ମସିହା ଅଗଷ୍ଟ ମାସ ତା ୨୯ ରିଖରେ ଜନ୍ମଗ୍ରହଣ କରି ୧୯୭୧ ମସିହା ଅପ୍ରେଲ ତା ୧୨ ରିଖରେ ଇହଲୀଳା ସମ୍ବରଣ କରିଛନ୍ତି । ଉଚ୍ଚଶିକ୍ଷା ଲାଭ ପରେ ତତ୍କାଳୀନ ମୟୂରଭଞ୍ଜ ରାଜ୍ୟର ପ୍ରତ୍ନତାତ୍ତ୍ୱିକ ବିଭାଗରେ ଚାକିରି ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ଜଣେ ବିଶିଷ୍ଟ ପ୍ରତ୍ନତତ୍ତ୍ୱବିତ୍ ଭାବରେ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରି ପ୍ରଶଂସିତ ହୋଇଥିଲେ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଅଧକ୍ଷ ରୂପେ କାର୍ଯ୍ୟ କରି ସେ ଅବସର ଗ୍ରହଣ କରିଥିଲେ । ନିଜର ମହନୀୟ ପ୍ରତ୍ନତାତ୍ତ୍ୱିକ ଗବେଷଣା ନିମନ୍ତେ ଭାରତ ସରକାର ତାଙ୍କୁ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରିଥିଲେ । ଏତଦ୍‌ବ୍ୟତୀତ ଏସିଆଟିକ ଆର୍କିୟଲୋଜି (୧୯୬୧), ବନ୍ଧୁ ମିଳନ, ପ୍ରଜାତନ୍ତ୍ର ପ୍ରଚାର ସମିତି (୧୯୬୩), ଓଡ଼ିଆ ସାହିତ୍ୟ ଏକାଡେ଼ମୀ (୧୯୬୫) ଓ ବାରିପଦା ସାହିତ୍ୟ ସଂସଦ ତରଫରୁ ପୁରସ୍କୃତ ଓ ସମ୍ମାନିତ ହୋଇଥିଲେ । ଲିଖିତ ପୁସ୍ତକ : ରାଧାନାଥଙ୍କ ଅନନ୍ୟ ପ୍ରତିଭା, ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ (ଓ. ସା. ଏ. ଦ୍ୱାରା ୧ମ ଭାଗ—୧୯୬୯ ଓ ୨ୟ ଭାଗ—୧୯୭୨ରେ ପ୍ରକାଶିତ), ମୋଟେ ସାହେବଙ୍କ ସମ୍ବଲପୁର ଭ୍ରମଣ, ସୋରାବ ଓ ରୁସ୍ତମ (ଅନୁବାଦ), Studies in Orissan History, Achaelogy and Archies । ସେ Orissa Historical Research Journalର ପ୍ରତିଷ୍ଠାତା ସମ୍ପାଦକ ଥିଲେ । "ସେ ମୁଖ୍ୟତଃ ଜଣେ ପ୍ରତ୍ନତାତ୍ତ୍ୱିକ ଗବେଷକ ଓ ପ୍ରାଚୀନ ସଂସ୍କୃତି ତଥା ଐତିହ୍ୟର ଉଦ୍ଧାରକର୍ତ୍ତା ଥିଲେ ।" ବହୁ ଉଚ୍ଚକୋଟୀର ଗବେଷଣା ନିବନ୍ଧ ତାଙ୍କର ଅମ୍ଳାନ ସାରସ୍ୱତ ସାଧନାର ପ୍ରମାଣ ।

୧୯୦ । **ପରମାନନ୍ଦ ସାହୁ :**

ବାରିପଦା ନିବାସୀ ସ୍ୱର୍ଗତଃ ସାହୁ ଜଣେ ସ୍ୱାଧିପନ୍ଥୀ ଗୀତିକବି । ମୋହିତର ଭାବେ ଜୀବିକାର୍ଜ୍ଜନ କରିବା ସହିତ ସାରସ୍ୱତ ସାଧନାରେ ରତ ରହି ଜୀବନ ବିତାଇଛନ୍ତି । କାବ୍ୟଗ୍ରନ୍ଥ—'ଅରୁନ୍ଧତୀ' ।

Digitized by srujanika@gmail.com

**୧୯୧ । ପ୍ରଫୁଲ୍ଲ କୁମାର ସିଂଦେଓ :**

ପିତାଙ୍କ ନାମ ଗିରିଶଚନ୍ଦ୍ର ମାତା ଅଞ୍ଜନା ଦେବୀ । ସିଂଭୂମ ଜିଲ୍ଲାର ଖରସୁଆ ଅନ୍ତର୍ଗତ ରାଇଜଙ୍ଗଡ଼ରେ ୧୯୨୫ ମସିହା ଅକ୍ଟୋବର ତା ୨୩ ରିଖରେ ଜନ୍ମଗ୍ରହଣ କରିଛନ୍ତି । ସମ୍ପ୍ରତି ବାରିପଦାରେ ସ୍ଥାୟୀଭାବେ ଅବସ୍ଥାନ କରିଛନ୍ତି । ଶ୍ରୀ ସିଂଦେଓ ରାଜ ପରିବାରରେ ଜନ୍ମଗ୍ରହଣ କରି ମଧ୍ୟ ଅତି ବାଲ୍ୟାବସ୍ଥାରୁ ଲୋକଗୀତ ପ୍ରତି ଆକୃଷ୍ଟ ହୋଇଥିଲେ । ମୟୂରଭଞ୍ଜ ତଥା ସିଂଭୂମ ଅଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ଝୁମର ସଙ୍ଗୀତର ସେ ଜଣେ ବିଶେଷଜ୍ଞ ଶିଳ୍ପୀ ରୂପେ ସୁପରିଚିତ । ଆଧୁନିକ ଓଡ଼ିଆ ଗୀତ ଓ ଲୋକଗୀତ ଗାୟକ ଭାବରେ ମଧ୍ୟ ସେ ପ୍ରତିଷ୍ଠିତ । ୧୯୫୦ ମସିହାରୁ ଜଣେ ସ୍ୱୀକୃତ ଶିଳ୍ପୀ ରୂପେ ପରିଚିତ । କେତେଗୋଟି ଓଡ଼ିଆ ଚଳଚ୍ଚିତ୍ରରେ ମଧ୍ୟ ପ୍ରଚ୍ଛଦପଟ ଗାୟକ ଭାବରେ କଣ୍ଠଦାନ କରିଛନ୍ତି ।

ସାଧନାର ସ୍ୱୀକୃତି ସ୍ୱରୂପ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ (୧୯୮୩) ତରଫରୁ ସମ୍ବର୍ଦ୍ଧିତ ହୋଇଛନ୍ତି । ମୟୂରଭଞ୍ଜ ଆଦିବାସୀ ମହାବିଦ୍ୟାଳୟ ନାଟ୍ୟ ସଂସଦ ତରଫରୁ ୧୯୮୩-୮୪ ମସିହାରେ ସମ୍ମାନିତ ହୋଇଛନ୍ତି । 'ଝୁମର' ସଙ୍ଗୀତର ଜଣେ ଅବୈତନିକ ଶିକ୍ଷାଗୁରୁ ରୂପେ ସୁପ୍ରତିଷ୍ଠିତ ।

**୧୯୨ । ବନମାଳି ଜେନା :**

ପିତାଙ୍କ ନାମ ଦୀନବନ୍ଧୁ ଓ ମାତା ରାହାସମଣି ଦେବୀ । ବାଲେଶ୍ୱର ଜିଲ୍ଲା ରେମୁଣା ଥାନାନ୍ତର୍ଗତ ମହାନ୍ତିପଡ଼ା ଗ୍ରାମରେ ତା ୧୭-୯-୧୯୫୧ ରିଖରେ ଜନ୍ମ । ସଙ୍ଗୀତ ଶାସ୍ତ୍ରରେ ଉଚ୍ଚଶିକ୍ଷା ଲାଭ ପରେ ସରକାରୀ ଚାକିରୀ ସହ ସାରସ୍ୱତ ସାଧନାରେ ବ୍ରତୀ । ନିମ୍ନଲିଖିତ କ୍ୟାସେଟ୍‌ଗୁଡ଼ିକରେ ସଙ୍ଗୀତ ନିର୍ଦ୍ଦେଶନା ସହ କଣ୍ଠଦାନ କରିଛନ୍ତି । ସେ ସବୁର ନାମ—ଭଜନ ସୁଧା, ଜଗା ବଳିଆ, ଅଧାଗଢ଼ା ଦିଅଁ, ଆସୁଛି କାଳିଆ ହାତୀ, ବାବା ଆଖଣ୍ଡଳମଣି, ଦୈତ୍ୟରାଜ ହିରଣ୍ୟ, କଳା ପାହାଡ଼, ସମ୍ରାଟ ଅଶୋକ, ଜୀବନ ସଂଗ୍ରାମ, କୋଣାର୍କ, ଚକାଆଖି ଆମ ସାକ୍ଷୀ, ଚୂଡ଼ିବାଲି ରୂପ ତୋ ନକଲି ପ୍ରଭୃତି । ଏତଦ୍‌ବ୍ୟତୀତ ପାଦତଳର ପାପ, ଶବ ଶିକାର, କ୍ଷତ, ଅପର୍ତ୍ତିର ଘର ପ୍ରଭୃତି କେତେକ ଫିଚର, ଟେଲି ଓ ଡକ୍ୟୁମେଣ୍ଟାରୀ ଫିଲମ୍‌ରେ ସଙ୍ଗୀତ ନିର୍ଦ୍ଦେଶନା ।

ସାଧନାର ସ୍ୱୀକୃତି ସ୍ୱରୂପ କ୍ଷୀରସ୍ରୋତ ବୋଇତ ବନ୍ଦାଣ ସମିତି ତରଫରୁ ୧୯୮୫ ମସିହାରେ, ଦାଣ୍ଡୀ ପ୍ରତିଷ୍ଠାନ ତରଫରୁ ୧୯୮୭ ମସିହାରେ ଓ ଅନ୍ୟାନ୍ୟ କେତେକ ଅନୁଷ୍ଠାନରୁ ସମ୍ମାନିତ ହୋଇଛନ୍ତି । ୧୯୮୨ ମସିହାରୁ ଆକାଶବାଣୀ କଟକ କେନ୍ଦ୍ରର କଣ୍ଠଶିଳ୍ପୀ ରୂପେ ସ୍ୱୀକୃତି ଲାଭ କରିଛନ୍ତି ।

Digitized by srujanika@gmail.com

୧୯୩ । **ବିପିନ୍ ବିହାରୀ ଚୌଧୁରୀ :**

ବ୍ୟାସ କବି ଫକୀର ମୋହନଙ୍କ ଦ୍ୱିତୀୟା ପତ୍ନୀ କୃଷ୍ଣା କୁମାରୀଙ୍କ କନ୍ୟା ସରୋଜିନୀ ଦେବୀଙ୍କର ଜ୍ୟେଷ୍ଠପୁତ୍ର ବିପିନ ବିହାରୀଙ୍କ ଘର ବାଲେଶ୍ୱର । ସେ ୧୯୦୭ ମସିହାରେ ଜନ୍ମ ଲାଭ କରିଥିଲେ । ସେ ବାଲ୍ୟ କାଳରୁ ମୂକ ଓ ବଧିର ଥିଲେ । କଲିକତା ମୂକବଧିର ବିଦ୍ୟାଳୟରେ ଶିକ୍ଷା ଲାଭ କରିଥିଲେ । ପରବର୍ତ୍ତୀ କାଳରେ ସେ ଜଣେ ସୁଦକ୍ଷ ଚିତ୍ରଶିଳ୍ପୀ ରୂପେ ପ୍ରସିଦ୍ଧି ଅର୍ଜ୍ଜନ କରିଥିଲେ । ତତ୍କାଳୀନ ବିହାର-ଓଡ଼ିଶା ସରକାରଙ୍କଠାରୁ ବୃତ୍ତି ଲାଭ କରି କମରସିଆଲ ଆର୍ଟରେ ପ୍ରଥମସ୍ଥାନ ଲାଭ କରିଥିଲେ । ସେ ଲଣ୍ଡନର ରଏଲ ଆର୍ଟ କଲେଜରେ ଶିକ୍ଷା ଲାଭ କରି ଉତ୍ତୀର୍ଣ୍ଣ ହୋଇଥିଲେ । ଜଣେ ସୁଦକ୍ଷ ଶିଳ୍ପୀ ଭାବରେ ଜାତିର ଜନକ ବାପୁଜୀ ଓ ପଣ୍ଡିତ ନେହେରୁଙ୍କ ପରି ନେତୃ-ବୃନ୍ଦଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ ।

୧୯୪ । **ମଥୁରାନାଥ ହୋତା :**

ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ଥାନାନ୍ତର୍ଗତ ଖୁସୁଡ଼ା ଗ୍ରାମରେ ୧୯୫୫ ମସିହା ଅଗଷ୍ଟ ମାସ ୮ ତାରିଖରେ ଜନ୍ମ । ପିତା ହେମନ୍ତ କୁମାର ଓ ମାତା ଲକ୍ଷ୍ମୀପ୍ରିୟା ଦେବୀ । ଓଡ଼ିଆ ଭାଷା ସାହିତ୍ୟରେ ଉଚ୍ଚତର ଶିକ୍ଷା ଓ ଗବେଷଣା କରି ଅଧ୍ୟାପନା ସହ ସାରସ୍ୱତ ସାଧନାରେ ବ୍ରତୀ । ପ୍ରକାଶିତ ଗ୍ରନ୍ଥ :—ଜୀବନ ତୀର୍ଥରେ କବି କମଳାକାନ୍ତ (୧୯୮୭), ବିଶ୍ୱାସର ପୃଥିବୀ ଓ ଅବିଶ୍ୱାସର ଆକାଶ (୧୯୯୨), କବି ସଚ୍ଚିରାଉତରାୟଙ୍କ ପାଣ୍ଡୁଲିପି : ଏକ ନୂତନ ଯୁଗର ପ୍ରସ୍ତୁତି (୧୯୯୩), ଓଡ଼ିଶାର ଚିତ୍ର ସଂସ୍କୃତି—(ଯନ୍ତ୍ରସ୍ଥ) ଏସବୁ ପ୍ରବନ୍ଧ, ସନ୍ଦର୍ଭ ଓ ଆଲୋଚନା ପୁସ୍ତକ । ଫୁଲବାଣୀର ଲୋକକଥା, ରାମ ସିଂ ରହିମ ସିଏ, ଧରାଧରଣୀର ଅଲଭା ଦୀପ—ଶିଶୁଗଳ୍ପ ସଂକଳନ ପ୍ରକାଶିତ । 'ତୋର ମନକୁ ଧରି ନାଚୁଥା'ରେ ବୈତାଳିକ'—ଅପ୍ରକାଶିତ କବିତା ସଂକଳନ । ଏତଦ୍‌ବ୍ୟତୀତ ବିଭିନ୍ନ ପତ୍ରପତ୍ରିକା ସଂକଳନରେ କେତେକ ଗବେଷଣା ପ୍ରବନ୍ଧ ପ୍ରକାଶିତ । କେତେକ ସାମୟିକ ପତ୍ରିକାର ସମ୍ପାଦନା ଦାୟିତ୍ୱରେ ଥିବାର ଜଣାଯାଇଛି ।

୧୯୫ । **ମନ୍ମଥ କୁମାର ଦାସ :**

ବାଲେଶ୍ୱର ଜିଲ୍ଲା ଭୋଗରାଇର ବାଗବୁଡ଼ି ଗ୍ରାମରେ ୧୯୪୦ ମସିହାରେ ଜନ୍ମ । ଏହାଙ୍କ ସମ୍ପର୍କରେ ଅଧ୍ୟାପକ ଡଃ ରମାକାନ୍ତ ବେହେରାଙ୍କ ଲିଖିତ ବିବରଣୀରୁ କିଛିଅଂଶ ଉଦ୍ଧାର କରୁଅଛୁ । ସେ ଲେଖିଛନ୍ତି, "ଭୋଗରାଇର ଶ୍ରୀ ମନ୍ମଥ କୁମାର ଦାସ ଜଣେ ସଫଳ ଔପନ୍ୟାସିକ । ମାନବ ଚରିତ୍ର ଅଧ୍ୟୟନରେ ଲେଖକଙ୍କର ପାରଦର୍ଶିତା ପ୍ରଶଂସ-ନୀୟ । ତାଙ୍କର ଭାଷା ସରଳ, ମାର୍ମିକ ଅଭିବ୍ୟକ୍ତି ଓ ପ୍ରକାଶଭଙ୍ଗୀ ଗତାନୁଗତିକ । ତାଙ୍କର ସମାଜ ସଂସ୍କାରମୂଳକ ଦୃଷ୍ଟିଭଙ୍ଗୀ ଅଭିନନ୍ଦନୀୟ ।"

Digitized by srujanika@gmail.com

୧୯୬ । **ରବୀନ୍ଦ୍ର ମୋହନ ସେନାପତି :**

କଥା ସମ୍ରାଟ ଫକୀର ମୋହନ ସେନାପତିଙ୍କ ବଂଶଧର ରବୀନ୍ଦ୍ର ମୋହନଙ୍କ ସାହିତ୍ୟ ସୃଷ୍ଟି ସମ୍ପର୍କରେ ପ୍ରଫେସର ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) କହନ୍ତି, "...ରଚନାଗୁଡ଼ିକ ଆକାରରେ କ୍ଷୁଦ୍ର ଓ ମନୋରଞ୍ଜକ ହେଲେହେଁ ଅତ୍ୟନ୍ତ ସୂଚନା-ଧର୍ମୀ । ଭାବୋଦ୍ଦୀପକ ଓ ଅନୁଚିନ୍ତନୀୟ ହୋଇ ପାରିଛି । କେବଳ ଆଘାତ ଦେବାପାଇଁ ଏଗୁଡ଼ିକ ଉଦ୍ଦିଷ୍ଟ ନୁହେଁ, ପରନ୍ତୁ ଏକ ନୂତନ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ଓ ଆତ୍ମନିରୀକ୍ଷା ପାଇଁ ଏଗୁଡ଼ିକ ଅଭିପ୍ରେତ । ସ୍ୱଦେଶ ପ୍ରୀତି ଯୁଗଗୀର ମହତ୍ତ୍ୱବୋଧ ଓ ନିପୀଡ଼ିତ ଜନଜୀବନ ପ୍ରତି ପ୍ରଚୁର ସହାନୁଭୂତିରୁ ଏହି ରଚନାର ସୃଷ୍ଟି ।" ଲିଖିତ ଗ୍ରନ୍ଥ : ଏଣୁ ତେଣୁ, ଦୃଷ୍ଟିକୋଣ (୧୯୯୧), ମୁଁ ଓଡ଼ିଆ କହୁଛୁ, ନୂଆ ଦୁନିଆଁ, କଥା ଲଥା ଓ ଅନାବନା କଥା (୧୯୯୨), ମନ ମଉଜ (୧୯୯୩), ଓଡ଼ିଶା ଓ ବିବିଧ ପ୍ରସଙ୍ଗ (୧୯୯୫) [ପ୍ରଜାତନ୍ତ୍ର ସାପ୍ତାହିକ ଓ ଦୈନିକରୁ ସଂଗୃହୀତ

୧୯୭ । **ଲକ୍ଷ୍ମୀକାନ୍ତ ତ୍ରିପାଠୀ :**

ପିତାଙ୍କ ନାମ ଉମାକାନ୍ତ ଓ ମାତା ଭଗବତୀ ଦେବୀ । ବାଲେଶ୍ୱର ଜିଲ୍ଲାର ବସ୍ତୁପୁର ଗ୍ରାମରେ ତା ୨୦-୧୦-୧୯୫୬ ରିଖରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚତର ଶିକ୍ଷା ଲାଭ କରି ଭାରତୀୟ ଷ୍ଟେଟ ବ୍ୟାଙ୍କରେ ଚାକିରୀ ଓ ବାଲେଶ୍ୱର ସହରରେ ସ୍ଥାୟୀ ଭାବରେ ବାସ କରୁଛନ୍ତି । ଫକୀର ମୋହନ ସାହିତ୍ୟ ପରିଷଦ ବାଲେଶ୍ୱରର ସମ୍ପାଦକ ଦାୟିତ୍ୱ ସହ ସାରସ୍ୱତ ସାଧନାରେ ବ୍ରତୀ । ପ୍ରକାଶିତ ପୁସ୍ତକ : ଦାର୍ଜି ପେଟେଣ୍ଟ ମେଡ଼ିସିନ୍ (ପ୍ୟାରୋଡ଼ି—୧୯୮୦), ମିତା ପାଇଁ କବିତା (୧୯୮୧), ପ୍ୟାରୋଡ଼ି ପଞ୍ଚବିଂଶତି (୧୯୯୪) । ଅପ୍ରକାଶିତ ଗ୍ରନ୍ଥ—ଆଖି (ନୂତନ ଧରଣର ୧୦ ଗୋଟି ଦୀର୍ଘ କବିତା) । ୧୦୦ ଗୋଟି ଲଘୁ କବିତା, ଧମାଲ୍—(ପ୍ରକାଶିତ ରମ୍ୟ ରଚନା ସଂକଳନ), ଦୁଇଟି ଗଳ୍ପ ସଂକଳନ (ପ୍ରକାଶିତ ଗଳ୍ପ) ଓ ଲୋକ ସାହିତ୍ୟ ଉପରେ ପ୍ରକାଶିତ ପ୍ରବନ୍ଧ ସମୂହର ଏକ ସଂକଳନ ।

୧୯୮ । **ଶରତଚନ୍ଦ୍ର ଭଞ୍ଜଦେଓ :**

ପିତାଙ୍କ ନାମ ହରିଶ୍ଚନ୍ଦ୍ର ଓ ମାତା ବିଳାସ ମଞ୍ଜରୀ ଦେବୀ । ବାରିପଦାର ରାଜ-ପରିବାରରେ ୧୯୦୦ ଖ୍ରୀ. ଅକ୍ଟୋବର ମାସରେ ଜନ୍ମଗ୍ରହଣ କରିଥିଲେ । ଉଚ୍ଚଶିକ୍ଷା ଲାଭ କରି ବ୍ୟବସାୟ ଓ ପରେ ସରକାରୀ ଚାକିରୀ ସହ ସାରସ୍ୱତ ସାଧନା । ପ୍ରକାଶିତ ଗ୍ରନ୍ଥ : ଶରତ୍ ସଙ୍ଗୀତ (୧୩୩୨ ସାଲ) । ସାଧନାର ସ୍ୱୀକୃତି ସ୍ୱରୂପ ଓଡ଼ିଶା ଏକାଡେମୀ ପକ୍ଷରୁ ୧୯୬୮ ମସିହା ଓ ବାରିପଦା ସାହିତ୍ୟ ସଂସଦ ତରଫରୁ ୧୯୭୦ ମସିହାରେ ସମ୍ମାନିତ ହୋଇଛନ୍ତି ।

Digitized by srujanika@gmail.com

ପିତା ହରଶ୍ଚନ୍ଦ୍ର ମଧ୍ୟ ଜଣେ କବି ଥିଲେ । ତାଙ୍କ ସଙ୍କଳିତ 'ମନ୍ଦାରମାଳା' ପୁସ୍ତକ ୧୯୩୦ ମସିହାରେ ପ୍ରକାଶ ପାଇଥିଲା ।

୧୯୯ । **ସତୀଶଚନ୍ଦ୍ର ମିଶ୍ର :**

ପିତାଙ୍କ ନାମ ଗୋବିନ୍ଦ ଚନ୍ଦ୍ର ମାତା ନେତ୍ରମଣି ଦେବୀ । ମୟୂରଭଞ୍ଜ ଜିଲ୍ଲାର ଦାନ୍ତିଆମୁହାଁ ଗ୍ରାମରେ ୧୯୪୪ ମସିହା ଅପ୍ରେଲ ୧ ତାରିଖରେ ଜନ୍ମଗ୍ରହଣ କରିଛନ୍ତି । ସ୍କୁଲ ଶିକ୍ଷା ସମାପ୍ତ କରି ଅଧ୍ୟାପନା ବୃତ୍ତି ସହ ସାରସ୍ୱତ ସାଧନାରେ ବ୍ରତୀ । ରଚିତ ଗ୍ରନ୍ଥ : କାବ୍ୟ ; (୧) ପାରିଜାତ, (୨) ପଦ୍ମାବତୀ (ମୂଳ ବଙ୍ଗଳା ଉପନ୍ୟାସ 'କପାଳ କୁଣ୍ଡଳା' ଆଧାରିତ) ନାଟକ : (୩) ମହିଁ ଦରିଆ, (୪) ଅନେକ ଆଶାର ସ୍ୱପ୍ନ (୫) ପଧାନ ଘର ବାରୁଣୀ (୬) ଅଙ୍କୋପୋଷ । ଉପରଲିଖିତ କାବ୍ୟ ଓ ନାଟକ ସମସ୍ତ ଅପ୍ରକାଶିତ । ନାଟକଗୁଡ଼ିକ ଗ୍ରାମାଞ୍ଚଳ ରଙ୍ଗମଞ୍ଚରେ ଏକାଧିକବାର ଅଭିନୀତ ଓ ପ୍ରଶଂସିତ । ଏତଦ୍‌ବ୍ୟତୀତ କବିଙ୍କର ଭକ୍ତି ସଙ୍ଗୀତ, ଶିଶୁ ସଙ୍ଗୀତ ଓ ଦେଶ ବନ୍ଦନା ପ୍ରଭୃତି ପଞ୍ଚଶତାଧିକ କବିତା ଅପ୍ରକାଶିତ ରହିଅଛି ।

୨୦୦ । **ଶ୍ରୀମତୀ ଦୀପ୍ତି ଦାସ :**

ଶିଶୁ ସାହିତ୍ୟିକା ଓ ଆଧୁନିକ ଗୀତିକବି ଶ୍ରୀମତୀ ଦାସ ୧୯୫୬ ମସିହାରେ ବାଲେଶ୍ୱର ଜିଲ୍ଲାର ବସ୍ତା ଥାନାନ୍ତର୍ଗତ ଚକୁଲିଆ ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ଶିଶୁ ଗଳ୍ପ ସଂକଳନ : ଆମ ପରିବେଶ ଆମ ଜୀବନ । ଶିଶୁ ଲେଖିକା ଭାବେ 'ପ୍ରଜାତନ୍ତ୍ର ବିଷୁବ ମିଳନ' ଅବସରରେ ସମ୍ମାନିତା (୧୯୯୪) (ପ୍ରଜାତନ୍ତ୍ର ସାପ୍ତାହିକୀ) ।

୨୦୧ । **ବଂଶୀଧର ବେହେରା :**

ପିତା ସାଧୁଚରଣ, ମାତା ପଦ୍ମାବତୀ ଦେବୀ । ୧୯୩୩ ମସିହା ଫେବୃୟାରୀ ମାସ ୨୩ ତାରିଖରେ ବାଲେଶ୍ୱର ଜିଲ୍ଲା ବସ୍ତା ଥାନାନ୍ତର୍ଗତ ଉପରଡାପଣ୍ଡା ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ପ୍ରବଳ ଦାରିଦ୍ର୍ୟ ମଧ୍ୟରେ ଗ୍ରାମ ବିଦ୍ୟାଳୟରୁ ପ୍ରାଥମିକ ଶିକ୍ଷା ସମାପ୍ତ କରି ନିଜର କଳାକାର ଜୀବନ ଆରମ୍ଭ କରି ଜଣେ ସଫଳ ନାଟ୍ୟକାର, ସୁଦକ୍ଷ ଅଭିନେତା ନିର୍ଦ୍ଦେଶକ, ଗୀତିକାର, ସଙ୍ଗୀତଜ୍ଞ, ସ୍ୱରଲିପିକାର ଓ ଅନୁବାଦକ ରୂପେ ସୁପରିଚିତ । ଲିଖିତ ନାଟକ : ପୁନେଇଁ ସାଥି, ଶରଦ ପ୍ରାସ, ସତୀ ସାଗର, ଦାରିଦ୍ର୍ୟ ଝଙ୍କାର ବୋହୂ, ପବିତ୍ର ପାପୀ, ଦସ୍ୟୁ ଦରବାର, ଅଶ୍ରୁ ଦରିଆ ତଳେ, ଅଗ୍ନିବାସର ପ୍ରଭୃତି ମୌଳିକ ଓ ଅନୁବାଦ ନାଟକ ଓଡ଼ିଶାର ବହୁ ପ୍ରତିଷ୍ଠିତ ଅପେରାମାନଙ୍କରେ ମଞ୍ଚସ୍ଥ । ସମ୍ପ୍ରତି କଲିକତାର ବହୁ ବଙ୍ଗଳା ଯାତ୍ରାନୁଷ୍ଠାନରେ ଆବହ ସଙ୍ଗୀତ ନିର୍ଦ୍ଦେଶକ

Digitized by srujanika@gmail.com

ତାବରେ ଅବସ୍ଥାପିତ । ଅନୁବାଦ ପୁସ୍ତିକା :—ମହାବଶ୍ବରେ ଲୋକନାଥ—(୧୯୯୬)
ପ୍ରକାଶିତ ।

## ମୟୂରଭଞ୍ଜ ଛଉନୃତ୍ୟ ଶିଳ୍ପୀ : *

**ଦକ୍ଷିଣ ସାହି :—**

୧—ଶ୍ରୀ ଅନନ୍ତ ଚରଣ ସାଏ
୨—ଶ୍ରୀ ଚନ୍ଦ୍ର ଶେଖର ଭଞ୍ଜ
୩—ଶ୍ରୀ କୃଷ୍ଣଚନ୍ଦ୍ର ନାୟକ
୪—ଶ୍ରୀ ସୁରେନ୍ଦ୍ର ପ୍ରଧାନ
୫—ଶ୍ରୀ କାଙ୍ଗାଳି ଚରଣ ପ୍ରଧାନ
୬—ଶ୍ରୀ ରମେଶ ଚନ୍ଦ୍ର ସେଠୀ
୭—ଶ୍ରୀ ସୁରେନ୍ଦ୍ର ବଶୋଇ
୮—ଶ୍ରୀ ଗୁରୁଚରଣ ବେହେରା
୯—ଶ୍ରୀ ଶେଖ ତାମୁ
୧୦—ଶ୍ରୀ ସୁରେନ୍ଦ୍ର ନାୟକ
୧୧—ଶ୍ରୀ ସର୍ବେଶ୍ବର ନାୟକ
୧୨—ଶ୍ରୀ ରାଧାମୋହନ ବେହେରା
୧୩—ଶ୍ରୀ ସୋମନାଥ ମହାପାତ୍ର
୧୪—ଶ୍ରୀ ଚନ୍ଦ୍ରମୋହନ ଦାସ
୧୫—ଶ୍ରୀ ଶମ୍ଭୁନାଥ ଜେନା
୧୬—ଶ୍ରୀ କ୍ଷେତ୍ରମୋହନ ନାୟକ
୧୭—ଶ୍ରୀ ଦିବାକର ଦାସ
୧୮—ଶ୍ରୀ ହାଡ଼ିବନ୍ଧୁ ମହାପାତ୍ର
୧୯—ଶ୍ରୀ ସୀତାରାମ ମହାନ୍ତି
୨୦—ଶ୍ରୀକାନ୍ତ ସେନ
୨୧—ଶ୍ରୀ ବନମାଳୀ ପରିଡ଼ା
୨୨—ଶ୍ରୀ ଉମେଶ ଚନ୍ଦ୍ର ଦାସ
୨୩—ଶ୍ରୀ ମହେଶ ଚନ୍ଦ୍ର ଦାସ
୨୪—ଶ୍ରୀ ଧ୍ରୁବ ଚନ୍ଦ୍ର ବଶୋଇ
୨୫—ଶ୍ରୀ ଜିତେନ୍ଦ୍ର ଜାତ
୨୬—ଶ୍ରୀ ସୁରେନ୍ଦ୍ର ଧଡ଼ା
୨୭—ଶ୍ରୀ ଯୋଗେନ୍ଦ୍ର ଧଡ଼ା
୨୮—ଶ୍ରୀ ଲୋମ୍ବୁଧର ଧଡ଼ା
୨୯—ଶ୍ରୀ ଚକ୍ରଧର ଘଡ଼ାଇ
୩୦—ଶ୍ରୀ ଅଲେଖ ନିରଞ୍ଜନ ବଶୋଇ
୩୧—ଶ୍ରୀ ଦିବାକର ଦାଶ
୩୨—ଶ୍ରୀ ରବୀନ୍ଦ୍ର ନାଥ ଧଡ଼ା
୩୩—ଶ୍ରୀକାନ୍ତ ପାତ୍ର
୩୪—ଶ୍ରୀ ବାବାଜୀ ଘଡ଼େଇ
୩୫—ଶ୍ରୀ ରାଜେନ୍ଦ୍ର ଘଡ଼େଇ
୩୬—ଶ୍ରୀ ରଘୁ ବୈଠା
୩୭—ଶ୍ରୀ ବଦେଶୀ ବୈଠା

---

* ମୟୂରଭଞ୍ଜ ଛଉନୃତ୍ୟ ପ୍ରତିଷ୍ଠାନ, ବାରିପଦା ସ୍ମରଣିକା—୧୯୭୮ରୁ ସଂଗୃହୀତ ।

Digitized by srujanika@gmail.com

**ଭରର ସାହି :**

୧—୰ ପଦ୍ମଚରଣ ଭଞ୍ଜ
୨—୰ ହଂସା ସିଂ
୩—୰ ଦିବାକର ଗିରି
୪—୰ ରଘୁନନ୍ଦନ କୁଅଁର
୫—୰ ସାରଦା ଚନ୍ଦ୍ର କୁଅଁର
୬—୰ ଈଶ୍ୱର ଚନ୍ଦ୍ର ନାଏକ
୭—୰ ଦୁର୍ଗା ଚରଣ ମହାପାତ୍ର
୮—୰ କାର୍ତ୍ତିକ ଚନ୍ଦ୍ର ପାଲ
୯—୰ ପୂର୍ଣ୍ଣଚନ୍ଦ୍ର ମହାପାତ୍ର
୧୦—୰ ଚନ୍ଦ୍ରମୋହନ ବାଗ
୧୧—୰ ହଳଧର ବାଗ
୧୨—୰ ଦୁଆସି କୁଅଁର
୧୩—୰ ଦୁଆସି ବୈଠା
୧୪—୰ ଉଗ୍ରା ଘଡ଼େଇ
୧୫—୰ ବୈଦା ଘଡ଼େଇ
୧୬—୰ ମନ୍ମଥ ଘଡ଼େଇ
୧୭—୰ ବସନ୍ତ ଘଡ଼େଇ
୧୮—୰ ଭଗିରଥି ବୈଠା
୧୯—ଶ୍ରୀ ବୈଦ୍ୟନାଥ ସିଂ
୨୦—ଶ୍ରୀ ମଦନ ମୋହନ ଲେଙ୍କା
୨୧—ଶ୍ରୀ ଲଳମୋହନ ପାଣ୍ଡି
୨୨—ଶ୍ରୀ ହେମଚନ୍ଦ୍ର ବେହେରା
୨୩—ଶ୍ରୀ ସତ୍ୟନାରାୟଣ ଦାସ
୨୪—ଶ୍ରୀ ସର୍ବେଶ୍ୱର କୁଅଁର
୨୫—ଶ୍ରୀ ପ୍ରସନ୍ନ କୁମାର ଦ୍ବୈଧୁରି
୨୬—ଶ୍ରୀ ସୁନ୍ଦର ମୋହନ ନାଏକ
୨୭—ହୁରା ନାଏକ
୨୮—ଶ୍ରୀ ବ୍ରଜବନ୍ଧୁ ନାଏକ
୨୯—ଶ୍ରୀ ଶିବପ୍ରସାଦ ଦାସ
୩୦—ଶ୍ରୀ ବଡ଼ ବୁଢ଼ା
୩୧—ଶ୍ରୀ ଗଣେଶ୍ୱର କୁଅଁର
୩୨—ଶ୍ରୀ ଗଙ୍ଗାଧର କୁଅଁର
୩୩—ଶ୍ରୀଧର କୁଅଁର
୩୪—ଶ୍ରୀ ଶ୍ୟାମଚନ୍ଦ୍ର କୁଅଁର
୩୫—ଶ୍ରୀ ନରେନ୍ଦ୍ର ଦାସ
୩୬—ଶ୍ରୀ ଧନୁଜୟ ଦଲାଇ
୩୭—ଶ୍ରୀ ଭଡେନ୍ଦ୍ର ଘଡ଼େଇ
୩୮—ଶ୍ରୀ ନଗେନ୍ଦ୍ର ବୈଠା
୩୯—ଶ୍ରୀ ହୃଷୁ ମୋହନ ଘଡ଼େଇ
୪୦—ଶ୍ରୀ ବଙ୍କିମ ଚନ୍ଦ୍ର ବୈଠା
୪୧—ଶ୍ରୀକାନ୍ତ ଧଡ଼ୀ
୪୨—ଶ୍ରୀ ଗଜେନ୍ଦ୍ର ବୈଠା
୪୩—ଶ୍ରୀ ଭୂପତି ବୈଠା
୪୪—ଶ୍ରୀ ଭୂପତି ଘଡ଼େଇ
୪୫—ଶ୍ରୀ ଅତୁଲ ଚନ୍ଦ୍ର ଧଡ଼ା
୪୬—ଶ୍ରୀ ଚନ୍ଦ୍ରକାନ୍ତ ଧଡ଼ା
୪୭—ଶ୍ରୀ ଅଜୟ କୁମାର ବୈଠା
୪୮—ଶ୍ରୀ ଗୌର ମୋହନ ଧଡ଼ା
୪୯—ଶ୍ରୀ ବାବାଜୀ ଦାସ
୫୦—ଶ୍ରୀ ଶଶି ଘଡ଼େଇ
୫୧—ଶ୍ରୀ କେଦାର ଘଡ଼େଇ
୫୨—ଶ୍ରୀ ନରେଶ ବୈଠା
୫୩—ଶ୍ରୀ ପ୍ରଫୁଲ୍ଲ ଘଡ଼େଇ
୫୪—ଶ୍ରୀ ଅନନ୍ତ ଧଡ଼ା

Digitized by srujanika@gmail.com

# ଅଭିନେତା

**(କ) ଯାତ୍ରା :**

ଈଶାଣେଶ୍ୱର ଦାସ ମହାପାତ୍ର—ଆରୁହା
ଉପେନ୍ଦ୍ର ନାଥ ଭୂୟାଁ—ଧାନସିମୁଳିଆ
କାର୍ତ୍ତିକ ଚନ୍ଦ୍ର ପଣ୍ଡା—ଜହୁଣ୍ଡିବ
ଗିରିଜା ଶଙ୍କର ମିଶ୍ର—ବାରିପଦା
ଠାକୁର ଦାସ ମହାପାତ୍ର—ବର୍ଦ୍ଧିଲ୍-ମେଦନୀପୁର
ପଦ୍ମନାଭ ପ୍ରଧାନ—ନମପୁର
ପୁରନ୍ଦର ଧଳ—ଭୁରୁଙ୍ଗାଶୋଳ, ମୟୂରଭଞ୍ଜ
ପୂର୍ଣ୍ଣଚନ୍ଦ୍ର ପ୍ରଧାନ—ଚକବାସ୍ତୁ
ପୂର୍ଣ୍ଣଚନ୍ଦ୍ର ମାଇତି—ବଇଁଶ
ବାଞ୍ଛାଧର ପାଣ୍ଡ—ସୁରୋ
ନରେନ୍ଦ୍ର ନାୟକ—ମଧୁପୁରା
ଭାଗବତ ଚନ୍ଦ୍ର ମହାପାତ୍ର—ବାଣିଦା
ଭୁବନ ଚନ୍ଦ୍ର ଦାସ—ବାଣିଦା
ମଧୁସୂଦନ ନନ୍ଦୀ—ଆମ୍ବଳଅଠା
ରଜନୀକାନ୍ତ ଜେନା—କଲ୍ୟାଣପୁର
ରମାନାଥ ମହାପାତ୍ର—ନାମ୍ପୋ
ରାଇଚନ୍ଦ୍ର ମହାନ୍ତି—ନଷ୍ଟିମ୍ପୁର
ରାଧାକାନ୍ତ ଗିରି—ନନ୍ଦକା
ସତ୍ୟ ବେହେରା—କୁଣ୍ଡପୁର
ସତ୍ୟମନ୍ତ ଆଚାର୍ଯ୍ୟ—ଛମୌଜ
ସତ୍ୟେନ୍ଦ୍ର ଷଡ଼ଙ୍ଗୀ—ନାମ୍ପୋ
ହରିହର ଦାସ ଅଧିକାରୀ—ନାମ୍ପୋ
କ୍ଷିତିଶ ଚନ୍ଦ୍ର ଜେନା—ଚେଙ୍ଗୁଡ଼ି ସାହି

**(ଖ) ଚଳଚ୍ଚିତ୍ର :**

ଅମୀନ୍ଦ୍ର କୁମାର ପଟ୍ଟନାୟକ—ଭୋଗରାଇ
ଅସିତ ପତି —ବାରିପଦା
ଉତ୍ତମ କୁମାର ମହାନ୍ତି— ,,
ସଦାନନ୍ଦ ସାହୁ (ଗଡ଼ୁ) ,,

ବସନ୍ତ କୁମାର ମହାନ୍ତି—ବାରିପଦା
ହିମାଂଶୁ ଶେଖର ଦାସ—ନାମ୍ପୋ

## ସଙ୍ଗୀତଜ୍ଞ/ବାଦ୍ୟକାର

ଅନିରୁଦ୍ଧ ଦାସ—ଇକଡ଼ା
ଅଯୋଧ୍ୟାରାମ ମଣ୍ଡଳ—ସାହାବନ୍ଦର
ଅଶୋକ କୁମାର ମୁଖାର୍ଜି—ବାରିପଦା
କାଜଲ ଦାସ—ନାମ୍ପୋ
କାଳଚରଣ ସିଂ—ବଡ଼ ମୁଣ୍ଡାବଣି
କୃଷ୍ଣଚନ୍ଦ୍ର ରାଉତ—ଶିମିଳିଆପଦା
କେଦାର ନାଥ ଜେନା—ନହରା
ଗଜାନନ ଦାସ—ବଶିଷ୍ଠପୁର
ଗଣେଶ ଚନ୍ଦ୍ର ଜେନା—ଜଳେଶ୍ୱର
ଗୁରୁଲତା ମିଶ୍ର—ବାଲେଶ୍ୱର
ଜଗବନ୍ଧୁ ସାହୁ—ବାରିପଦା
ଧନେଶ୍ୱର ପଣ୍ଡା—ନାମ୍ପୋ
ନରେନ୍ ପାଲ—ବାରିପଦା
ନାଗମଣି ମହାନ୍ତି—ବାଲେଶ୍ୱର
ପୂର୍ଣ୍ଣଚନ୍ଦ୍ର ଦାସ ଅଧିକାରୀ—ବର୍ଣ୍ଣାଳୀ
ପ୍ରମୋଦ ଚନ୍ଦ୍ର ନାୟକ—ସାନ ମୁଣ୍ଡାବଣି
ଫଣୀଭୂଷଣ ପଣ୍ଡା—ଚନ୍ଦନେଶ୍ୱର
ବିମଳେନ୍ଦୁ ଦାସ ମହାପାତ୍ର—ଆରୁହା
ବୃନ୍ଦାବନ ଗୋସ୍ୱାମୀ—ବାଲେଶ୍ୱର
ଭଜହରି ପାତ୍ର—ଜମର୍ଦ୍ଦା
ଭୂପତି ଚରଣ ପାଲ—ଆରୁହା
ମହେଶ୍ୱର ପ୍ରଧାନ—ନିମପୁର
ମାନଗୋବିନ୍ଦ ପଣ୍ଡା—ବାଉଁଶଭଦ୍ରା
ରବୀନ୍ଦ୍ର କୁମାର ମହାପାତ୍ର—ବାଲେଶ୍ୱର
ରାଧାକୃଷ୍ଣ ଭକ୍ତ—ବାରିପଦା
ରାଧାମୋହନ ସାହୁ—ଦେବକୁମାର
ଶାନ୍ତନୁ କୁମାର ମହାପାତ୍ର—ବାରିପଦା

Digitized by srujanika@gmail.com

ଶ୍ରୀପତି ମହାନ୍ତ—ନସର୍ବାଦ
ସୁଧୀର କୁମାର ଦାସ ମହାପାତ୍ର—ବାଇତପଡ଼ା
ସରୋଜ ପଟ୍ଟନାୟକ—ବାରିପଦା
ସରୋଜ ମିଶ୍ର—ବଳରାମପୁର, ବାଲେଶ୍ୱର
ସୁକୁମାର ସାହୁ—ବାଲେଶ୍ୱର
ହଳଧର ପ୍ରଧାନ—ଝାଡ଼ସିଂପଲ
ହରେକୃଷ୍ଣ ବେହେରା—କୁଆଁଳ
ହାରଣ ମିର୍ଧା—ମଦାରୁଣୀ
ଗିରଧାରୀ ପାତ୍ର—ଶାଳୁଆ ଡହର, ଶୃଙ୍ଖଳାଆପଦା, ମୟୂରଭଞ୍ଜ
ଗିରଣ ଚନ୍ଦ୍ର ପଟ୍ଟନାୟକ—ମହାବଲ, ଶୃଙ୍ଖଳାଆପଦା
ପ୍ରଫୁଲ୍ଲ ଚନ୍ଦ୍ର ସିଂଦେଓ—ବାରିପଦା

## ଗାୟକ

**କ—ପାଲା :**

ଅର୍ଜୁନ ଚରଣ ଭକ୍ତ—ନନ୍ଦକା
ଅଚ୍ୟୁତାନନ୍ଦ ଧଳ—ଖଡ଼ିଆ ଶୋଳ
ଚନ୍ଦ୍ରମୋହନ ମହାପାତ୍ର—ବାଣିଦା
ଦେବେନ୍ଦ୍ର ଧଳ—ନାଉକା
ନରସିଂହ ବାରିକ—ବେଲବାରିଆ
ନୀଳମଣି ସି—କାଠ ଗୋହଲା
ପ୍ରତାପଚନ୍ଦ୍ର ମହାନ୍ତି—ପାଇକସିଦା
ପ୍ରଭାକର ଦେଓ—ବଡ ଶୋଳ
ବିଜୟକୁମାର ପାଠୀ—ଗେଙ୍ଗୁଟିଆ
ବମାଧର ସେନାପତି—ବେଲବାରିଆ
ବଣେଶ୍ୱର ଦାସ—ଖିଆଦା
ବିଶ୍ୱନାଥ ଦେଓ—ବେଙ୍କ
ଭୂଦେବ ପଣ୍ଡା—ରୂପସା
ଭାସ୍କରଚନ୍ଦ୍ର ବେହେରା—ମାଙ୍କଣାଡ଼ିହ
ରାଜକିଶୋର ରାଜ—ବଡ଼ ବଇଣ୍ଟା
ରାମଚନ୍ଦ୍ର ଦାସ—ବଡ଼ାପାଳ

Digitized by srujanika@gmail.com

ଶଙ୍କର ଓଝା—ବଡ଼ାପାଳ
ସର୍ବେଶ୍ୱର ପଣ୍ଡା – ଶାନକୋଠା
ସୁନଆଁ ବାରକ—ସୁଖ୍ ଦୁଃଖିଆ
ସୁରେନ୍ଦ୍ର ପ୍ରଧାନ—ଚକବନ୍ଧ
ସୃଷ୍ଟିଧର ଦାସ—ଝୁଆଡ଼
ସୃଷ୍ଟିଧର ଭଞ୍ଜ—ନନ୍ଦକା

**ଖ—କୀର୍ତ୍ତନ :**

ଅବନ୍ତୀ ମାନ୍ନା—ବର୍ଦ୍ଧିଗ୍ର
ଝାଡ଼େଶ୍ୱର ଦାସ—ଇକଡ଼ା
ନୀଳକଣ୍ଠ ନାୟକ—ବର୍ଦ୍ଧିଗ୍ର
ବନମାଳୀ ଦାସ—ବାଣିଦା
ଯଦୁ ଦାସ (ସୁରସାଗର)—କାନ୍ଥୀ
ରାଧାନାଥ ଦାସ (ଭବସାଗର)—ଛମୌକ
ସୁବଳ ଚନ୍ଦ୍ର ଦାସ—ମେଦନୀପୁର

ଜଗନ୍ନାଥ ମହାପାତ୍ର (ବାଣିଦା), କବି ବନମାଳି ସେନାପତି (ଜଳେଶ୍ୱର, ବାଲେଶ୍ୱର), ନୀଳମଣି ସିଂ (କାଠ ଗୋହଲା, ମୟୂରଭଞ୍ଜ)ଙ୍କ ନିକଟରୁ ସଂଗୃହୀତ ।

Digitized by srujanika@gmail.com

# ଓଡ଼ିଆ ଭାଷା-ବଙ୍ଗଲିପି ପୁସ୍ତକ ତାଲିକା

| କ୍ର: ନ: | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକାଶନର ସମୟ/ସଂସ୍କରଣ | ପୃଷ୍ଠା |
|---|---|---|---|---|---|---|---|
| ୧ | ଶ୍ରୀ ଶ୍ରୀ ରାଧିକା ବିଳାପ ବା ବାରମାସି ପଢ | ଶ୍ରୀ ବନମାଳି ଦାସ— ସା: ଗଡ଼ଗଡ଼ିଆ | | ବାର ପଇସା | କଳ୍ପନା ଛାପା-ଘର, ଦାନ୍ତନ। | ପ୍ରଥମ ସଂସ୍କରଣ | ୯ |
| ୨ | ସଖି ସେନାର ଗାନ | ଶ୍ରୀ ଭୁବନ ମୋହନ ଜାନା— ସା: ନନ୍ଦରପୁର ପୋ: ଆଟବାଟୀ ଜି: ମେଦିନୀପୁର | | ୧୯ ପଇସା | | | ୮ |
| ୩ | ପରଶ ମଣି | ଶ୍ରୀ ଝଡ଼ୁକ ଚରଣ ଦାସ | ଶ୍ରୀ ଭୁବନମୋହନ ଜାନା ସା: ନନ୍ଦରପୁର ଜି: ମେଦିନୀପୁର | ୨୦ ନୟା ପଇସା | ଦ ନଉ ଭବାନୀ ପ୍ରେସ, କାନ୍ଥି। | ସନ ୧୩୬୭ ୧ଲା ଚୈତ୍ର | ୧୨ |
| ୪ | ଗେଲ୍ହା ଝିଅ (୧) ଗେଲ୍ହା ଝିଅ (୨) | ଚନ୍ଦ୍ରମୋହନ ଧଳ ଗ୍ରା: ଜଳଧା ପୋ: ଦନ୍ତମୁଣ୍ଡା ଜି: ବାଲେଶ୍ୱର | ଶ୍ରୀ ଭୁବନମୋହନ ଜାନା ଛନଆଣ ମାତ୍ର ସା: ନନ୍ଦରପୁର ଜି: ମେଦିନୀପୁର | ୨୦ ନୟା ପଇସା | | ବଙ୍ଗ ସ. ୧୩୬୯ ସାଲ / ସନ ୧୩୬୯ | ୧୬ / ୧୨ |
| ୫ | ଜଳକେଳି ଓ ବସ୍ତ୍ର ହରଣ | ଶ୍ରୀ ବନମାଳି ଦାସ ସା: କାଶିଡ଼ିହା ପୋ: ଜଳେଶ୍ୱର ଜି: ବାଲେଶ୍ୱର | ଲେଖକ ସ୍ୱୟଂ ବଙ୍ଗାକ୍ଷର ପ୍ରକାଶନ | ଛଅ ପଇସା | ଗୋପଲକ୍ଷ୍ମୀ ପ୍ରେସ ଜଳେଶ୍ୱର | ୧୯୬୦ | ୫ |

Digitized by srujanika@gmail.com

| କ୍ର:ନ: | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକାଶନର ସମୟ/ସଂସ୍କରଣ | ପୃଷ୍ଠା |
|---|---|---|---|---|---|---|---|
| ୬ | ଆଧୁନିକ ଫାର୍ମ | ଶ୍ରୀ ବନମାଳୀ ଦାସ | ଶ୍ରୀ ରାଖାଲଚନ୍ଦ୍ର ଦାସ ଗ୍ରା: ଦେଉଳା ପୋ: ଦୁର୍ଗାଗ୍ରାଇସ ମିଲ ଜି: ବାଲେଶ୍ୱର | ଛଅ ନୟା ପଇସା | ଗୋପଲକ୍ଷ୍ମୀ ପ୍ରେସ ଜଳେଶ୍ୱର | ୨ୟ ମୁଦ୍ରଣ | ୬ |
| ୭ | ବନ୍ଧୁଆଡ ତାଳ ବାଇଡ଼ଙ୍କ ଫଳ | ଶ୍ରୀ ରାଖାଲଚନ୍ଦ୍ର ଦାସ ଗ୍ରା: ଦେଉଳା ପୋ: ଲକ୍ଷ୍ମଣନାଥ ରୋଡ଼ ଜି: ବାଲେଶ୍ୱର | ଶ୍ରୀ ଦୈତାରି ଚରଣ ଜେନା ଗ୍ରା: ଦେଉଳା ପୋ: ଲକ୍ଷ୍ମଣନାଥ ରୋଡ଼ ଜି: ବାଲେଶ୍ୱର | ୧୦ ପଇସା | ବାଣୀ ପ୍ରେସ ଜଳେଶ୍ୱର | | ୬ |
| ୮ | ଅଖିକୃଷ୍ଣ ଗ୍ରୈଡ୍ରିଣ ମନ୍ଧାବଳୀ ଗ୍ରାମ ବନବାସ ବା କୌଶଲ୍ୟା ର ରୋଦନ | | ଶ୍ରୀ ଭୁବନ ମୋହନ ଜାନା ଗ୍ରା: ନଟରପୁର ଜି: ମେଦିନୀପୁର | ୨୫ ପଇସା | | ସନ ୧୩୭୩ | ୧୧ |
| ୯ | ଜଳ କେଳି | | ଶ୍ରୀ ବନମାଳି ଦାସ ଗ୍ରା: କାଣ୍ଡିଡ଼ିହା ଜି: ବାଲେଶ୍ୱର | ଗୃଣ ପଇସା | ନବ ଉତ୍କଳ ପ୍ରେସ ବାଲେଶ୍ୱର | ୧୯୪୭ | ୫ |
| ୧୦ | ହରିଣୀ ସ୍ତୁତି | ଜଗନ୍ନାଥ ଦାସ | | | | | ୧୬ |
| ୧୧ | ସୁନାଝିଅ | ପ୍ରାଣକୃଷ୍ଣ | | | | | ୧୪ |
| ୧୨ | ଗଜସ୍ତୁତି | ଜଗନ୍ନାଥ ଦାସ | ଶ୍ରୀ ଯତୀନ୍ଦ୍ର ନାଥ ଜାନା | ଦୁଇଆନା ମାତ୍ର | ନୀହାର ପ୍ରେସ, କାନ୍ଥି | ଊନବିଂଶ ସଂସ୍କରଣ ୧୩୬୭ ସାଲ | ୧୬ |

Digitized by srujanika@gmail.com

| କ୍ର:ନ: | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକାଶନ ସମୟ/ସଂସ୍କରଣ | ପୃଷ୍ଠା |
|---|---|---|---|---|---|---|---|
| ୧୩ | ଦହବାଙ୍କ ଗୀତ ଓ ଓଡ଼ିଆ ନାରିଣୀ | | ଶ୍ରୀ ପ୍ରଶାନ୍ତ କୁମାର ଦାସ ସା: ସୋଲ ପାଠ୍ଠା ପୋ: ସୁରେ ଜି: ବାଲେଶ୍ୱର | ୩୦ ପଇସା | ବସୁଶ୍ରୀ ପ୍ରେସ ଦାନ୍ତନ | | ୭ |
| ୧୪ | ନଣନ୍ଦ ଲଗି ଶଳା ଭାଉଜର ବେଦନ | | ଶ୍ରୀ ପ୍ରଶାନ୍ତ କୁମାର ଦାସ ସା: ସୋଲପଠ୍ଠା ଜି: ମେଦିନୀପୁର | ୩୦ ପଇସା | କଳ୍ପନା ଛାପାଘର ଦାନ୍ତନ | | ୮ |
| ୧୫ | କୁବେର ଜନ୍ମ ବୃତ୍ତାନ୍ତ | ଶ୍ରୀ ରାମଚରଣ ଭୂଇ ନୀଳଗିରି | ଶ୍ରୀ ଗଜେନ୍ଦ୍ରନାଥ ଜାନା ସା: କଲସାପୁଣ ମୀରଗୋଦା, ମେଦିନୀପୁର | ୧୨ ନୟା ପଇସା ମାତ୍ର | କଳ୍ପନା ଛାପାଘର ଦାନ୍ତନ | | ୮ |
| ୧୬ | ସୁଲକ୍ଷଣୀ ଝିଅ | ଶ୍ରୀ ପ୍ରଶାନ୍ତ କୁମାର ଦାସ ସୋଲପାଠ୍ଠା, ମେଦିନୀପୁର | | ୩୦ ପଇସା | କଳ୍ପନା ଛାପାଘର ଦାନ୍ତନ | | ୮ |
| ୧୭ | ଆଦର୍ଶ ନାରୀ | | ଶ୍ରୀ ପ୍ରଶାନ୍ତକୁମାର ଦାସ ସୋଲପଠ୍ଠା, ମେଦିନୀପୁର | ୩୦ ପଇସା | ଶାରଦା ପ୍ରେସ ଜଲେଶ୍ୱର | | ୭ |
| ୧୮ | ଭଜନ ସାର ବା ଜଗନ୍ନାଥ ଭଜନ | | ଶ୍ରୀ ରଘୁନାଥ ପ୍ରମାଣିକ | ୭୫ ପଇସା | କଳ୍ପନା ଛାପାଘର ଦାନ୍ତନ | | ୧୬ |

Digitized by srujanika@gmail.com

| କ୍ର:ନ: | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକାଶକ ସମୟ/ସଂସ୍କରଣ | ପୃଷ୍ଠା |
|---|---|---|---|---|---|---|---|
| ୧୯ | ହିଉପନ ମାଷ୍ଟର | | ଶ୍ରୀ ନିତ୍ୟାନନ୍ଦ ଦାସ<br>ସା: ଦେଉଳା<br>ପୋ: ଲକ୍ଷ୍ମଣନାଥ ରୋଡ଼<br>ବାଲେଶ୍ୱର | ୧୫ ପଇସା | | | ୭ |
| ୨୦ | ପତ୍ନୀ ଚନ୍ଦ୍ରା | ଶ୍ରୀ ନିତ୍ୟାନନ୍ଦ ଶ୍ୟାମଲ | ଶ୍ରୀ ଭଗବାନ ଚନ୍ଦ୍ର ଶ୍ୟାମଲ<br>ସା: ଶ୍ରୀରାମପୁର<br>ପୋ: ଖିସ୍ନାଲ ପାଇ<br>ଜି: ମେଦନୀପୁର | ୩୦ ପଇସା | ବନ୍ଦନା ପ୍ରେସ<br>ଏଗରା<br>ମେଦନୀପୁର | | ୪ |
| ୨୧ | ବେହୁଲ ରୋଦନ | ଶ୍ରୀ ଉମାକାନ୍ତ ପାତ୍ର<br>ସା: ଆଲଙ୍ଗିର<br>ପୋ: ବୈତା ବାଜାର<br>ମେଦନୀପୁର | | | ନୀହାର ପ୍ରେସ<br>କାନ୍ଥି | | ୧୫ |
| ୨୨ | ମାଧବ ଓ ସୁଲୋଚନା | | ଶ୍ରୀ ଭୁବନ ମୋହନ ଜାନା<br>ସା: ନନ୍ଦରପୁର<br>ଜି: ମେଦନୀପୁର | ୧୫ ପଇସା | ନୀହାର ପ୍ରେସ<br>କାନ୍ଥି | ୧୩୭୩ ସାଲ | ୫ |
| ୨୩ | କର୍ମଚନ୍ଦ୍ରା ଓ ସ୍ୱାମୀର ଶୋକ | | ଶ୍ରୀ ନମାଇଁ ଚନ୍ଦ୍ର ମାନ୍ନା<br>ସା: ଚନ୍ଦ୍ରୀକଲପୁଜା<br>ମେଦନୀପୁର | ୧୫ ପଇସା | ଶ୍ରୀମା ଆର୍ଟ ପ୍ରେସ<br>ମାରଣ୍ ଦା | | ୮ |

Digitized by srujanika@gmail.com

| କ୍ର: ନ: | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକାଶନ ସମୟ/ସଂସ୍କରଣ | ପୃଷ୍ଠା |
|---|---|---|---|---|---|---|---|
| ୨୪ | ଭବିଷ୍ୟ ପୁରାଣାନ୍ତର୍ଗତ ରାଧାଷ୍ଟମୀ ବ୍ରତ | | ୭ ମଧୁସୂଦନ ଜାନା ନୀହାର ପ୍ରେସ କନ୍ଥି | ୫୦ ପଇସା | ନୀହାର ପ୍ରେସ କାନ୍ଥି | ସପ୍ତୋଦଶ ସଂସ୍କରଣ ୧୩୭୩ ସାଲ | ୧୪ |
| ୨୫ | କପଟ ପାଶା | ଖେମା ଧୀବର | ସଂଗ୍ରାହକ ଶ୍ରୀ ପଞ୍ଚାନନ ଦାସ | ଟ ୧.୦୦ | ନୀହାର ପ୍ରେସ | ପ୍ରଥମ ସଂସ୍କରଣ କାନ୍ଥି | ୪୧. |
| ୨୬ | ଟୀକା ଭଗବତ ବା ଭଗବତ ସାର | ଜଗନ୍ନାଥ ଦାସ | ଶ୍ରୀ ଯତୀନ୍ଦ୍ରନାଥ ଜାନା ନୀହାର ପ୍ରେସ କାନ୍ଥି | ୭୫ ପଇସା | ନୀହାର ପ୍ରେସ କାନ୍ଥି | ପଞ୍ଚବିଂଶ ସଂସ୍କରଣ ସନ ୧୩୭୨ ସାଲ | ୨୮ |
| ୨୭ | ବ୍ରହ୍ମାଣ୍ଡ ଭୂଗୋଳ | ମହାତ୍ମା ଜଗନ୍ନାଥ ଦାସ ଓ ବଳରାମ ଦାସ | ଶ୍ରୀ ଯତୀନ୍ଦ୍ରନାଥ ଜାନା ନୀହାର ପ୍ରେସ | ଟ ୪.୦୦ | ନୀହାର ପ୍ରେସ | ୨ୟ ସଂସ୍କରଣ ସନ ୧୩୬୮ ସାଲ | ୫୭ |
| ୨୮ | ଚମ୍ପାବତୀ ହରଣ | | ଶ୍ରୀ ପୂର୍ଣ୍ଣଚନ୍ଦ୍ର ପ୍ରମାଣିକ ସା. ଭଟପାଡ଼ା ପୋ. ଆଠିକେଲ୍ଲା ମେଦିନୀପୁର | ୧୯ ପଇସା | ନୀହାର ପ୍ରେସ | ୧୩୭୨ ସାଲ | ୧୬ |
| ୨୯ | ରାମ ବନବାସ | ଶ୍ରୀ କ୍ଷେତ୍ରମୋହନ ଦାସ | ଶ୍ରୀ ମାଧବ ଚନ୍ଦ୍ର ଗେଟ୍ୟା | ୩୫ ପଇସା ମାତ୍ର | ନୀହାର ପ୍ରେସ | | ୧୩ |
| ୩୦ | ଜନ୍ମାଷ୍ଟମୀ ବ୍ରତ | ଭକ୍ତକବି ଜଗନ୍ନାଥ ଦାସ | ଶ୍ରୀ ଯତୀନ୍ଦ୍ରନାଥ ଜାନା ନୀହାର ପ୍ରେସ | ୨୫ ପଇସା | ନୀହାର ପ୍ରେସ | ଅଷ୍ଟାଦଶ ସଂସ୍କରଣ ୧୩୫୯ ସାଲ | ୧୪ |
| ୩୧ | ପଞ୍ଚକ ବ୍ରତକଥା | ବିପ୍ର କୃପାସିନ୍ଧୁ | | | ନୀହାର ପ୍ରେସ | ତା ୨।୧୧।୫୭ ସାଲ | ୭୩ |
| ୩୨ | ଦାନବୀର ହରିଶ୍ଚନ୍ଦ୍ର | ଭିକୁକ ଚରଣ ଦାସ | ପ୍ରଶାନ୍ତ କୁମାର ଦାସ ସା. ସୋଲପାଟ୍ଟା ମେଦିନୀପୁର | | | | |

Digitized by srujanika@gmail.com

| କ୍ର.ନ. | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକାଶନ ସମୟ/ସସ୍କରଣ | ପୃଷ୍ଠା |
| --- | --- | --- | --- | --- | --- | --- | --- |
| ୩୩ | ଚନ୍ଦନେଶ୍ୱରଙ୍କର ଆବିର୍ଭାବ | | ଭୁବନ ମୋହନ ଜାନା ସା· ନନ୍ଦରପୁର, ମେଦନୀପୁର | | ମୈଳଜା ଆର୍ଟ ପ୍ରେସ କାନ୍ଥି | | |
| ୩୪ | ଗଜସ୍ତୁତ | | | | ନୀହାର ପ୍ରେସ କାନ୍ଥି | | |
| ୩୫ | ବାମନ ଜନ୍ମ | | | | ନୀହାର ପ୍ରେସ | | |
| ୩୬ | ଲକ୍ଷ୍ମୀବ୍ରତ କଥା | ଦ୍ୱିଜ ମୁରାରି | ମଧୁସୂଦନ ଜାନା ନୀହାର ପ୍ରେସ | ଦୁଇଅଣା ମାତ୍ର | ନୀହାର ପ୍ରେସ | ୧୬୩୭ ସାଲ | ୧୫ |
| ୩୭ | ଭାଗବତ ଏକାଦଶ ସ୍କନ୍ଧ ଭକ୍ତକବି ଜଗନ୍ନାଥଦାସ | | | | ନୀହାର ପ୍ରେସ | | |
| ୩୮ | ତ୍ରିନାଥ ମେଳା | | | | ନୀହାର ପ୍ରେସ | | |
| ୩୯ | କାର୍ତ୍ତିକ ମାହାତ୍ମ୍ୟ | | ମଧୁସୂଦନ ଜାନା ନୀହାର ପ୍ରେସ | | ନୀହାର ପ୍ରେସ | | |
| ୪୦ | ସାବିତ୍ରୀ ସତ୍ୟବାନ | | ପ୍ରଶାନ୍ତ କୁମାର ଦାସ ସୋଲପଟ୍ଟା, ମେଦନୀପୁର | ୪୦ ପଇସା | ଶାରଦା ପ୍ରେସ, ଜଲେଶ୍ୱର | | ୯ |
| ୪୧ | ଆଖଣ୍ଡଳମଣିଙ୍କ ଜଣାଣ ଓ ଭଜନ | | ଶ୍ରୀ ପ୍ରଶାନ୍ତ କୁମାର ଦାସ ସା. ସୋଲପଟ୍ଟା ଜି. ମେଦନୀପୁର | | ଶାରଦା ପ୍ରେସ ଜଲେଶ୍ୱର | | |

Digitized by srujanika@gmail.com

| କ୍ର: ନ: | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକଶନ ସମୟ/ସଂସ୍କରଣ | ପୃଷ୍ଠା |
|---|---|---|---|---|---|---|---|
| ୪୧ | ସୀତା ସ୍ୱେଶ୍ୱ | | ସମ୍ପାଦକ ଶ୍ରୀ ଭୁବନ ମୋହନ ଜାନା ନସ୍କରପୁର, ମେଦନୀପୁର | | ବାଣୀ ପ୍ରେସ କାନ୍ଥି | | |
| ୪୩ | ଶ୍ରୀ ଶ୍ରୀ ରାଧାରାଣୀ ସ୍ୱେଦନ | | ସମ୍ପାଦକ ଶ୍ରୀ ଭୁବନ ମୋହନ ଜାନା | | ନୀହାର ପ୍ରେସ କାନ୍ଥି | | |
| ୪୪ | ହରଣୀ ସ୍ତୁତ | | ଶ୍ରୀ କ୍ଷେତ୍ରମୋହନ ମହାପାତ୍ର ସା: ସାଉଁଟିଆ ଜି: ମେଦନୀପୁର | | ମାଧବୀ ପ୍ରେସ ମେଦନୀପୁର | | |
| ୪୫ | ଚେଢ଼ଆ ଚେଢ଼ଆଣୀର ଝଗଡ଼ା | | ସ. ଭୁବନ ଚନ୍ଦ୍ର ଜାନା ନସ୍କରପୁର, ମେଦନୀପୁର | | ଶ୍ରୀ ବିପ୍ଲବ ପ୍ରେସ ସାତ ମାଇଲ ବାଜାର ମେଦନୀପୁର | | |
| ୪୬ | ରାମ ବନବାସ | କ୍ଷେତ୍ରମୋହନ ଦାସ | | | ନୀହାର ପ୍ରେସ କାନ୍ଥି | | |

Digitized by srujanika@gmail.com

| କ୍ର.ନ. | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରେସ | ପ୍ରକାଶନ ସମୟ/ସଂସ୍କରଣ | ପୃଷ୍ଠା |
|---|---|---|---|---|---|---|---|
| ୪୭ | ଦେଉଳ ତୋଳା | | | | ଜହ୍ନାର ପ୍ରେସ କାନ୍ଥି | | |
| ୪୮ | ଦୁଇ ସମୁଦୁଣୀ କଳି | | ଶ୍ରୀ ମଧୁସୂଦନ ଆଗୁର୍ଯ୍ୟ କାଠଶଗଡ଼ା,ବାଲେଶ୍ୱର | ୩୦ ପଇସା | ଶାରଦା ପ୍ରେସ ଜଳେଶ୍ୱର | | ୭ |
| ୫୦ | ରେକର୍ଡ଼ ସୀତାଚୁରି | | ଶ୍ରୀ ଗୁଣାଧର ଭୂୟାଁ ସା. ଝଡ଼ଖାମଡ଼ା, ମେଦନୀପୁର | ୪୦ ପଇସା | | ବାଂଲସନ ୧୩୮୭ ସାଲ | ୭ |
| ୫୧ | ଶ୍ରୀ ଚନ୍ଦନାଷ୍ଟକମ | ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ ନାମୋ, ବାଲେଶ୍ୱର | ଶ୍ରୀଯୁକ୍ତ ପଣ୍ଡିତ ଗଙ୍ଗାଧର ଶତପଥି | | ସରସ୍ୱତୀ ପ୍ରେସ ଚନ୍ଦ୍ରପୁର, କାନ୍ଥି | | ୧୪ |
| ୫୨ | ଜୋତଦାରୁଙ୍କ ହାତରୁ ଗରିବଙ୍କ ଶାନ୍ତି | ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ମାଇତି ସା. ହାସିମପୁର | ଶ୍ରୀ ହର ବାଘ ବେନାପୁର, ମେଦନୀପୁର | ୨୫ ପଇସା | | | ୮ |
| ୫୩ | ପରଣ ମନ | ଭାବୁକ ଚରଣ ଦାସ | | | ପ୍ରହ୍ଲାଦ ପ୍ରେସ ଏଗ୍ରା | | |

Digitized by srujanika@gmail.com

| କ୍ର.ନଂ: | ପୁସ୍ତକର ନାମ | ଲେଖକ | ପ୍ରକାଶକ | ମୂଲ୍ୟ | ପ୍ରକାଶନ ସମୟ/ସଂସ୍କରଣ | ପ୍ରେସ | ପୃଷ୍ଠା |
|---|---|---|---|---|---|---|---|
| ୧ | କାଙ୍କେର ହାଓଯା ଫକୀର ଛଡ଼ା | ଶ୍ରୀ ମନୋରଞ୍ଜନ ସାହା ସାଃ ବାଣ୍ଡସ ମହକୁମା କୃମିଲ୍ଲା—ଜି: ତ୍ରିପୁରା | ରଖାଲଚନ୍ଦ୍ର ଦାସ ସା: ଦେଭଲା, ଲକ୍ଷଣନାଥ ରୋଡ଼ ଜି. ବାଲେଶ୍ୱର | ୨୦ ନୂ.ପ: | | ଗୋପଲକ୍ଷ୍ମୀ ପ୍ରେସ ଜଳେଶ୍ୱର | ୬ |
| ୨ | ମଗଛେଲେର ବଏ | ଶ୍ରୀ ସବୁକଚରଣ ଦାସ | ଶ୍ରୀ ଦିବ୍ୟେଶ୍ୱର ବଣା ସୁକୁନ୍ଦଅ, ପୋ.ସର୍ପାଇ ଥା: କାନ୍ଥି-ମେଦିନୀପୁର | ୩୦ ପ: | | ଶାରଦା ପ୍ରେସ ଜଳେଶ୍ୱର | ୧୧ |

## ଓଡ଼ିଆ ଲିପି-ବଙ୍ଗ ଭାଷା ପୁସ୍ତକ ତାଲିକା

(ଜନ କର୍ଣ୍ଣଙ୍କ ଷୋଳପାଲ ବଙ୍ଗ ଭାଷା ଓ ଓଡ଼ିଆ ମିଶ୍ରିତ ଭାଷାରେ ରଚିତ ଓଡ଼ିଆ ଲିପିରେ ପ୍ରକାଶିତ । ଏହାକୁ ଜ୍ଞାନତଃ ଏହି ତାଲିକାରେ ଅନ୍ତର୍ଭୁକ୍ତ କରଯାଇ ନାହିଁ ।)

Digitized by srujanika@gmail.com

# ଉତ୍ତର-ପୂର୍ବାଞ୍ଚଳୀୟ ତାଳପତ୍ର ପୋଥି ତାଲିକା

(ଏ ସମସ୍ତ ବିଶ୍ୱଭାରତୀ ଓଡ଼ିଆ ପୋଥି ବିଭାଗରେ ରକ୍ଷିତ ଅଛି ।)

| କ୍ର:ନ: | ପୋଥିର ନାମ | ଲେଖକ | ସମୟ | ଲିପି | ଭାଷା | ସ୍ଥାନ |
|---|---|---|---|---|---|---|
| ୧ | ଚନ୍ଦ୍ର ମୃତ | ଜଣାଯାଇ ନାହିଁ | ୧୮ଶ ଶତାବ୍ଦୀ | ଓଡ଼ିଆ | ସଂସ୍କୃତ | ମେଦିନୀପୁର |
| ୨ | ସାଧନା ଦର୍ପଣ | ପୀତାମ୍ବର | ୧୮ଶ ଶତାବ୍ଦୀ | ଓଡ଼ିଆ | ଓଡ଼ିଆ | ମେଦିନୀପୁର |
| ୩ | ଚମତ୍କାର ଚନ୍ଦ୍ରିକା | ମୁକୁନ୍ଦ ଦାସ | ୧୮ଶ ଶତାବ୍ଦୀ | ଓଡ଼ିଆ | ବଙ୍ଗଳା | ମେଦିନୀପୁର |
| ୪ | ରାଧା ସ୍ତବମ | ଅଜଣା | ୧୮ଶ ଶତାବ୍ଦୀ | ଓଡ଼ିଆ | ସଂସ୍କୃତ | ମେଦିନୀପୁର |
| ୫ | ରାଗଦ୍ୱେଷ ଦୀପିକା | ଅଜଣା | ୧୮ଶ ଶତାବ୍ଦୀ | ଓଡ଼ିଆ | ସଂସ୍କୃତ | ମେଦିନୀପୁର |
| ୬ | ଭାଗବତ ଦ୍ୱାଦଶ ସ୍କନ୍ଧ | ଦୀନବନ୍ଧୁ ଦାସ "ମୋହର ଦୀନବନ୍ଧୁ ନାମ ଯେ ବୈରବଣୀ ତଟେ ଗ୍ରାମ ମୁକୁନ୍ଦପୁର ନାମେ ଖ୍ୟାତ ସେ ଗ୍ରାମ ଅଟନ୍ତି" | ୧୭ଶ ଶତାବ୍ଦୀ | ଓଡ଼ିଆ | ଓଡ଼ିଆ | ମେଦିନୀପୁର |
| ୭ | ଗୋପାଳ ଚମ୍ପକ | ଜୀବନାଥ ଦାସ | ୧୮ଶ ଶତାବ୍ଦୀ | ଓଡ଼ିଆ | ବଙ୍ଗଳା | ମେଦିନୀପୁର |
| ୮ | ରସିକ ବୋଧନ | ନରୋତ୍ତମ ଦାସ | ୧୮ଶ ଶତାବ୍ଦୀ | ଓଡ଼ିଆ | ବଙ୍ଗଳା | ମେଦିନୀପୁର |
| ୯ | ଭାଗବତ | ଜଗନ୍ନାଥ ଦାସ | ୧୭ଶ ଶତାବ୍ଦୀ | ଓଡ଼ିଆ | ଓଡ଼ିଆ | ମେଦିନୀପୁର |
| ୧୦ | ସୁଭଦ୍ରା ବିଳାସ | ବାସ୍ତା ଦାସ | ୧୭ଶ ଶତାବ୍ଦୀ | ଓଡ଼ିଆ | ଓଡ଼ିଆ | ମେଦିନୀପୁର |
| ୧୧ | ଚୈତନ୍ୟ ଚରିତାମୃତ | ଦୀନକୃଷ୍ଣ ଦାସ ଚୈତନ୍ୟ ଚରିତାମୃତ କହେ କିନ୍ତୁ ଦୀନକୃଷ୍ଣ ଦାସ | | | ଓଡ଼ିଆ ଓ ବଙ୍ଗଳା ମିଶ୍ରିତ | ମେଦିନୀପୁର |

Digitized by srujanika@gmail.com

## ବିଶ୍ୱଭାରତୀ ଓଡ଼ିଆ ପୋଥି ବିଭାଗ ସୌଜନ୍ୟରୁ ପ୍ରାପ୍ତ

| କ୍ର:ନ: | ପୋଥିର ନାମ | ଲେଖକ | ସମୟ | ଲିପି | ଭାଷା | ସ୍ଥାନ |
|---|---|---|---|---|---|---|
| ୧୨ | ନାମ ରତ୍ନ |  |  |  |  | ମେଦିନୀପୁର |
| ୧୩ | ଭାଗବତ ୩ୟ ସ୍କନ୍ଧ ସପ୍ତମ, ଅଷ୍ଟମ ସ୍କନ୍ଧ | ଜଗନ୍ନାଥ ଦାସ |  |  |  | ମେଦିନୀପୁର |
| ୧୪ | ଚରମ କାର୍ତ୍ତିକ ସଂଭାଷ | ବଳେଶ୍ୱର ଦାସ କୃତ ମଧୁସୂଦନ ହରିଚନ୍ଦନଙ୍କ ନାମରେ ଭଣିତା |  |  |  | ମେଦିନୀପୁର |
| ୧୫ | ଶ୍ରୀ ଚୈତନ୍ୟ ମଙ୍ଗଳ ଆଦ୍ୟଖଣ୍ଡ | ବୃନ୍ଦାବନ ଦାସ | ୧୭୮୦ ମସିହାରେ ନକଲ |  |  | ମେଦିନୀପୁର |
| ୧୬ | ନାଟ୍ୟ ବିଳାସ | ଜଗନ୍ନାଥ ଦାସ |  |  |  | ମେଦିନୀପୁର |
| ୧୭ | ମହା ନାଟକ | ପୁରୁଷୋତ୍ତମ ଦାସ |  | ଓଡ଼ିଆ | ଓଡ଼ିଆ | ନହମୁଣ୍ଡା ବାଲେଶ୍ୱର |
| ୧୮ | ରାମାୟଣ ଅଙ୍ଗଦପେଠ | ଲକ୍ଷ୍ମୀଧର ଦାସ |  | ଓଡ଼ିଆ | ଓଡ଼ିଆ | ନାଣିଆ ବାଲେଶ୍ୱର |

Digitized by srujanika@gmail.com

## ତାଳପତ୍ର ପୋଥିରୁ ସଂଗୃହୀତ ପୁସ୍ତକାବଳୀ

| କ୍ର:ନ: | ପୋଥିର ନାମ | ଲେଖକ | ସମୟ | ଲିପି | ଭାଷା | ସ୍ଥାନ |
|---|---|---|---|---|---|---|
| ୯ | ଚାଣକ୍ୟ ଶ୍ଳୋକ | | | ଓଡ଼ିଆ | ଓଡ଼ିଆ | ବାଣିଦା, ବାଲେଶ୍ୱର |
| ୧୦ | ଧ୍ରୁବ ଚନ୍ଦ୍ରାମଣି | ରାଧାକୃଷ୍ଣ ଦାସ | ୧୨୮୩ ସାଲ | ଓଡ଼ିଆ | ଓଡ଼ିଆ | ବାଣିଦା, ବାଲେଶ୍ୱର |
| ୧୧ | ଭାଗବତ ଏକାଦଶ ସ୍କନ୍ଧ | ଜଗନ୍ନାଥ ଦାସ | | ଓଡ଼ିଆ | ଓଡ଼ିଆ | ବାଣିଦା, ବାଲେଶ୍ୱର |
| ୧୨ | ଭାଗବତ ସଂପୂର୍ଣ୍ଣ ସେଟ୍ | ଜଗନ୍ନାଥ ଦାସ | | ଓଡ଼ିଆ | ଓଡ଼ିଆ | ବର୍ଦ୍ଧି, ମେଦନୀପୁର |
| ୧୩ | ଭାଗବତ ସଂପୂର୍ଣ୍ଣ ସେଟ୍ | ଜଗନ୍ନାଥ ଦାସ | | ଓଡ଼ିଆ | ଓଡ଼ିଆ | ଚକ, ମେଦନୀପୁର |
| ୧୪ | ଭାଗବତ ସଂପୂର୍ଣ୍ଣ ସେଟ୍ | ଜଗନ୍ନାଥ ଦାସ | | ଓଡ଼ିଆ | ଓଡ଼ିଆ | ମୋହନପୁର, ମେଦନୀପୁର |
| ୧୫ | ଭାଗବତ ସମ୍ପୂର୍ଣ୍ଣ ସେଟ୍ | ଜଗନ୍ନାଥ ଦାସ | | ଓଡ଼ିଆ | ଓଡ଼ିଆ | ବରଙ୍ଗି, ମେଦନୀପୁର |

Digitized by srujanika@gmail.com

## ସହାୟିକା ସୂଚୀ :

୧—ଷଡ଼ଙ୍ଗୀ ରୁଦ୍ରନାରାୟଣ : ଶ୍ରୀମଦ୍ ଭଗବଦ୍ ଗୀତା (ଶକ ୧୮୨୨) ଅବତରଣିକା ।
୨—ମିଶ୍ର ନୀଳମଣି : ସଂପୂର୍ଣ୍ଣ କଥା ଭାଗବତ ପୃ. ୩, ୧ମ ସଂ-୧୯୮୪ ।
୩—ଷଡ଼ଙ୍ଗୀ ଶ୍ୟାମସୁନ୍ଦର : ମୟୂରଭଞ୍ଜ ଇତିହାସ, ଦଶମପାଠ ।
୪—ଭଟ୍ଟାଚାର୍ଯ୍ୟ ତରୁଣ ଦେବ : ପଶ୍ଚିମବଙ୍ଗ ଦର୍ଶନ, ମେଦିନୀପୁର ।
୫—ଦେବ ନରସିଂହ : ଶ୍ରୀ ଶ୍ରୀ ଶ୍ୟାମାନନ୍ଦ ଲୀଳାମୃତ, ୧ମ ପ୍ରକାଶ ୧୯୭୮
୬—ମିଶ୍ର ନୀଳମଣି : ସମ୍ପୂର୍ଣ୍ଣ କଥା ଭାଗବତ, ପୃ. ୭
୭—ଦାଶ ଗଗନେନ୍ଦ୍ର ନାଥ : ଏଷଣା ୧, ୧୯୮୦ ।
୮—ମିଶ୍ର ନରେନ୍ଦ୍ର ନାଥ : ଆଧୁନିକ ଓଡ଼ିଆ କାବ୍ୟ ଧାରା-୧୯୭୮, ପୃ. ୩୧୭ ।
୯—ମହାନ୍ତି ପ୍ରିୟନାଥ : ପ୍ରୀତିମାଲ୍ୟ, ୧୯୫୪ ।
୧୦—ସାମନ୍ତରାୟ ନଟବର : ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି ପୃ ୬୧-୬୨ ୧୯୬୪ ।
୧୧—ସ୍ୱାଇଁ ନରହର : ରସପ୍ରାଣ ହରିହର, ପୃ. ୨୬ ।
୧୨ ମହାପାତ୍ର ଭାଗବତଚନ୍ଦ୍ର : ସଂଗୃହୀତ ।
୧୩ ଦାଶ କୁଞ୍ଜବିହାରୀ : ପଲ୍ଲୀଗୀତ ସଞ୍ଚୟନ ୩ୟ ଭାଗ ୧୯୬୪ ।
୧୪—ଦାଶ କୁଞ୍ଜ ବିହାରୀ : ଓଡ଼ିଆ ଲୋକଗୀତ ଓ କାହାଣୀ, ପୃ. ୧୩୪, ୧୯୫୮ (ବିଶ୍ୱଭାରତୀ) ।
୧୫—ପ୍ରହରାଜ ଗୋପାଳଚନ୍ଦ୍ର : ପୂର୍ଣ୍ଣଚନ୍ଦ୍ର ଭାଷାକୋଷ (ସଂ) ।
୧୬—କର୍ଣ୍ଣ କବି : ଶଙ୍କର ଗୁଡ଼ିଆ ପାଲା ପୃ, ୧୨ ।
୧୭—ଦାଶ କୁଞ୍ଜ ବିହାରୀ : ଓଡ଼ିଆ ଲୋକଗୀତ ଓ କାହାଣୀ ପୃ. ୪୨୭ ।
୧୮—ପ୍ରଧାନ ସୁଧାଂଶୁ ଶେଖର : ସଂଗୃହୀତ ।
୧୯—ପଣ୍ଡା ହେମନ୍ତ କୁମାର : ସଂଗୃହୀତ ।
୨୦—ପ୍ରଧାନ ସୁଧାଂଶୁ ଶେଖର :
୨୧—ଦାଶ କୁଞ୍ଜ ବିହାରୀ : ସମାଲୋଚନା, ପୃ ୧୦୯ ।
୨୨— । ପ୍ରବୁରପତ୍ର ତା ୧୦-୧୨-୫୪ ରିଖ ରବିବାର

Digitized by srujanika@gmail.com

୨୩—ଦତ୍ତ ବ୍ରଜେନ୍ଦ୍ର ନାଥ 'ପ୍ରଭା'।

୨୪— : ପ୍ରସ୍ପେକ୍ଟ, ଅମର ସିଂହ, ହାକକୋଠା କମଳା ନାଟ୍ୟ ସମାଜ।

୨୫—ପଣ୍ଡା ବିଶ୍ୱେଶ୍ୱର : ସଂସ୍କୃତ ଲିପିବଦ୍ଧ ଉକ୍ତି, ୧୯୮୦।

୨୬—ପଣ୍ଡା ବିଶ୍ୱେଶ୍ୱର—ସଂସ୍କୃତ ଲିପିବଦ୍ଧ ଉକ୍ତି, ୧୯୮୦।

୨୭—ପଣ୍ଡା ବିଶ୍ୱେଶ୍ୱର—ସଂସ୍କୃତ ଲିପିବଦ୍ଧ ଉକ୍ତି, ୧୯୮୦।

୨୮—ସାହୁ ସୁକୁମାର : ନବପତ୍ର, ପୃ. ୧୨୮—୧୪୦।

୨୯— —୧୯୭୭, କଲ୍‌ଚରଲ ଏକାଡ଼େମୀ, ରାଉରକେଲା।

୩୦—ପଟ୍ଟନାୟକ କାଳଚରଣ—କୁମ୍ଭର ଚକ, ୧୯୬୫।

୩୧—ଭଟ୍ଟାଚାର୍ଯ୍ୟ ତରୁଣ ଦେବ—ମେଦିନୀପୁର।



Digitized by srujanika@gmail.com

# ଚତୁର୍ଥ ଅଧ୍ୟାୟ

## ଉତ୍ତର-ପୂର୍ବାଞ୍ଚଳୀୟ ଓଡ଼ିଆ ସଂସ୍କୃତି

### ଉତ୍ତର-ପୂର୍ବାଞ୍ଚଳୀୟ ଓଡ଼ିଆ ସମାଜ :

"ସଂସ୍କୃତିର ଆଧାର ହେଉଛି ମାନବ ସମାଜ । ମାନବର ଶ୍ରେଷ୍ଠ ସାଧନା ତାର ଆପଣାର ସମାଜ । ଓଡ଼ିଆ ସମାଜ ହିଁ ଓଡ଼ିଆର ଶ୍ରେଷ୍ଠ ସାଧନା ।"(୧) ଆଲୋଚ୍ୟ ଉପାନ୍ତ ଅଞ୍ଚଳର ଉତ୍କଳୀୟ ସମାଜର ରୂପ ସମ୍ପର୍କରେ ପ୍ରଥମେ ଆଲୋଚନା କରି-ଯାଉଛି ।

ଏ ଅଞ୍ଚଳରେ ବହୁ ଜାତି ଓ ଗୋଷ୍ଠୀର ଲୋକେ ବାସ କରନ୍ତି । ମୂଳ ଅଧିବାସୀ ଆଦିବାସୀ ଓ ଅଣ ଆଦିବାସୀ ହିନ୍ଦୁମାନଙ୍କ ବ୍ୟତୀତ ମୁସଲମାନ ଓ ଖ୍ରୀଷ୍ଟଧର୍ମାବଲମ୍ବୀ ଲୋକେ ମଧ୍ୟ ବାସ କରନ୍ତି । ଜାତି/ଗୋଷ୍ଠୀ ବିଶେଷରେ ଚଳଣି ଭିନ୍ନ ପ୍ରକାର ହୋଇଥାଏ । ତଥାପି, ଏକ ସୁସ୍ଥ ସମାଜର ପୁଷ୍ଟି ଏବଂ ପରସ୍ପର ମଧ୍ୟରେ ମୈତ୍ରୀ ଓ ଭ୍ରାତୃତ୍ୱ ପ୍ରତିଷ୍ଠା ନିମନ୍ତେ ବହୁ ପର୍ବପର୍ବାଣୀ ଯାତ୍ରା, ମେଳାର ଆୟୋଜନ ହୋଇଥାଏ ।

ଏ ଅଞ୍ଚଳରେ ପ୍ରବାହିତ ସୁବର୍ଣ୍ଣରେଖା ନଦୀରେ ସ୍ୱର୍ଣ୍ଣରେଣୁ ମିଳେ । ଏ ସୁନା-ଭୂଇଁର ଅଧିବାସୀ ବାରମାସରେ ତେରପର୍ବ ପାଳନ କରନ୍ତି । କେତେ ପୂଜା, ପାର୍ବଣ, ବାରବ୍ରତ, ଓଷା, ପୁନଃଅଁ ପ୍ରଭୃତିରେ ଜୀବନକୁ ବିତାଇ ଦିଅନ୍ତି । ପରିବାରର ମଙ୍ଗଳ ନିମନ୍ତେ ଗୃହୀ ମାନସିକ କରେ । ଦେବଦେବୀଙ୍କ ପାଖରେ ଦୁଡ଼ା ବାନ୍ଧେ । କାଳିଆ-ବୋଦା, ନାଲି କୁକୁଡ଼ା ଯାଚେ । ବିଭିନ୍ନ ଧାତୁରେ ମୁକୁଟ ଓ ବାହାନ ବନେଇ ଦେବାର ମାନସିକ କରେ । ଖିରି ଝେଡେଇ ଭୋଗ ଦିଏ । ବାଡ଼ିରେ କଦଳୀ କାନ୍ଧରେ ଫୁଲମାରେ, ସତ୍ୟପୀର ପାଖରେ "ଶିରନି" ଦିଏ । ପିଲା ଜନ୍ମ ହେଲେ ଦେବଦେବୀଙ୍କ ସନ୍ତୁଷ୍ଟି ନିମନ୍ତେ ପୂଜା, ପଟଳ, ପାଲାର ଆୟୋଜନ କରେ, ଏହାହିଁ ନିତ୍ୟ ନୈମିତ୍ତିକ ମଜ୍ଜାଗତ ପରମ୍ପରା । ଏଥିରେ ବ୍ୟତିକ୍ରମ ହୁଏ ନାହିଁ ।

### ଜାତକର୍ମ :

ପିଲାଟିଏ ଜନ୍ମ ହେଲେ ପରମ୍ପରା ଅନୁସାରେ ଜାତକର୍ମ ପାଳିତ ହୁଏ । "ନାଇକ" ବା "ଗ୍ରହବିପ୍ର" ଆସି ଗଣାପଢ଼ି କରିଥାନ୍ତି । ପାଞ୍ଚଦିନରେ ପଞ୍ଚୁଆତି, ଛଅ ଦିନରେ ଷଠୀ ଦେବୀ ପୂଜା, ନ'ଦିନରେ ନଖଦିଆ, ଏକୋଇଶାରେ ରୂଠ ପୂଜା,

Digitized by srujanika@gmail.com

ପୂଆର ସ୍ନାନ ପ୍ରଭୃତି ବିଧି ପାଳିତ ହୁଏ । ଏତଦ୍‌ବ୍ୟତୀତ କର୍ଣ୍ଣବେଧ, ଚୂଡ଼ାକରଣ, ବିଦ୍ୟାରମ୍ଭ, ଉପନୟନ, ବିଭାବିଧି, ବନ୍ଦାପନା ଆଦି କ୍ରିୟାନୁଷ୍ଠାନ ମଧ୍ୟ ଓଡ଼ିଶାରେ ଅନ୍ୟତ୍ର ଯେପରି ଚାଲିଆସୁଛି, ଏ ଅଞ୍ଚଳରେ ବି ସେହିପରି ପ୍ରଚଳିତ । ଏ ପରମ୍ପରା ଅତି ପ୍ରାଚୀନ । ସାରଳା ମହାଭାରତ ଓ ଦାଣ୍ଡି ରାମାୟଣରେ ଏହି ଜାତିବିଧିର ଅବିକଳ ବର୍ଣ୍ଣନା ପରିଲକ୍ଷିତ ହୁଏ । ସେ ସମସ୍ତ ପୁଣି ଉଲ୍ଲେଖ କରିବାର ପ୍ରୟୋଜନ ବୋଧ ହେଉନଥିବାରୁ କେତେକ ବିଷୟ କେବଳ ସଂକ୍ଷେପରେ ଆଲୋଚନା କରୁଅଛୁ ।

**ଶିକ୍ଷା :**

ପିଲା ବଡ଼ହେଲେ ଶୁଭ ଦିବସରେ ବିଦ୍ୟାରମ୍ଭ କରିବା ବିଧି । ବିଦ୍ୟାରମ୍ଭ ବେଳେ ଗୁରୁ ପିଲାଠାରେ ଗଣେଶ ଓ ଦୁର୍ଗାଙ୍କୁ ପୂଜା କରି "ଶ୍ରୀ ସିଦ୍ଧିରସ୍ତୁ" ଲେଖି ବିଦ୍ୟାରମ୍ଭ କରିଥାନ୍ତି ।

**ଶିକ୍ଷା ଉପକରଣ :**

ଆଗରୁ ଚାଟଶାଳୀମାନଙ୍କରେ ଭୂଇଁରେ ଧଳାମାଟି ଗୁଣ୍ଡ ବିଛାଇ ଦେଇ କାଠି ସାହାଯ୍ୟରେ ଲେଖାଯାଉଥିଲା । ତାପରେ ଭୂଇଁ ଉପରେ ଭୂଇଁ ଖଡ଼ିର ବ୍ୟବହାର ହେଲା । ଶାସ୍ତ୍ର ପୁରାଣ ସମୂହ ତାଳପତ୍ର ଓ ଭୂର୍ଜ ପତ୍ରରେ ଲେଖା ହେଉଥିଲା । ଏହା ଊନବିଂଶ ଶତକର ମଧ୍ୟଭାଗ ପର୍ଯ୍ୟନ୍ତ ଏ ଅଞ୍ଚଳରେ ପ୍ରାୟ ସର୍ବତ୍ର ପ୍ରଚଳିତ ଥିଲା । ପରେ କାଗଜର ପ୍ରଚଳନ ଓ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ହେତୁ ଏ ସବୁର ବ୍ୟବହାର ଲୋପ ପାଇଥିଲେହେଁ ଏବେ ଗାଁ ଗହଳରେ ଗ୍ରହବିପ୍ର ଗଣ ତାଳପତ୍ରରେ କୋଷ୍ଠୀ ପ୍ରଭୃତି ତିଆରି କରୁଥିବାର ଦେଖାଯାଏ ।

**ଅଧ୍ୟୟନ ରୀତି :**

ବଡ଼ ପାଟିରେ ଆବୃତ୍ତି କରିବା ଓ ଶୁଣି ମନେରଖିବା ଅତି ପ୍ରାଚୀନ କାଳରୁ ଅଧ୍ୟୟନ ରୀତି ରୂପେ ପ୍ରଚଳିତ । ସାରଳା ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ଏ ବିଧି ପ୍ରଚଳିତ ଥିଲା । "ବିଦ୍ୟାରମ୍ଭେ ଗୁରୁ ଶ୍ରେଷ୍ଠ"—ଗୁରୁବାର ବିଦ୍ୟାରମ୍ଭ କରିବାର ପ୍ରକୃଷ୍ଟ ଦିବସ ରୂପେ ପରିଗଣିତ ହେଉଥିଲା । ଏବେବି ଗାଁ ଗହଳରେ ଏହାର ପ୍ରଚଳନ ଅଛି ।

ବିଷୟସମ୍ପନ୍ନ ଲୋକମାନେ ନିଜ ଗୃହରେ ଗୁରୁଙ୍କୁ ରଖି ପିଲାଙ୍କୁ ଶିକ୍ଷା ଦେଉଥିଲେ । ଗ୍ରାମମାନଙ୍କରେ ଚାଟଶାଳୀ ସହିତ "ଆଖଡ଼ା" ଗୃହମାନ ରହିଥିଲା । ଏଥିରେ ଯୁଦ୍ଧବିଦ୍ୟା, ମାଲକୁସ୍ତି ସହ ଯାତ୍ରା, ପାଲା ଓ ସଙ୍ଗୀତ ପ୍ରଭୃତି ଶିକ୍ଷା ଦିଆଯାଉଥିଲା ।

ପ୍ରାଚୀନ ଗୁରୁଗଣ ନିର୍ଲୋଭ, ସଂଯମୀ, କଷ୍ଟସହିଷ୍ଣୁ, ସମଦର୍ଶୀ, ଧୈର୍ଯ୍ୟଶୀଳ ଓ ବ୍ରହ୍ମବିଦ୍ୟା ନିପୁଣ ଥିଲେ । ପୂର୍ବରୁ ବ୍ରାହ୍ମଣମାନେ ହିଁ କେବଳ "ଗୁରୁ" ହେବାର

Digitized by srujanika@gmail.com

ଯୋଗ୍ୟତା ଅର୍ଜନ କରୁଥିଲେ । ପରବର୍ତ୍ତୀ ଯୁଗରେ କରଣମାନେ ମଧ୍ୟ ଏ ଦାୟିତ୍ୱ ନେଇଥିବାର ଦେଖାଯାଏ । "ମାଟିବଂଶ ଅବଧାନ"ମାନେ ଚାଟଶାଳୀମାନଙ୍କରେ ଶିକ୍ଷାଦାନ ପାଇଁ ସମଗ୍ର ଓଡ଼ିଶାରେ ବିଖ୍ୟାତ ହୋଇଥିଲେ ।

ଚାଟଶାଳୀମାନଙ୍କରେ ଥିବା ଅବଧାନମାନେ ଯେପରି ଛାତ୍ରବତ୍ସଳ ଥିଲେ ଛାତ୍ରମାନେ ଗୁରୁଭକ୍ତି ପାଇଁ ମଧ୍ୟ ସେହିପରି ପ୍ରସିଦ୍ଧ ଥିଲେ । ଅଧ୍ୟୟନ ଓ ଜ୍ଞାନ ଆହରଣ ନିମନ୍ତେ "ଗୁରୁଭକ୍ତି" ଶ୍ରେଷ୍ଠ ପନ୍ଥା ରୂପେ ଦୃଢ଼ ବିଶ୍ୱାସରେ ପରିଣତ ହୋଇଥିଲା ।

ଚାଟଶାଳୀମାନଙ୍କରେ ବିଭିନ୍ନ ସଂସ୍କୃତ କାବ୍ୟ, ପୁରାଣ ଅଧ୍ୟୟନ କରିବା ଫଳରେ ବାଲ୍ୟାବସ୍ଥାରୁ ପିଲାମାନେ ଧର୍ମପରାୟଣ ହେଉଥିଲେ । ସଂସ୍କୃତ କାବ୍ୟର ଆଦର୍ଶରେ ଓଡ଼ିଆ କାବ୍ୟମାନ ରଚିତ ହେଉଥିବାରୁ ଛାତ୍ରମାନେ ପରବର୍ତ୍ତୀ ଜୀବନରେ ଉଚ୍ଚାଙ୍ଗ ସାହିତ୍ୟ ଅନୁଶୀଳନ କରିବାର ସୁଯୋଗ ଲାଭ କରୁଥିଲେ । ଚାଟଶାଳୀ ଶିକ୍ଷାର ଉପଯୋଗିତାକୁ ଲକ୍ଷ୍ୟ କରି ଜଣେ ସୁପ୍ରତିଷ୍ଠିତ ସମାଲୋଚକ ଲେଖିଛନ୍ତି, "ତେଣୁ ଚାଟଶାଳୀରେ ଗଢ଼ିଉଠୁଥିବା ଛାତ୍ରର ସ୍ୱତନ୍ତ୍ର ରୁଚିବୋଧ ଓ ରସପିପାସା ହିଁ ଓଡ଼ିଆ କାବ୍ୟ ସାହିତ୍ୟର ଆଦି ବିକାଶ ଭୂମି" । (୨)

**ବିଭାବଧି :**

ପାତ୍ରୀ ନିର୍ବାଚନ କ୍ଷେତ୍ରରେ ରୂପ, ଗୁଣ, ବଂଶ, ବନ୍ଧୁ, ବିଦ୍ୟା, ବୁଦ୍ଧି, ବୟସ ପ୍ରଭୃତିରେ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ବିଶେଷତଃ କୁଳ (ବଂଶ) ପ୍ରତି ଗୁରୁତ୍ୱ ଆରୋପିତ ହେଉଥିଲା । ଏ ଅଞ୍ଚଳରେ ବିବାହ ଅନୁଷ୍ଠିତ ହେବାବେଳେ ଲୋକମୁଖରୁ ଶୁଣାଯାଏ,

"କୁଳର କନିଆଁ ହଉ କଳା
ନଦୀର ଜଳ ହଉ ଗୁଳା" (ଗୋଳା) ।

ବିବାହ ପୂର୍ବରୁ କନ୍ୟା ଦେଖା ବିଧି । ବରପକ୍ଷର ଗୁରୁଜନମାନେ କନ୍ୟା ଦେଖି "ମୁହଁ-ଚୁଆ" (ମୁହଁଚୁହାଁ) ସ୍ୱରୂପ ଟଙ୍କା ବା ଅଳଙ୍କାର କିଛି ଉପହାର ଦେଇଥାନ୍ତି । ବିବାହ ପରେ ମଧ୍ୟ ବୋହୂ ଦେଖିବା ବେଳେ "ମୁହଁଚୁଆ" ଦେବାବିଧି ।

କନ୍ୟା ଦେଖାବେଳେ କନ୍ୟାକୁ ବିଭିନ୍ନ ପ୍ରଶ୍ନ ପଚାରିବା ବିଧି । ପ୍ରଶ୍ନଗୁଡ଼ିକ କନ୍ୟାର ବୁଦ୍ଧି ପରୀକ୍ଷା ନିମନ୍ତେ ଉଦ୍ଦିଷ୍ଟ । କୃଷିଭିତ୍ତିକ ସମାଜରେ ସାଧାରଣ ଘରକରଣା ବିଷୟକ ପ୍ରଶ୍ନ ପଚରାଯାଏ । ଅବଶ୍ୟ ଉଚ୍ଚତର ଲୋକେ ବିଦ୍ୟା, ବୁଦ୍ଧି ଓ ଜ୍ଞାନ ବିଷୟ ପରୀକ୍ଷା କରିଥାନ୍ତି ।

ସାଧାରଣ କ୍ଷେତ୍ରରେ ,ସାଧାରଣ ପ୍ରଶ୍ନମାନ ପଚରା ଯାଇଥାଏ । କେତୋଟି ପ୍ରଶ୍ନର ନମୁନା ପ୍ରଦତ୍ତ ହେଲା । ଯଥା—"କେ ତର୍କାରିରେ ହଳଦୀ ପଡ଼େନାହିଁ ।"

Digitized by srujanika@gmail.com

"ସମୁଦ୍ରରେ ପଦ୍ମଫୁଲ ଫୁଟିଛି, କେମିତି ତୋଳିବା ?" ଇତ୍ୟାଦି ।

ଗୁରୁଜନମାନଙ୍କର କନ୍ୟା ମନୋନୀତ ହେଲେ ବର ସ୍ୱୟଂ କନ୍ୟା ଦେଖିବାକୁ ଯାଏ ।

ବରର କନ୍ୟା ମନୋନୀତ ହେଲାପରେ କନ୍ୟା ପକ୍ଷରୁ ବରଘର ଦେଖିବାକୁ ଆସି ପସନ୍ଦ ହେଲେ ବିବାହ ହେଉଥିଲା । ବର "କଉଡ଼ି" ବା "ପଣ" ଦେଇ କନ୍ୟା ପିତାଙ୍କୁ ସନ୍ତୁଷ୍ଟ କଲେ ବିବାହରେ ଆଉ ଅସୁବିଧା ହେଉନଥିଲା ।

କନ୍ୟା ନିର୍ବାଚନରେ ନିମ୍ନଲିଖିତ ଲୋକୋକ୍ତିଟି ଆଲୋଚ୍ୟ ଅଞ୍ଚଳର ଲୋକ ମୁଖରେ ବହୁ ପ୍ରଚଳିତ ।

"ଉରୁ ସରୁ ମୁଠା ଅଣ୍ଟା
ନଳି ଗୁଜର ଭୁମ କଣ୍ଟାକଣ୍ଟା
ଭିତକପାଳୀ କଅଁଳ ଆଖି
ବହୁ ନକର ଏସବୁ ଦେଖି ।"

**ଜାତକ ମେଳ :**

"ଜାତକ ମେଳ" ବହୁ ପ୍ରଚଳିତ ବିଧି । ଜାତକ ମେଳରେ କୌଣସି ଗ୍ରହ ଜନିତ ଦୋଷ ପରିଲକ୍ଷିତ ହେଲେ ଶିଷ୍ଟ ଖଣ୍ଡନ କରାଯାଇଥାଏ ।

ପୂର୍ବେ ମାତୁଳ କନ୍ୟା ବିବାହ ଉତ୍କଳ ସମାଜରେ ପ୍ରଚଳିତ ନଥିଲା । ସାରଳା ମହାଭାରତରୁ ଏହା ଜଣାଯାଏ । ଉତ୍ତର ପୂର୍ବାଞ୍ଚଳରେ କେତେକ କ୍ଷେତ୍ରରେ ମାତୁଳ କନ୍ୟା ପାଣିଗ୍ରହଣ କରିବା ଦେଖାଯାଏ । "ମାମୁଁ" ଭଣିଜା ଦାନ କରି ପୁଣ୍ୟ ଅର୍ଜନ କରିଥାନ୍ତି । ଏହା ନିଜ ମାମୁଁଙ୍କ କନ୍ୟା କ୍ଷେତ୍ରରେ ସମ୍ଭବ ହୁଏ ନାହିଁ, ପରୋକ୍ଷ ସମ୍ପର୍କ କ୍ଷେତ୍ରରେ ଏ ବିଧି ପ୍ରଚଳିତ ।

**ଯୌତୁକ ପ୍ରଦାନ :**

ଆଗରୁ ଏ ଅଞ୍ଚଳରେ ବର କନ୍ୟାପିତାଙ୍କୁ "କନ୍ୟାପଣି" ଦେଉଥିଲେ । ଏବେ କନ୍ୟାପିତା ବରକୁ ଯୌତୁକ ଦେବା ବିଧି ପ୍ରଚଳିତ ।

**ଜୋଇଁପଣିଆ :**

"ବିବାହ ପରେ ଜୋଇଁପଣିଆ" ନ ନେଲା ପର୍ଯ୍ୟନ୍ତ ଜ୍ୱାଇଁ ଶ୍ୱଶୁର ଘରକୁ ଆସନ୍ତି ନାହିଁ । "ଜାମାଷଷ୍ଠୀ" ଏ ଅଞ୍ଚଳରେ ପ୍ରାଧାନ୍ୟ ଲାଭ କରିଛି । ଏହା ବଙ୍ଗ ସଂସ୍କୃତି ପ୍ରଭାବର ଫଳ ।

Digitized by srujanika@gmail.com

ବିବାହ ପରେ ଯେଉଁ ବ୍ୟକ୍ତି କନ୍ୟା ସମ୍ପ୍ରଦାନ କରିଥାନ୍ତି, ସେ ତାଙ୍କ ଘରକୁ ନଯିବାର ବିଧି ପ୍ରଚଳିତ । ଯଦି ପ୍ରୟୋଜନ ବଶତଃ ଯାଇଥାନ୍ତି, ତେବେ ତାଙ୍କ ଘରେ ସ୍ଥାନ କିଣିବା ସକାଶେ କିଛି ସୂଚକ ମୂଲ୍ୟ ପ୍ରଦାନ କରି ବସନ୍ତି, ଖାଆନ୍ତି ନାହିଁ । ଏହା-ଏକ ପୌରାଣିକ ବିଶ୍ୱାସ । କେବେ କେଉଁ ଶୃଗାଳ ନିଜ ପାଳିତା କନ୍ୟାକୁ ବିବାହଦେଇ ଦେଶତ୍ୟାଗୀ ହୋଇଥିଲା । ତାଙ୍କ ଘରକୁ ନିମନ୍ତ୍ରଣ କଲେ ସମ୍ପ୍ରଦାନ କର୍ତ୍ତା ବା କର୍ତ୍ତ୍ରୀ ଏହା କହିଥାନ୍ତି ।

### ବିବାହ ଆୟୋଜନ :

ବିବାହ ପୂର୍ବରୁ ଏଥିନିମିତ୍ତ ଆୟୋଜନ ଓ ମଙ୍ଗଳନ ହୋଇଥାଏ । ଏ ଅଞ୍ଚଳରେ ଏହା "ମଙ୍ଗନ" (ମଙ୍ଗଳନ) ରୂପେ କଥିତ । ଏହା ବିବାହର ପୂର୍ବ ଦିବସରେ ସମ୍ପାଦିତ ହୋଇଥାଏ ।

### ଅଭଡ଼ା ଭାତ :

ବିବାହ ଦିନ ବା ପୂର୍ବରୁ କନ୍ୟା ଓ ବର ଉଭୟଙ୍କ ନିକଟ ସମ୍ପର୍କୀୟ ବନ୍ଧୁ-ବାନ୍ଧବମାନେ "ଅଭଡ଼ା ଭାତ" ଖୋଇବା ଏ ଅଞ୍ଚଳରେ ବିଶେଷ ଭାବେ ପ୍ରଚଳିତ । ଅଭଡ଼ା ଅର୍ଥ ଅବିବାହିତ (ପୁଂ)/ଅବିବାହିତା (ସ୍ତ୍ରୀ) । ବନ୍ଧୁମାନେ ନିଜ ଘରକୁ ଡ଼ାକି ନେଇ ଖାଇବାକୁ ଦେଇ ନୂତନ ବସ୍ତ୍ର ପରିଧାନ କରାଇଥାନ୍ତି । ବିବାହ ପୂର୍ବରୁ କନ୍ୟାକୁ ବାଡ଼ୁଅ ସ୍ନାନ କରାଇଥାନ୍ତି । ଏହା ଏ ଅଞ୍ଚଳରେ 'ଜଳଭୁଆ' ରୂପେ ପ୍ରଚଳିତ । ବରଧରା ଏକ ଲୋକାଚାର ରୂପେ ପାଳିତ ହୁଏ । ବିବାହର ପୂର୍ବଦିନ କନ୍ୟାର ଭ୍ରାତା ବା ସେହିପରି ଅନ୍ୟ କୌଣସି ସମ୍ପର୍କୀୟ ବ୍ୟକ୍ତି ନୂଆ ହାଣ୍ଡିରେ ଚନ୍ଦନ, ଫୁଲ, ପାନ, ଗୁଆ, ନଡ଼ିଆ, ନୂଆଲୁଗା ପ୍ରଭୃତି ବର ଘରକୁ ନେଇ ଯାଆନ୍ତି । ଏହିପରି ବରଯାତ୍ରା, ଦଶଦିଗପାଳ ପୂଜା, ସ୍ତ୍ରୀକରଣ ବିଧି, ବାଗଦାନ କର୍ମ, ଗନ୍ଧାଧିବାସ ଓ କୌତୁକ ସୂତ୍ର, ମଧୁପର୍କ, କନ୍ୟାଦାନ ଓ ହସ୍ତଗ୍ରନ୍ଥି, ଯୌତୁକ ଦାନ, ବନ୍ଦାପନା, ହୋମ ଓ ଲଜା ହୋମ, ଦଶ ଦୋଷ କ୍ଷମା, ପଞ୍ଚୁରାସୀ, ବାଦ୍ୟବାଜଣା, ଭୋଜି, ମଧୁଶଯ୍ୟା ପ୍ରଭୃତି ସମସ୍ତ ଉତ୍କଳୀୟ ବୈବାହିକ ଉପଚାର ସମଗ୍ର ଅଞ୍ଚଳରେ ପ୍ରଚଳିତ ।

ବିବାହୋତ୍ତର ବିଧି ବିଧାନରେ କନ୍ୟା ବିଦାୟ, ନବବଧୂର ସମ୍ବର୍ଦ୍ଧନା, ଦୁଇ ମଙ୍ଗଳା, ଚଉଠି, ପାଞ୍ଚ ମଙ୍ଗଳା, ସାତ ମଙ୍ଗଳା, ଆଠ ମଙ୍ଗଳା, କଉଡ଼ି ଖେଳ, କାଦ (କାଦୁଅ) ଖେଳ, ପିଠାଗ୍ରେଷ୍ଟା, ଲୁଚୁଲୁଚୁର୍ଣୀ, ଈଷାଣ ପୂଜା ପ୍ରଭୃତି ବିଧି ଏ ଅଞ୍ଚଳରେ ସର୍ବତ୍ର ପାଳିତ ହୋଇଥାଏ । ଜାତି ଜାତି ମଧ୍ୟରେ ବିବାହ ଦିବସ ଓ ବିଧିର ପାର୍ଥକ୍ୟ ପରିଲକ୍ଷିତ ହୁଏ ।

Digitized by srujanika@gmail.com

**ଅନ୍ତ୍ୟେଷ୍ଟି କ୍ରିୟା :**

ମଣିଷ ଜୀବନରେ ଅନ୍ତ୍ୟେଷ୍ଟି କ୍ରିୟା ହେଉଛି ସର୍ବଶେଷ କ୍ରିୟା । ଶବ ନେବା ନିମନ୍ତେ କାଠ ବା ବାଉଁଶରେ ନିର୍ମିତ ଛ' ଖଣ୍ଡିଆ (କୋକେଇ) ପ୍ରସ୍ତୁତ କରାଯାଏ । ଶବ ସହିତ ପୁରୁଣା କଳସୀ, କୋଦାଳ, ନିଆଁ ବଡ଼, କାଠବୋଝ ଶ୍ମଶାନକୁ ଯାଏ । ସମ୍ପୃକ୍ତ ବ୍ୟକ୍ତିଙ୍କର ନାତି ଥିଲେ (ପୁଅର ପୁଅ) ଶିକାରେ ବଡହାଣ୍ଡି ନେଇ ଅଛଡ଼ା ବାଉଁଶରେ ଶିକା ସାହାଯ୍ୟରେ ଝୁଲାଇ ଦିଆଯାଏ । ଏ ସମ୍ପର୍କରେ ପ୍ରଚଳିତ ଲୋକୋକ୍ତିଟି ହେଉଛି "ପୁଅର ନାତି, ସ୍ୱର୍ଗେ ଦେବ ବତି..." । ଶବ ଘରୁ ବାହାରିଲା ପରେ ପଛେ ପଛେ ଗୋବର ପାଣି ଛିଞ୍ଚାଯାଏ । ପୁରୁଣା ଭାତହାଣ୍ଡି ଫିଙ୍ଗାଯାଏ । ଶ୍ମଶାନରେ ଚିତା ଉପରେ ଶବକୁ ଶୋଇଦେବା ପୂର୍ବରୁ ତିନି, ପାଞ୍ଚ, ସାତଥର ବୁଲାଇବା ଓ ଧର୍ମକୁ ସାକ୍ଷୀ ରଖି ଶ୍ମଶାନରେ ଉପସ୍ଥିତ ପ୍ରତ୍ୟେକ ସ୍ୱଜନ ଶବର କାନ ପାଖରେ ଡାକିବା ବିଧି । ପରେ ବଡ଼ କିମ୍ବା ସାନ ପୁଅ ମୁଖାଗ୍ନି ଦେବା ବିଧି । ସେମାନଙ୍କ ଅନୁପସ୍ଥିତିରେ ଅନ୍ୟ ପୁଅ ଚିତାରେ ଅଗ୍ନି ସଂଯୋଗ କରନ୍ତି । ଶ୍ମଶାନରୁ ଫେରିବା ପରେ "ମାଲଭାଇ"/ "ଗଙ୍ଗା କୂଳିଆ"ମାନଙ୍କୁ ଥରେ ମାତ୍ର ତେଲ ଦେବା, ଗାଧୋଇ ଆସିଲା ପରେ ଦର୍ପଣରେ ମୁହଁ ଦେଖିବା ବିଧି ପ୍ରଚଳିତ । ଅନ୍ତ୍ୟେଷ୍ଟି କ୍ରିୟାରେ ଦଶାହ, ଏକାଦଶାହ, ଦ୍ୱାଦଶାହ ପ୍ରଭୃତି ସମସ୍ତ କ୍ରିୟା ସ୍ମୃତି ଶାସ୍ତ୍ରୀୟ ବିଧିବିଧାନ ସହ କେତେକ ଲୌକିକ ବିଧାନ ଅନୁସାରେ ପାଳିତ ହୁଏ । ଓଡ଼ିଶାରେ ସର୍ବତ୍ର ପାରମ୍ପରିକ ନିର୍ଦ୍ଦେଶିତ ବିଧିବିଧାନ ଅନୁସାରେ ବିବାହ ଓ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ ହୁଏ । ଆଲୋଚ୍ୟ ଅଞ୍ଚଳରେ କେତେକ ଆଦିବାସୀ ଗୋଷ୍ଠୀର ଲୋକଙ୍କ ବ୍ୟତୀତ ଏସବୁ ବିଧି ଲୋକ ସମାଜରେ ପ୍ରଚଳିତ ଅଛି ।

**ଜାତିତତ୍ତ୍ୱ :**

ଏ ସମଗ୍ର ଅଞ୍ଚଳରେ ବିଭିନ୍ନ ଜାତି ଓ ଗୋଷ୍ଠୀର ଲୋକେ ବାସ କରନ୍ତି । ଏମାନଙ୍କ ମଧ୍ୟରେ ବ୍ରାହ୍ମଣ, କରଣ, ଖଣ୍ଡାୟତ, ଗୋପାଳ, ମାହିଷ୍ୟ, ପୁରାଣ, ସୁଲକ୍ଷଣ, ତନ୍ତୀ, କୈବର୍ତ୍ତ, ମାହାଳି ଓ ଆଦିବାସୀ ଗୋଷ୍ଠୀର ଲୋକ ପ୍ରଧାନ । ମୁସଲମାନ, ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ଲୋକେ କିଛି ପରିମାଣରେ ବାସ କରନ୍ତି । ଅନେକ ଜାତିର ଲୋକେ ବୃହତ୍ତର ସମ୍ପ୍ରଦାୟ ମଧ୍ୟରେ ମିଶିଯାଇଥିବାର ଲକ୍ଷ୍ୟ କରାଯାଏ । ନିମ୍ନରେ କେତେକ ଜାତିର ଲୋକଙ୍କର ବୈଶିଷ୍ଟ୍ୟ ସମ୍ପର୍କରେ ସଂକ୍ଷେପରେ ଆଲୋଚନା କରାଯାଉଅଛି ।

**ଖଣ୍ଡାୟତ :**

ଓଡ଼ିଶାରେ ହିଁ କେବଳ ଏ ଜାତିର ଲୋକେ ବାସ କରୁଥିବାର ଦେଖାଯାନ୍ତି । ମେଦିନୀପୁରର ଦକ୍ଷିଣ ପଶ୍ଚିମାଂଶ, ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାର ଉତ୍ତର ପୂର୍ବାଞ୍ଚଳରେ

Digitized by srujanika@gmail.com

ଏ ଜାତିର ଲୋକେ ପଭୃତି ବାସ କରନ୍ତି । ଖଣ୍ଡାୟତ ଶବ୍ଦ ସୃଷ୍ଟି ସମ୍ପର୍କରେ ବିବିଧ ମତ ପ୍ରଚଳିତ ଅଛି । ସାଧାରଣତଃ ଖଣ୍ଡାରୁ ଖଣ୍ଡାୟତ ଶବ୍ଦ ସୃଷ୍ଟି ହୋଇଥିବାର କୁହାଯାଏ । ମତାନ୍ତରେ, ପ୍ରାଚୀନ ଓଡ଼ିଶା କେତେଗୋଟି ଖଣ୍ଡ (କେତେଗୁଡ଼ିଏ ଗ୍ରାମର ସମଷ୍ଟି)ରେ ବିଭକ୍ତ ଥିଲା ଏବଂ ପ୍ରତ୍ୟେକ ଖଣ୍ଡ ଖଣ୍ଡପତିଙ୍କ ଦାୟିତ୍ୱରେ ରହିଥିଲା । ଏଥିରୁ ଖଣ୍ଡାୟତ ଶବ୍ଦର ସୃଷ୍ଟି ହୋଇଥିବା ଅନୁମେୟ । ସେ ଯାହାହେଉ ପ୍ରାଚୀନ ଗଜପତିମାନଙ୍କ ଅଧୀନରେ ସାମରିକ ଜାତି ଭାବରେ ଶାନ୍ତି ସମୟରେ କୃଷି, ଯୁଦ୍ଧ ସମୟରେ ଯୁଦ୍ଧ କରୁଥିବାରୁ ଏମାନେ ସାମରିକ ଜାତି ଭାବରେ ପରିଗଣିତ । ମେଦିନୀପୁର ଅଞ୍ଚଳରେ କେତେକ "କାୟସ୍ଥ" ସମ୍ପ୍ରଦାୟ ସହିତ ମିଶି ଯାଇଥିବାର ଜଣାଯାଏ । ଏମାନଙ୍କର ସାଙ୍ଗିଆ ଓଡ଼ିଶାର ଖଣ୍ଡାୟତମାନଙ୍କ ପରି ଯଥା—ରାଉତ, ପ୍ରଧାନ, ଜେନା, ମହାପାତ୍ର, ଗିରି, ଦାସ, ମହାନ୍ତି ପ୍ରଭୃତି ।

**ରାଜୁ :**

ଏମାନେ ହିନ୍ଦୁ କ୍ଷତ୍ରିୟ ଜାତି ବିଶେଷ । ଏ ସମଗ୍ର ଅଞ୍ଚଳରେ ଏମାନେ ବାସ କରୁଥିବାର ଦେଖାଯାଏ । ବିଶେଷତଃ, ଉତ୍ତର ବାଲେଶ୍ୱର ଓ ଦକ୍ଷିଣ ମେଦିନୀପୁର ଅଞ୍ଚଳରେ ବେଶୀ ସଂଖ୍ୟାରେ ବାସ କରିବାର ଦେଖାଯାଏ । ଏମାନଙ୍କର ବଂଶଗତ ସାଙ୍ଗିଆ ମଧ୍ୟରୁ ଅଧିକାଂଶ ପ୍ରାଚୀନ ସୈନିକ ଶ୍ରେଣୀର । ଏଥିରୁ ଜଣାଯାଏ ଯେ, ଏମାନେ ପୂର୍ବେ କ୍ଷତ୍ରିୟ ବା ଖଣ୍ଡାୟତ ଶ୍ରେଣୀର ଲୋକ ଥିଲେ । ସେହି ସାଙ୍ଗିଆ ଗୁଡ଼ିକରୁ କେତୋଟି ପ୍ରଦତ୍ତ ହେଲା । ଯଥା—ପ୍ରଧାନ, ଦତ୍ତ, ବିଶ୍ୱାଳ, ଦଣ୍ଡପାଟ, ମହାପାତ୍ର, ଜେନା, ଗିରି, ମହାନ୍ତି ପ୍ରଭୃତି । ଏମାନଙ୍କର ପୂଜାକର୍ମ ଆଦି ସାମାଜିକ ବିଧିବିଧାନ ବ୍ରାହ୍ମଣମାନେ କରନ୍ତି । କେତେକଙ୍କ ମଧ୍ୟରେ ଉପବୀତ ଧାରଣ କରିବା ବିଧି ପ୍ରଚଳିତ । ଏ ଜାତିର ଲୋକେ ପ୍ରଦେଶର ସୀମାନ୍ତ ଅଞ୍ଚଳରେ ବହୁତ ସଂଖ୍ୟାରେ ବାସ କରୁଥିବାରୁ, ରାଜାମାନଙ୍କ ଦ୍ୱାରା ଏମାନେ ସୀମାନ୍ତରକ୍ଷୀ ରୂପେ ନିଯୁକ୍ତ ହୋଇଥିବାର ଜଣାଯାଏ । ଏମାନଙ୍କର ବସତି ଯେଉଁ ଅଞ୍ଚଳରେ ଅଧିକ ସେଠାରେ ପ୍ରାଚୀନ ଦୁର୍ଗ ରହିଥିବାର ଦେଖାଯାଏ । ରାଇବଣିଆ, ଫୁଲବଣି, ନାରାୟଣଗଡ଼ ପ୍ରଭୃତି ଅଞ୍ଚଳରେ ଏମାନଙ୍କର ବସତି ଅଧିକ ।

ଏ ଜାତିର ପୂର୍ବପୁରୁଷଗଣ ରାଜପୁତନାରୁ ଆସିଥିବାର କୁହାଯାଏ । ରାଜପୁତନାର ବଂଶ ପରମ୍ପରାନୁସାରେ ଏମାନଙ୍କ ମଧ୍ୟରେ ଦକ୍ଷିଣ ଶାଖା ଓ ବାମଶାଖା ନାମରେ ଦୁଇଗୋଟି ଶାଖା (ଡାହାଣିଆ ଓ ବାମ୍ୱା) ବିଦ୍ୟମାନ । ଏ ଦୁଇ ଶାଖାର ଲୋକମାନଙ୍କ ମଧ୍ୟରେ ବିବାହାଦି ସାମାଜିକ ସମ୍ପର୍କ ପ୍ରଚଳିତ । ପଣ୍ଡିତ ଭୁବନାରାୟଣ ଷଡ଼ଙ୍ଗୀ ଏମାନଙ୍କ ସମ୍ପର୍କରେ ଲେଖିଛନ୍ତି—

Digitized by srujanika@gmail.com

"ଉତ୍କଳକ୍ଷତ୍ରି-ଖଣ୍ଡାୟତ ସଙ୍ଘେ ବାନ୍ଧ-ସାଥି
ଅନ୍ୟ ଦେଶରୁ ଆଗତ ରାଜପୁତ୍ର ଜାତି ।
ପୂର୍ବେ ରାଜୁ-ଥିଲେ 'ବୋଲ୍ ହେଲେ ରାଜୁ ଜାତି
ନଷ୍ଟେ ଏମାନେ ରାଜନ୍ୟ-ରାଜ-ଅନ୍ତଃପାତି ।

× × ×

ପୂର୍ବେ ବାଲ୍ୟ ଅବସ୍ଥାରେ ଦେଖିଛୁ ଗୋ ନେତ୍ର
କାହାର କାହାର ଗୃହ ଅସ୍ତ୍ରଶସ୍ତ୍ର କ୍ଷେତ୍ର ।
ବଂଶ-ହୃକ-ଗୁଣ-ଯୁକ୍ତ କାର୍ମୁକ ପ୍ରକାଣ୍ଡ
ତା ନିକଟେ ଶୋଭୁଥିଲା ଶର-ଶ୍ରେଣୀ-ଖଣ୍ଡ ।" (୩)

ଏମାନେ ମୌର୍ଯ୍ୟ ନରପତି-ପୃଷ୍ଟ ରାଜୁକମାନଙ୍କର ବଂଶଧର ବୋଲି କେହି କେହି ମତବ୍ୟକ୍ତ କରିଥାନ୍ତି । ରାଜୁକ ଶବ୍ଦ କ୍ରମେ ରାଜୁରେ ପରିଣତ ହୋଇଛି ।

ଏ ଅଞ୍ଚଳର ରାଜୁ ଜାତିର ଲୋକମାନେ କୃଷିକାର୍ଯ୍ୟ କରି ଜୀବିକା ନିର୍ବାହ କରିଥାନ୍ତି । ରାଜୁ ଜାତିରେ ବହୁ ବିଶିଷ୍ଟ ସାହିତ୍ୟିକ, ସ୍ୱନାମଧନ୍ୟ କୃଷକ ଓ ସମ୍ଭ୍ରାନ୍ତ ଶ୍ରେଣୀର ଲୋକ ଥିବାର ଦେଖାଯାନ୍ତି । କବି ନୀଳକୃଷ୍ଣ ଦାସ ଏ ଜାତିର ମଉଡ଼ମଣି ।

ମେଦିନୀପୁର ଅଞ୍ଚଳର ରାଜୁଗଣ ଓଡ଼ିଶାର ଗଜପତି ଚୋଡ଼ଗଙ୍ଗଙ୍କ ବଂଶଧର ବୋଲି ପରିଚୟ ଦିଅନ୍ତି । ଏ ଅଞ୍ଚଳର ଡାହାଣିଆ ରାଜୁମାନେ ବାମୁଁ ସଂପ୍ରଦାୟର ଲୋକମାନଙ୍କଠାରୁ ଶ୍ରେଷ୍ଠତର ବୋଲି ମନେ କରିଥାନ୍ତି । ପ୍ରଥମୋକ୍ତ ଶାଖାର ସ୍ତ୍ରୀ ଲୋକମାନେ ଡାହାଣ ଓ ଦ୍ୱିତୀୟ ଶାଖାର ସ୍ତ୍ରୀ ଲୋକେ ବାମ ଦିଗ ନେଇ ଶାଢ଼ୀ ପିନ୍ଧିବାର ଦେଖାଯାଏ । ଏମାନଙ୍କ ମଧ୍ୟରେ ବିବାହ ୫ ଦିନ ଓ ମୃତାହ କର୍ମ ୧୩ ଦିନରେ ସମାପ୍ତ ହୁଏ ।

**ସୁଲକୀ :**

ସୁଲକୀମାନେ ବର୍ତ୍ତମାନ ମେଦିନୀପୁର ଓ ଓଡ଼ିଶାର କେତେକ ଅଞ୍ଚଳରେ ବାସ କରୁଥିବାର ଦେଖାଯାଏ । ଏମାନେ ଶୋଲଙ୍କୀ/ଶୁକ୍ଳା/ସୁକୁଲୀ ନାମରେ ପରିଚିତ । ତାମ୍ର ଶାସନରୁ ଜଣାଯାଏ ଯେ ଏହି ସୁଲକୀମାନେ ଓଡ଼ିଶାର "କୋଦାଳକ" ନାମକ ସ୍ଥାନରୁ ଆସିଛନ୍ତି । ଏହା ଢେଙ୍କାନାଳ ଜିଲ୍ଲାରେ ଅବସ୍ଥିତ ଥିବାର କେତେକ ଐତିହାସିକ ମତ ଦିଅନ୍ତି । ଏମାନଙ୍କର ଅଧିଷ୍ଠାତ୍ରୀ ଦେବୀ ସ୍ତମ୍ଭେଶ୍ୱରୀ (ଖମ୍ଭେଶ୍ୱରୀ) ଥିବାର ଜଣାଯାଏ । (୪)

Digitized by srujanika@gmail.com

ଶୁକ୍ଳୀ ଜାତିର ଲୋକେ ମେଦିନୀପୁର ଜିଲ୍ଲାରେ ବହୁଳ ବାସ କରୁଥିବାର ଦେଖାଯାଏ । ଏମାନେ ଶୁକ୍ଳୀ ରାଜପୁତ ଭାବରେ ପରିଚିତ । ମୁଣ୍ଡେଶ୍ୱରୀ ଦେବୀ ଏମାନଙ୍କର ଉପାସ୍ୟ ଦେବୀ । ଏମାନଙ୍କ ମଧ୍ୟରେ କେତେକ ଉପବୀତ ଧାରଣ କରନ୍ତି । ମେଦିନୀପୁରର ମାହିଷ୍ୟ ଓ ଅନ୍ୟ ଜାତିର ଲୋକଙ୍କ ସହିତ ଏମାନେ ମିଶି ଯାଇଥିବାର ଦେଖାଯାଏ । ଏମାନଙ୍କର ସାଂଜ୍ଞା—ପାତ୍ର, ଜାନା (ଜେନା), ମାନ୍ନା, ସାମନ୍ତ, ଦାସ, ଶାସମଲ, ବେରା (ବେହେରା) ମଣ୍ଡଳ, ଭକ୍ତ, ଭୂୟାଁ ପ୍ରଧାନ ଗିରି, ଚନ୍ଦ୍ର ଗୁଛାଏତ୍, ଘଡ଼ାଇ, ପଟ୍ଟନାୟକ, ପଣ୍ଡିତ ଇତ୍ୟାଦି । ମେଦିନୀପୁରର ଚେରୁଆ, ଚନ୍ଦ୍ରକୋଣା, ପଟାସ୍‌ପୁର, ଭଗବାନ୍‌ପୁର । ଏଗ୍ରା, ଦାନ୍ତନ, ରାମନଗର, ମୋହନପୁର ନାରାୟଣଗଡ଼, ପାଣ୍ଡାଲ, ଖଡ଼୍‌ଗପୁର, ମେଦିନୀପୁର (ସଦର) ଡାବରା, ଦାଶପୁର ଅଞ୍ଚଳରେ ବହୁଳ ସଂଖ୍ୟାରେ ବାସ କରନ୍ତି । (୫)

ଏମାନେ ତିନୋଟି ଶାଖାରେ ବିଭକ୍ତ । ବଡ଼ ଭାଇୟା, ବାସ୍ତର ଘରି ଓ ଦଶାସଇ ।

ବଡ଼ଭାଇୟାମାନେ ଏମାନଙ୍କ ମଧ୍ୟରେ ସବୁଠୁଁ ସମ୍ମାନିତ । ଏମାନେ ପ୍ରାୟ ସମସ୍ତେ ବୈଷ୍ଣବ । କୃଷିପ୍ରଧାନ ଜୀବିକା ।

**ମାହିଷ୍ୟ (କେଉଟ, କୈବର୍ତ୍ତ**

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ କୈବର୍ତ୍ତ ବଂଶ ଓଡ଼ିଶାରୁ ଆସି ତାମ୍ରଲିପ୍ତ ଅଧିକାର କରିବା ଫଳରେ ମୟୂରଧ୍ୱଜ ବଂଶ ଲୋପପାଇ କୈବର୍ତ୍ତବଂଶର ରାଜତ୍ୱ ଆରମ୍ଭ ହେଲା । ଏ ବଂଶର ପ୍ରଥମ ରାଜା କାଳୁଭୂୟାଁ ତାମ୍ରଲିପ୍ତରେ ପ୍ରଥମେ ରାଜଶକ୍ତ କୈବର୍ତ୍ତବଂଶ ସ୍ଥାପନ କରିଥିଲେ । ପରେ ବଂଶ ବୃଦ୍ଧି ଘଟିଥିଲା । (୬) ଏମାନଙ୍କର ଆଦିନିବାସ ଓଡ଼ିଶା ଥିବାର ରୀସ୍‌ଲିସନ ମଧ୍ୟ କହନ୍ତି । (୭) ମେଦିନୀପୁରରେ ଏମାନେ ମୁଖ୍ୟତଃ ଏଗ୍ରା, ମୋହନପୁର, ତମ୍‌ଲୁକ୍ ପ୍ରଭୃତି ଅଞ୍ଚଳରେ ବହୁଳ ବ ସ କରନ୍ତି ।

ମେଦିନୀପୁରର କୈବର୍ତ୍ତମାନେ ରାଢ଼ୀ ଓ ଦକ୍ଷିଣ ରାଢୀ ଏପରି ଦୁଇ ଶାଖାରେ ବିଭକ୍ତ । ଏହି ଦୁଇ ଶାଖା ମଧ୍ୟ ବହୁ ଉପଶାଖାରେ ବିଭକ୍ତ । ଏମାନେ କୃଷିଜୀବୀ ଓ ମୁଖ୍ୟତଃ ବୈଷ୍ଣବ ଧର୍ମାବଲମ୍ବୀ, ୧୯୦୧ ମସିହାରେ ଚାଷୀ କୈବର୍ତ୍ତମାନେ ମାହିଷ୍ୟ ଭାବରେ ପରିଗଣିତ ହେବାର ଆମେ ଦେଖୁ । ପେଶା ଦୃଷ୍ଟିରୁ ଏମାନେ ଜାଲିଆ ଓ ହାଲୁଆ—ଏପରି ଦୁଇ ଭାଗରେ ବିଭକ୍ତ, ଜାଲିଆମାନେ ମାଛ ବ୍ୟବସାୟ କରନ୍ତି । ମାହିଷ୍ୟମାନେ 'ଜଳଚଲ' ଜାତି ।

Digitized by srujanika@gmail.com

**ବ୍ରାହ୍ମଣ :**

ମେଦିନୀପୁର ଅଞ୍ଚଳରେ ବାସ କରୁଥିବା ବ୍ରାହ୍ମଣମାନେ ମୁଖ୍ୟତଃ ଉତ୍କଳ ଶ୍ରେଣୀ ବ୍ରାହ୍ମଣ । ସେମାନଙ୍କର ସାଙ୍ଗିଆ—ମିଶ୍ର, ପତି, ମହାପାତ୍ର, କର, ଦାଶ, ତ୍ରିପାଠୀ, ପଣ୍ଡା, ଆଚାର୍ଯ୍ୟ, ଉପାଧ୍ୟାୟ, ଷଡ଼ଙ୍ଗୀ, ଶତପଥୀ, ଦ୍ୱିବେଦୀ, ପାଣିଗ୍ରାହୀ, ଧର, ପାଢ଼ୀ, ରଥ, ରାୟ, ହୋତା ପ୍ରଭୃତି । ବର୍ତ୍ତମାନ ମେଦିନୀପୁର ବାସୀ ବ୍ରାହ୍ମଣଗଣ ଚକ୍ରବର୍ତ୍ତୀ ମୁଖାର୍ଜି ପ୍ରଭୃତି ବଙ୍ଗୀୟ ସାଙ୍ଗିଆ ଗ୍ରହଣ କରୁଅଛନ୍ତି । ଜଣେ ମେଦିନୀପୁରି ବ୍ରାହ୍ମଣଙ୍କ ସ୍ପଷ୍ଟ ସ୍ୱୀକାରୋକ୍ତି ନିମ୍ନରେ ଉଦ୍ଧାର କରୁଅଛୁ—

"ଆମି ଏଇ ମହାପାତ୍ରକେ ବଦ୍‌ଲିୟେ ଦିବ" "କେନେ" ?

"ଧୂର୍ ! ଏଗୋ ଆମାକେ ଭାଲ ଲାଗ୍‌ଛେନା, ସବାଇ ଉଡ଼ିୟା, ଉଡ଼ିୟା ବଲ୍‌ଛେ । ଆମି ମୁଖୋପାଧ୍ୟାୟ୍ ନିୟେନିବ । *

ବହୁ ବିଦ୍ୱାନ, ସଂସ୍କୃତଜ୍ଞ, ସୁପଣ୍ଡିତ ବ୍ରାହ୍ମଣ ଏ ଅଞ୍ଚଳର ଅଧିବାସୀ ଅଟନ୍ତି । ଉତ୍ତର-ପୂର୍ବାଞ୍ଚଳରେ ସବୁ ସ୍ଥାନରେ ଉତ୍କଳ ଶ୍ରେଣୀ ବ୍ରାହ୍ମଣ ବହୁଳ ବାସ କରନ୍ତି ।

**କରଣ :**

ମେଦିନୀପୁର ଅଞ୍ଚଳରେ ଏମାନେ ଏବେ ବଙ୍ଗଳା ପ୍ରଭାବରେ କାୟସ୍ଥ ଭାବରେ ପରିଚିତ । ଏମାନେ "କାୟସ୍ଥ" ଓ "କାସ୍ଥ" ଏପରି ଦୁଇ ଶାଖାରେ ବିଭକ୍ତ । ହାବାର୍ଟ୍ ରିସ୍‌ଲି ତାଙ୍କର ପୁସ୍ତକରେ ଏ ଦୁଇ ଶାଖା ଓଡ଼ିଶାର ଲେଖକ ଗୋଷ୍ଠୀକରଣ ସମ୍ପ୍ରଦାୟ ଭୁକ୍ତ ବୋଲି ଉଲ୍ଲେଖ କରିଅଛନ୍ତି । ଓଡ଼ିଶାର ସମ୍ଭ୍ରାନ୍ତ କରଣ ଗୋଷ୍ଠୀ ଏହି ଶ୍ରେଣୀର ଦରିଦ୍ର ଲୋକମାନଙ୍କୁ ନିଜ ଜାତିରେ ଅନ୍ତର୍ଭୁକ୍ତ ନ କରିବାରୁ ଏମାନେ ବଙ୍ଗାଳୀ କାୟସ୍ଥ ଭାବରେ ପରିଚିତ ହେବାର ଶୁଣାଯାଏ । କାୟସ୍ଥମାନେ ମୁଖ୍ୟତଃ ବୈଷ୍ଣବ ଧର୍ମାବଲମ୍ବୀ ଓ ନବ ଶାଖାରେ ବିଭକ୍ତ । ମେଦିନୀପୁରରେ ଏମାନଙ୍କର ସାଙ୍ଗିଆ; ମହାପାତ୍ର, ଦାସ, ଦାସ ମହାପାତ୍ର, ମହାନ୍ତି (ମାଇତି) ପଟ୍ଟନାୟକ, ଦାସ ଅଧିକାରୀ, ଦାସ ବେହେରା, କାନନ୍‌ଗୋ, ରାୟ, ସାମନ୍ତରାୟ, ଭୂୟାଁ, ବେହେରା, ବେହେରା ପଟ୍ଟନାୟକ, ଘୋଷ, ବସୁ ଇତ୍ୟାଦି । ଓଡ଼ିଶାର କରଣ ସମାଜରେ ଏମାନଙ୍କର ବିବାହାଦି ପ୍ରଚଳିତ ।

ଏହି ସମଗ୍ର ଅଞ୍ଚଳରେ କଟକ, ଜମିଦାରମାନେ, ଗଜପତିଙ୍କ ରାଜତ୍ୱ କାଳରୁ ବସବାସ କରି ରହିଛନ୍ତି । ଏଗ୍ରା, ପଟାସ୍‌ପୁର, ନାରାୟଣ ଗଡ଼, ମୋହନପୁର, ରୋହିଣୀ,

---

* ଶ୍ରୀ ଗୋପାଳଚନ୍ଦ୍ର ମହାପାତ୍ର, କଣ୍ଟାଇ, ମେଦିନୀପୁର । ଶାନ୍ତିନିକେତନର ସଙ୍ଗୀତ ଭବନର ପ୍ରାକ୍ତନ ଛାତ୍ର ।

Digitized by srujanika@gmail.com

କାଶୀପୁର, ଦାଲୁନ୍ , ଜଲେଶ୍ୱର, ବାଣିଦା, କାମ୍ପୋ, କାମୁକୋଣ୍ଡା, ଅଗ୍ଗଲପୁର, ଶାଲକୋଠା, ଧିତପୁର, ବାଇତପଡ଼ା, ଭେଲୁର, ଚଅଡ଼ା, ମୁରୁଡ଼ା, ବାରପଦା ପ୍ରଭୃତି ସ୍ଥାନରେ ଏମାନେ ବାସ କରୁଥିବାର ଦେଖାଯାଏ । ଏମାନେ ଧନୀ, ମାନୀ, ଗୁଣୀ, ଜ୍ଞାନୀ ଓ କଳାପ୍ରେମୀ ଥିଲେ । କରଣୀ ଲେଖନ ଶୈଳୀର ସ୍ରଷ୍ଟାରୂପେ ଏ ଜାତିର ଲୋକେ ପରିଚିତ । ଏମାନଙ୍କର ପୃଷ୍ଠପୋଷକତାରେ ଆଧୁନିକ ଶିକ୍ଷା ନିମନ୍ତେ ବିଦ୍ୟାଳୟମାନ ସ୍ଥାପିତ ହେବା ସାଙ୍ଗକୁ ଓଡ଼ିଆ ଭାଷା ଓ ସାହିତ୍ୟ ସଙ୍ଗୀତ ଆଦି ଉନ୍ନତି ଲାଭ କରିଥିଲା । ଏମାନଙ୍କ ସହାୟତାରେ ବହୁ କବି କାବ୍ୟ, ନାଟକ ଆଦି ସାହିତ୍ୟ ରଚନା କରିଥିବାର ପ୍ରମାଣ ମିଳେ । ଏ ଅଞ୍ଚଳର ବିଖ୍ୟାତ ବୈଷ୍ଣବାଚାର୍ଯ୍ୟ ରସିକାନନ୍ଦ କରଣ କୁଳତିଳକ ସଦୃଶ ଅଟନ୍ତି ।

**ସଦ୍‌ଗୋପ୍ (ଗୋହ୍ଲାଲା) :**

ମେଦିନୀପୁର ଅଞ୍ଚଳରେ ଗୋଲ୍ଲ ବା ଗୋହ୍ଲାଲା "ସଦ୍‌ଗୋପ୍" ରୂପେ ପରିବର୍ତ୍ତିତ ବଙ୍ଗାଳୀ । ଗୋଧନ ରକ୍ଷା ଏମାନଙ୍କର ପ୍ରଧାନ କର୍ମ । "ଗୋଧନ ରକ୍ଷା ନିପୁଣ ଗୋହାଲଆ ଜାତି" । (୮) ବର୍ତ୍ତମାନ ଏମାନେ କୃଷୀ, ବୈଷ୍ଣବାଚାର୍ଯ୍ୟ ଶ୍ୟାମା-ନନ୍ଦ ଶ୍ରୀ ଚୈତନ୍ୟଙ୍କ ଭକ୍ତ ଓ ରସିକା ନନ୍ଦଙ୍କ ଗୁରୁ ରୂପେ ସୁବିଖ୍ୟାତ । ଆଚାର୍ଯ୍ୟ ଶ୍ୟାମାନନ୍ଦ ସଦ୍‌ଗୁରୁ କୁଳରେ ଜନ୍ମଗ୍ରହଣ କରିଥିଲେ ।

ଉପରୋକ୍ତ ଜାତିର ଲୋକ ବ୍ୟତୀତ ବଣିଆ, କୁମ୍ଭାର, କମାର, ତେଲି, ତନ୍ତୀ ଗୁଡ଼ିଆ ପ୍ରଭୃତି ଜାତିର ଲୋକେ ଏ ସମଗ୍ର ଅଞ୍ଚଳରେ ବାସ କରନ୍ତି । ମେଦିନୀପୁର ଅଞ୍ଚଳରେ ଏମାନଙ୍କର ସାଂଜ୍ଞା ପରିବର୍ତ୍ତିତ ହୋଇଥିବାର ଦେଖାଯାଏ । ଯଥା—ବେରା (ବେହେରା), ମାଇତି (ମହାନ୍ତି), ଜାନା (ଜେନା), ପଡ଼୍ୟା (ପରିଡ଼ା), ସାହୁ (ସାହୁ), ଦୋଲାଇ (ଦଳାଇ), ରାନା (ରଣା) ପ୍ରଭୃତି ।

**ଭୂମିଜ :**

ହିନ୍ଦୁ ଜାତି ବିଶେଷ । ଏ ଜାତିର ଲୋକ ମୟୂରଭଞ୍ଜର ସଦର ସବ୍‌ଡ଼ିଭିଜନର ଶୂଳିଆପଦା ଓ ମୁରୁଡ଼ା ଥାନା, ସିଂଭୂମର ଧଳଭୂମ ଓ ମେଦିନୀପୁରର ଝାଡ଼ଗ୍ରାମର ନୟାଗ୍ରାମ ଅଞ୍ଚଳରେ ଅଧିକ ବାସ କରନ୍ତି । ଏମାନେ ଶୈବ ଶାଖାରେ ବିଭକ୍ତ । ଏମାନଙ୍କର ପଦବୀ ଭଞ୍ଜ ଦେଓ, ସିଂ, ଧଳ, ଭୋଇ; ଦାସ, ନାୟକ, ସର୍ଦ୍ଦାର, ବଡ଼-ନାୟକ, ମହାନାୟକ, ଜଳନାୟକ ବହୁପୂଜା, ଦଣ୍ଡପାଟ, ଅସ୍ପାଲ, ଟିପିରିଆ, ପାଟବନ୍ଧା, ଧୀର ପ୍ରଭୃତି ।

**ମାହାନ୍ତ :—**

ଏ ଶ୍ରେଣୀର ଲୋକେ ଓଡ଼ିଶାର ମୟୂରଭଞ୍ଜ, ମେଦିନୀପୁରର ଝାଡ଼ ଗ୍ରାମ ଅଞ୍ଚଳରେ ବହୁଳ ବାସ କରୁଥିବାର ଦେଖାଯାନ୍ତି । ଏମାନେ ମୁଖ୍ୟତଃ କୃଷୀ ।

Digitized by srujanika@gmail.com

ଏମାନେ "କୁଡ଼ମୀ" ସମ୍ପ୍ରଦାୟ ରୂପେ ପରିଚିତ । ଏମାନଙ୍କର ମୁଖ୍ୟ ଭାଷା "କୁଡ଼-ମାଳି"—ଏ ଭାଷାରେ ରଚିତ ଝୁମର ସଙ୍ଗୀତ ଏ ଅଞ୍ଚଳର ଜନସମାଜରେ ଖୁବ୍ ଆଦୃତ ।

**ଶବର :**

ମେଦିନୀପୁରର ତମଲୁକ୍ , ମହିଷା ଦଳ, ନନ୍ଦୀ ଗ୍ରାମ, କାନ୍ଥୀ, ବେଲଦା ପ୍ରଭୃତି ସ୍ଥାନ ଓ ମୟୂରଭଞ୍ଜର ବହୁ ସ୍ଥାନରେ ଶବରମାନେ ବାସ କରନ୍ତି । ଏମାନେ ଏ ଅଞ୍ଚଳରେ ଶଅର ଭାବେ ମଧ୍ଯ କଥିତ ହୁଅନ୍ତି । ଶବରମାନେ ସାପ ଧରି ଖେଳାନ୍ତି । ବଣରୁ ପକ୍ଷୀ ଧରି ପୋଷି ବିକ୍ରି କରନ୍ତି । ମଧୁ ସଂଗ୍ରହ କରନ୍ତି । ଏମାନଙ୍କର ପଦବୀ ମାଇତି, ବେରା, ସିଂ, ଦଣ୍ଡା, (ଧାଡ଼ା) ଇତ୍ୟାଦି । ଅଧିକାଂଶ ଶବର ବୈଷ୍ଣବଧର୍ମାବଲମ୍ବୀ । ଏମାନେ ମୟୂରଭଞ୍ଜ ଅଞ୍ଚଳରେ ଓଡ଼ିଆରେ, ମେଦିନୀପୁର ଅଞ୍ଚଳରେ ଓଡ଼ିଆ ଓ ବଙ୍ଗଳାରେ କଥାବାର୍ତ୍ତା କହନ୍ତି । ଏମାନଙ୍କର ନିଜ ଜାତୀୟ ଭାଷା ସମ୍ଭବତଃ ଭୁଲି-ଯାଇଥାଇ ପାରନ୍ତି । ଶବର ସଭ୍ୟତା ଓଡ଼ିଶାର ସଂସ୍କୃତିକୁ ବହୁଳ ପ୍ରଭାବିତ କରିଛି । ନୀଳାଚଳ ନାଥ ଶ୍ରୀ ଜଗନ୍ନାଥ ପ୍ରଥମେ ଶବର ଦେବତା ରୂପେ ଖ୍ୟାତ ଓ ବିଶ୍ୱାବସୁ ଶବରଙ୍କ ଦ୍ୱାରା ପୂଜିତ ହେଉଥିବାର କିମ୍ବଦନ୍ତୀ ପ୍ରଚଳିତ ।

**ଭୂମିଜ :**

ମୟୂରଭଞ୍ଜର ବାରିପଦା ସବ୍‌ଡ଼ିଭିଜନ ଓ ମେଦିନୀପୁରର ଝାଡ଼ଗ୍ରାମ ଅଞ୍ଚଳରେ ଭୂମିଜମାନେ ବହୁଳ ବାସ କରୁଥିବାର ଦେଖାଯାଏ । ଏମାନେ ମୁଖ୍ୟତଃ କୃଷୀ । ମୟୂରଭଞ୍ଜରେ ଏମାନେ ନିଜ ଭାଷା ସହ ଓଡ଼ିଆ ଭାଷାରେ, ଝାଡ଼ଗ୍ରାମ ଅଞ୍ଚଳରେ ନିଜ ଭାଷାସହ ଓଡ଼ିଆ ଓ ବଙ୍ଗଳା ଭାଷାରେ କଥାବାର୍ତ୍ତା କରନ୍ତି ।

**ସାନ୍ତାଳ :**

ଆଲୋଚ୍ୟ ଅଞ୍ଚଳରେ ସବୁ ସ୍ଥାନରେ ସାନ୍ତାଳ ଗୋଷ୍ଠୀର ଲୋକେ ବାସ କରୁଥିବାର ଜଣାଯାଏ । ବିଶେଷତଃ, ମୟୂରଭଞ୍ଜର ସଦର ସବ୍‌ଡ଼ିଭିଜନ ଓ ମେଦିନୀ-ପୁରର ଝାଡ଼ଗ୍ରାମ ମହକୁମା ଅଞ୍ଚଳରେ ବହୁଳ ବାସ କରନ୍ତି । ଏମାନେ ବୟସ୍କା କନ୍ୟା ବିବାହ କରନ୍ତି । ଏମାନଙ୍କ ମଧ୍ୟରେ କନ୍ୟାପଣ ପ୍ରଚଳିତ, ଏମାନେ ସାଧାରଣତଃ କୃଷିଜୀବୀ । ମୟୂରଭଞ୍ଜ ଓ ବାଲେଶ୍ୱର ଅଞ୍ଚଳରେ ବାସ କରୁଥିବା ସାନ୍ତାଳ ଗୋଷ୍ଠୀର ଲୋକେ ନିଜ ମାତୃଭାଷା ସହ ଓଡ଼ିଆ ଓ ମେଦିନୀପୁର ଅଞ୍ଚଳର ନିଜ ମାତୃଭାଷା ସହ ଆଞ୍ଚଳିକ ଭାଷାରେ କଥାବାର୍ତ୍ତା କରନ୍ତି ।

Digitized by srujanika@gmail.com

**ଖଡ଼ିଆ :**

ଆଲୋଚ୍ୟ ଉପାନ୍ତ ଅଞ୍ଚଳର କେତେକ ସ୍ଥାନରେ ମୁଖ୍ୟତଃ ମୟୂରଭଞ୍ଜ— ଝାଡ଼ଗ୍ରାମ ଅଞ୍ଚଳରେ ଏମାନେ ବାସ କରୁଥିବାର ଦେଖାଯାନ୍ତି । ଖଡ଼ିଆମାନେ ସାଧାରଣତଃ ତିନି ଭାଗରେ ବିଭକ୍ତ । ସେମାନେ ହେଲେ—ପାହାଡ଼ି ଖଡ଼ିଆ, ଧେଲକୀ ଖଡ଼ିଆ ଓ ଦୁଧ ଖଡ଼ିଆ । ପୁଣି କେହି କେହି ମତ ଦିଅନ୍ତି ଯେ ଖଡ଼ିଆମାନେ ଛଅଟି ଶାଖାରେ ବିଭକ୍ତ । ସେମାନେ ହେଲେ ବେର୍‌ଗା, ଧେଲକୀ, ଦୁଧ, ଏରେଙ୍ଗା, ମୁଣ୍ଡା ଓ ଅଗଁଓ ଖଡ଼ିଆ । ମୁଣ୍ଡାମାନେ ଖଡ଼ିଆ ଗୋଷ୍ଠୀରୁ କନ୍ୟା ଆଣି ବିବାହ କରନ୍ତି । କିନ୍ତୁ ଖଡ଼ିଆମାନଙ୍କୁ ନିଜ ଜାତିରୁ ବିବାହ କରିବାକୁ ଦିଅନ୍ତି ନାହିଁ ।

**ଅସୁର :**

ବାରିପଦା ସଦର୍‌ଭିଜନ ଓ ଝାଡ଼ଗ୍ରାମ ଅଞ୍ଚଳରେ ଏମାନେ ବହୁଳ ବାସ କରୁଥିବାର ଦେଖାଯାନ୍ତି । ଅରଣ୍ୟରୁ ଖଣତିରେ ମାଟି ଖୋଳି ଖାଦ୍ୟ ସଂଗ୍ରହ କରିବା ଏମାନଙ୍କର ପାରମ୍ପରିକ ପେଷା । ଏମାନଙ୍କ ମଧ୍ୟରୁ କେତେକ ପରିବା ଉତ୍ପାଦନ କରିବା ସହିତ କୃଷକ ଭାବରେ ଜୀବିକାର୍ଜନ କରୁଥିବାର ଜଣାଯାଏ ।

**ଭୂୟାଁ :**

ମୟୂରଭଞ୍ଜ-ଝାଡ଼ଗ୍ରାମ ଅଞ୍ଚଳରେ ଭୂୟାଁ ଗୋଷ୍ଠୀର ଲୋକେ ଅନେକ ସ୍ଥାନରେ ବହୁଳ ବାସ କରନ୍ତି । ଏମାନଙ୍କର ଉପାସ୍ୟ ଦେବତା ପ୍ରଭୁ ଶ୍ରୀରାମଚନ୍ଦ୍ର ଓ ତାଙ୍କର ଶ୍ରେଷ୍ଠ ଭକ୍ତ ମହାବୀର ହନୁମାନ । ଏମାନେ ହିନ୍ଦୁ ଧର୍ମ ଓ ସଂସ୍କୃତି ପ୍ରଭାବିତ ଗୋଷ୍ଠୀ ବିଶେଷ । ଏମାନଙ୍କର ସାମାଜିକ ଅବସ୍ଥା ଉନ୍ନତ ।

ଉତ୍ତର ବାଲେଶ୍ୱର ଓ ମେଦିନୀପୁର ଅଞ୍ଚଳରେ ଭୂୟାଁ ଉପାଧିଧାରୀ କେତେକ ଜାତିର ଲୋକେ ବାସ କରୁଥିବାର ଦେଖାଯାନ୍ତି । ଭୂୟାଁ ଜାତି ଅତି ପ୍ରାଚୀନ ।

ଓଡ଼ିଶାର ଉତ୍ତରାଞ୍ଚଳରେ ଅନେକ ଭୂୟାଁ ଉପାଧିଧାରୀ ଜମିଦାର ଥିଲେ । ଗଡ଼ପଦାର ଭୂୟାଁ ଆଉରଙ୍ଗଜେବଙ୍କ ସମୟରେ ମୁସଲମାନ ହୋଇଥିଲେ । ସାହାବନ୍ଦର ଗଡ଼ର ଭୂୟାଁ ଜଣେ ଜମିଦାର ଥିଲେ । ଏ ଜାତିର ଶୁଣ୍ଡି ଥିବାର ଜଣାଯାଏ । ବର୍ତ୍ତମାନ ସାହାବନ୍ଦର ଗଡ଼ ସୁବର୍ଣ୍ଣରେଖା ନଦୀ ଗର୍ଭରେ ଲୀନ ହୋଇଯାଇଛି । ତାଙ୍କ ବଂଶରେ କେହି ନ ଥିବାର ଜଣାଯାଏ । ତାମ୍ରଲିପ୍ତରେ କାଳୁଭୂୟାଁ ନାମରେ ଜଣେ ରାଜା ଥିବାର ପୂର୍ବେ ଜାଣିଅଛୁ । ସେ ଜାତିରେ କୈବର୍ତ୍ତ ଥିଲେ । ବର୍ତ୍ତମାନ ଏ ଅଞ୍ଚଳରେ ଭୂୟାଁ ଉପାଧିଧାରୀ କେଉଟ ଜାତିର ଲୋକେ ବାସ କରୁଛନ୍ତି । ଜାମୁକୋଣ୍ଡା ଗଡ଼ରେ ଭୂୟାଁ ଉପାଧିଧାରୀ ଜମିଦାର ଥିଲେ । ଜଲେଶ୍ୱର ନଳକଟବର୍ତ୍ତୀ "ବାଶିଦା"

Digitized by srujanika@gmail.com

ଗ୍ରାମରେ ଗୋଟିଏ ପ୍ରାଚୀନ ଭୂୟାଁ ଗଡ଼ (ଦୁର୍ଗ)ର ଧ୍ୱଂଶାବଶେଷ ଅଦ୍ୟାପି ବର୍ତ୍ତମାନ । ଏଠାର ଭୂୟାଁ ଜାତରେ କରଣ ଥିବାର କୁହାଯାଏ ।

**ଲୋଧା :**

ଓଡ଼ିଶା ଓ ପଶ୍ଚିମବଙ୍ଗର ସୀମାନ୍ତ ଘନ ଅରଣ୍ୟ ଅଞ୍ଚଳରେ ଆଦିବାସୀ ଲୋଧାମାନେ ବାସ କରିଥାନ୍ତି । ଏମାନେ ଅଶିକ୍ଷିତ ଓ ଅନୁନ୍ନତ । ଏମାନେ ଦୁଃସାହସିକ ଜୀବନଯାପନ କରନ୍ତି ।

**ମୁସଲମାନ :**

ଏ ସମଗ୍ର ଅଞ୍ଚଳରେ ମୁସଲମାନ ସମ୍ପ୍ରଦାୟର ଲୋକେ ଅନେକ ସ୍ଥାନରେ ବାସ କରୁଥିବାର ଦେଖାଯାଏ । ଗଡ଼ପଦା, ଜଳେଶ୍ୱର, ବାଲେଶ୍ୱର, ବାଲିଆପାଳ, ବାଣପଦା, ଶୂଳିଆପଦା, ଗୋପୀବଲ୍ଲଭପୁର, ନନ୍ଦୀଗ୍ରାମ, ମେଦିନୀପୁର, ଖଡ଼ଗପୁର, ଦାନ୍ତନ, ଏଗ୍ରା ପ୍ରଭୃତି ଅଞ୍ଚଳରେ ଏମାନେ ବାସ କରୁଛନ୍ତି । ଏଗ୍ରା ଅଞ୍ଚଳର ମୁସଲମାନମାନେ ଏକ ପ୍ରକାର ବୀର ରସାଶ୍ରିତ (ଗାମ୍ଭୀ) ନାଚ ନାଚଥାନ୍ତି । ଏମାନେ କୃଷିଜୀବୀ, ମୋଗଲ ଓ ଆଫଗାନ୍ ଶାସନ ସମୟରେ ଅନେକ ଓଡ଼ିଆ ହିନ୍ଦୁ ମୁସଲମାନ ଧର୍ମ ଗ୍ରହଣ କରିଥିବାର ପ୍ରମାଣ ମିଳେ । ଗଡ଼ପଦା ଗ୍ରାମର ଭୂୟାଁ ବଂଶର ମୁଖ୍ୟ ଆଉରଙ୍ଗଜେବଙ୍କ ସମୟରେ ମୁସଲମାନ ହୋଇଥିଲେ । ଏହି ଭୂୟାଁ ବଂଶର ପୂର୍ବପୁରୁଷ ପୋତେଶ୍ୱର ଭଟ୍ଟ ଗଜପତି ପୁରୁଷୋତ୍ତମଙ୍କ ନିକଟରୁ ଦେବପୂଜା ନିମନ୍ତେ ପ୍ରଚୁର ଭୂସମ୍ପତ୍ତି ଦାନ ପାଇଥିଲେ । ଏହି ଭୂୟାଁ ବଂଶ ହିନ୍ଦୁରୁ ମୁସଲମାନକୁ ପରିବର୍ତ୍ତିତ ହୋଇଥିଲେ ହେଁ ତାଙ୍କ ପରିବାର ମଧ୍ୟରେ ଏବେ ସୁଦ୍ଧା ବହୁତ ହିନ୍ଦୁ ଧର୍ମାଚାର ପ୍ରଚଳିତ ଥିବାର ଜଣାଯାଏ । (୯)

**ଖ୍ରୀଷ୍ଟିୟାନ :**

ପର୍ତ୍ତୁଗୀଜ ଓ ଇଂରେଜ ମିଶନାରୀମାନଙ୍କ ପ୍ରଚାର ଫଳରେ ଏ ଅଞ୍ଚଳର ବହୁତ ଲୋକ ଖ୍ରୀଷ୍ଟଧର୍ମାବଲମ୍ବୀ ହୋଇ ଯାଇଛନ୍ତି । ଉତ୍ତର ବାଲେଶ୍ୱରର ମହମ୍ମଦ ନଗର ପାଟଣା, ହାତୀଗଡ଼, ମୟୂରଭଞ୍ଜର ବାରିପଦା ଓ ସଂଲଗ୍ନ ଅଞ୍ଚଳ ଏବଂ ମେଦିନୀପୁରର ବିଭିନ୍ନ ଗ୍ରାମ ଓ ସହରାଞ୍ଚଳରେ ଏମାନେ ବାସ କରୁଥିବାର ଦେଖାଯାଏ । ଆଦିବାସୀମାନଙ୍କ ମଧ୍ୟରେ ଖ୍ରୀଷ୍ଟଧର୍ମାବଲମ୍ବୀ ଅଧିକ । ଏମାନେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେହେଁ ନିଜ ନିଜର ଜାତି/ଗୋଷ୍ଠୀର ରୀତି ନୀତି ଓ ସଂଜ୍ଞା ଧାରଣ କରନ୍ତି ।

Digitized by srujanika@gmail.com

**ଉତ୍ତର-ପୂର୍ବାଞ୍ଚଳୀୟ ସମାଜରେ ନାରୀ :**

ଏ ଅଞ୍ଚଳରେ ଅନେକ ସମ୍ଭ୍ରାନ୍ତ ମହିଳା ବିଭିନ୍ନ କ୍ଷେତ୍ରରେ ନିଜ ନିଜର ପ୍ରତିଭା ପ୍ରଦର୍ଶନ କରିଥିବାର ଦେଖାଯାଏ । କେତେକ ପ୍ରତିଭାମୟୀ ନାରୀଙ୍କ ସମ୍ପର୍କରେ ନିମ୍ନରେ ଉଲ୍ଲେଖ କରୁଅଛୁ ।

ଉତ୍କଳ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଧଳଭୂମିର ନବ ପରିଣୀତା ରାଜକନ୍ୟା ପ୍ରଭାବତୀଙ୍କର ସମରାଭିଯାନ ଉତ୍ତର-ପୂର୍ବାଞ୍ଚଳର ତାମ୍ରଲିପ୍ତ, କପିଶା ନଦୀ ତୀରବର୍ତ୍ତୀ, ମୟୂରଭଞ୍ଜ ଓ ଧଳଭୂମିର ସମଗ୍ର ଅଞ୍ଚଳର ଲୋକ ମୁଖରେ ବିସ୍ତାରିତ ଭାବରେ ପ୍ରଚଳିତ । ରଣପୁର ରାଜ୍ୟର ଯୁବରାଜ ଧଳଭୂମିର ରାଜକନ୍ୟା ପ୍ରଭାବତୀଙ୍କ ସହ ପରିଣୟ ଶେଷରେ ନିଜ ରାଜ୍ୟକୁ ବାହୁଡ଼ିବା କାଳରେ 'କପିସା' ତୀରବର୍ତ୍ତୀ ସ୍ଥାନରେ ଶିବିର ପକାଇ ରାତ୍ରିଯାପନ କରିଥିଲେ । ଇତ୍ୟବସରେ ବଙ୍ଗର (ଗୌଡ଼) ନବାବ ଉତ୍କଳ ଆକ୍ରମଣ କରିବା ପାଇଁ ବାହାରିଥିବାର ଗୋପନ ସମ୍ବାଦ ଯୁବରାଜ ଗୁପ୍ତଚର ମୁଖରୁ ଶ୍ରବଣ କଲେ । ଏକ ଦିଗରେ ନବ ପରିଣୀତା ରାଜବଧୂ ଅନ୍ୟ ପକ୍ଷରେ ସାମ୍ରାଜ୍ୟ ଲକ୍ଷ୍ମୀ-ବୃଦ୍ଧିଙ୍କର ସୁରକ୍ଷା-ଏପରି ଏକ ସମସ୍ୟା ବହୁଳ ଓ ସମ୍ବେଦନଶୀଳ ପରିସ୍ଥିତି ଓ ଜରୁରୀ ଆବଶ୍ୟକତାର ଦ୍ୱନ୍ଦ୍ୱ ମଧ୍ୟରେ ରାଜକୁମାର ଭାବାକ୍ରାନ୍ତ ମନରେ ନିଜର କର୍ତ୍ତବ୍ୟରେ 'କାର୍ଯ୍ୟେଷୁ ମନ୍ତ୍ରୀ' ନ୍ୟାୟରେ ନବବଧୂ ପ୍ରଭାବତୀଙ୍କ ନିକଟରେ ନିଜର ଚିନ୍ତା ବ୍ୟକ୍ତ କଲେ । ଏପରି ଏକ ସଙ୍କଟ ପୂର୍ଣ୍ଣ ମୁହୂର୍ତ୍ତରେ ପ୍ରଭାବତୀ ନିଜର ବିଚାର ନୈପୁଣ୍ୟ, ଧୈର୍ଯ୍ୟ, ସାହସ, ତ୍ୟାଗ, ବୁଦ୍ଧିମତ୍ତା ଓ ସାମରିକ କୁଶଳତାର ପରିଚୟ ପ୍ରଦାନ କରିଛନ୍ତି । ପ୍ରଭାବତୀଙ୍କ ପରାମର୍ଶରେ ରାଜଧାନୀ କଟକସ୍ଥିତ ଗଜପତିଙ୍କ ନିକଟକୁ ସମ୍ବାଦ ବହନ କରି ରାଜକୁମାର ସ୍ୱୟଂ ତୁରନ୍ତ ସେହି ରାତ୍ରିରେ ଗମନ କଲେ । ଏ ଦିଗରେ ପ୍ରଭାବତୀ ନିଜର ସହଚରୀ ବିଶ୍ୱସ୍ତ ଦାସୀଙ୍କ ସହିତ ପୁରୁଷ ବେଶରେ ଯୁଦ୍ଧ ସାଜରେ ସାଜି ଉତ୍କଳର ତାମ୍ରଲିପ୍ତ ଅଞ୍ଚଳରେ ପୁରବୁଲି 'ଧୀବର ବାହିନୀ' ଓ ପାଇକମାନଙ୍କ ପ୍ରାଣରେ ଆକ୍ରମଣ ପ୍ରତିହତ କରି ଜନ୍ମ ଭୂମିର ସୁରକ୍ଷା ପାଇଁ ଜାଗ୍ରତ କରାଇ ଗଙ୍ଗାନଦୀର ନିକଟରେ ଠୁଳ କରାଇଲେ । ଗୌଡ଼ ନବାବଙ୍କ ସୈନ୍ୟବାହିନୀ ଗଙ୍ଗାନଦୀର ଅପର ପାର୍ଶ୍ୱରେ ଶିବିର ମଧ୍ୟରେ ନିଶୀଥ ନିଦ୍ରାଭିଭୂତ ଥିଲାବେଳେ, ପାଇକ ଓ ଧୀବର ବାହିନୀ ଛଦ୍ମବେଶୀ ପ୍ରଭାବତୀଙ୍କ ଅଧିନାୟକତ୍ୱରେ ସେମାନଙ୍କୁ ଆକ୍ରମଣ କଲେ । ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ଗଙ୍ଗାର ଜଳ ରକ୍ତ ରଙ୍ଗା ହେଲା । ପୁନଶ୍ଚ ସମ୍ବାଦ ପ୍ରାପ୍ତି ପରେ ଉତ୍କଳର ଗଜପତି ବିପୁଳ ସୈନ୍ୟ ବାହିନୀ ଧରି ଆକ୍ରମଣ କରିବା ଦେଖି ଯବନ ସେନା ପଛଘୁଞ୍ଚା ଦେଇ ପଳାୟନ କଲେ । ଯୁଦ୍ଧରେ ଉତ୍କଳ ବାହିନୀର ବିଜୟ ଘଟିବାର ଦେଖି ଉତ୍କଳ ଯୁବରାଜଙ୍କର ଜୟଧ୍ୱନିରେ ଗଗନ ପବନ ମୁଖରିତ ହୋଇ ଉଠିଲା । ଗଜପତି ଆଶ୍ଚର୍ଯ୍ୟ ଚକିତ ହେଲେ । କାରଣ ଯୁବରାଜ ସେତେବେଳେ ରାଜଧାନୀ କଟକରେ ଅବସ୍ଥାନ କରୁଥିଲେ । ରଣପୁର ଯୁବରାଜ

Digitized by srujanika@gmail.com

ମଧ୍ୟ ଦ୍ୱନ୍ଦରେ ପଡ଼ିଲେ । ପରେ ପ୍ରଭାବତୀଙ୍କ କୌଶଳ ବୁଝିପାରି ବୃଦ୍ଧେ ଗଜପତିଙ୍କ ନିକଟକୁ ମିଳିତ ହୋଇ ଯାଇ ନିଜର ପ୍ରକୃତ ପରିଚୟ ପ୍ରଦାନ କରି ଗଜପତିଙ୍କୁ ଆହୁରି ଆଶ୍ଚର୍ଯ୍ୟ ଚକିତ କରି ଦେଲେ । ବିସ୍ମିତ, ଗର୍ବିତ, ଉତ୍ଫୁଲ୍ଲିତ ଓ ଗୁଣଗ୍ରାହୀ ଗଜପତି ସେଇଠି ସେଇକ୍ଷଣି ଯୁବରାଜଙ୍କୁ ବୀରତ୍ୱ ଓ ତ୍ୟାଗର ପରାକାଷ୍ଠା ନିମନ୍ତେ 'ନରେନ୍ଦ୍ର ପଦ' ଓ ଯୁବରାଣୀ ପ୍ରଭାବତୀଙ୍କୁ 'ନାଗମଣୀ' ଉପାଧିରେ ଭୂଷିତ କରିବା ସଙ୍ଗେ ସଙ୍ଗେ ନିଜର ମହତ୍ତ୍ୱ ପ୍ରତିଷ୍ଠା କରିଥିଲେ ।

ଏପରି ଏକ ହୃଦୟସ୍ପର୍ଶୀ, ବୀରତ୍ୱ, ଦେଶପ୍ରେମ ଓ ତ୍ୟାଗପୂର୍ଣ୍ଣ ଆଖ୍ୟାୟିକା ନବ ଉତ୍କଳର ପ୍ରଖ୍ୟାତ କବି ଗୋଦାବରୀଶ ମହାପାତ୍ର ଓ ରାଧାମୋହନ ଗଡ଼ନାୟକଙ୍କ ଲେଖନୀ ମୂନରେ ଜୀବନ୍ତ ହୋଇ ରହିଛି । *

ପୂର୍ବତନ ମୟୂରଭଞ୍ଜ ରାଜ୍ୟର ରାଣୀ ସୁମିତ୍ରା ଦେବୀ ଭଞ୍ଜଦେଓ [ଖ୍ରୀ ୧୭୯୬-୧୮୧୦] ଜଣେ ଦକ୍ଷ ପ୍ରଶାସିକା ଭାବରେ ନିଜର ଗୌରବ ପ୍ରତିଷ୍ଠା କରିଥିଲେ । ଖ୍ରୀ: ୧୮୦୩ରେ ଓଡ଼ିଶା ଅଧିକାର ସମୟରେ ରାଣୀ ସୁମିତ୍ରା ଦେବୀ ବ୍ରିଟିଶ ସୈନ୍ୟ-ମାନଙ୍କୁ ସବୁ ପ୍ରକାର ସାହାଯ୍ୟ ପ୍ରଦାନ କରିଥିଲେ । ଏଥିର ପୁରସ୍କାର ସ୍ୱରୂପ ମେଦିନୀପୁର କଲେକ୍ଟର ୧୮୦୪ ମସିହାରେ ରାଣୀଙ୍କର ଏ ଦିଗରେ 'ଅତ୍ୟନ୍ତ ଆଗ୍ରହ ଓ ତତ୍ପରତା'କୁ ସ୍ୱୀକୃତି ଦେବା ସହିତ ତାଙ୍କର ପ୍ରଶଂସନୀୟ ସେବା ନିମନ୍ତେ ସେ ବ୍ରିଟିଶ ସରକାରଙ୍କ ଦ୍ୱାରା 'ଖିଲତ' ପାଇ ସମ୍ମାନିତା ହୋଇଥିଲେ (୧୦) । ମହା-ରାଜେଶ୍ୱରୀ ସୁମିତ୍ରାଦେବୀ ୧୮୧୧ ମସିହାରେ ଇହଲୀଳା ସାଂଗ କରିଥିଲେ । ତାଙ୍କ ପରେ ଆଉ ଜଣେ ନାରୀ ମୟୂରଭଞ୍ଜ ରାଜ୍ୟର ଶାସନ କର୍ତ୍ତ୍ରୀ ଭାବରେ ପ୍ରତିଷ୍ଠିତା ହୋଇଥିଲେ । ସେ ହେଉଛନ୍ତି ମହାରାଜେଶ୍ୱରୀ ଯମୁନା ଦେବୀ ଭଞ୍ଜ ଦେଓ (ଖ୍ରୀ: ୧୮୧୦—୧୮୧୩ ଖ୍ରୀ:) ।

ପଟ୍ଟାସପୁର ପରଗଣାର ଜମିଦାର ବଂଶର ଜଣେ ବୀରରମଣୀ ରାଣୀ ରେଣୁକା ଦେବୀ । ରେଣୁକା ଦେବୀଙ୍କ ପିତା ଥିଲେ କଟକରେ । ପଟ୍ଟାସପୁରର ଜମିଦାର ଯଶୋଦାନନ୍ଦନ ଦାସମହାପାତ୍ର ତାଙ୍କର ସ୍ୱାମୀ । ତାଙ୍କ ସମ୍ପର୍କରେ ଅପ୍ରକାଶିତ 'ଭୋଗରାଇ' ଇତିହାସରୁ କିଛି ଅଂଶ ଉଦ୍ଧାର କରୁଅଛୁ ।

---

* ପ୍ରଭାବତୀର ଅଭିଯାନ—'ଉତ୍କଳିକା' ରାଧାମୋହନ ଗଡ଼ନାୟକ ।
ଗୋଦାବରୀଶ ମହାପାତ୍ରଙ୍କ 'କୀର୍ତ୍ତିମାଳା'ରେ 'ଧଳଭୂମ-ରାଜକନ୍ୟା' ନାମରେ ପ୍ରକାଶିତ ।

Digitized by srujanika@gmail.com

"ରାଣୀ ରେଣୁକା ଓଡ଼ିଆ ଘରର ଝିଅ, ଓଡ଼ିଆ ଘରର ବୋହୂ । ସେ ଘୋଡ଼ା ଚଢ଼ିପାରୁଥିଲେ । ହାତୀ ଚଲାଇ ପାରୁଥିଲେ । ବନ୍ଧୁକ ଓ ଧନୁବାଣ ଧରି ଯୁଦ୍ଧ କରି ପାରୁଥିଲେ । ସୈନ୍ୟ ପରିଚାଳନାରେ ମଧ୍ୟ ଖୁବ ପଟୁ ଥିଲେ । ତାଙ୍କ ଧାର୍ମିକତା ଓ ଓ ସାହସିକତା ଦୃଢ଼ତା ଦେଖି ତାଙ୍କ ଶତ୍ରୁମାନେ ଖୁବ ଭୟଭୀତ ହେଉଥିଲେ । ତାଙ୍କୁ ମା' ପରି ପୂଜା କରୁଥିଲେ । ସେ ଖେଜୁରୀର ଅଞ୍ଚଳରେ ମରହଟ୍ଟା ସେନାପତି ଭାସ୍କର ପଣ୍ଡିତଙ୍କ ସୈନ୍ୟମାନଙ୍କ ସହିତ ଯୁଦ୍ଧ କରି ପରାସ୍ତ କରି ଦେଇଥିଲେ ।" (୧୧)

ନାୟିକା 'ଶଶୀସେଣା'ର ସାହସ ପ୍ରେମ କ୍ଷେତ୍ରରେ ଅବିସ୍ମରଣୀୟ । ମୋଗଲମାରି ନିକଟରେ 'ଶଶୀସେଣା'ଙ୍କ ପାଠଶାଳାର ଧ୍ୱଂସାବଶେଷ ଏବେ ସୁଦ୍ଧା ରହିଥିବାର କିମ୍ବଦନ୍ତୀ ପ୍ରଚଳିତ ।

ଆଧୁନିକ କାଳରେ ଏ ଅଞ୍ଚଳର ନାରୀମାନଙ୍କ ମଧ୍ୟରୁ ଅନେକେ ସାହିତ୍ୟ, ସଙ୍ଗୀତ, କଳା, ଚିକିତ୍ସା, ସେବା, ଶିକ୍ଷା ଓ ରାଜନୀତି ପ୍ରଭୃତି କ୍ଷେତ୍ରରେ କୃତିତ୍ୱ ପ୍ରଦର୍ଶନ କରି ପ୍ରତିଷ୍ଠିତ ହୋଇଛନ୍ତି ।

**ଗୃହସ୍ଥଳୀର ଚିତ୍ର :**

ଓଡ଼ିଆ ଜାତିର ସ୍ୱଭାବ ସୁଲଭ ଆତିଥେୟତା ଏ ଅଞ୍ଚଳରେ ଏବେବି ପ୍ରଚଳିତ ଅଛି । ଆଜିବି ଏ ଅଞ୍ଚଳରେ ଗୃହୀ, ଓଡ଼ିଆ ସାମାଜିକତାର ଅତିଥିକୁ ଭୋଜନ ଦେଲାବେଳେ ଗୃହିଣୀ ନିଜ ହସ୍ତରେ ରାନ୍ଧି ପରଶିଥାଆନ୍ତି ଏବଂ ବଳେଇ ବଳେଇ ଖୋଇଥାନ୍ତି । ଆଉ, ଗୃହସ୍ୱାମୀ ନିଜର ଉଦାରତା ପ୍ରକାଶ କରି କହିଥାନ୍ତି "ହୁଷ୍ଟେଲ ଖାଇଥିନେ କେତେ ତିଅରକାରୀ ଖାଇଥାନ୍ତେ", ଆମରିତ ଖାଲି ଭାତ; ଖାଇବେ କନ୍ତି, ତରକାରୀ ଶାଗ ନାହିଁ । ଆପଣତ ଆସିକ ପଡ଼ୁଥିଲେ, ଉବେଳ ହୋଇଥିଲା, ମୁଁ ତ ସିଆଡ଼ କାଜର ଯାଇଥିନ, କିଛୁ ଯୁଗାଡ଼୍ କରି ହେଲାନ, ରୁଚ୍ଛା ଖାଇଲେ ବଲି ମନ୍ଦ ଭାବିବେନି ।"*

ଏ ହେଉଛି ଗୃହସ୍ଥଳୀର ବାହ୍ୟରୂପ । ତା'ର ଅନ୍ତଃରୂପ ଆହୁରି ଚିତ୍ତାକର୍ଷକ । ଏକାନ୍ନବର୍ତ୍ତୀ ପରିବାରରେ ଜାଆମାନଙ୍କ ସହ ଖାଇବାକୁ ବସିବା, ଉଲୁଗୁଣା ଦେବା, ମା' ପୁଅ ଆଗରେ ବୋହୂ ସମ୍ପର୍କରେ ଖେଦ କହିବା, ଭାଇ ଭାଇ ମଧ୍ୟରେ ବିବାଦ, ସଉତୁଣୀ ଓ ବିମାତାର ଈର୍ଷା ଇତ୍ୟାଦି ସ୍ନେହ ଓ ମନ ଫଟାଫଟିର ଚିତ୍ର ଆଜିବି ଗାଁ ଗହଳର ଫଟା କାନ୍ଥ ଦେଇ ଶୁଭୁଥାଏ, ବିଶେଷତଃ ଶାଶୁ ବୋହୂ କଳି ଏ ସମାଜରେ

* ଶ୍ରୀ ବିପିନବିହାରୀ ମହାପାତ୍ର, ଗ୍ରାମ—ବରଙ୍ଗି, ମେଦିନୀପୁର ।

Digitized by srujanika@gmail.com

ନିତ୍ୟ ନୈମିତ୍ତିକ ଘଟଣା । ଏପରେ ଭାଉଜ ଦିଅରର ଥଟ୍ଟା ତାମସା, ଟାହି-ଟାପରା ଅତି ଆନନ୍ଦଦାୟକ । ଅଜା ନାତି, ବୁଢ଼ୀମା ଓ ନାତୁଣୀର ଚିତ୍ତାକର୍ଷକ ମଧୁର କଜିଆ ଆଜିବି ଏ ଅଞ୍ଚଳରେ ଗାଁର ବାୟୁମଣ୍ଡଳକୁ ରସସିକ୍ତ କରୁଅଛି । ଆଜିବି ପାରଳା ମହାଭାରତ ବର୍ଣ୍ଣିତ ଦ୍ରୌପଦୀ ସ୍ୱଡ଼ମ୍ବିକା ପରି କମରରେ ଲୁଗା କଡ଼ା ପଉରୁଣୀ କଳର ଦୃଶ୍ୟ ଅତ୍ୟନ୍ତ ମନୋରମ । ସ୍ୱାମୀଙ୍କ ପରି ପଖାଳ ଖିଆ ହୁଣ୍ଡା ଅବସ୍ଥା ସ୍ୱାମୀ ଆଜିବି ନିଜ ସ୍ତ୍ରୀ ଉପରେ ଧୁମ୍‌ଧାମ୍ ଦଗଣ୍ଡା କଷିଥାଏ ।

**ସ୍ୱାଦରକ୍ଷଣ :**

ପରେ ବୋହୂ ଗର୍ଭବତୀ ହେଲେ "ସ୍ୱାଦରକ୍ଷଣ" ବା "ସୁଆଦ ଖିଆ" ହୋଇଥାଏ । ପ୍ରଥମ ସାତମାସ ବେଳକୁ ବୋହୂଙ୍କ ବାପଘରୁ "ସାଦ" ଆସିଥାଏ । ପରେ ବନ୍ଧୁବାନ୍ଧବମାନଙ୍କ ଘରୁ ଆସିଥାଏ । ଏଥିରେ ସମାଜର ଲୋକେ ଖାଇଥାନ୍ତି, ବାଳୁତ ଭୋଜନ ହୋଇଥାଏ । ପିଲାମାନଙ୍କର ଆନନ୍ଦ ଓ ଲୋକମାନଙ୍କର ଆଶୀର୍ବାଦ ପ୍ରସୂତାର ମଙ୍ଗଳ କରିଥାଏ—ବିଶ୍ୱାସ ।

**ଅଳଙ୍କାର :**

ଓଡ଼ିଆ ନାରୀ ଅଳଙ୍କାର ପ୍ରିୟ । ଉପାନ୍ତ ଅଞ୍ଚଳରେ ଏବେବି ନାରୀମାନେ ସାଇତା ପୁରୁଣା ଗହଣା ବିବାହ ବ୍ରତରେ ପିନ୍ଧିଥାନ୍ତି । ନିମ୍ନରେ ଏ ଅଳଙ୍କାରଗୁଡ଼ିକର ନାମ ପ୍ରଦତ୍ତ ହେଲା ।

**ପାଦ :—**

ପା'ପଦ୍ମ, ପାଉଁଜର, ଝଲ୍‌ଝଲି, ବାଙ୍କି, ପଞ୍ଚମ, ଝୁଣ୍ଟିଆ, ଖଡ଼ୁ, ପାଗୁଡ଼, ଘୁଙ୍ଗୁର, ଝୁଣ୍ଟକା ପ୍ରଭୃତି ।

**ହାତ :**

ଖଡ଼ୁ, ବଳା, ବଟଫଳ, ମୁଦି, ଝୁମୁକା, ଗୁଛା, ଛପା, ବେଙ୍କାଗଣ୍ଡି, ଚୂର, ଅନନ୍ତ, ବାହୁଟି, ଶଙ୍ଖା, ବାଜୁ (ବାହୁରେ), ପଲ, ମଦବନ୍ଧ, ଝୁମ୍ପା, ନଳ, ଚୁଡ଼ି, କଉଡ଼ି ଇତ୍ୟାଦି ।

**ଆଙ୍ଗୁଳି :**

ମୁଦି (ହାତ), ଝୁଣ୍ଟିଆ (ଗୋଡ଼) ପ୍ରଭୃତି ।

**ଅଣ୍ଟା :**

ଚନ୍ଦ୍ରହାର, ପଇଁଚ, ସାପ, ସୂତା, ଝିଂଜିର, ବଗ୍ଗ ଇତ୍ୟାଦି ।

Digitized by srujanika@gmail.com

**ଗଳା (କଣ୍ଠଦେଶ) :**

ହାର, ଚିଂକ୍‌ର, ଗେଡ଼କଲ ଟଙ୍କା, ସୁଉକ, ଅଧୂଲି, ଟଙ୍କା ଛେଡ଼ା, ଭୁରୁଘ ଛେଡ଼ା, ହାଁସଲି, ଚମ୍ପା କଡ଼ିହାର, ପୋହଲାମାଳ ଇତ୍ୟାଦି ।

**ନାସା :**

ଲୁଲୁକ, ନାକ ମାଛି, ନାକ ଫୁଲ' ଦଣ୍ଡୀ, ନାକଚଣା, ନଥଭେମ୍‌ର, ଝୁରଝୁରି ଇତ୍ୟାଦି ।

**କର୍ଣ୍ଣ :**

ମାକ୍‌ଡ଼ି, ଗଣ୍ଠିଆ, କାନଫୁଲ, ମଣ୍ଡିବଡ଼ି, କାପ, କଲସଫୁଲ, ଝୁମୁକା, ପାଶା, ମଧୁମତି, ଫିର୍‌ଫିର୍ ପ୍ରଭୃତି ।

**ମସ୍ତକ :**

ପାନକଣ୍ଟା, ଫୁଲଝରି, ଗୁଜକାଠି, ସିନ୍ଥୀ, ଖଣ୍ଡିଆ ଗୁନ୍ଦ, ଘୁଙ୍ଗୁର ଇତ୍ୟାଦି । ଶାଶୁଙ୍କୁ ଖାଇବାକୁ ଦେବା, ଶାଶୁ-ନଣନ୍ଦ ମିଶି ବୋହୂ ସହିତ କଳି କରିବା, ※ ଗହଣା ଗୁଡ଼ିକ ସୁନା, ରୂପା, ପିତଳ, ତମ୍ବା ଓ ଲୁହା ପ୍ରଭୃତି ବିଭିନ୍ନ ଧାତୁରେ ନିର୍ମିତ ହୋଇଥାଏ । ସାମାଜିକ ଓ ଆର୍ଥିକ ସଙ୍ଗତିସମ୍ପନ୍ନ ଲୋକେ କ୍ଷମତାନୁସାରେ ଏସବୁ ବ୍ୟବହାର କରିଥାନ୍ତି ।

ଉପରୋକ୍ତ ଅଳଂକାରଗୁଡ଼ିକ ମଧ୍ୟରୁ ଗଜପତି ସମସ୍ତର ସମାଜରେ (୧୨) ପ୍ରଚଳିତ କେତେକ ଅଳଙ୍କାର ଏ ସବୁର ପ୍ରାଚୀନତା ପ୍ରତିପାଦନ କରେ ।

**ପୋଷାକ ପରିଛଦ :**

କୃଷିଭିତ୍ତିକ ସମାଜର ଲୋକମାନେ ମୋଟାଖାଦି ଖଣ୍ଡ ପିନ୍ଧି ଚଳିବା ଏକ ପରମ୍ପରା ରୂପେ ସ୍ୱୀକୃତ । କିନ୍ତୁ ସପ୍ତଦଶ ଶତକ ପୂର୍ବରୁ ଏ ଅଞ୍ଚଳର ତନ୍ତୀମାନେ କପା ଓ ରେଶମ ସୂତାରେ ସୂକ୍ଷ୍ମ ବସ୍ତ୍ର ବୁଣିବାରେ ଭାରତ ବିଖ୍ୟାତ ହୋଇଥିଲେ । ଓଡ଼ିଶାର ସୂକ୍ଷ୍ମ ବସ୍ତ୍ର ସୁଦୂର ସିଂହଳ, ବ୍ରହ୍ମଦେଶ, ଥାଇଲଣ୍ଡ, ମାଳୟ, ଇଣ୍ଡୋନେସିଆ ଓ ମାଳଦ୍ୱୀପ ପ୍ରଭୃତି ଦେଶ ବାହାର ବଜାରରେ ଆଦର ଲାଭ କରିଥିଲା । ଏଗୁଡ଼ିକ ମୁଖ୍ୟତଃ ଏସୀୟ ଓ ପର୍ତ୍ତୁଗୀଜ ବଣିକମାନେ ରପ୍ତାନି କରୁଥିଲେ । ପରବର୍ତ୍ତୀ କାଳରେ ଇଉରୋପୀୟ ବଜାରରେ ଭାରତୀୟ ବସ୍ତ୍ରର ଚାହିଦା ବଢ଼ିଥିଲା ।

---

※ ଶ୍ରୀମତୀ ହୀରାମଣି ମହାପାତ୍ର, ବାଣିଦା, ବାଲେଶ୍ୱର ଓ ଶ୍ରୀମତୀ ପ୍ରମଦା ମିଶ୍ର, ବାରିପଦାଙ୍କ ନିକଟରୁ ସଂଗୃହୀତ ।

Digitized by srujanika@gmail.com

ଏ ଅଞ୍ଚଳର ସ୍ତ୍ରୀ ଲୋକମାନେ ରଙ୍ଗ ଶାଢ଼ୀ ପିନ୍ଧୁଥିଲେ । ସମ୍ଭ୍ରାନ୍ତ ଘରର ସ୍ତ୍ରୀମାନେ ଛୁଟକଲୁଗା ପିନ୍ଧୁଥିଲେ । ଛୁଟକଲୁଗା ନାମରେ ଉତ୍କଳ ଚିରକାଳ ପ୍ରସିଦ୍ଧ ଥିଲା । ସେତେବେଳେ ଏ ଅଞ୍ଚଳରେ ଚନ୍ଦ୍ରକଣା (ଚନ୍ଦ୍ରକୋଣା) ମୋହନପୁରୀ ଓ ଶାନ୍ତିପୁରୀ ଶାଢ଼ୀ, ଧୋତି ତୋଶଆର ପ୍ରଚଳନ ଏବଂ ଆଦର ଖୁବ୍ ବେଶୀ ଥିଲା ।* ବଟୁଆ ବ୍ୟବହାର ସାଧାରଣ ଚଳଣି ଥିଲା । ବର୍ତ୍ତମାନ ମେଦିନୀପୁର ଅଞ୍ଚଳରେ ଅନେକଙ୍କ ଘରେ ବଟୁଆ ଥିବାର ଦେଖାଯାଏ । ତାହା ଏବେ ଅବ୍ୟବହୃତ ଓ ଅସହାୟ ଅବସ୍ଥାରେ ନିଜର ଅତୀତ କୀର୍ତ୍ତି କାହାଣୀକୁ ମନରେ ରଖି ମୁହଁ ଲୁଚି କେଉଁ ପେଟରା ଭିତରେ ପଡ଼ି ରହିଅଛି ।

**ଧର୍ମ :**

**ଆଲୋଚ୍ୟ ଅଞ୍ଚଳରେ** ପ୍ରକୃତି ଉପାସନା ସହ ହିନ୍ଦୁଧର୍ମର ବିଭିନ୍ନ ଶାଖା, ଇସ୍‌ଲାମ ଓ ଖ୍ରୀଷ୍ଟଧର୍ମର ପ୍ରଭାବ ପରିଲକ୍ଷିତ ହୁଏ ।

ସମଗ୍ର ଅଞ୍ଚଳରେ ବାସ କରୁଥିବା ଆଦିବାସୀ ସମାଜରେ ଧର୍ମଦେବତା, ପର୍ବତ, ବୃକ୍ଷ, ଲତା, ଗୁଳ୍ମ, ଧରଣୀ ବା ବାସୁକୀମାତା ପୂଜା ପ୍ରକୃତି ପୂଜାର ପ୍ରକୃଷ୍ଟ ଉଦାହରଣ । ଭୂମୀ ପୂଜା ପାଇଁ ରଜପର୍ବ ଓ ଅକ୍ଷୟ ତୃତୀୟା ଦୁଇଟି ମୁଖ୍ୟ ପର୍ବ ପାଳିତ ହୁଏ । ଆଲୋଚ୍ୟ ଅଞ୍ଚଳର ଲୋକ ସଂସ୍କୃତି ଆର୍ଯ୍ୟ, ଦ୍ରାବିଡ଼ (ଓ ଶବର ଅଣଆର୍ଯ୍ୟ) ସଂସ୍କୃତିର ସଙ୍ଗମ ସ୍ଥଳ । ପ୍ରାଗ୍ ଐତିହାସିକ ସଭ୍ୟତାର ଆବିଷ୍କୃତ ନିଦର୍ଶନ ସମୂହ ଆଞ୍ଚଳିକ ସଂସ୍କୃତିର ପ୍ରାଚୀନତାର ପ୍ରମାଣ ବହନ କରେ । ଆର୍ଯ୍ୟ ଧର୍ମର ବିଭିନ୍ନ ଶାଖା ଯଥା— ଜୈନ, ବୌଦ୍ଧ, ସୌର, ଗାଣପତ୍ୟ; ଶୈବ. ଶାକ୍ତ, ବ୍ରାହ୍ମ ପ୍ରଭୃତି ଧର୍ମଧାରଣା ଦ୍ୱାରା ଏ ଅଞ୍ଚଳର ଅଧିବାସୀମାନେ ପ୍ରଭାବିତ । ମହିମା ଧର୍ମାବଲମ୍ବୀ ଲୋକେ ରାତିରେ ଖାଆନ୍ତି

---

* ସପ୍ତଦଶ ଶତକରେ ବାଲେଶ୍ୱର, ମେଦିନୀପୁର ଓ ମୟୂରଭଞ୍ଜର ବିଭିନ୍ନ ଅଞ୍ଚଳରେ ପ୍ରସ୍ତୁତ ବହୁ ପ୍ରକାର (ମୁଖ୍ୟତଃ ତିନୋଟି ଶ୍ରେଣୀ, ଯଥା (୧) ସୂକ୍ଷ୍ମ ବସ୍ତ୍ର ବା ଝୀନ (Muslin), (୨) ସାଧାରଣ ସୂକ୍ଷ୍ମ ବସ୍ତ୍ର (Ordinary Muslin) ଓ (୩) ମୋଟ ବସ୍ତ୍ର ବା ଥାନ (Coarse Calico) ବସ୍ତ୍ର ମଧ୍ୟରୁ ସାନୁଁ, ମଲ୍‌ମଲ, ସାହାନ, ହମ୍‌ଅମ, ଡୋଲଗାନ୍ଧ, ଅଦାଥି, ପେଶଆ, ଅମ୍ବରୀ, ଦାସୀ ତୋର କର୍ଣ୍ଣି । ଗୁଡ଼, ସେର୍କଲସ, କଂଡାମ୍, ମାଳ, ଗୁରଖାନା, ସୁପି, ଖୁକ୍‌ଲ, ଅଲାଚ, ଅମ୍ବୁଲାଶ, ଫେନସ୍‌କୋ, ଅଳାବଣୀ ପ୍ରଭୃତି ବହୁଳ ଉତ୍ପାଦନ ଦେଉଥିଲା । (ସପ୍ତଦଶ ଶତାବ୍ଦୀରେ ଓଡ଼ିଶାରେ ବୟନ ଶିଳ୍ପ— ଡଃ କାଳୀଚରଣ ଦାସ ମହାପାତ୍ର । ନବପତ୍ର, ଏକବିଂଶ ବର୍ଷ, ୧ମ ସଂଖ୍ୟା) ।

Digitized by srujanika@gmail.com

ନାହିଁ । ଏ ଅଞ୍ଚଳର ଲୋକେ ନିମ୍ବ ଓ ଅଶ୍ୱତ୍ଥ ବୃକ୍ଷକୁ ଜାଳନ୍ତି ନାହିଁ । ନିମ୍ବ କାଠରେ ବୁଦ୍ଧରୂପୀ ଜଗନ୍ନାଥଙ୍କ ଶ୍ରୀ ବିଗ୍ରହ ନିର୍ମିତ ହୁଏ । ଭଗବାନ ବୁଦ୍ଧ ଅଶ୍ୱତ୍ଥ ବୃକ୍ଷମୂଳରେ ଜ୍ଞାନ ଲାଭ କରିଥିଲେ । ଦରକାର ଚଉକାଠର ଅନ୍ତତଃ ତଳ କାଠଟି ଡିଆରି ହୁଏ ନାହିଁ । ନିମ୍ବ କାଠ ନିର୍ମିତ ଚଉକାଠରେ ଗୋଡ଼ ବାଜିଲେ ଅଧର୍ମ ହେବ । ବୈଶାଖ ଓ କାର୍ତ୍ତିକ ମାସରେ ଏ ଦୁଇ ବୃକ୍ଷ ମୂଳରେ ଲୋକେ ପାଣି ଦେଇ ଧର୍ମାର୍ଜନ କରିଥାନ୍ତି । ସୂର୍ଯ୍ୟ ଦେବଙ୍କ ପ୍ରତି ଏ ଅଞ୍ଚଳର ଲୋକମାନଙ୍କର ପ୍ରଗାଢ଼ ଭକ୍ତି । ପ୍ରତିଦିନ ସକାଳୁ ଉଠି ସୂର୍ଯ୍ୟୋଦୟ ପୂର୍ବରୁ ଗୋବର ପାଣି ପକେଇବା ବିଧି । ସୂର୍ଯ୍ୟଙ୍କ ନିମନ୍ତେ ପିଣ୍ଡାରେ ଗୋବରରେ ଲିପି ଆସନ ଦେଇ ସମ୍ମାନ ପ୍ରଦର୍ଶନ କରାଯାଏ । ସୂର୍ଯ୍ୟଙ୍କ ଆଡ଼କୁ ପୂର୍ବ ଓ ପଶ୍ଚିମ ଦିଗକୁ ପରିସ୍ରା କରିବା ଅବିଧି । ବୁଦ୍ଧିଦାତା ଗଣେଶଙ୍କୁ ବିଦ୍ୟାରମ୍ଭ ବେଳେ ପ୍ରଥମେ ପୂଜା କରାଯାଏ । ଯେ କୌଣସି ପୂଜା ଆରମ୍ଭରେ ଗଣେଶଙ୍କ ବନ୍ଦନା ହୁଏ । ଆଲୋଚ୍ୟ ଅଞ୍ଚଳର କେତେକ ସ୍ଥାନରେ ବୁଦ୍ଧ ଓ ସୂର୍ଯ୍ୟଙ୍କର କାରୁକାର୍ଯ୍ୟ ପୂର୍ଣ୍ଣ ପଥରମୂର୍ତ୍ତି ରହିଥିବାର ଦେଖାଯାଏ । ଜଳେଶ୍ୱର ଥାନାନ୍ତର୍ଗତ ଧାନସିମୂଳିଆ ଗ୍ରାମରେ ଧ୍ୟାନୀ ବୁଦ୍ଧ-ମୂର୍ତ୍ତି "ଷଠୀଦୁର୍ଗା" ରୂପେ ପୂଜିତା । ବର୍ତ୍ତିନା ଗ୍ରାମରେ ଥିବା ପୋଖରୀ ମଧ୍ୟରୁ ପଙ୍କୋ-ଦ୍ଧାର କାଳରେ ସୂର୍ଯ୍ୟ ମୂର୍ତ୍ତି ମିଳିଛି । ବର୍ତ୍ତମାନ ସେଠାରେ ଏ ମୂର୍ତ୍ତିଟି ପୂଜିତ ହେଉଛନ୍ତି ।

ଏ ଅଞ୍ଚଳର ଲୋକ କବି ଦେବ ଦେବ ମହାଦେବଙ୍କୁ ନିଜ ସମାଜକୁ ଟାଣିଆଣି "ଆଦି କୃଷକ" ଭାବରେ ସମ୍ମାନ ପ୍ରଦର୍ଶନ କରିଛି । ଲିଙ୍ଗଲେଶ୍ୱରରେ ପ୍ରତିଷ୍ଠିତ ଶିବ ଓ ପାର୍ବତୀ ଏହାର ଦୃଷ୍ଟାନ୍ତ । ଶିବଙ୍କ କୃଷିକାର୍ଯ୍ୟ ବିଷୟରେ ଏ ଅଞ୍ଚଳରେ ଲୋକଗଳ୍ପ ଓ ଲୋକ ଗୀତିକା ପ୍ରଚଳିତ । ବଙ୍ଗଳାରେ ରାମେଶ୍ୱରଙ୍କ ରଚିତ ଶିବାୟନ କାବ୍ୟରେ ଶିବ ଜଣେ କୃଷକ ଓ ପାର୍ବତୀ ଜଣେ କୃଷକ ବଧୂ ରୂପେ ବର୍ଣ୍ଣିତ । କୃଷିଭିତ୍ତିକ ସମାଜରେ ଧାନ ଅମଳ ପରେ କୃଷକ ପତ୍ନୀ ଯେପରି ତାର ସ୍ୱାମୀଙ୍କୁ ଅଳଙ୍କାର ଗଢ଼ାଇ ଦେବାକୁ ଅଳିକରେ, ପାର୍ବତୀ ଠିକ୍ ସେହିପରି ଭାଷାରେ କହିଛନ୍ତି—

"ଦୁଃଖିନୀ ହାତେ ଶଙ୍ଖ ଦେହି ଦୁଟୀ ବାଇ
କୃପାକର କାନ୍ତ ଆଉ କିଛୁ ଚାଇ ନାହିଁ;
ଲଜ୍ଜାୟ ଲୋକେଇ କାଛେ ଦାଣ୍ଡାଇୟା ରଇ
ହାତ ମାଡ଼ା ଦିଆ ବାଡ଼ା କଥା ନାହିଁ କଇ ।"

ଏହାଛଡ଼ା ଶିବେଇ ଗାଜନରେ ଲୌକିକ ସାହିତ୍ୟ ରୂପ ପ୍ରକାଶିତ । ଏଥିରେ ଶିବ ପାର୍ବତୀଙ୍କ ବିବାହ ବର୍ଣ୍ଣିତ । ଏ ଅଞ୍ଚଳରେ 'ପଇତାପକା' ଉତ୍ସବ ସମୟରେ

Digitized by srujanika@gmail.com

"ଶିବେର ଗାଜନ" ଗାନ କରାଯାଇଥାଏ । ପଇଡାପକା ବା ଉଡ଼ାପର୍ବ ଏ ଅଞ୍ଚଳରେ ଏକ ଶ୍ରେଷ୍ଠ ଓ ବହୁ ପ୍ରଚଳିତ ଧର୍ମାନୁଷ୍ଠାନ । ଶିବଙ୍କ ପାଖରେ ନିଜର ମନସ୍କାମନା ପୂର୍ତ୍ତି ନିମନ୍ତେ ଏହି ବ୍ରତ ଧାରଣ କରିବା ବିଧି । ଗ୍ରାମମାନଙ୍କରେ ମହାଦେବଙ୍କ ନିକଟରେ ପ୍ରତିବର୍ଷ ଏ ପର୍ବ ଅନୁଷ୍ଠିତ ହୋଇଥାଏ । ଉତ୍ତର ବାଲେଶ୍ୱରର ଚନ୍ଦନେଶ୍ୱର ମହାଦେବଙ୍କ ନିକଟରେ ଏହି ଉତ୍ସବ ବିଶେଷ ଭାବେ ପାଳିତ ହୋଇଥାଏ । ଏହା ବ୍ୟତୀତ ଲିଙ୍ଗଲେଶ୍ୱର, ମେଦିନୀପୁରର କେଶିପୁର ଗ୍ରାମର ଝାଡ଼େଶ୍ୱର, ଏଗ୍ରାର ଭୂଡ଼-ଭୂଡ଼ୀ କେଦାର, ଦେବଶୋଳର ମହାଦେବ ମନ୍ଦିର, ମାଶିଣୀର କଖାରୁଆ—ବୈଦ୍ୟନାଥ ମନ୍ଦିର; ବାଲେଶ୍ୱର, ବାଣପଦାରେ ଥିବା ଶିବ ମନ୍ଦିରମାନଙ୍କରେ ପଇଡା ପକା ଏକ ବିଖ୍ୟାତ ଉତ୍ସବ । ହଜାର ହଜାର ନରନାରୀ ଏହି ଉତ୍ସବରେ ଶିବଙ୍କ ମସ୍ତକରେ "ଜଳ ଢଳେଇ" ଆନ୍ତି । ବାଣପଦାରେ ଚୈତ୍ରପର୍ବ ଓ ମେଦିନୀପୁରର ଝାଡ଼ଗ୍ରାମ ଅଞ୍ଚଳରେ ଚୈତ୍ରପର୍ବ ଅଥବା ଗାଜନ ପର୍ବ ଉପଲକ୍ଷେ ଛଉ/ଛୌ ନୃତ୍ୟ ଅନୁଷ୍ଠିତ ହୁଏ ।

ଉତ୍ତର ବାଲେଶ୍ୱରର ସୁବର୍ଣ୍ଣରେଖା ମୁହାଣ ନିକଟରେ ଅବସ୍ଥିତ ଭୂଷଣ୍ଡେଶ୍ୱର * ମହାଦେବଙ୍କ ନିକଟରେ ମେଳା ଅନୁଷ୍ଠିତ ହୁଏ ।

---

* ଏ ଶିବଲିଙ୍ଗର ଉଚ୍ଚତା ୧୭ ଫୁଟ ୬ ଇଞ୍ଚ, ସ୍ଥୂଳତା ୧୪ ଫୁଟ ଶକ୍ତିର ପରିମିତି ୩୭ ଫୁଟ, ଜଳଧାରୀ ପାଞ୍ଚଫୁଟ । ଉତ୍ତର ବାଲେଶ୍ୱରର ଭୋଗରାଇ ଥାନା ଅନ୍ତର୍ଗତ ସୁବର୍ଣ୍ଣରେଖା ମୁହାଣ ନିକଟବର୍ତ୍ତୀ କୁମ୍ଭୀରା ଗଡ଼ ମୌଜାର ମହାଦେବ ପାଳ ନାମକ ସ୍ଥାନରେ ଏହା ଅବସ୍ଥିତ । ଏଠାରେ ବର୍ଷରେ ପୌଷ ସଂକ୍ରାନ୍ତି, ଶିବ ଚତୁର୍ଦ୍ଦଶୀ, ଚୈତ୍ର ସଂକ୍ରାନ୍ତି ଓ ଅକ୍ଷୟ ତୃତୀୟା—ଏପରି ଦିବସମାନଙ୍କରେ ଚାରିଥର ଉତ୍ସବ ପାଳିତ ହୋଇଥାଏ । ପ୍ରଜାତନ୍ତ୍ର ତା ୭-୭-୮୦ ଲିଖରେ ପ୍ରକାଶିତ ଅଧ୍ୟାପକ ସୁଧାଂଶୁ ଶେଖର ପ୍ରଧାନଙ୍କ ପ୍ରବନ୍ଧରେ ଏହି ଶିବଲିଙ୍ଗ ସମ୍ପର୍କରେ ବିବରଣୀ ପ୍ରଦତ୍ତ ହୋଇଛି ।

କିନ୍ତୁ ଏହି ଶିବଲିଙ୍ଗ ଏକ ବିବାଦମାନ ବିଷୟ । କାରଣ, "ବଜ୍ରଯାନୀ ବୌଦ୍ଧମାନଙ୍କର କୁଳୀଶ ମଧ୍ୟ ଲିଙ୍ଗର ଏକ ରୂପାନ୍ତର । ବୌଦ୍ଧଧର୍ମ ଓ ଏହାର ବିଭିନ୍ନ ଶାଖା ଉପଶାଖା ରୂପେ ପ୍ରକାଶିତ ସହଜିଆ ଧର୍ମ ଓ ନାଥ ଧର୍ମ, ପୂର୍ବ ଭାରତ ଖଣ୍ଡରୁ ଏକ ପକ୍ଷରେ ତୁର୍କୀ ଆକ୍ରମଣ ଓ ଅପର ପକ୍ଷରେ ସାମାଜିକ ସମର୍ଥନର ଅଭାବ ମଧ୍ୟରେ ତଳିତଳାନ୍ତ ହୋଇଯିବା ପରେ, ସ୍ତମ୍ଭ ଓ ସ୍ତୁମ୍ଭ ରୂପୀ ବୌଦ୍ଧ ସଙ୍କେତମାନ ଲିଙ୍ଗରୂପୀ ଶିବରେ ପରିଣତ ହୋଇଥିଲା । ···ଭୁବନେଶ୍ୱରରେ ମେଘେଶ୍ୱର ମନ୍ଦିରର ଶିବଲିଙ୍ଗ ତାହାର ଏକ ନିଦର୍ଶନ ରୂପେ ଅନୁମିତ ହୁଏ ।" (ଓଡ଼ିଆ ସାହିତ୍ୟରେ ଆଦିପର୍ବ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ପୃ· ୭୨, ୨ୟ ସଂ. ୧୯୭୧ ।

ରାଧାନାଥ 'ଉଷା' କାବ୍ୟରେ "ହସୁଥାଏ ଦେବ ଭୂଷଣ୍ଡ ଈଶ୍ୱରେ ନିରତେ ତୋଷ" ଏପରି ଲେଖି ଏହାଙ୍କୁ ଶିବ ରୂପେ ପ୍ରଖ୍ୟାତ କରାଇଛନ୍ତି । କିନ୍ତୁ ଏହା ଏକ ବୌଦ୍ଧ-ସ୍ତମ୍ଭ ଅନୁମିତ ହୁଏ । ପ୍ରାଚୀନ କାଳରେ ପିପିଲି ବନ୍ଦର (ସୁବର୍ଣ୍ଣରେଖା ମୁହାଣ) ବୌଦ୍ଧ ଧର୍ମର ଏକ ପ୍ରସିଦ୍ଧ ପୀଠ ଥିଲା ।

Digitized by srujanika@gmail.com

ଆଲୋଚ୍ୟ ଅଞ୍ଚଳରେ ଶକ୍ତି ଆରାଧନାର ପ୍ରସିଦ୍ଧି ଅନୁଭୂତ ହୁଏ । ଏକାଦଶ ଶତାବ୍ଦୀ ବେଳକୁ ଶକ୍ତି ତତ୍ତ୍ୱର ବିବର୍ତ୍ତନ ଫଳରେ ଶିବ ଶକ୍ତିର ସଂଯୋଗ ଘଟିଥିଲା । ପୂର୍ବ ଭାରତୀୟ ଶୈବ ସଂସ୍କୃତିରେ ଏଥିର ମନୋରମ ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୁଏ । ଶକ୍ତି ରୂପିଣୀ ଶୀତଳା, ଯୋଗିନୀ, ଚଣ୍ଡୀ, କାଳୀ, ଦୁର୍ଗା, ବିଶାଳାକ୍ଷୀ, ଭଗବତୀ, ବାସେଲୀ, ମନସା, ସପ୍ତମାତୃକା ପ୍ରଭୃତି ଦେବୀ ଗ୍ରାମାଞ୍ଚଳରେ ବହୁଳ ଭାବରେ ପୂଜିତା ହୋଇଥାନ୍ତି । ପ୍ରତି ଗ୍ରାମରେ ଶକ୍ତି ରୂପିଣୀ ଏହି ଦେବୀ ପୂଜାର ପରମ୍ପରା ଏହାର ପ୍ରମାଣ । ଶକ୍ତି ପୂଜା ସହିତ ମନ୍ତ୍ର ଆରାଧନାର ସମ୍ପର୍କ ସନିଷ୍ଠ ।

## ମହିମା ଧର୍ମ :

ଶୂନ୍ୟବାଦୀ ମହିମା ଧର୍ମାବଲମ୍ବୀ ଲୋକେ ଆଲୋଚ୍ୟ ଅଞ୍ଚଳରେ ପ୍ରାୟ ସର୍ବତ୍ର ବାସ କରନ୍ତି ।

## ବୈଷ୍ଣବ ଧର୍ମ :

ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ପଞ୍ଚସାଧକ ଗୋଷ୍ଠୀ ଉତ୍କଳୀୟ ଶୂନ୍ୟବାଦୀ ପରମ୍ପରାର ଶ୍ରେଷ୍ଠ ସାଧକ ଥିଲେ । ଏହି ସମୟରେ ବଙ୍ଗରୁ ଶ୍ରୀ ଚୈତନ୍ୟ ଓଡ଼ିଶାକୁ ଆସି ଗୌଡ଼ୀୟ ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ଶ୍ରୀ ଚୈତନ୍ୟଙ୍କ ପ୍ରଚାର ଫଳରେ ସମଗ୍ର ଓଡ଼ିଶାରେ ବୈଷ୍ଣବ ଧର୍ମ ଲୋକଧର୍ମ ଭାବରେ ପ୍ରତିଷ୍ଠା ଲାଭ କରିଥିଲା । ଶ୍ରୀ ଶ୍ୟାମାନନ୍ଦ ଓ ତାଙ୍କର ପ୍ରିୟ ଶିଷ୍ୟ ଶ୍ରୀ ପାଟ * ଗୋପୀବଲ୍ଲଭପୁରର ପ୍ରତିଷ୍ଠାତା ଶ୍ରୀ ରସିକାନନ୍ଦଙ୍କ ପ୍ରଚେଷ୍ଟା ଅଲୌକିକ ଆଧ୍ୟାତ୍ମିକ ଶକ୍ତି ଓ ଅସାଧାରଣ ନୈତିକ ସାହସ ବଳରେ ବଙ୍ଗଳା, ବିହାର ଓ ଓଡ଼ିଶା ସୀମାନ୍ତ ଅଞ୍ଚଳରେ ହଜାର ହଜାର ଲୋକ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ମୟୂରଭଞ୍ଜ ଓ ମେଦିନୀପୁରର ଦକ୍ଷିଣ-ପଶ୍ଚିମ ଅଞ୍ଚଳର ଆଦିମ -ଅଧିବାସୀ ସାନ୍ତାଳ, ଭୂମିଜ ଗୋଷ୍ଠୀର ଲୋକେ ବୈଷ୍ଣବ ଧର୍ମ ଦ୍ୱାରା ବହୁଳ ପ୍ରଭାବିତ ହୋଇଥିବାର ଦେଖାଯାଏ । ଏ ଅଞ୍ଚଳର ଅଧିବାସୀ ଆଦିବାସୀମାନଙ୍କର ଉତ୍ସବରେ ନାଚ ଗୀତ ଶେଷରେ ଅଦ୍ୟାବଧି ପ୍ରଚଳିତ 'ହରିବୋଲ' ଧ୍ୱନି ଏହାର ପ୍ରମାଣ ବହନ କରେ ।

---

* ଚୈତନ୍ୟଙ୍କର ସହକାରୀ ଓ ଶିଷ୍ୟମାନେ ଅବସ୍ଥାନ କରୁଥିବା ସ୍ଥାନମାନ କ୍ରମେ 'ଶ୍ରୀପଟ' (ଶ୍ରୀପାଟ) ରୂପେ ପରିଚିତ ହୋଇଥିଲା । ସେଗୁଡ଼ିକ ବୈଷ୍ଣବ ଧର୍ମ ପ୍ରଚାରରେ ବିଶେଷ ଭୂମିକା ଗ୍ରହଣ କରିଥିଲେ ଓ ପରବର୍ତ୍ତୀ କାଳରେ ତୀର୍ଥସ୍ଥାନ ରୂପେ ପରିଗଣିତ ହେଲେ । ( ଚୈତନ୍ୟ—ଦିଲ୍ଲୀପ କୁମାର ମୁଖାର୍ଜ୍ଜୀ— ଏନ୍. ବି. ଟି.—(ଓଡ଼ିଆ) ୧୯୭୧, ପୃ. ୮୩ ।

Digitized by srujanika@gmail.com

ଏ ସମଗ୍ର ଅଞ୍ଚଳର ଅଧିବାସୀମାନଙ୍କର 'ସାଂଜ୍ଞା'ରୁ ବୈଷ୍ଣବ ଧର୍ମ ପ୍ରଭାବ ଲକ୍ଷ୍ୟ କରାଯାଏ । ଯଥା :—ଦାସ, ଦାସମହାପାତ୍ର, ଦାସଚୌଧୁରୀ, ଦାସପଟ୍ଟନାୟକ, ଦାସଅଧିକାରୀ, ଦାସବାବୁ ପ୍ରଭୃତି ।

ସମଗ୍ର ଅଞ୍ଚଳରେ ଉତ୍କଳ ଶ୍ରେଣୀ ବ୍ରାହ୍ମଣ ବହୁଳ ସଂଖ୍ୟାରେ ବାସ କରୁଥିବା ଦୃଷ୍ଟିରୁ ବ୍ରାହ୍ମଣ୍ୟ ଧର୍ମର ପ୍ରସାର ଓ ପ୍ରଭାବ ପରିଲକ୍ଷିତ ହୋଇଥାଏ । ଏହା ବ୍ୟତୀତ ମୁସଲମାନ, ଖ୍ରୀଷ୍ଟଧର୍ମାବଲମ୍ବୀ ଲୋକେ ଏ ଅଞ୍ଚଳର ବହୁ ସ୍ଥାନରେ ବାସ କରିଥାନ୍ତି ।

ମଧ୍ୟ ଯୁଗରେ ମୋଗଲ ଓ ମୁସଲମାନ ଶାସନ କାଳରେ ବହୁ ହିନ୍ଦୁ ଧର୍ମାନ୍ତରିତ ହୋଇଛନ୍ତି । ଏ ଅଞ୍ଚଳର ବହୁ ସ୍ଥାନରେ ମୁସଲମାନ ଜନବସତି, ପୀର, ଗାଜି ପ୍ରଭୃତିଙ୍କର ପୂଜାର ପ୍ରଚଳନ, ସ୍ଥାପିତ ମସଜିଦ ସମୂହ ଇସଲାମ ଧର୍ମର ପ୍ରଭାବର ପ୍ରମାଣ ବହନ କରେ ।

ପର୍ତ୍ତୁଗୀଜମାନଙ୍କ ଦ୍ୱାରା ହିଁ ମେଦିନୀପୁରର ହିଜଳୀ ଅଞ୍ଚଳରେ ପ୍ରଥମେ ଖ୍ରୀଷ୍ଟଧର୍ମ ପ୍ରଚାର ଆରମ୍ଭ ହୁଏ । ହିଜଳୀ ବ୍ୟତୀତ ପିପିଲି ଓ ବାଲେଶ୍ୱର ବନ୍ଦରରେ ପର୍ତ୍ତୁଗୀଜ-ମାନଙ୍କର ବାଣିଜ୍ୟଘାଟି ପ୍ରତିଷ୍ଠିତ ହୋଇଥିଲା ଓ ବାଲେଶ୍ୱରରେ ଖ୍ରୀଷ୍ଟ ଧର୍ମର ପ୍ରସାର ଘଟିଥିଲା । ବ୍ରିଟିଶ ରାଜତ୍ୱ କାଳରେ ମିସନାରୀମାନେ ସମଗ୍ର ଅଞ୍ଚଳରେ ଖ୍ରୀଷ୍ଟଧର୍ମ ପ୍ରଚାର ଓ ପ୍ରସାର କରିଥିଲେ । ମେଦିନୀପୁର, କାନ୍ଥି, ବାଲେଶ୍ୱର, ବାରିପଦା ପ୍ରଭୃତି ବହୁ ଅଞ୍ଚଳରେ ବ୍ରାହ୍ମଧର୍ମର ପ୍ରଚାର ଓ ପ୍ରସାର ଘଟିଥିଲା । ବିଭିନ୍ନ ଧର୍ମାବଲମ୍ବୀ ଲୋକମାନେ ଏ ସମଗ୍ର ଅଞ୍ଚଳରେ ବାସ କରୁଥିଲେହେଁ ପରସ୍ପର ମଧ୍ୟରେ ପ୍ରୀତି ଓ ମୈତ୍ରୀ ଭାବର ମଧୁମୟ ସମ୍ପର୍କ ସୃଷ୍ଟି ହୋଇନାହିଁ ।

## ଦେବ ଦେବୀ

ଲୋକସମାଜର ବିଭିନ୍ନ ବିଶ୍ୱାସ ତା'ର କଳ୍ପିତ ଦେବଦେବୀ ରୂପରେ ପ୍ରକାଶ ପାଇଥାଏ । ଶାସ୍ତ୍ରୀୟ ଦେବଦେବୀମାନଙ୍କ ବ୍ୟତୀତ ଗ୍ରାମାଞ୍ଚଳରେ ବହୁ ଦେବଦେବୀ ପଥର, ବୃକ୍ଷ, ଇତ୍ୟାଦିଙ୍କ ପ୍ରଭୃତି ରୂପ ଗ୍ରହଣ କରିଥାନ୍ତି । ବିଭିନ୍ନ ଅଞ୍ଚଳରେ ଏମାନଙ୍କର ସ୍ୱତନ୍ତ୍ର ନାମକରଣ ହୋଇଥାଏ । ବସ୍ତୁତଃ ଦେବ ଦେବୀ ପ୍ରତିଷ୍ଠା ସମୂହ—ଲୋକଧର୍ମୀୟ-ମାନସର ବାହ୍ୟ ପ୍ରକାଶ ମାତ୍ର ।

ସମଗ୍ର ଉତ୍ତର-ପୂର୍ବାଞ୍ଚଳରେ ଶିବ, ଶୀତଳା, ବିଷ୍ଣୁରୂପୀ-ଶାଳଗ୍ରାମ, ଜଗନ୍ନାଥ, ଗୋପୀନାଥ, ସରସ୍ୱତୀ, ଗଣେଶ, ଲକ୍ଷ୍ମୀ, କାର୍ତ୍ତିକ ଧର୍ମଦେବ, ମହିମା-ଅଲେଖ, ସତ୍ୟନାରାୟଣ-ସତ୍ୟପୀର, ଚୈତନ୍ୟ ଗୋସାଇଁ, ତୁଳସୀ, କୃଷ୍ଣ, ଗୌରାଙ୍ଗ, ସୂର୍ଯ୍ୟଚନ୍ଦ୍ର

Digitized by srujanika@gmail.com

ପ୍ରଭୃତି ଦେବ ଦେବୀମାନେ ପୂଜିତ ହୋଇଥାନ୍ତି । ମାହାନ୍ତ ଓ ଆଦିବାସୀ ଗୋଷ୍ଠୀର ଲୋକମାନଙ୍କ ମଧ୍ୟରେ ଟୁସୁ, ଭାଦୁ, ବାନ୍ଦଣା, ସାତଭଣୀ, କରମ, ବଡ଼ାମ, ବୁଢ଼ୀ ପ୍ରଭୃତି ପୂଜିତ ହୋଇଥାନ୍ତି ।

ଭଗବାନ ବିଷ୍ଣୁ, କୃଷ୍ଣ, ରଘୁନାଥ, ଗୋପୀନାଥ, ଜଗନ୍ନାଥ ଓ ଗୌରାଙ୍ଗ ରୂପରେ ପୂଜିତ ହୁଅନ୍ତି ।

ଶକ୍ତି ରୂପିଣୀ ଶୀତଳା, ବାସେଳୀ ମନସା, ଭଗବତୀ, କାଳୀ, ଦୁର୍ଗା, ଚଣ୍ଡୀ ପ୍ରଭୃତି ବିଭିନ୍ନ ରୂପରେ ପୂଜିତ ।

ଅନେକ ସ୍ଥଳରେ ଗୁଳ୍ମ, ବୃକ୍ଷଲତା, ଦେବଦେବୀ ଭାବରେ ପୂଜିତ ହୋଇଥାନ୍ତି । ଯଥା :—ତୁଳସୀ, ମନସା, ବସୁଣ୍ଡ (ସିଝୁ), ବର, ଅଶ୍ୱତ୍ଥ, ବିଲ୍ୱ, ଜମ୍ବୁ ପ୍ରଭୃତି । ଆଲୋଚ୍ୟ ଅଞ୍ଚଳରେ ଶାସ୍ତ୍ରୀୟ ଦେବତାଙ୍କ ଅପେକ୍ଷା ଲୌକିକ ଦେବଦେବୀଙ୍କ ସଂଖ୍ୟା ଅଧିକ ।

## ପୂଜାପାର୍ବଣ

ଲୋକସମାଜର ଧର୍ମବିଶ୍ୱାସ ଓ ପୁଞ୍ଜୀଭୂତ ଆନନ୍ଦ ପୂଜାପାର୍ବଣ ମଧ୍ୟରେ ପ୍ରକାଶିତ ହୋଇଥାଏ । ଦେବଦେବୀଙ୍କ ପ୍ରତିଷ୍ଠା ସହିତ ଏହାର ଅନ୍ତରଙ୍ଗ ସମ୍ପର୍କ ବିଦ୍ୟମାନ । ଆଲୋଚ୍ୟ ଉପାନ୍ତ ଅଞ୍ଚଳରେ ଜନସମାଜରେ ଶାସ୍ତ୍ରୀୟ ଓ ଲୌକିକ ଦେବଦେବୀଙ୍କର ପ୍ରତିଷ୍ଠା ସହିତ ପୂଜା ପାର୍ବଣର ବୈଶିଷ୍ଟ୍ୟ ଆଲୋଚନା କରିବା ବର୍ତ୍ତମାନ ମୁଖ୍ୟ ବିଷୟ ।

**ଷଷ୍ଠୀ ପୂଜା :**

ପିଲା ଜନ୍ମ ହେଲେ ଷଷ୍ଠୀ ଦେବୀଙ୍କର ଆରାଧନା କରାଯାଏ । ଷଷ୍ଠୀ ଦେବୀହିଁ ପିଲାର ଲାଳନ କର୍ତ୍ତ୍ରୀ—ଏହି ବିଶ୍ୱାସ ଲୋକସମାଜରେ ପ୍ରଚଳିତ । ସୁତରାଂ ଏ ଅଞ୍ଚଳର ଲୋକସମାଜ ତାଙ୍କୁ ଆନ୍ତରିକ ଭକ୍ତି ଓ ପବିତ୍ର ଭାବନା ମଧ୍ୟରେ ଆରାଧନା କରିଥାନ୍ତି । ବହୁ ଲୌକିକ ସାହିତ୍ୟରେ ଷଷ୍ଠୀ ଦେବୀଙ୍କର ମାହାତ୍ମ୍ୟ ବର୍ଣ୍ଣିତ ।

**ଗଣେଶ ପୂଜା :**

ଭାଦ୍ର ମାସରେ ଓଡ଼ିଶାରେ ସର୍ବତ୍ର ଗଣେଶ ପୂଜା ହୋଇଥାଏ । ମେଦିନୀପୁର ଜିଲ୍ଲାର ସଦର ସବଡିଭିଜନ ଓ ଝାଡ଼ଗ୍ରାମର ବିଭିନ୍ନ ସ୍ଥାନରେ ଭାଦ୍ର ମାସରେ ବୁଦ୍ଧିଦାତା ଗଣେଶ ପୂଜା ଅନୁଷ୍ଠିତ ହୁଏ ।

Digitized by srujanika@gmail.com

**ତ୍ରିନାଥମେଳା :**

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏ ତିନହେଁ ଶାସ୍ତ୍ରୀୟ ଦେବତା । ଓଡ଼ିଆ ଜନ ସମାଜ ଏମାନଙ୍କୁ ତ୍ରିନାଥ ଗୋସାଇଁ ଭାବରେ ପୂଜା କରିଥାନ୍ତି । ଏମାନଙ୍କ ବହୁ ଅଲୌକିକ ମହିମା ବର୍ଣ୍ଣିତ । ଏ ତିନହେଁ ସର୍ବଶକ୍ତିମାନ । ଏମାନଙ୍କର ଭୋଗ ପାନ, ଗୁଆ ଓ ଗଞ୍ଜେଇ ।

**ସତ୍ୟନାରାୟଣ ପୂଜା :**

ବିଷ୍ଣୁରୂପୀ ସତ୍ୟନାରାୟଣ ସତ୍ୟପୀର ଭାବରେ ଏ ଅଞ୍ଚଳର ଓଡ଼ିଆ ଲୋକ-ସମାଜରେ ସର୍ବତ୍ର ପୂଜିତ । ଏହା ମୁସଲମାନ ଶାସନ କାଳରେ ସୃଷ୍ଟି ହୋଇଥିବାର ଜଣାଯାଏ । ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଏହା ଏକ ସମନ୍ୱୟ ଧର୍ମୀୟ ଧର୍ମାନୁଷ୍ଠାନ । ଏ ପୂଜା ଅନୁଷ୍ଠାନ ନିମନ୍ତେ ସମୟ ନିର୍ଦ୍ଧିଷ୍ଟ ନାହିଁ । ବର୍ଷର ଯେ କୌଣସି ସମୟରେ ଏହା ଅନୁଷ୍ଠିତ ହୁଏ ।

**ଲକ୍ଷ୍ମୀ ପୂଜା :**

ଧାନ୍ୟରୂପୀ ମହାଲକ୍ଷ୍ମୀ ପ୍ରତି ଘରେ ଆରାଧିତା । ସେ ଗୃହଲକ୍ଷ୍ମୀ, ତାଙ୍କ ସନ୍ତୁଷ୍ଟିରେ ଘରର ସମସ୍ତଙ୍କର ମଙ୍ଗଳ ହୁଏ । ଏହି ପୂଜାରେ ସମାଜରେ ଥିବା ଉଚ୍ଚନୀଚ ଭେଦଭାବ ଲୋପ ପାଇଯାଏ । ଏହା ଓଡ଼ିଆ ସଂସ୍କୃତିର ଏକ ବିଶିଷ୍ଟ ଦିଗ । ଉଦାରତା ଭ୍ରାତୃତ୍ୱ ପ୍ରତିଷ୍ଠା ଏହି ପୂଜାର ମୂଳ ଲକ୍ଷ୍ୟ । ଏ ଅଞ୍ଚଳରେ ଏହା ସର୍ବତ୍ର ପ୍ରଚଳିତ । କୁମାର ପୂର୍ଣ୍ଣିମା ଓ ମାର୍ଗଶୀର ମାସରେ ଲକ୍ଷ୍ମୀପୂଜା ସର୍ବତ୍ର ଅନୁଷ୍ଠିତ ହୋଇଥାଏ । ଏତଦ୍‌ବ୍ୟତୀତ ପ୍ରତି ଘରେ ଗୁରୁବାର ଦିନ ଲକ୍ଷ୍ମୀଦେବୀ ପୂଜିତା ହୋଇଥାନ୍ତି । କେତେକଙ୍କ ଘରେ ସବୁଦିନେ ଲକ୍ଷ୍ମୀପୂଜା ଅନୁଷ୍ଠିତ ହୁଏ ।

**ଶିବ ଚତୁର୍ଦ୍ଦଶୀ :**

ଦେବ ଦେବ ମହାଦେବ ସର୍ବଶକ୍ତିମାନ । ସେ ତ୍ୟାଗୀ, ସେ ମହାଯୋଗୀ । ତ୍ୟାଗହିଁ ଓଡ଼ିଆ ସଂସ୍କୃତିର ମୂଳମନ୍ତ୍ର । ତ୍ୟାଗୀ ଶିବଙ୍କୁ ଓଡ଼ିଆ ଲୋକସମାଜ ଅତି ଆପଣାର କରି ନେଇଛନ୍ତି । ଶିବ ଚତୁର୍ଦ୍ଦଶୀରେ ଉପବାସ ପାଳିତ ହୋଇଥାଏ । ଏହା-ଦ୍ୱାରା ମନର ସଂଯମ, ଦୃଢ଼ତା ଓ ଶରୀର ସୁସ୍ଥ ହୋଇଥାଏ । ଏ ଅଞ୍ଚଳରେ ସର୍ବତ୍ର ଏହା ପାଳିତ ହୋଇଥାଏ । ଏ ସମୟରେ ଏହି ଉପଲକ୍ଷେ ବହୁ ସ୍ଥାନରେ ମେଳା ଅନୁଷ୍ଠିତ ହୁଏ ।

Digitized by srujanika@gmail.com

**ଦୁର୍ଗା ପୂଜା :**

ଏ ଅଞ୍ଚଳରେ ଦୁର୍ଗାପୂଜା ବିଶେଷ ପ୍ରସିଦ୍ଧି ଲାଭ କରିଅଛି । ବର୍ଷରେ ଦୁଇଥର ଦୁର୍ଗାଦେବୀ ପୂଜିତା ହୋଇଥାନ୍ତି । ଥରେ ଆଶ୍ୱିନ ମାସରେ ଚଣ୍ଡୀ ରୂପରେ, ଆଉ ଥରେ ଚୈତ୍ର ମାସରେ ବାସନ୍ତୀ ରୂପରେ ବିଶେଷ ଆଡ଼ମ୍ବର ସହକାରେ ସପ୍ତମୀଠାରୁ ଦଶମୀ ପର୍ଯ୍ୟନ୍ତ ପାଳିତ ହୋଇଥାଏ । ଏ ପୂଜାରେ ଘରର ସମସ୍ତେ ନୂଆ ଲୁଗା ପିନ୍ଧିଥାନ୍ତି । ପିଠାପଣା, ଖିରିପୁରି ତିଆରି କରି ବନ୍ଧୁବାନ୍ଧବଙ୍କ ଗହଣରେ ଖିଆଖୋଇ ଆନନ୍ଦରେ ଏଇ କେତେଦିନ ଘର ଉଚ୍ଛୁଳି ଉଠେ । ବିଭିନ୍ନ ସ୍ଥାନରେ ଯାତ୍ରାମାନ ପ୍ରଦର୍ଶିତ ହୋଇଥାଏ । ପାର୍ବଣ କହିଲେ ଏ ଅଞ୍ଚଳର ଲୋକସମାଜ 'ଦୁର୍ଗୋତ୍ସବ'କୁହିଁ ବୁଝିଥାନ୍ତି । 'ଅଶୋକାଷ୍ଟମୀ' ପ୍ରଭୃତି କେତେକ ଉତ୍କଳୀୟ ପର୍ବ ଓଡ଼ିଶାର ପଣ୍ଡିତମାନଙ୍କ ଦ୍ୱାରା ପ୍ରଣୀତ ଧର୍ମଶାସ୍ତ୍ର ବ୍ୟତୀତ ଅନ୍ୟତ୍ର ଉଲ୍ଲେଖ ଥିବାର ଦେଖାଯାଏ ନାହିଁ । (୧୩)

**ଭୀମ ପୂଜା :**

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ଏକ ବିଶିଷ୍ଟ ପୂଜା ରୂପେ ଦକ୍ଷିଣ-ପଶ୍ଚିମ ମେଦିନୀପୁର, ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଅନୁଷ୍ଠିତ ହୁଏ । ମାଘ ମାସ ଶୁକ୍ଳପକ୍ଷ ଭୌମୀ ଏକାଦଶୀ ତିଥିରେ ଏହା ଅନୁଷ୍ଠିତ ହୁଏ । ଏହି ପୂଜା ଉପଲକ୍ଷେ ସପ୍ତାହ ବ୍ୟାପୀ ମେଳା ବସେ । ଅନେକ ସ୍ଥାନରେ ଯାତ୍ରା ଅନୁଷ୍ଠିତ ହୁଏ । ଏହି ପୂଜା ଉପଲକ୍ଷେ ବହୁ ଲୋକ କଥା ପ୍ରଚଳିତ । ଜରାସନ୍ଧ ବଧ ନିମନ୍ତେ ଯିବା ଆଗରୁ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଭୀମ ନିର୍ଜଳା ଏକାଦଶୀ ପାଳନ କରିଥିଲେ । ତେଣୁ ଏହାର ନାମ ଭୌମୀ ବା ଭୀମ ଏକାଦଶୀ, ଅନ୍ୟ ଲୋକ କଥାଟି ହେଉଛି ମାଘ ମାସର ପବନ ଥଣ୍ଡା ହେତୁ ମା କୁନ୍ତୀ ସ୍ନାନ କରି ଏକାଦଶୀ ବ୍ରତ ପାଳନ କରିବାରେ ଅସୁବିଧା ହେଉ ଭୀମ ଲଙ୍ଗଳରୁ ଫାଳ କାଢ଼ିଆଣି ଗରମ କରି ପୋଖରୀ ଜଳରେ ବୁଡ଼େଇ ଦେବା ଫଳରେ ପୋଖରୀ ଥଣ୍ଡା ଜଳ ଗରମ ହେବା ଫଳରେ ମା କୁନ୍ତୀ ସ୍ନାନ ସାରି ଏକାଦଶୀ ତିଥି ବ୍ରତ ପାଳନ କରିଥିଲେ । ତେଣୁ, ଏ ଏକାଦଶୀର ନାମ ଭୀମ ଏକାଦଶୀ ହେଲା । ଝାଡ଼ଗ୍ରାମର ଖଡ଼୍‌ଗେଶ୍ୱର ମନ୍ଦିର ଆଗରେ ଯେଉଁ ବିସ୍ତୀର୍ଣ୍ଣ ପ୍ରାନ୍ତର ବିଦ୍ୟମାନ, ଭୀମ ସେଠାରେ ହିଡ଼ିମ୍ବୀ ରାକ୍ଷସୀକୁ ବିବାହ କରିଥିବା ବିଷୟରେ ଲୋକକଥା ପ୍ରଚଳିତ । ଲଙ୍ଗଳେଶ୍ୱରର ଖୋଳିଖା ପାଣ୍ଡରେ ଭୀମ ଶିବଙ୍କର ବାରମାସିଆ ଭାବରେ ନିଯୁକ୍ତ ହୋଇ ଚାଷ କରିଥିବାର କିମ୍ବଦନ୍ତୀ ପ୍ରଚଳିତ । ଭୀମ ଏକାଦଶୀ ଉପଲକ୍ଷେ ମେଦିନୀପୁରର ଲୋକଗୀତ ମଧ୍ୟ ପ୍ରଚଳିତ । ଏ ସମ୍ପର୍କୀୟ ଗୀତଟି ହେଲା—

"ମେଦିନୀପୁରରେ ହାଲୁଆ ଭୀମ୍—
ଭୀମ୍ ହୁଣ୍ଡା ଚୁଷୀ,
ତାଇ ଭୀମ୍ ଏକାଦଶୀ ।"

Digitized by srujanika@gmail.com

ମହାଭାରତର ଭୀମ ଏ ଅଞ୍ଚଳର ଲୋକସମାଜରେ ଗୃଣୀ ଭାବରେ ପରିଚିତ । ଗୃଣୀ ଭୀମଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ନିମନ୍ତେ ଆଞ୍ଚଳିକ ଜନସମାଜ ଭୀମଙ୍କ ମୂର୍ତ୍ତିସହ ସରସ୍ୱତୀ, ଗଣେଶ, କାର୍ତ୍ତିକ, ବୁଢ଼ାବୁଢ଼ୀ ଓ ବିଭିନ୍ନ ପକ୍ଷୀର ବହୁ ମୂର୍ତ୍ତି ପ୍ରସ୍ତୁତ କରି ଭୂଞ୍ଜି (ମାଟିର ବହୁ ମୂର୍ତ୍ତିସହ ଯାତ୍ରା/ମେଳା) ପ୍ରଦର୍ଶିତ ହୁଏ । ମେଳାରେ ବିଶେଷତଃ ଦୁଃଶାସନ ବଧ, ଦୁର୍ଯ୍ୟୋଧନ ସହିତ ଗଦା ଯୁଦ୍ଧ ପାଇଁ ପ୍ରସ୍ତୁତ-ମୂର୍ତ୍ତି ମୁଖ୍ୟ ସ୍ଥାନ ଲାଭ କରିଥାଏ ।

### ଶୀତଳା ପୂଜା :

ଏ ଅଞ୍ଚଳରେ ସର୍ବତ୍ର ଶୀତଳା ପୂଜା ଅନୁଷ୍ଠିତ ହୁଏ । ଗ୍ରାମାଞ୍ଚଳ ଲୋକ-ସମାଜରେ ଏ ଲୌକିକ ଦେବୀଙ୍କର ମହିମା ଓ ପ୍ରଭାବ ବହୁତ । ଏଥି ନିମନ୍ତେ "ଶୀତଳା ମଙ୍ଗଳ" ଗାନ କରାଯାଏ ।

### ଭଗବତୀ :

ଉତ୍ତର ବାଲେଶ୍ୱର ଅଞ୍ଚଳରେ କମାର ଗଡ଼ିଆ ଭଗବତୀଙ୍କର ବହୁତ ପ୍ରସିଦ୍ଧି । ଏହାଙ୍କର ସାତ ଭଉଣୀ । ଏ ପାର୍ଶ୍ୱବର୍ତ୍ତୀ ଓଡ଼ିଶା-ବଙ୍ଗ ଅଞ୍ଚଳର ଗ୍ରାମମାନଙ୍କୁ ପୂଜା ପାଇଁ ଯାଇଥାନ୍ତି । ପୂଜକ ପେଟରେ ଏହାଙ୍କୁ ମୁଣ୍ଡରେ ବୋହି ନେଇଯାନ୍ତି । ନିର୍ଦ୍ଦିଷ୍ଟ ସ୍ଥାନ ବ୍ୟତୀତ ଯାଉଥିବା ରାସ୍ତାରେ ଯଦି ମାଛ ପୋଖରୀ ଦେଖନ୍ତି, ମା'ଙ୍କର ମାଛ ଖାଇବାର ଆଗ୍ରହ ଜାତହୁଏ ଓ ସେଠାକାର ପୋଖରୀର ମାଲିକଙ୍କ ଘରକୁ ଏ ଖବର ଦିଆଯାଏ । ସେ ଭଗବତୀଙ୍କୁ ନେଇ ପୂଜା କରନ୍ତି । ମାଛ ବଳି ପଡ଼େ ।

### ମା ଅମ୍ବିକାଙ୍କର ପୂଜା :

ମୟୂରଭଞ୍ଜ ଝାଡ଼ଗ୍ରାମ ଅଞ୍ଚଳର ଲୋକସମାଜ ଉପରେ ବାରିପଦାର ମା' ଅମ୍ବିକାଙ୍କର ମହିମା ଓ ଅଖଣ୍ଡ ପ୍ରଭାବ ପରିଲକ୍ଷିତ ହୁଏ । ମକର ସମୟରେ ମାନସିକ କରିଥିବା ହଜାର ହଜାର ପଶୁ ବଳୀ ପଡ଼େ !

### ରଥଯାତ୍ରା :

ଉତ୍କଳର ରଥଯାତ୍ରା ଏକ ବୈଶିଷ୍ଟ୍ୟ ପର୍ବ । ଜଗନ୍ନାଥଙ୍କ ରଥଯାତ୍ରା ଦର୍ଶନ କରିବା ନିମନ୍ତେ ସମଗ୍ର ଭାରତର ବିଭିନ୍ନ ଅଞ୍ଚଳରୁ ବହୁ ଭକ୍ତ ନରନାରୀ ପୁରୀକୁ ଆସିଥାନ୍ତି ।

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳର ବହୁ ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ରହିଥିବା ଦୃଷ୍ଟିରୁ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ସମଗ୍ର ଓଡ଼ିଶାରେ ଆଷାଢ଼ ମାସରେ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ଅନୁଷ୍ଠିତ ହୋଇଥାଏ । ଅଶୋକାଷ୍ଟମୀରେ ଭୁବନେଶ୍ୱର

Digitized by srujanika@gmail.com

ଲିଙ୍ଗରାଜଙ୍କ ନିକଟରେ ରଥୋତ୍ସବ ହୋଇଥାଏ । କିନ୍ତୁ ଏ ଅଞ୍ଚଳରେ ଆଷାଢ଼ ମାସ ବ୍ୟତୀତ ମାଘ ମାସରେ ରଥଯାତ୍ରା ଅନେକ ସ୍ଥାନରେ ଅନୁଷ୍ଠିତ ହୋଇଥାଏ । ଏହା 'ମାଘୀରଥ' ନାମରେ ବିଖ୍ୟାତ । ଏଥିରେ ଜଗନ୍ନାଥ, ବଳରାମ ଓ ସୁଭଦ୍ରା ରଥରେ ବସି ଯାତ୍ରା କରିଥାନ୍ତି । ମାଘୀ ରଥର ଉତ୍ପତ୍ତି ସମ୍ପର୍କରେ ଜଣାଯାଏ ଯେ, ଖୋର୍ଦ୍ଧାର ଗଜପତି ନରସିଂହ ଦେବଙ୍କ ସମୟରେ କବି ହଳଧର ମିଶ୍ର ବସନ୍ତ ଋତୁରେ ଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରା ବର୍ଣ୍ଣନା କରି "ବସନ୍ତ ଉତ୍ସବ" ମହାକାବ୍ୟ ରଚନା କରିଥିଲେ । (୧୪) ଏହା କେବଳ ଥରେ ମାଘ ପୂର୍ଣ୍ଣିମାରେ ମାଘ ମାସରେ ଅନୁଷ୍ଠିତ ହୋଇଥିଲା । ଜଗନ୍ନାଥ ମହାପ୍ରଭୁଙ୍କର ସ୍ୱପ୍ନାଦେଶ ପାଇ ନରସିଂହ ଦେବ ମାଘ ମାସରେ ଏହି ରଥଯାତ୍ରାର ଆୟୋଜନ କରିଥିଲେ । କିନ୍ତୁ ସମଗ୍ର ଓଡ଼ିଶାରେ ଏହାର ଚଳନ ନଥିବା ସତ୍ତ୍ୱେ ଉତ୍ତର-ପୂର୍ବାଞ୍ଚଳୀୟ ଜନ ସମାଜରେ ଏହାର ପରମ୍ପରା ରହିଅଛି । ଏହା ଏ ଅଞ୍ଚଳରେ ଓଡ଼ିଶୀ ସଂସ୍କୃତିର ଗୋଟିଏ ବଳିଷ୍ଠ ଦିଗ । ମେଦିନୀପୁରର ସଦର ମହକୁମା ଅନ୍ତର୍ଗତ କଣ୍ଟାପୋଖରି (ଅଧୁନା କାଣ୍ଟାପୁକୁର) ଗ୍ରାମ, ତମଲୁକର ଚକସିମୂଳିଆ ଓ ଦାନ୍ତନ ଥାନାର ଗ୍ରାମାଞ୍ଚଳରେ ମାଘ ମାସରେ 'ମାଘୀରଥ' ଅନୁଷ୍ଠିତ ହୋଇଥାଏ ।

ବର୍ତ୍ତମାନ ଓଡ଼ିଶାର ଭବାନୀପାଟଣାଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଥିବାର ଜଣାଯାଏ । *

**ରଜ :**

ରଜ ଓଡ଼ିଶାର ଏକ ପ୍ରଧାନ ପର୍ବ । ଏହା ଉତ୍ତର ବାଲେଶ୍ୱର ଓ ମୟୂରଭଞ୍ଜ, ମେଦିନୀପୁରର ପଶ୍ଚିମାଂଶ ଝାଡ଼ଗ୍ରାମ ଅଞ୍ଚଳରେ ଆଡମ୍ବର ସହକାରେ ପାଳିତ ହୁଏ ।

**ଚିତଉ ଅମାବାସ୍ୟା :**

ବର୍ଷା ଋତୁରେ ଏହି ପର୍ବ ପାଳିତ ହୁଏ । କୃଷିଭିତ୍ତିକ ସମାଜରେ କୃଷକ ତା'ର କୃଷି କର୍ମରେ ସହାୟତା ଓ ନିରାପତ୍ତା ନିମନ୍ତେ ପାଣିରେ ଥିବା ଗେଣ୍ଡା, କୋଚିଆ, କଙ୍କଡା ପ୍ରଭୃତି ଜୀବଜନ୍ତୁଙ୍କୁ ବନ୍ଧୁତ୍ୱ ସୂତ୍ରରେ ଆବଦ୍ଧ କରିବା ପାଇଁ ଚିତଉ ପିଠା ତିଆରି କରି ନିଜେ ଖାଏ ଓ ସେମାନଙ୍କୁ ଅର୍ପଣ କରିଥାଏ ।

**ରାସପୂର୍ଣ୍ଣିମା :**

ରାସପୂର୍ଣ୍ଣିମା ଏ ଅଞ୍ଚଳର ଗୋଟିଏ ଲୋକପ୍ରିୟ ଉତ୍ସବ । ଏ ଅଞ୍ଚଳର ଲୋକେ ପଞ୍ଚକ କରି କାର୍ତ୍ତିକ ପୂର୍ଣ୍ଣିମାରେ କଦଳୀ ବାହୁଙ୍ଗା ଭସାଇବାର ପ୍ରାଚୀନ ଓଡ଼ିଶାର

---

* ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ନିକଟରୁ ଶୁଣିଅଛି ।

Digitized by srujanika@gmail.com

ନୌଯାତ୍ରା ପରମ୍ପରାର ସୂଚନା ପ୍ରଦାନ କରେ । ପୂର୍ଣ୍ଣିମାରେ ରାସଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହା ଏକ ପୌରାଣିକ ଅନୁଷ୍ଠାନ । ଶ୍ରୀକୃଷ୍ଣ ବୃନ୍ଦାବନରେ ଗୋପୀମାନଙ୍କ ସହିତ ରାସ କରିଥିବା ଉପଲକ୍ଷରେ ଏହି ଉତ୍ସବ ଅନୁଷ୍ଠିତ ହୁଏ । ଏହା ବୈଷ୍ଣବ ଧର୍ମ ପ୍ରଭାବର ଫଳ ।

ମେଦିନୀପୁର ଅଞ୍ଚଳରେ କିପରି ଏବେ ବି ଉତ୍କଳୀୟ ପ୍ରଥାନୁସାରେ ପୂଜାର୍ଚ୍ଚନାଦି ଅନୁଷ୍ଠିତ ହେଉଅଛି, ତାହା ନିମ୍ନ ଉକ୍ତିରୁ ସ୍ପଷ୍ଟ ପ୍ରମାଣିତ ହେବ,—"ଦୀର୍ଘକାଳ ଏ ଦେଶରେ ବାସ କରି ମଧ୍ୟ ଆମେ ଆମର ସାମାଜିକ ରୀତିନୀତି କିଛି ପରିବର୍ତ୍ତନ କରି-ନାହିଁ । ସେଇ ବାଜପେୟୀ ସ୍ମୃତି ଅନୁସାରେ ଆମର ବୈଦିକ କର୍ମ ଅନୁଷ୍ଠିତ ହେଉ-ଅଛି ଏବଂ ବିଭିନ୍ନ ଧର୍ମାନୁଷ୍ଠାନ ପୂଜାର୍ଚ୍ଚନାଦି ସେଇ ଉତ୍କଳୀୟ ପ୍ରଥାନୁସାରେ ଅନୁଷ୍ଠିତ ହେଉଅଛି ।"(୧୬)

## ବାରବ୍ରତ, ଓଷା

ଉତ୍କଳୀୟ ସମାଜ ତ୍ୟାଗ ମଧ୍ୟରେ ଜୀବନକୁ ଉପଲବ୍ଧି କରି ରଖିଛି । ତ୍ୟାଗ ମଧ୍ୟରେ ଭୋଗହିଁ ତା'ର ସଂସ୍କୃତିର ବୈଶିଷ୍ଟ୍ୟ । ସୁତରାଂ ଏଇଠି କେବଳ ଗୃହତ୍ୟାଗୀ ମହାଯୋଗୀ ଶିବ ହୋଇଛନ୍ତି ଘରର ଜୋଇଁପୁଅ । ଓଡ଼ିଶାର ଗଜପତି ନିଜେ ସମ୍ରାଟ ନ ହୋଇ ଶ୍ରୀଜଗନ୍ନାଥଙ୍କ ସେବକ ପ୍ରତିନିଧି ରୂପରେ କର୍ତ୍ତବ୍ୟ ପାଳନ କରିଛନ୍ତି । ମାତ୍ର ଉତ୍କଳର ନରନାରୀ ଆଧାତ୍ମ୍ୟ ଜୀବନରେ ତ୍ୟାଗର ମହିମା ପ୍ରକାଶ କରିବା ଓ ନିଜକୁ ସଂଯତ ଓ ନୈତିକ ଆଦର୍ଶରେ ଅନୁପ୍ରାଣିତ କରିବା ଉଦ୍ଦେଶ୍ୟରେ ବିଭିନ୍ନ ବାରବ୍ରତ ପାଳନ କରିଥାନ୍ତି । କୃଷିଭିତ୍ତିକ ସମାଜରେ ଉଭୟେ ସ୍ତ୍ରୀ ପୁରୁଷ ଏହି ବାରବ୍ରତ ପାଳନ କରନ୍ତି । ସେଗୁଡ଼ିକ ମଧ୍ୟରୁ ସୋମନାଥ ବ୍ରତ, ଲକ୍ଷ୍ମୀବ୍ରତ, ଶାମ୍ବଦଶମୀ, ପଞ୍ଚକବ୍ରତ, ଷଷ୍ଠୀବ୍ରତ, ପ୍ରଥମାଷ୍ଟମୀ ବ୍ରତ, ସରସ୍ୱତୀ ପୂଜା, ଗଣେଶ ବ୍ରତ, ସାବିତ୍ରୀ ବ୍ରତ, ବୈଶାଖ ବ୍ରତ, ମାଘ ବ୍ରତ, କାର୍ତ୍ତିକ ବ୍ରତ, ଗହ୍ମା ବା ରାକ୍ଷୀପୂର୍ଣ୍ଣିମା ବ୍ରତ, କୁମାର ପୂର୍ଣ୍ଣିମା, ଜନ୍ମାଷ୍ଟମୀ ବ୍ରତ, ଗୌରୀବ୍ରତ ଇତ୍ୟାଦି ପ୍ରଧାନ ।

ଏହାବ୍ୟତୀତ ଏକାଦଶୀ, ଶିବ ଚତୁର୍ଦ୍ଦଶୀ, ଝୁଲଣ, ମହାବିଷୁବ ସଂକ୍ରାନ୍ତି, ଚନ୍ଦନ ପୂର୍ଣ୍ଣିମା, ବୁଦ୍ଧ ପୂର୍ଣ୍ଣିମା, ନୃସିଂହ ଜନ୍ମୋପବାସ, ପଙ୍କୋଦ୍ଧାର, ମହାଳୟା, ଶିତଳ ଅମାବାସ୍ୟା, ଛତ୍ର ଦ୍ୱାଦଶୀ, ସପ୍ତପୁରୀ ଅମାବାସ୍ୟା, ଶାମ୍ବଦଶମୀ ପ୍ରଭୃତି ବାର-ବ୍ରତ ସର୍ବତ୍ର ପାଳିତ ହୋଇଥାଏ । ଭାଇଜିଉଣ୍ଟିଆ ଓଷା, ଖୁଦୁରୁକୁଣୀ ଓଷା, ଷଷ୍ଠୀ ଓଷା, ମଙ୍ଗଳା ଓଷା, ତାଳଓଷା, ଗୁରୁବାର ଓଷା ପ୍ରଭୃତି ଏ ଅଞ୍ଚଳରେ ସର୍ବତ୍ର ପାଳିତ ହୋଇଥାଏ ।

Digitized by srujanika@gmail.com

# ପର୍ବପର୍ବାଣୀ

## ଗର୍ଭଣା ସଂକ୍ରାନ୍ତି :

ଏହା "ଖାଡ଼ିମାସି" ସଂକ୍ରାନ୍ତି ନାମରେ ପ୍ରସିଦ୍ଧ । ଏ ଅଞ୍ଚଳର କୃଷକମାନେ ଆଶ୍ୱିନ ମାସ ସଂକ୍ରାନ୍ତି ଦିନ ବିଲରେ "ଭୂଆଲ" ଗଛର ଡାଳ କିମ୍ବା "ଅନଲ" ଡାଳ ପୋତିଥାନ୍ତି । ସେଦିନ କୌଣସି କାର୍ଯ୍ୟ ନକରି ମଉଜ ମଜଲିସରେ ପିଠାପଣା ଖାଇ ଆନନ୍ଦ କରିବା ବିଧି । ଏପରିକି ଘାସ କାଟିବା ମନା । ସକାଳେ ପୂଜା କରି 'ଖାଡ଼ି'କୁ ଧରି ଲୋକେ କହନ୍ତି—

"ଅଣସୁରିଷା ବଜରମୂଳୀ
ଧାନ ଫଳିବ ଖେଜର କୁଳି
ମହାଲକ୍ଷ୍ମୀ ଆନନ୍ଦେ ହରିବଲ
ଧାନ ଫଳିବ ଭଲ । ମହାଦେବଙ୍କୁ ଧ୍ୟାନ କରି ହରିବଲ ।"

ସେଦିନ ଗୋରୁଗାଈଙ୍କୁ ପୂଜା କରାଯାଏ । ବର୍ଷାଧିକ ଗୋ-ପୂଜା ବହୁ ଦିନରେ ହୋଇଥାଏ । ଆଇଷଣ ବା ଅକ୍ଷୟ ତୃତୀୟା, ଗର୍ଭଣା ସଂକ୍ରାନ୍ତି, ଗହ୍ମାପୂର୍ଣ୍ଣିମା ପ୍ରଭୃତିରେ ହିନ୍ଦୁମାନେ ଗୋରୁଗାଈଙ୍କୁ ପୂଜା କରିଥାନ୍ତି । ଏ ସମଗ୍ର ଅଞ୍ଚଳରେ ଆଦିବାସୀମାନେ ମଧ୍ୟ "ଗୋରୁ ନାଚ" ପର୍ବ ପାଳନ କରି ଗୀତ ବୋଲିଥାନ୍ତି । ଗୋପୂଜା ହିନ୍ଦୁ ସଂସ୍କୃତିର ଏକ ବିଶିଷ୍ଟ ଅଙ୍ଗ ।

## ଅରନ୍ଧନ :

ଉତ୍ତର ବାଲେଶ୍ୱର ଓ ଦକ୍ଷିଣ ମେଦିନୀପୁର ଅଞ୍ଚଳର ଲୋକ ସମାଜରେ ଏହା "ଅରାନ୍ଧ" ନାମରେ ପ୍ରସିଦ୍ଧ । ଏ ପର୍ବରେ ଘରେ ରନ୍ଧନ କାର୍ଯ୍ୟ ହୁଏ ନାହିଁ । "ସୁନିଆଁ" ପାଖରୁ ଆରମ୍ଭ କରି ଆଶ୍ୱିନ ଶେଷ ପର୍ଯ୍ୟନ୍ତ ବିଭିନ୍ନ ଦିବସରେ ଏହା ପାଳିତ ହୋଇଥାଏ । 'ଅରାନ୍ଧ'ରେ ସମସ୍ତେ 'ପଖାଳ' ଖାଇବା ବିଧି । [illegible]ରେ ଦାହାରେ "ରୁହୁଡ଼ା" (ଏକପ୍ରକାର ଅସ୍ଥାୟୀ ଚୁଲି) ନିର୍ମାଣ କରି ତରକାରି ରାନ୍ଧି ଜ୍ଞାତିକୁଟୁମ୍ବ, ବନ୍ଧୁବାନ୍ଧବ, ପାଇପଡ଼ିଶାମାନଙ୍କ ସହିତ ପଖାଳ ଖିଆ ଦୃଶ୍ୟ ଅତ୍ୟନ୍ତ ମନୋରମ । ଏହି ଦିନ ନାଗପୂଜା "ବିଶାରି" (ବାସେଲୀ) ପୂଜା 'ଇଷାଣି' ବା ଚୁଲି ପୂଜା ଅନୁଷ୍ଠିତ ହୁଏ । ଚୁଲିରେ ସବୁଦିନ ରନ୍ଧାଯାଏ । ବର୍ଷକରେ ଗୋଟିଏ ଦିନ ଏହାକୁ ବିଶ୍ରାମ ଦେବା, ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିବା ବିଧି । "ଅରାନ୍ଧ" ସମ୍ପର୍କରେ ବହୁ କିମ୍ବଦନ୍ତୀ/ଲୋକକଥା ପ୍ରଚଳିତ । ଅରନ୍ଧନ ବହୁ ପ୍ରକାର ଥାଏ । ଯଥା—ଦିନଢିଆ, ଚୁଳପୁଟିଆ,

Digitized by srujanika@gmail.com

ଓ୍ରିଳକଥା ଅଗ୍ରାହ୍ୟ ପ୍ରଭୃତି । ଏ ପର୍ବରେ ପୂର୍ବ ଦିନରୁ ଭାତ ରାନ୍ଧି ପଖାଳ କରି ରଖା-ଯାଇଥାଏ ।

ଅରନ୍ଧନ ଦିବସର ଶେଷ/ସନ୍ଧ୍ୟା ବେଳକୁ ଘର ପରିଷ୍କାର କରି ଓଳେଇ ଅଳିଆ-ଗୁଡ଼ିକ କୁଲା ବଜେଇ ବଜେଇ ପିଲାମାନେ "ହିଡ଼ମି (ହିଡ଼ିମ୍ବୀ) ଗଲେ ବଣକୁ, ଲକ୍ଷ୍ମୀ ଆଇଲେ କଣକୁ (କୋଣକୁ)" ଗୀତ ଗାଇ ବାହାରେ ଫିଙ୍ଗିଦେଇ ଆସନ୍ତି । ଅରନ୍ଧନ ଏ ଅଞ୍ଚଳରେ ଏକ ବିଶିଷ୍ଟ ପର୍ବ ।

**ପଣା ସଂକ୍ରାନ୍ତି :**

ଏ ଅଞ୍ଚଳରେ ଏହା ସର୍ବତ୍ର ପାଳିତ ହୋଇଥାଏ ।

**ବାନ୍ଦଣା :**

ମୟୂରଭଞ୍ଜ ଝାଡ଼ଗ୍ରାମ ଅଞ୍ଚଳରେ ଅଣ-ଆଦିବାସୀ ଓ ଆଦିବାସୀ ଯଥା— କୁଡ଼ୁମୀ, ପୁରାଣ, ବାଥୁଡ଼ି, ଭୂୟାଁ, ଗଣ୍ଡ, ସାନ୍ତାଳ, ହୋ ପ୍ରଭୃତି ଜାତି ଓ ଗୋଷ୍ଠୀର ଲୋକ ସମାଜରେ ବାନ୍ଦଣା ପରବ ପ୍ରଚଳିତ ।

**ମକର :**

ମୟୂରଭଞ୍ଜ—ଝାଡ଼ଗ୍ରାମ ଅଞ୍ଚଳର ଆଦିବାସୀ ଓ ଅଣଆଦିବାସୀ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଆବାଳ ବୃଦ୍ଧବନିତା ସମସ୍ତେ ଆନନ୍ଦ ଉଦ୍ଦୀପନା ସହ ମହାସମାରୋହରେ ପାଳନ କରନ୍ତି । ଏ ସମ୍ପର୍କରେ ଲୋକୋକ୍ତି ପ୍ରଚଳିତ ଅଛି ଯେ ଏ ସମୟରେ ଜଣେ ପିତୃକାର୍ଯ୍ୟ ସମ୍ପାଦନ କରିନପାରେ କିନ୍ତୁ ମକର ପରବ ନିଶ୍ଚୟ ପାଳନ କରିବ । ମକର ସମୟରେ ଉତ୍‌ଫୁଲ୍ଲିତ ସନ୍ତାନ ସନ୍ତତିଗଣ ପିତାମାତାଙ୍କର କଥା ଶୁଣନ୍ତି ନାହିଁ କିମ୍ବା ଆନନ୍ଦ ବିଭୋର ଦୈନିକ ମୂନିବର କଥା ମାନନ୍ତି ନାହିଁ । ମାଘ ସଂକ୍ରାନ୍ତି ଦିନ ବଡ଼ ଭୋରରୁ ପ୍ରତ୍ୟେକ ବିଭିନ୍ନ ପୋଖରୀ, ବନ୍ଧ, ନଦୀ ପ୍ରଭୃତିରେ ସ୍ନାନ ସାରି ଦେବାର୍ଚ୍ଚନା କରନ୍ତି । ସଂକ୍ରାନ୍ତିର ପୂର୍ବରୁ ନିକଟତମ ବନ୍ଧ, ପୋଖରୀ, ନଦୀ ଆଦିମାନଙ୍କରେ ଜଙ୍ଗଲରୁ ଗଛ ଡାଳ ପତ୍ର ସଂଗ୍ରହ କରି 'କୁଡ଼ିଆ'/'କୁମା' ନିର୍ମାଣ କରିଥାନ୍ତି । ଏହାକୁ "ମକର କୁଡ଼ିଆ"/"ମକର କୁମା" କହନ୍ତି । ଗାଧୋଇ ସାରି ମକର କୁଡ଼ିଆରେ ନିଆଁ ଲଗାଇ ଦେଇ ନବ ବସ୍ତ୍ର ପରିଧାନ କରି ଘରକୁ ଫେରନ୍ତି । ମକର ଚାଉଳ ଧରି ଦେବାର୍ଚ୍ଚନା କରନ୍ତି । ପ୍ରତ୍ୟେକ ଘରେ ବହୁ ପ୍ରକାରେ ସୁଆଦିଆ ପିଠା ପ୍ରସ୍ତୁତ ହୋଇଥାଏ । ଏହି ଦିନ ମକର ଚାଉଳ ଦେଇ ସୂର୍ଯ୍ୟଙ୍କୁ ଅନାଇ ନୂଆ ବନ୍ଧୁ ବାନ୍ଧନ୍ତି । ଏହାକୁ ସୂର୍ଯ୍ୟବନ୍ଧୁ କୁହାଯାଏ ।

ଆଦିବାସୀମାନଙ୍କ ମଧ୍ୟରେ ମକର ପର୍ବ ତିନିଦିନ ପାଳନ କରାଯାଏ । ମକର ପୂର୍ବଦିନ 'ବାଉଣ୍ଡି' ତାର ପୂର୍ବଦିନ 'ଚାଉଣ୍ଡି' ଭାବରେ କଥିତ । ବାଉଣ୍ଡି ଦିନ

Digitized by srujanika@gmail.com

ଆଦିବାସୀମାନେ ମାଛ ଓ କଙ୍କଡ଼ା ଧରି ଖାଆନ୍ତି । ଏହା ଖାଇଲେ ଜୀବନ ବୃଦ୍ଧି ଘଟେ —ବିଶ୍ୱାସ । ମକର ପରଦିନ ବିଭିନ୍ନ ସ୍ଥାନରେ ବାନ୍ଦର, ସାଧନ, କାଠିଖେଲୁ ନାଚ ପ୍ରଭୃତି ଅନୁଷ୍ଠିତ ହୁଏ । ମକର ସମୟରେ ଆଦିବାସୀମାନଙ୍କ ମଧ୍ୟରେ ହାଣ୍ଡିଆ ଓ ମାଂସ ପ୍ରଚଳନ ଅଧିକ ହୋଇଥାଏ ।

**ଚଇତ ପର୍ବ :**

ଚୈତ୍ର ସଂକ୍ରାନ୍ତିରେ ସମଗ୍ର ଉତ୍ତର ପୂର୍ବାଞ୍ଚଳର ବିଭିନ୍ନ ସ୍ଥାନ, ବାଲେଶ୍ୱର, ବାରିପଦା, ମରୁଡ଼ା, ଚନ୍ଦଡ଼ା, ମେଦିନୀପୁରର ନୟାବସାଣ, ଗୋହଣୀ ପ୍ରଭୃତି ସ୍ଥାନରେ ଚଇତ ପର୍ବ ପ୍ରବଳ ଜନସମାରୋହରେ ପାଳନ କରାଯାଏ । ବାରିପଦା—ଝାଡ଼ଗ୍ରାମ—ଧଲଭୂମ ଓ ସନ୍ନିହିତ ଅଞ୍ଚଳରେ ଚଇତ ପର୍ବ ସମୟରେ ଛଉନାଚ ଅନୁଷ୍ଠିତ ହୁଏ ।

ଉତ୍ତର ବାଲେଶ୍ୱରର ବିଭିନ୍ନ ସ୍ଥାନ ମୁଖ୍ୟତଃ ଚନ୍ଦନେଶ୍ୱର ମହାଦେବଙ୍କ ନିକଟରେ ପ୍ରସିଦ୍ଧ ଭକ୍ତା ପର୍ବ ପାଳିତ ହୁଏ । ଏ ପର୍ବ ସମଗ୍ର ଅଞ୍ଚଳର ବିଭିନ୍ନ ସ୍ଥାନରେ, ଭକ୍ତା, ଗାଜନ, ମାଁଡ଼, ଉଡ଼ା, ଦଣ୍ଡ ପ୍ରଭୃତି ନାମରେ ମହାସମାରୋହରେ ପାଳିତ ହୋଇଥାଏ । ଏହା ଏକ ଶୈବ ଅନୁଷ୍ଠାନ । ଏହାକୁ ପାଳନ କରୁଥିବା ଲୋକଙ୍କୁ ଭକ୍ତା କୁହାଯାଏ । ନାନାପ୍ରକାର ଶାରୀରିକ କ୍ଳେଶ ପ୍ରଦାୟକ ସାଧନା ଓ ଉପବାସ ସହ ଏ ପର୍ବ ପାଳିତ ହୁଏ ।

## ମେଳା ମହୋତ୍ସବ

ମେଳା ମହୋତ୍ସବ ଲୋକ ସମାଜର ସାମୂହିକ ଆନନ୍ଦର ମୂର୍ତ୍ତି ପ୍ରକାଶ ମାତ୍ର । ଏଥିରେ ବିଭିନ୍ନ ଜାତିର ଲୋକମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ଓ ଏକତା ପ୍ରତିଷ୍ଠା ହୋଇଥାଏ ।

ଶିବ ଚତୁର୍ଦ୍ଦଶୀ, ବାଲିଯାତ୍ରା, ଗ୍ରାମପୂଜା, ବାସନ୍ତ ପୂଜା, ମକର ଓ ଦୋଳ ପ୍ରଭୃତି ପର୍ବରେ ମେଳା ଅନୁଷ୍ଠିତ ହୋଇଥାଏ । ବାଲିଯାତ୍ରା ଉପକୂଳବର୍ତ୍ତୀ ଅଞ୍ଚଳରେ ଏକ ପ୍ରଧାନ ଉତ୍ସବ । ମେଦିନୀପୁରର ଗୋପୀବଲ୍ଲଭପୁର ଓ ଉତ୍ତର ବାଲେଶ୍ୱରର କେତେକ ସ୍ଥାନରେ ଚୈତ୍ର ମାସରେ ବାଲିଯାତ୍ରା ଅନୁଷ୍ଠିତ ହୁଏ । କାର୍ତ୍ତିକ ମାସରେ ସ୍ତ୍ରୀଲୋକ-ମାନେ "ବାଲୁକା" ଶିବ ଆପନା କରି ବାଲିପୂଜା କରିଥାନ୍ତି । ବାଲିମେଳା ଓଡ଼ିଶାର ସୁପ୍ରାଚୀନ ନୌବାଣିଜ୍ୟ ପରମ୍ପରାର ନିଦର୍ଶନ ।

ମହୋତ୍ସବ ଏ ସମଗ୍ର ଅଞ୍ଚଳର ଲୋକ ସମାଜରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଭାବରେ ପ୍ରାୟ ପ୍ରତିବର୍ଷ ପ୍ରତି ଗ୍ରାମରେ ଏପରିକି

Digitized by srujanika@gmail.com

ବଂଶୀ ବଣେଷଙ୍କ ଗୃହରେ ହରିନାମ ସଙ୍କୀର୍ତ୍ତନ ହୋଇ ମହୋତ୍ସବ ଅନୁଷ୍ଠିତ ହୋଇଥାଏ । ମାଘ ମାସରେ ଅଗିଦ୍ଧ ପୂନେଇଁରେ ନଆଁ ଜଳା ଉତ୍ସବ ଅନୁଷ୍ଠିତ ହୁଏ । କୃଷକ କୃଷି କାର୍ଯ୍ୟ ଶେଷରେ ଶୀତ ସମୟରେ ଅଗ୍ନି ଉତ୍ସବ କରି ମଉଜ ଅନୁଭବ କରେ । ଏ ସମ୍ପର୍କରେ ଲୋକ କାହାଣୀଟିଏ ପ୍ରଚଳିତ ଅଛି ।

## ପିଠାପଣା, ଭୋଗରାଗ

ମେଳା ମହୋତ୍ସବ, ବାରବ୍ରତ, ଓଷା ପର୍ବପର୍ବାଣୀ ସହିତ ପିଠାପଣା ଓ ଖିଆପିଆ ଭୋଗରାଗର ଅଭେଦ ସମ୍ପର୍କ । ମଣ୍ଡା, କାକରା, ପଦ୍ମମାଡ଼ା, ଦୁଧ ଗେଣ୍ଠୁଲି, ଛୁଞ୍ଚିପତ୍ର, ଆରସା, ମହୁଲ ପିଠା, ଖେଳର ପିଠା, ଲାଉ ପିଠା, ଶିମ୍ବ ପିଠା, ସୁଜିମଣ୍ଡା, ଉଦାମଣ୍ଡା, ଲୁଣ୍ଡା ପିଠା, ଏଣ୍ଡୁରି ପିଠା, ଶାମୁକା ପିଠା, ପତର ନେଡ଼ିକା ପିଠା, ଚକୋଲି, ସରୁ ଚକୋଲି, ଦୋ' ପିଠା, ସରୁ ପିଠା ଓ ପୋଡ଼ା ପିଠା ବେଶ୍ ଲୋକପ୍ରିୟ । ପୋଡ଼ାପିଠା ସମ୍ପର୍କରେ ଢଗ ଢମାଳି ପ୍ରଚଳିତ—"ଉପରେ ନିଆଁ ତଳେ ନିଆଁ, ମଝିରେ ବଇଠ ବୁଢ଼ୀ ମିଆଁ ।"

ବେଲ, କଦଳୀ, ଆମ୍ବ, ତରଭୁଜ, ଡାଳିମ୍ବ ପ୍ରଭୃତି ପାଚିଲା ଓ କଞ୍ଚା ଫଳରେ ଗୁଡ଼, ଚିନି ମିଶାଇ ଦହିରେ ପଣା ପ୍ରସ୍ତୁତ କରି ଭୋଗ ଦେବା ଅଥବା ନିଜେ ପିଇବା ସର୍ବତ୍ର ପ୍ରଚଳିତ । ପଣାରେ ଭାଙ୍ଗ, ପତ୍ର ମିଶାଇ ପିଇବା ଦେଖାଯାଏ ।

ନଡ଼ିଆ, କଦଳୀ, ମୁଗ, ବୁଟ, କୋଳି, ଖଜୁରି, ସେଓ, ଅଙ୍ଗୁର, ନାସପାତି, ବେଦନା, କ୍ଷୀର, ଚିନି ପ୍ରଭୃତି ଫଳ ଓ ପାନୀୟ ସହ ପିଠାପଣା ଭୋଗ ହୁଏ ।

## ବ୍ୟବସାୟ ବାଣିଜ୍ୟ

ଉତ୍ପାଦିତ ଦ୍ରବ୍ୟ ସମୂହ ବ୍ୟବସାୟ ଓ ବାଣିଜ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ସେଗୁଡ଼ିକ ମଧ୍ୟରେ ଧାନ, ପାନ, ସପ, ନଡ଼ିଆ, ସୋରିଷ, ମୁଗ, ବିରି, ଘିଅ, ମାଛ ଓ ଲୁଣ ପ୍ରଧାନ । ମାଛ ଓ ଲୁଣ ଉପକୂଳବର୍ତ୍ତୀ ଅଞ୍ଚଳର ମୁଖ୍ୟ ବାଣିଜ୍ୟିକ ଦ୍ରବ୍ୟ ଥିଲି । ସରୁସୂତା ଲୁଗା ବୁଣାଯାଇ ରପ୍ତାନି କରାଯାଉଥିଲି । ତମ ଜାତିର ଲୋକେ ବାଉଁଶରେ ତିଆରି କୁଲା, ଝୁଡ଼ି, ବେତରେ ତିଆରି ଝଙ୍କା, ଗୌଣୀ, ଚଟା; ଖଜୁରି ପତ୍ରରେ ତିଆରି ପଟିଆ, ଗୁଣ୍ଡୁଣୀ ତିଆରି କରି ବିକ୍ରି କରିଥାନ୍ତି । ଭୋଗରାଇ "ସପ" ସର୍ବତ୍ର ପ୍ରସିଦ୍ଧି ଲାଭ କରିଅଛି । "ସପ"ଗୁଡ଼ିକରେ ଲୋକ-କଳା ଦର୍ଶନୀୟ ବସ୍ତୁ । ଉପକୂଳ

Digitized by srujanika@gmail.com

ଅଞ୍ଚଳର କେଉଟମାନେ ମାଛ ଧରି ବ୍ୟବସାୟ କରିଥାନ୍ତି । ମୟୂରଭଞ୍ଜ ଓ ଦକ୍ଷିଣ-ପଶ୍ଚିମ ମେଦିନୀପୁରର ଲୋକେ ବିଭିନ୍ନ ଅରଣ୍ୟ ଜାତ ଦ୍ରବ୍ୟ କାଠ, ମହୁ, ଝୁଣା, ବେତ, ପକ୍ଷୀପର, ପଶୁଚର୍ମ, ହାଡ଼, ଦାନ୍ତ ପ୍ରଭୃତି ରପ୍ତାନି କରି ବ୍ୟବସାୟ କରନ୍ତି ।

ନୌବାଣିଜ୍ୟରେ ପ୍ରାଚୀନ କାଳରୁ ଓଡ଼ିଶା ବିଖ୍ୟାତ । ପ୍ରାଚୀନ କାଳରେ ତାମ୍ରଲିପ୍ତ, ପିପିଲି, ହିଜଳି, ବାଲେଶ୍ୱର ପ୍ରଭୃତି ବନ୍ଦର ନୌବାଣିଜ୍ୟର ଇତିହାସରେ ଗୌରବପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଏହି ବନ୍ଦରମାନଙ୍କରୁ ଓଡ଼ିଆ ସାଧବ ପୁଅ-ମାନେ ଜାଭା, ବାଲି, ଶ୍ୟାମ, ଚୀନ, ବର୍ମା ପ୍ରଭୃତି ସ୍ଥାନକୁ ଜଳଯାତ୍ରା କରୁଥିଲେ । ବିଗ୍ରିଟକାୟ ପାଲଟଣା ବୋଇତମାନ ବିଦେଶରୁ ଧନରତ୍ନ ପୂର୍ଣ୍ଣକରି ଏହି ବନ୍ଦର-ମାନଙ୍କରେ ଆଶ୍ରୟ ନେଉଥିଲେ । ଆମ ଦେଶରୁ ସୂକ୍ଷ୍ମବସ୍ତ୍ର, ପଥର ବାସନ ପ୍ରଭୃତି ରପ୍ତାନି କରାଯାଉଥିଲା ।

ପ୍ରାଚୀନ କାଳରେ ତାମ୍ରଲିପ୍ତ ବନ୍ଦର ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଥିଲା । ସମ୍ରାଟ ଅଶୋକ ଏହି ବନ୍ଦର ବାଟ ଦେଇ ସଂଘମିତ୍ରା ଓ ମହେନ୍ଦ୍ରଙ୍କୁ ସିଂହଳକୁ ପଠାଇ-ଥିବାର ଐତିହାସିକ ପ୍ରମାଣ ରହିଅଛି ।

ଏ ଅଞ୍ଚଳରେ ତ'ପୋଇ କାହାଣୀ ପ୍ରଚଳିତ । ଖୁଦୁରୁକୁଣୀ ଓଷା ସମଗ୍ର ଉପକୂଳ ଅଞ୍ଚଳରେ ସବଂଶ ପାଳିତ ହୁଏ । ଏ ଅଞ୍ଚଳରେ ପ୍ରଚଳିତ ଢଗ ଓ ଲୋକ ଗୀତରେ ଏହି ପ୍ରାଚୀନ ପରମ୍ପରାର ବର୍ଣ୍ଣନା ଦେଖାଯାଏ ।

ସାଧବ ଝିଅ ଓ ଅନ୍ୟ ଜାତିର ଝିଅ ବୋହୂମାନେ କ୍ଷେତରେ କ୍ଷେତ ବଢ଼ା ବେଳେ, ଖଳାରେ ବେଙ୍ଗଲା ପଡ଼ିବା ଆଗରୁ, ମଗୁଣିର ମାସ ଗୁରୁବାର ଉପଲକ୍ଷେ ଘର କାନ୍ଥରେ, ଦକ୍ଷିଣ ସଂକ୍ରାନ୍ତି ଦିନ ଦକ୍ଷିଣମୁଖୀ କବାଟରେ, ପୂଜା ଆଗରୁ ଚଉରା ମୂଳରେ, ସନ୍ଧ୍ୟାଶ୍ରାଦ୍ଧ ସମୟରେ ଅଗଣାରେ ଶିଶୁସୁବ ନାଥୀ ବ୍ରତରେ ଖୁଦୁରୁକୁଣୀ ଓଷାରେ ବୋଇତର ଚିତ୍ର ଆଙ୍କନ୍ତି । ସାଧବ ବୋହୂର ଇଚ୍ଛାକାଂକ୍ଷା ହେଉଛି, "ମୋ ଗିରସ୍ତ ହେବ କନକ ରାଜନ । ମୁଁ ହେବ ପାଟରାଣୀ ।" ଓଡ଼ିଶାର ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ବହୁ ପ୍ରଚଳିତ "ଷଷ୍ଠୀ ଘର" (ଷଷ୍ଠୀ ପୂଜା) ଅନୁଷ୍ଠାନରେ ବଙ୍ଗୀୟ କବି କର୍ଣ୍ଣଙ୍କ ରଚିତ ପାଲା ଗାନ କରାଯାଏ । ପିଲା ବିଶେଷତଃ ପୁଅପିଲା ଜନ୍ମ ପରେ ଏକୋଇଶା ଦିନ କିମ୍ବା ପରବର୍ତ୍ତୀ କୌଣସି ମନୋନୀତ ଦିବସର ରାତ୍ରି କାଳରେ ଷଷ୍ଠୀ ଦେବୀଙ୍କର ସନ୍ତୁଷ୍ଟି ନିମନ୍ତେ ଏହା ଅନୁଷ୍ଠିତ ହୁଏ । କାଠୁରିଆ ଓ ଭ୍ରମରବର ପାଲାରେ ସାଧବ ପୁଅର ସାମୁଦ୍ରିକ ବାଣିଜ୍ୟ ବିଷୟ ବର୍ଣ୍ଣିତ । ବ୍ୟବସାୟିକ ସଫଳତା ନିମନ୍ତେ

Digitized by srujanika@gmail.com

ନିଜ ଭାଷା ସହ ଅନ୍ୟ ଅଞ୍ଚଳର ଭାଷା ଶିକ୍ଷାର ଆବଶ୍ୟକତା ଦୃଷ୍ଟିରୁ ସାଧବ ପୁଅ ଘରଦାଣ୍ଡରେ ଓଡ଼ିଆ, ବଙ୍ଗଳା, ପାର୍ଶୀ ଓ ଦେବ ନାଗର୍ଯ୍ୟ ଭାଷା ଶିକ୍ଷା କରିଛନ୍ତି । □

ଓଡ଼ିଆ ଲୋକ ସାହିତ୍ୟ ଓ ସଂସ୍କୃତିରେ ଅତୀତରେ ପାରମ୍ପରିକ ସମୃଦ୍ଧ ନୌବାଣିଜ୍ୟ ସମ୍ପର୍କୀୟ ବହୁ ନିଦର୍ଶନ ବିଦ୍ୟମାନ ।

ତ’ପୋଇ କାହାଣୀରେ ଭାଇମାନେ ବିଦେଶକୁ ବେପାର କରିଗଲା ଉତ୍ତାରୁ ଭାଉଜମାନେ ଘରର ‘କର୍ତ୍ତ୍ରୀ’ ହୋଇଛନ୍ତି । ଏକମାତ୍ର ନଣନ୍ଦ “ତଅପୋଇ”କୁ ନିଷ୍ଠୁର ଯାତନା ପ୍ରଦାନ କରି ଘରୁ ନିକାଲି ଦେଇଛନ୍ତି । ବଣିଜରୁ ଫେରିବା ବାଟରେ ଭାଇମାନେ ତଅପୋଇକୁ ଉଦ୍ଧାର କରିଛନ୍ତି । କାହାଣୀଟିର ପରିଣତି ଦୁଃଖଦ ହୋଇଛି । ଜଳେଶ୍ୱର ଅଞ୍ଚଳର ଗାଁ ଗଣ୍ଡାଳରେ ମାଇପି ମୁଖରେ ପ୍ରଚଳିତ ଢଗଟିଏ ଏଠାରେ ଉଲ୍ଲେଖ କରୁଅଛୁ । ଢଗଟି ହେଉଛି—

“ସିଙ୍ଗୁଆ ସାର୍‌ଥା, ନାଁ
ଯଇତା ମେନେ ଘର ନାହିଁ ମାଇପେ ହେଇଚନ କର୍ତ୍ତ୍ରୀ” ●

କୌଣସି ସ୍ତ୍ରୀ ଲୋକର ସ୍ୱାଧୀନତାକୁ ଆକ୍ଷେପ କରି ଏପରି ଢଗ ମାଇପି ମହଲରେ ଆଦୃତ । ଗ୍ଲୁନୁଆଁ (ଛନୁୟାଁ) ଓ ସାର୍ଥା △ ବାଲେଶ୍ୱର ଜିଲ୍ଲାର ପ୍ରାଚୀନ

---

□ କର୍ଣ୍ଣ କବି : ‘ଭ୍ରମରବର ପାଲ’, :
“ପ୍ରଥମ ଦିନରେ ସେହି ଓଡ଼ିଆ ପଢ଼ିଲି
ଦ୍ୱିତୀୟ ଦିନରେ ଯେ ବଙ୍ଗଳାକୁ ସାରିଲି
ତୃତୀୟ ଦିନରେ ପଢ଼େ ଫାରସୀ ନାଗରୀ
ଗୃହିଦିନେ ଗୃହପାଠ ପଢ଼େ ନିର୍ବ କରି ।”

● ଶ୍ରୀମତୀ ସ୍ୱର୍ଣ୍ଣମଣି (ଶନି) ମହାପାତ୍ର ବ· ୫୮, ଗ୍ରାମ ବାଣିଦା ଥାନା ଜଳେଶ୍ୱର, ଜି: ବାଲେଶ୍ୱରଙ୍କ ନିକଟରୁ ସଂଗୃହୀତ । କେତେବେଳେ କେତେକ ‘ଗ୍ଲୁନୁଆଁ’ ସ୍ଥାନରେ ‘ସିଙ୍ଗୁଆ’ ବୋଲି କହନ୍ତି ।

△ ବାଲେଶ୍ୱର ଉପକୂଳରେ ପିପିଲି ଓ ବାଲେଶ୍ୱର ବ୍ୟତୀତ ସାର୍‌ଥା, ଛନୁୟା, ଲଇଛମନପୁର, ଚୁଡ଼ାମନ ଓ ଧାମରା ନାମରେ ଅନ୍ୟ ପାଞ୍ଚଗୋଟି ବନ୍ଦର ଥିଲା । ସାର୍‌ଥା ଓ ଛନୁୟା ପିପିଲି ବନ୍ଦରର ୧୫ ମାଇଲ ଦକ୍ଷିଣ ପଶ୍ଚିମରେ ଅବସ୍ଥିତ । ସାଧବ ଝିଅ, ଡା. ଅଦ୍ୱୈତ ଚନ୍ଦ୍ର ମହାନ୍ତି, ପୃ. ୧୬, ଗନ୍ଧମର୍ଦ୍ଦନ—୧୯୭୪ ।

Digitized by srujanika@gmail.com

ନୌ-ବନ୍ଦର ରୂପେ ପ୍ରସିଦ୍ଧ । ସେଠାର ପୁରୁଷ ଲୋକେ (ସାଧବ) ବାଣିଜ୍ୟ କରିବାକୁ ଦେଶାନ୍ତର ଗମନ କରୁଥିବାରୁ ଘରେ ସ୍ତ୍ରୀ ଲୋକେ ସ୍ୱାମୀମାନଙ୍କର ଅନୁପସ୍ଥିତି କାଳରେ ସଂସାରର ଦାୟିତ୍ୱ ବହନ କରିଥିବା ସ୍ୱାଭାବିକ ।

ବୋଇତ ବାଣିଜ୍ୟ ଯୁଗରେ ସାଧବ ପୁଅ ରପ୍ତାନି କରୁଥିବା ଦ୍ରବ୍ୟ ମଧ୍ୟରେ ଉତ୍କଳର ବହୁ ପ୍ରସିଦ୍ଧ ମନ ଆଲୋଡ଼କ "ନଳୀଝୀନ" ବସ୍ତ୍ର ଓ ପଥର ନିର୍ମିତ "ଢୋକ" ପ୍ରଧାନ । ବରହମପୁରିଆ ପାଟର ପ୍ରସିଦ୍ଧି ଅତି ପ୍ରାଚୀନ । ଆମଦାନି ଦ୍ରବ୍ୟ ମଧ୍ୟରେ ମୁଖ୍ୟତଃ ଲବଙ୍ଗ ପ୍ରଭୃତି ମସଲାର ଉଲ୍ଲେଖ ଦେଖୁଁ । ବାଲେଶ୍ୱର ଜିଲ୍ଲାର ବାସୁଦେବ-ପୁର ଅଞ୍ଚଳରେ ପ୍ରଚଳିତ ଗୋଟିଏ ଲୋକ ଗୀତରେ ଓଡ଼ିଶାର ବନ୍ଦର-ବୋଇତ-ବାଣିଜ୍ୟ. ଅନୁକୂଳ ସମୟ, ବାଣିଜ୍ୟ ପଥ, ଆମଦାନି—ରପ୍ତାନି ସାମଗ୍ରୀ ବ୍ୟବସାୟ ସ୍ଥଳ, ନିଯୁକ୍ତ କର୍ମଗୃହ୍ମ, ବୋଇତର ପ୍ରକାର (ନାମ), ତତ୍କାଳୀନ ରାଜନୈତିକ ଘଟଣାବଳୀ, ଆରାଧ୍ୟା ଦେବୀଙ୍କର ନାମ ସହ ଆନୁସଙ୍ଗିକ କେତେକ ସାଂସ୍କୃତିକ ବୈଶିଷ୍ଟ୍ୟ (Caltural traits)ର ଉଲ୍ଲେଖ ଅଛି । ଗୀତଟି ଅସମ୍ପୂର୍ଣ୍ଣ, ମଝି ଅଂଶର କେତେକ ପଂକ୍ତି ଉଦ୍ଧାର ସମ୍ଭବ ହୋଇନାହିଁ । ଏ ସତ୍ତ୍ୱେ ଗୀତଟିର ସାମଗ୍ରିକ ଅର୍ଥ ବୁଝିବାରେ ଅସୁବିଧା ହେଉନାହିଁ । କାର୍ତ୍ତିକ ମାସରେ ଦୀପାବଳୀ ଅମାବାସ୍ୟା ପରଦିନ "ପଡ଼ିଆ" ପ୍ରଭାତରୁ ଅଗଣାରେ କମ୍ବା ଖଳାରେ ମୁରୁଜ ଅଥବା ପିଠଉରେ ଅଙ୍କିତ ପାରମ୍ପରିକ ପ୍ରାଚୀନ ହଂସାକୃତ * ବୋଇତ ଚିତ୍ରର କୋଠରିଗୁଡ଼ିକ ମଧ୍ୟରେ ମୁଗ ବିରି ପ୍ରଭୃତି ଶସ୍ୟ, ଛୋଟ ପେଟ୍‌ରା, ପେଡ଼ି, ବାକ୍‌ସ, ବାସନକୁସନ, ନୂଆ ଲୁଗା ପ୍ରଭୃତି ଦ୍ରବ୍ୟ ସାମଗ୍ରୀ ରଖି ବନ୍ଦାପନା ସାରି ପରେ ପରେ ବୋଇତ 'ବୁଡ଼ିଗଲା' 'ବୁଡ଼ିଗଲା' କହି ଅଙ୍କିତ ନୌକାଚିତ୍ର ମଧ୍ୟରୁ ସମସ୍ତ ଦ୍ରବ୍ୟ ସାମଗ୍ରୀ ଘର ଭିତରକୁ ବୋହି ଆଣନ୍ତି । ଗୀତଟି ଗାଇ ବନ୍ଦାପନା କରିବାର ବିଧି ପ୍ରଚଳିତ ଥିଲା । ଗୀତଟି ହେଉଛି—

"ହେ ମାଆ ମଙ୍ଗଳା ଜେ ଜେ ଜେ
ଶଙ୍ଖ ହୁଳହୁଳି ବଜେ ଦେ ।
ବହିଲା କାଲୁଆ ଉତ୍ତର ବାଆ
ମାଝି ମାଲଜାଣି ହୋଇଲା ଠିଆ ।

---

* ପାଇକ ଝେଡା ଅନୁସାରେ ଏ ପ୍ରକାର ବୋଇତର ନାମ "ରାଜପୁର" । ଡ. ମାୟାଧର ମାନସିଂହଙ୍କର ପୁସ୍ତକ (The saga of the 1 and of Jagannath)ରୁ ସଂଗୃହୀତ ।

Digitized by srujanika@gmail.com

ଦେ ମଙ୍ଗୁଆଳ ସୁକାନ ଭିଡ଼
ଦଦେଇ ମଥାରେ ପାଟ ମୁରୁଳି ।
ବଡ଼ ମଝିଆଣୀ ମଥାରେ ଚଡ଼ା

× × ×

ସାନ ମଝିଆଣୀ ଗଜ—
ମଝି ଦଣ୍ଡଆରେ ସୁଙ୍କ ଭେଳା
ତମାଲିଟି ଦେଇ ବୋଇତ ଭେଳା ।

ବହ୍ମରମ ଗାଁ ଜରଦା ପାଟ
କାଠ ଯୋଡ଼ ନଇ ଡାମିଲ୍ ପେଣ୍ଡୁ ।

ଖାଇଚୁଙ୍ଗ କଳା ମୁଗୁନି ଟୋକ
ନବଙ୍ଗି କନିଆଁ ବଇଚ ଟାଣ ।

କାଉଁର ଦେଶରେ ରହିଲେ ରଜା
... ... ... ... ପାଟ ପରଜା ।

× × ×

ଘାଆରେ ବୋଇତା ବହିଲ ବାଆ
ମାଆ ମଙ୍ଗଳାଇ ସୁନ୍ଦର ସାହ୍ମା ।

ବୋଇତାଲ ପୁଅ ସୁକାନ ଟାଣ
ମଝି ଦଣ୍ଡଆର ପଶିଲ ପାଣି ।

ଅଇଲ ବୋଇତ ମକର ଖାଇ
ଜାଗର ଜାଳମି ନବଙ୍ଗ ଖାଇ ।" *

ଉତ୍ତର ବାଲେଶ୍ୱର ଭୋଗରାଇ ଥାନାର ଜମ୍ବୁରାମପୁର ଗ୍ରାମରୁ ପ୍ରାପ୍ତ ଗୋଟିଏ ତାମ୍ର ଶାସନରେ ସମୁଦ୍ର ବର୍ଣ୍ଣନା ବିଶେଷ ଉଲ୍ଲେଖଯୋଗ୍ୟ । ଏହି ତାମ୍ର ଶାସନଟି

* ଶ୍ରୀ ନାରାୟଣ ପ୍ରସାଦ କର, ଗ୍ରାମ—ବାରିପୁର, ଥାନା—ବାସୁଦେବପୁର, ବାଲେଶ୍ୱରଙ୍କ ଦ୍ୱାରା ସଂଗୃହୀତ ।

Digitized by srujanika@gmail.com

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଉତ୍କଳର ଉତ୍ତରାଂଶରେ ଶାସନ କରୁଥିବା ମହାରାଜା ଗୋପଚନ୍ଦ୍ରଙ୍କ ରାଜତ୍ୱର ପ୍ରଥମ ବର୍ଷରେ ଉତ୍କୀର୍ଣ୍ଣ ହୋଇଥିବାର ଜଣାଯାଏ ।

ତାମ୍ରଲିପ୍ତ ବନ୍ଦର ପ୍ରାଚୀନ ଓଡ଼ିଶାର ଗୋଟିଏ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଥିଲା । ଖ୍ରୀ.ପୂ. ତୃତୀୟ ଶତକରେ ମୟୂରଭଞ୍ଜର 'ମୟୂର ଧ୍ୱଜ' ବଂଶୀୟ ରାଜାମାନେ ଏଠାରେ ରାଜ୍ୟ ସ୍ଥାପନ କରି ଶାସନ କରୁଥିଲେ । ଅଶୋକ କଳିଙ୍ଗ ଅଧିକାର କରିବା ପରେ ଏଠାରେ ୨୦୦ ଫୁଟ୍ ଉଚ୍ଚରେ ଗୋଟିଏ ସ୍ତମ୍ଭ ନିର୍ମାଣ କରାଇଥିଲେ । ଏହା ଏକ ପ୍ରସିଦ୍ଧ ବୌଦ୍ଧଧର୍ମ-ଶିକ୍ଷାକେନ୍ଦ୍ର ରୂପେ ପ୍ରତିଷ୍ଠା ପାଇଥିଲା । ଖ୍ରୀଷ୍ଟୀୟ ସପ୍ତମ ଶତକରେ କୈବର୍ତ୍ତ ରାଜା "ମୟୂର ଧଜ" ବଂଶର ଶାସକଙ୍କୁ ପରାସ୍ତ କରି ଏଠାରେ ଶାସନ କଲେ । ସୁବର୍ଣ୍ଣ-ରେଖା କୂଳରେ ପିପିଲି ବନ୍ଦରରେ ବୋଇତ ତିଆରି କାରଖାନା ଥିବାର ଜଣାଯାଏ । ପରବର୍ତ୍ତୀ ସମୟରେ ଖ୍ରୀ. ୧୪୯୮ ଅବ୍ଦରେ ଭାସ୍କୋଡ଼ାଗାମା ଭାରତକୁ ଜଳପଥ ଆବିଷ୍କାର କରିବା ପରେ ପ୍ରଥମେ ପର୍ତ୍ତୁଗୀଜ ନାବିକ ଓ ବଣିକମାନେ ଓଡ଼ିଶାର ବାଲେଶ୍ୱର, ପିପିଲି ଓ ହରିକୂଳଠାରେ ବାଣିଜ୍ୟ କୋଠୀମାନ ତିଆରି କରିଥିଲେ । ଇଂରେଜ ଶାସନ ସମୟରେ ବାଲେଶ୍ୱରଠାରେ ଜାହାଜ ତିଆରି କାରଖାନା ପ୍ରତିଷ୍ଠା କରାଯାଇଥିଲା । ଏ ଅଞ୍ଚଳର ପ୍ରସିଦ୍ଧ କବି ଦୀନକୃଷ୍ଣ ଦାସଙ୍କ 'ପ୍ରସ୍ତାବ ସିନ୍ଧୁ' କାବ୍ୟରେ ପ୍ରାଚୀନ ନୌବାଣିଜ୍ୟ କଥା ବର୍ଣ୍ଣିତ ହୋଇଛି । ନାବରେ ବ୍ୟବହୃତ ବହୁ ପଦାର୍ଥ ବାଲେଶ୍ୱର ଅଞ୍ଚଳର ଭୂଗର୍ଭରୁ ମିଳିଥିବାର ଜଣାଯାଏ ।

ଏ ସମଗ୍ର ଅଞ୍ଚଳରେ "ବୋଇତକଖାରୁ" ବିଶେଷ ଭାବରେ ଉତ୍ପାଦିତ ହୁଏ । ଏହା ବୋଇତାଳୁ ନାମରେ ଖ୍ୟାତ । ଅନ୍ୟ ଦେଶରୁ ଏହା ବୋଇତରେ ଆସିଥିବାରୁ ଏପରି ନାମକରଣ ହୋଇଥିବାର କେତେକ କହନ୍ତି । ବାଲି ଦ୍ୱୀପ ଯାତ୍ରାର ସ୍ମୃତି ସ୍ୱରୂପ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ 'ବାଲିଯାତ୍ରା' ଅନୁଷ୍ଠିତ ହୋଇଥାଏ । ଏ ଅଞ୍ଚଳର ସ୍ତ୍ରୀ ଲୋକମାନେ କାର୍ତ୍ତିକ ସ୍ନାନ କରି "ଆକାମାଭୈ" କହି ବାଲୁକା ସ୍ଥାପନ କରିଥାନ୍ତି । ଭାରତର ଅନ୍ୟ ପ୍ରଦେଶମାନଙ୍କରେ କାର୍ତ୍ତିକ ପୂର୍ଣ୍ଣିମା ସ୍ନାନ ପ୍ରଚଳିତ ହେଲେହେଁ କଦଳୀ ବାହୁଙ୍ଗାରେ ନୌକା ଭସାଇବା ପ୍ରଥା କେବଳ ଓଡ଼ିଶା ଓ ମେଦିନୀପୁର ଅଞ୍ଚଳରେ ଦେଖାଯାଏ ।

ଏ ଅଞ୍ଚଳର ସମୃଦ୍ଧ ପ୍ରାଚୀନ ବାଣିଜ୍ୟିକ ପରମ୍ପରା ସମ୍ପର୍କରେ ଜଗମୋହନ ପଣ୍ଡିତ ଲେଖିଛନ୍ତି—

"ମଣ୍ଡଲ ଦକ୍ଷେ ଦକ୍ଷିଣେ ଚ ହୈଣ୍ଡ୍ରାଲସ୍ୟ ଚ ଦ୍ୟୁତିରେ
ତାମ୍ରଲିପ୍ତାକ୍ଷ ଦେଶେ ଚ ବାଣିଜ୍ୟଂ ଚ ନିବାସ ଭୂଃ,... ।" ଇତ୍ୟାଦି ।

Digitized by srujanika@gmail.com

**ଲୋକ ବିଶ୍ୱାସ :**

ଆଲୋଚ୍ୟ ଅଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ବହୁ ଓ ବିଭିନ୍ନ ପ୍ରକାର ବିଶ୍ୱାସ ଓ ସଂସ୍କାର ପ୍ରଚଳିତ । ଏ ସବୁ ବିଶ୍ୱାସର ସୃଷ୍ଟି ମୂଳରେ ଧର୍ମୀୟ ଭାବ ପ୍ରତିଷ୍ଠିତ । ଏ ସବୁର ସମର୍ଥନ ସୂଚକ ବହୁ ଲୋକୋକ୍ତି ମଧ୍ୟ ପ୍ରଚଳିତ ।

ନିମ୍ବ ଗଛ 'ଜାଳେଣୀ' ରୂପେ ବ୍ୟବହୃତ ହୁଏ ନାହିଁ । ଏହି କାଠରେ ଘର କବାଟରେ ଚୌକାଠ ତିଆରି ନ କରିବା ବିଧି । ଦାରୁରୂପୀ ଜଗନ୍ନାଥ ନିମ୍ବ କାଠରେ ତିଆରି ହୋଇଥିବାରୁ ଏହି ବୃକ୍ଷକୁ ଏ ଅଞ୍ଚଳର ଲୋକ ସମାଜ ପୂଜା ଓ ସମ୍ମାନ ପ୍ରଦର୍ଶନ କରିଥାନ୍ତି ।

ଭଗବାନ ରୂପୀ ଅଶ୍ୱତ୍ଥ ଓ ବର ବୃକ୍ଷକୁ ହିନ୍ଦୁମାନେ ଜାଳନ୍ତି ନାହିଁ । ବେଲ ବୃକ୍ଷ ମୂଳରେ ଶିବ ବିଶ୍ରାମ କରିଥାନ୍ତି । ଏହା ଜାଳିବା ନିଷେଧ । ବର, ଅଶ୍ୱତ୍ଥ, ବେଲ, ନିମ୍ବଗଛ ମୂଳରେ ହିନ୍ଦୁମାନେ କାର୍ତ୍ତିକ, ମାଘ ଓ ବୈଶାଖ ମାସରେ ଜଳଦାନ କରିଥାନ୍ତି । ତୁଳସୀ ଦେବୀ ଅତ୍ୟନ୍ତ ସମ୍ମାନିତା ହୋଇଥାନ୍ତି ।

ଆମ୍ବଗଛ ସତ୍ୟଯୁଗର ଏ ଅଞ୍ଚଳ ଜନ ସମାଜରେ ଆମ୍ର ବୃକ୍ଷ ସତ୍ୟ ରୂପରେ ବିଦ୍ୟମାନ । ପ୍ରଥମ ଫଳିଥିବା କୌଣସି ଆମ୍ବ ଗଛରୁ ଯଦି କେହି ଫଳ ଚୋରି କରିନିଏ । ତେବେ ସେ ଗଛରେ ଆଉ କେବେ ଆମ୍ବ ଫଳିବ ନାହିଁ । ତୁଣ୍ଟୁକା କଲେ ଫଳ ଧରେ । ସ୍ୱାମୀ ଆଉ ସ୍ତ୍ରୀ ମଲେ, ତାକୁ ଶ୍ମଶାନକୁ ନେବା ବେଳେ "ଅହିଅ ଡେଙ୍ଗୁରି" ବାଜିବା ସମୟରେ ଉପରୋକ୍ତ ଗଛଟିକୁ 'ଦାଗୀ' ଅର୍ଥାତ୍ କାଟି) ଦେଲେ ଦୋଷ କଟିଯାଇ ପୁଣି ଫଳ ଧରେ ।

ବୁଢ଼ା/ବୁଢ଼ୀ ମଲାପରେ ନାତି (ପୁଅର ପୁଅ)ର ସ୍ମାରକୀ ସ୍ୱରୂପ "ବଜାହାଣ୍ଡି" ଦେବା ପ୍ରଚଳିତ । ଶ୍ମଶାନରେ ଅଛଡ଼ା ବାଉଁଶରେ କେତୋଟି ହାଣ୍ଡି କୁଣ୍ଡି ଶିକାରେ 'ଝୁଲାଇ' ଦିଆଯାଏ । ଏପରି ବିଶ୍ୱାସ ସମ୍ପର୍କରେ ପ୍ରଚଳିତ ଲୋକ କଥାଟି ହେଉଛି—

"ପୁଅର ପୁଅ ନାତି, ସ୍ୱର୍ଗେ ଦେବ ବାତି ।"

"ଘରର ଦୁଆରମୁହଁ ପୂର୍ବକୁ କିମ୍ବା ଦକ୍ଷିଣକୁ କରିବା ପ୍ରଥା ପ୍ରଚଳିତ । ଏହା ବିଜ୍ଞାନ ସମ୍ମତ । ଏପରି ଲୋକ ବିଶ୍ୱାସର ମୂଳରେ ପ୍ରଚଳିତ ଲୋକକଥାଟି ହେଉଛି—

ଦକ୍ଷିଣ ଦୁଆରି ରଣେ ଭଣେ
ପୂରୁବ ଦୁଆରି ଘରଣୀ ଗୁଣେ
ଉତ୍ତର ଦୁଆରି ଭୁଗେ ଶୀତ
ପଶ୍ଚିମ ଦୁଆରି ମାଗେ ଭିକ ।

Digitized by srujanika@gmail.com

ମଙ୍ଗଳବାର ଓ ଶନିବାରରେ ବାଉଁଶ ଗଛ କାଟିବା ନିଷେଧ । 'ସିହୁଁ ଗଛ' "ବିଷ୍ମ" (ବାସେଲୀ) ରୂପରେ ପୂଜିତ ।

ଶୀତଋତୁର ଆରମ୍ଭରେ ଆକାଶରେ ମେଘ ଦେଖାଦେଲେ ଗ୍ରାମାଞ୍ଚଳର ଲୋକେ ଏହାକୁ "ବଢ଼ଦଆ ମେଘ" ବୋଲି ଅଭିହିତ କରି ବଢ଼ି ଉଆଁର କରି ଶୁଖାଇ-ଥିବା ଜଣା କିମ୍ବା ଅଜଣା ଗୃହିଣୀଙ୍କ ଉଦ୍ଦେଶ୍ୟରେ ଅସନ୍ତୋଷ ପ୍ରକାଶ କରିଥାନ୍ତି । ଶୀତଋତୁ ଆରମ୍ଭରେ, ମାର୍ଗଶୀର ଓ ପୌଷ ମାସରେ ସାଧାରଣତଃ ଗ୍ରାମାଞ୍ଚଳରେ ବଢ଼ି ଉଆଁର କରାଯାଏ । ଏ ସମୟରେ ମେଘ ହେଲେ ବେଶି ଶୀତ ହେବା ସାଙ୍ଗକୁ ଉପୁଜୁଥିବା ନାନା ଅସୁବିଧା ହେତୁ ଲୋକ ସମାଜରେ ଏପରି ବିଶ୍ୱାସ ପ୍ରଚଳିତ ।

ଅସ୍କରା ଅଥବା ଘୂରନ୍ତୁର ପୋକ ମାରିଲେ ଯମ ଦେବତା ଖୁସି ହୁଅନ୍ତି— ପୋକ ମାରିଥିବା ଲୋକର ବିଶ୍ୱାସ ।

ଅନୁକୂଳ କରି ବାହାରିବା ସମୟରେ ପଛରୁ ଡାକିବା ନିଷେଧ । ପଛରୁ ମାଆ ଡାକିଲେ ଶୁଭ ହୁଏ । ଯାତ୍ରା କାଳେ "ଛିଙ୍କ" କାର୍ଯ୍ୟ ଅସିଦ୍ଧିର ଲକ୍ଷଣ । ରାତିରେ ସାପ ନାଁ ନ ଧରିବା, ନାରଦଙ୍କ କଳିମୁଣି ପ୍ରଭୃତି ବହୁ ପ୍ରଚଳିତ ଲୋକ ବିଶ୍ୱାସ । ଗୋ କନ୍ୟା, ଭୂମି ଭାଗ୍ୟ—ଏପରି ବିଶ୍ୱାସ ସର୍ବତ୍ର ପ୍ରଚଳିତ । କନ୍ୟା ଓ ଭୂମି ନିର୍ବାଚନ ବିଷୟରେ ପ୍ରଚଳିତ ଲୋକୋକ୍ତି ହେଉଛି 'ବହୁ କରିବୁ କାଙ୍କି, ଭୂଇଁ କରିବୁ ବାଙ୍କି ।"

ଲୋକ ଚରିତ୍ର ଅଧ୍ୟୟନ ଲୋକ ବିଶ୍ୱାସର ଅନ୍ୟ ଏକ ଦିଗ । ଓଡ଼ିଶାରେ ପ୍ରଚଳିତ ଲୋକୋକ୍ତି ହେଉଛି—

"ଆକଟ କାମକୁ ଥିଇରି ଗ୍ଲାନି, ତାକୁ ଜାଣିବ ପର
ହାଇ ଘନଘନ କେଶ ମୁକୁଳା, ତାକୁ ଜାଣିବ ଜ୍ୱର
କଳି ପଛେ ପଛେ କଅଁଳା କଥା, ତାକୁ ଜାଣିବ ବର
ସଞ୍ଜ ବେଳକୁ କବାଟ ଦିଆ ରାତି ନଥିଲା ଘର ।" *

ଆଲୋଚ୍ୟ ଅଞ୍ଚଳରେ ଖନା ବଚନ, ଦନାଇ ବଚନ, ଡାକ ବଚନର ପ୍ରଚଳନ ଅଛି । ଏ ସବୁରୁ ଲୋକ ଚରିତ୍ର, ଲୋକ ବିଶ୍ୱାସ, ଲୋକ ଆଗ୍ରହ ପ୍ରଭୃତି ସ୍ପଷ୍ଟ ପ୍ରତିପାଦିତ ହୁଏ ।

* ଶ୍ରୀ ନୀଳମଣି ମିଶ୍ରଙ୍କ ପ୍ରବନ୍ଧ, ଓଡ଼ିଶାର ଲୋକ ସଂସ୍କୃତି, ୧୯୮୫ । ପୃ-୬୭ ।

Digitized by srujanika@gmail.com

ଭୂତ, ଡାହାଣୀ ଲଗିବା, ଗୁଣିଆ ଆଣି ଫୁଙ୍କିବା, ଗୁନ୍ଥୁକା କରିବା, ଗୁଣୀ ଗାରେଡ଼ି ପ୍ରୟୋଗ ଇତ୍ୟାଦି ବହୁ ଯନ୍ତ୍ର, ମନ୍ତ୍ରର ପ୍ରଚଳନ ଦେଖିବାକୁ ମିଳେ ।

ସାରଳା ମହାଭାରତର ବିଭିନ୍ନ ଆପ୍ତବାକ୍ୟ ଯଥା—କାର୍ଯ୍ୟସିଦ୍ଧି ନିମନ୍ତେ ଭଗବାନଙ୍କର ଗଧ ପାଦ ଧରିବା, ଛଅାଁସୀ କନ୍ୟାକୁ ସାହାଡ଼ା ବର, ତୁଳସୀ ବଣିଆ, ବାଘ ଇତ୍ୟାଦି ପ୍ରଚଳିତ । ଚକୁଳିଆ ପଣ୍ଡା କଥା, ବଡ଼ବଡ଼ୁଆ କଥା, ଋଷି ବଚନ ପ୍ରଭୃତି ବିଶେଷ ପ୍ରଚଳିତ । ମୋଟ ଉପରେ ଜୀବନର ଯାବତୀୟ ଧର୍ମ, କର୍ମ, ସ୍ୱାସ୍ଥ୍ୟ, ପର୍ବ, ପୂନିଅଁ, ବାରବ୍ରତ, ଓଷା ପର୍ବପର୍ବାଣୀ ସବୁ ଲୋକ ବିଶ୍ୱାସ ଉପରେ ପ୍ରତିଷ୍ଠିତ ।

ସାରଳା ମହାଭାରତରେ ବର୍ଣ୍ଣିତ ଓଡ଼ିଆ ସମାଜର ଚିତ୍ର ଓଡ଼ିଶାର ଅନ୍ୟସ୍ଥାନ ପରି ଏ ଅଞ୍ଚଳର ଲୋକ ସମାଜରେ ଏବେ ମଧ୍ୟ ପ୍ରଚଳିତ ।

**ଲୋକକଳା :**

"ମାନବ ସମାଜ ବା ଗୋଷ୍ଠୀ ବିଶେଷର ସାମୂହିକ ଭାବଧାରର ଏକ ଶୈଳ୍ପିକ ପରିପ୍ରକାଶ ହେଉଛି ଲୋକକଳା । ଏକ ସାମଗ୍ରିକ ସୌନ୍ଦର୍ଯ୍ୟବୋଧର ନିର୍ଯ୍ୟାସ ଲୋକ-କଳା ମଧ୍ୟଦେଇ ପ୍ରକାଶ ପାଇଥାଏ ।"(୧୬) ପ୍ରତିଦିନର ବ୍ୟବହୃତ ଛୋଟ ଛୋଟ ସାମଗ୍ରୀ ମଧ୍ୟଦେଇ ତା' ପ୍ରକାଶ ଲାଭ କରେ । ଆଲୋଚ୍ୟ ଆଞ୍ଚଳିକ ଭୂଖଣ୍ଡର ଅଧିବାସୀ-ମାନଙ୍କର ଦୈନନ୍ଦିନ ଜୀବନ ଚର୍ଯ୍ୟା ପାରମ୍ପରିକ ଗୋଷ୍ଠୀଗତ ଆଶା ଓ ବିଶ୍ୱାସ, ଆଚାର ଓ ଅନୁଷ୍ଠାନ, ଧାର୍ମିକ ଉପଚାର ମଧ୍ୟରେ ସରଳ ଓ ପ୍ରାକୃତିକ ଭାବରେ ଯେଉଁ ଚିତ୍ର ସୁଷମା ଫୁଟି ଉଠିଛି, ସେହି ବର୍ଣ୍ଣ ବୈଭବକୁ ଏଠାରେ ଉଲ୍ଲେଖ କରାଯାଉଛି ।

ଭିତ୍ତିଚିତ୍ରଣ ଲୋକକଳାର ଏକ ପ୍ରଧାନ ବିଭାଗ । ଆଦିମ ମନୁଷ୍ୟର ଗୁହାଚିତ୍ର-ଠାରୁ ଏ ଯୁଗର ଜନବସତିର ଗୃହ କାନ୍ଥରେ ଥିବା ଚିତ୍ର ଲୋକକଳାର ବିବର୍ତ୍ତନଶୀଳ ପରମ୍ପରା । ଘର ସଜେଇବା ମନୁଷ୍ୟର ଆଦିମତମ ପ୍ରବୃତ୍ତି । ଆଦିବାସୀ ଅଞ୍ଚଳରେ ଘର କାନ୍ଥ ଲିପାପୋଛା କରି ବିଭିନ୍ନ ମାଟିର ରଙ୍ଗରେ ଚିତ୍ରିତ କରାଯାଏ । ମୟୂରଭଞ୍ଜ—ମେଦିନୀପୁରର ସାନ୍ତାଳ, ମାହାଲି, ଗଣ୍ଡ, ବାଥୁଡ଼ିମାନଙ୍କର ଘରର ମାଟି କାନ୍ଥ ବିଭିନ୍ନ ରଙ୍ଗ ମାଟିରେ, ବ୍ୟାଟେରି ଭାଙ୍ଗି କଳା ରଙ୍ଗରେ ଲିପାଯାଇ ସୁଶୋଭିତ ହୋଇଥାଏ । ଗେରୁମାଟି, କୁଟାପୋଡ଼ା ପାଉଁଶ, ଅବ୍ୟବହୃତ ଟର୍ଚ୍ଚ ବ୍ୟାଟେରି, ଧଳା ରଙ୍ଗର ମାଟିରେ ଘରର କାନ୍ଥ ଥାକ ଥାକ କରି ଲିପିବା ଏକ ପାରମ୍ପରିକ ଅଭ୍ୟାସ । ସାନ୍ତାଳ ଗୋଷ୍ଠୀ ଶିକାର ପ୍ରିୟ ଓ ଶିକାର ଚିତ୍ର ଏମାନଙ୍କର ଅତି ଆଦରର ବିଷୟ । ସାନ୍ତାଳ ବାହା-ଘରରେ ପାଲିଙ୍କି ଉପରେ ଥିବା ଶିକାର ଦୃଶ୍ୟର କାଠ ଖୋଦେଇ, ବାଙ୍କୁଲି ବାଡ଼ିର ମୁଣ୍ଡରେ ପଶୁଚିତ୍ର ଖୋଦେଇ, ବିଭିନ୍ନ ଅଳଙ୍କାରରେ ବିଭିନ୍ନ ଚିତ୍ର । ଆରଣ୍ୟକ ଫୁଲ

Digitized by srujanika@gmail.com

ଫଳର ଚିତ୍ର, ଏସବୁର ପ୍ରକୃଷ୍ଟ ଉଦାହରଣ । ପୁରପଲ୍ଲୀର ମାଟି କାନ୍ଥ ଉପରେ ଗେରୁର ଆସ୍ତରଣ ଦେଇ ଚିତ୍ର କରାଯାଏ । ଚିତ୍ରଗୁଡ଼ିକ ମଧ୍ୟରେ ଶସ୍ୟର ସାଙ୍କେତିକ ରୂପ ମୁଖ୍ୟ ସ୍ଥାନ ଗ୍ରହଣ କରେ । ହାତର ଆଙ୍ଗୁଳିକୁ ପିଠଉରେ ବୁଡ଼ାଇ କାନ୍ଥ ଉପରେ କ୍ରମ ସଙ୍କୁଚିତ ବିନ୍ଦୁମାନଙ୍କ ସମାହାରରେ ପିରାମିଡ଼୍ ସଦୃଶ ଚିତ୍ର (କଉଡ଼ିଆ ଝୋଟି) ଅଙ୍କନ କରାଯାଏ । ଏହି ଚିତ୍ର ଉପରେ ପିଠଉ ପାଣି ଛିଞ୍ଚି ଧାନ ଶୀର୍ଷାର ଧାରଣା ସୃଷ୍ଟି କରାଯାଏ । କାନ୍ଥ ଚିତ୍ର ବ୍ୟତୀତ ପର୍ବପର୍ବାଣୀ ଉପଲକ୍ଷେ ଘର ଓ ଘର ଦାଣ୍ଡକୁ ଲିପା-ପୋଛା କରି ଚିତା ଦେବା ଏକ ପରମ୍ପରା । ଲୋକ ପରମ୍ପରା ପର୍ବପର୍ବାଣୀ ସହିତ ଲୋକ-କଳାର ସମ୍ପର୍କ ଘନିଷ୍ଠ । ଭୂପୃଷ୍ଠରେ ଚିତା ଓ ମୁରୁଜ ଲେଖି ଧରଣୀ ମାତାଙ୍କୁ ସମ୍ମାନ ଦିଆଯିବା ବିଧି । ମାର୍ଗଶୀର ଗୁରୁବାରରେ ଯେଉଁ ସବୁ ଚିତା ଲେଖାଯାଏ, ତାହା ଓଡ଼ିଆ ନାରୀର ସହଜାତ କଳାର ଉତ୍କର୍ଷ ପ୍ରତିପାଦନ କରେ । ପୂର୍ଣ୍ଣକୁମ୍ଭ, ଓଲଟମାଛ, ଷୋଳକୋଠି ପଦ୍ମ, ଛତ୍ର, ସ୍ୱସ୍ତିକ, ମୟୁର, ଗାଈ, ଶଙ୍ଖ, ଚନ୍ଦ୍ରଧାରୀ, ପ୍ରଜାପତି ପ୍ରଭୃତି ଅଙ୍କିତ ଚିତ୍ର ଅତି ଶୋଭନୀୟ । ମକର ସଂକ୍ରାନ୍ତିରେ ପ୍ରତ୍ୟେକ କୃଷକ ଘରେ ଓ ଖଳାରେ ଗୋବର ଲେପି, ମରେଇ, ଢେଙ୍କିଶାଳରେ ଗୋବର ଲେପି, ଝରକା କବାଟରେ ଗୋବର ଲେପି ପବିତ୍ର କରାଇ ସିନ୍ଦୂର ପିଠଉରେ ଚିତାଦେବା ବିଧି । ଖଳାରେ ବିଭିନ୍ନ କୃଷି ଉପକରଣ ଚିତ୍ର ଆଙ୍କି ତହିଁରେ ବିଭିନ୍ନ ଶସ୍ୟ ରଖି ପୂଜା କରିବା ବିଧି । ଦୋଳ ସମୟରେ ଫଗୁ ଖେଳିବା, ଘର ବାହାର ଲିପିପୋଛି ପରିଷ୍କାର କରି ଚିତା ଦେବା, ରଙ୍ଗ ବେରଙ୍ଗ ଶାଢ଼ୀ ପିନ୍ଧି ଚୈତ୍ର ମଙ୍ଗଳବାରରେ ଚିତା, ବୈଶାଖ ମାସରେ ବସୁନ୍ଧରା ଦେବା ନିମନ୍ତେ ମାଟିର ଗ୍ଲେଟ ଠେକଟିରେ ଲାଲ, ଗେରୁ ରଙ୍ଗ ଓ ପିଠଉରେ ଚିତା ଲେଖି ତୁଳସୀ ଚଉରାରେ ଟାଙ୍ଗି ପାଣିଦେବା, ବିବାହ ବ୍ରତରେ ଗେରୁ ଓ ପିଠଉରେ ବିବାହ ଦୃଶ୍ୟ, ପାଲିଙ୍କି, ବାଦ୍ୟ-ବାଦ୍ୟକାର, ଖରୁଆ, ଫୁଲଫଳ ହାତୀ ଗୁଆ ମାଛ ଘଟ ସ୍ୱସ୍ତିକ ପ୍ରଭୃତିର ଚିତ୍ର, ବେଦୀରେ ମୁରୁଜ ପିଠଉର ଚିତ୍ର, ମିଠେଇ ହାଣ୍ଡି-ଗୁଡ଼ିକରେ ଅଳତା ଓ ପିଠଉରେ ବିଭିନ୍ନ ଚିତ୍ର ଶୋଭାପାଏ । ରେଖା ଓ ସାବଲୀଳ ଭଙ୍ଗୀ ଏ ଚିତ୍ରଗୁଡ଼ିକର ବିଶେଷତ୍ୱ । ଗ୍ରାମାଞ୍ଚଳରେ ପିଠଉ ଓ ଅରୁଆ ଗୁଣ୍ଡଳା ଚୂନା, କୃଷ୍ଣଚୂଡ଼ା ପତ୍ର ଚୂର୍ଣ୍ଣ ବିଭିନ୍ନ ରଙ୍ଗର ମାଟି, ନଡ଼ିଆ ସଢ଼ା ପୋଡ଼ା କଳାରଙ୍ଗ ମୁରୁଜ ପ୍ରଭୃତି ଉପକରଣ ପଲ୍ଲୀ ଲଳନାର—ପାରମ୍ପରିକ ରୂପ ସଜ୍ଜାର ବସ୍ତୁ । ଅଙ୍ଗୁଳିରେ କିଆ ଚେର, ବେଣା ଚେର, ଦୁବଘାସ ଗୁଡ଼େଇ, କାଠିରେ କନା ଗୁଡ଼େଇ ତୂଳୀ ପ୍ରସ୍ତୁତ କରାଯାଏ । ପାନପତ୍ର, ଗୁଟିଫୁଟିକା ଫଳରେ କାନ୍ଥରେ, ପିଣ୍ଡାରେ, ଦ୍ୱାର ଦନ୍ତରେ ଝୋଟି ଆଙ୍କି କଳାର ପ୍ରକାଶ କରାଯାଏ ।

କୁଆଁର ପୁନେଇଁ ଜହ୍ନକୁ କୁମାରୀ କନ୍ୟାମାନେ ଖଇଦେବା ପୂର୍ବରୁ ତୁଳସୀ ଚଉରାମୂଳ ଲିପି ପୋଛି ଚିତା ମୁରୁଜ ଆଙ୍କି କଇଁ ଫୁଲରେ ଷୋହଳ କୋଠି ନିର୍ମାଣ

Digitized by srujanika@gmail.com

କରନ୍ତି । ପ୍ରଥମାଷ୍ଟମୀରେ ମାଆ ପ୍ରଥମ ସନ୍ତାନର ମଙ୍ଗଳ କାମନା କରି ଚିତା ଆଙ୍କିବା ପ୍ରଭୃତିରେ ନାରୀ ମନର ଶୁଭ ଚିନ୍ତାର କଳାତ୍ମକ ପରିପ୍ରକାଶ ଘଟିଥାଏ । କାର୍ତ୍ତିକ ମାସରେ ପଞ୍ଚକ ଓ ବୋଇତ ବନ୍ଦାଣ ଉତ୍ସବ ସମୟରେ ଚିତା, ମୁରୁଜ, ଝୋଟି ସବୁ ଆଙ୍କି ପରିଶୋଭିତ କରିବା ସହିତ କଦଳୀ ବାସୁଙ୍ଗାକୁ ବିଭିନ୍ନ ଲତା, ପତ୍ର, ଫୁଲ ଓ ରଙ୍ଗରେ ସଜେଇ ଭସେଇଥାନ୍ତି । ଝିଅ ଶାଶୁ ଘରକୁ ଯିବାବେଳେ ମିଠେଇ ହାଣ୍ଡି ଚିତ୍ରିତ କରି ମିଠେଇ ଭର୍ତ୍ତି କରିଦେବା, ପିଲାର ଏକୋଇଶା, ଷଠିଘରା ପ୍ରଭୃତିରେ ଚିତା ମୁରୁଜ ଅଙ୍କାଯାଏ ।

ଗ୍ରାମାଞ୍ଚଳରେ ସ୍ତ୍ରୀ ଲୋକେ ଗୁରୁବାର ଓଷାରେ କପରି ଚିତ୍ର ଲେଖନ୍ତି ବଳରାମ ଦାସଙ୍କ "ମହାଲକ୍ଷ୍ମୀ" ପୁରାଣରେ ତାର ଉଲ୍ଲେଖ ଦେଖାଯାଏ ।

ଦୁର୍ଗାପୂଜା ସମୟରେ "ବେଲବରଣ" ଦିନ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥ ଘର-କବାଟ, ଝରକା ବନ୍ଧରେ ଗୋବର ଲେପ ଦେଇ ଗେରୁ ରଙ୍ଗର ଟିପା ଲଗାନ୍ତି । କେତେକ ଅଞ୍ଚଳରେ ଧଳା ରଙ୍ଗର ଖଡ଼ିରେ ତିନ, ପାଞ୍ଚ, ସାତ କ୍ରମରେ ଚୋପାଗୁଡ଼ିକ ପିରାମିଡ଼ ଆକାରରେ ସଜାଇ ଧଳା ବିନ୍ଦୁ ଉପରେ ସିନ୍ଦୂର ବିନ୍ଦୁ ଲଗାଇ ଦିଆଯାଏ । ଧଳା ବିନ୍ଦୁ ଉପରେ ସିନ୍ଦୂର ବିନ୍ଦୁଗୁଡ଼ିକ ଶିବଙ୍କ ଉପରେ ଶକ୍ତିର ପ୍ରତୀକ ବୋଲି ବିଶ୍ୱାସ କରାଯାଏ । ପୌରାଣିକ ବ୍ରତ ଓ ପର୍ବପର୍ବାଣୀ ବ୍ୟତୀତ ଲୌକିକ ପର୍ବପର୍ବାଣୀରେ ମଧ୍ୟ ଚିତା ମୁରୁଜ ଦିଆଯାଏ । ଏହା ଆଦିବାସୀ ଓ ଅଣ ଆଦିବାସୀ ସମସ୍ତଙ୍କ ମଧ୍ୟରେ ପ୍ରଚଳିତ ।

ଆଲୋଚ୍ୟ ସମଗ୍ର ଅଞ୍ଚଳରେ ଚୈତ୍ର ପର୍ବରେ ମନ୍ଦିର ମଧ୍ୟରେ ପ୍ରତ୍ୟେକ ଭକ୍ତାଙ୍କର ଘରେ, ଘଟ ଆସିଲାବେଳେ ଗ୍ରାମ ରାସ୍ତାରେ ଗୋବର ଲିପି ପିଠଉ, ରଙ୍ଗ, ସିନ୍ଦୂର ଦେଇ ବିଭିନ୍ନ ଝୋଟି ଅଙ୍କାଯାଏ । ମନ୍ଦିର ମଧ୍ୟରେ ଚିତା ଓ ମୁରୁଜରେ ବିଭିନ୍ନ ମଣ୍ଡଳ କଟାଯାଇ ଘଟ ସ୍ଥାପନ କରାଯାଏ । ମକର ପର୍ବ ସମୟରେ ଗ୍ରାମର ପ୍ରତ୍ୟେକ ଗୃହସ୍ଥ ଘର ଲିପି ରଙ୍ଗ ଦେଇ ସଜାଇଥାନ୍ତି । ଆଦିବାସୀମାନଙ୍କ ବିଭିନ୍ନ ପର୍ବ ସମୟରେ ଯଥା— କରମ, ଜାନ୍ତୁଆ, ଛତା, ବାନ୍ଦଣା, ସାରୁଲ ପ୍ରଭୃତି ପ୍ରତ୍ୟେକ ପର୍ବରେ ଜାହିରା ଥାନ, ବଡ଼ାମଥାନ, ଗ୍ରାମ ଦେବତା, ଦେଶାଉଲି ବଙ୍ଗା, ଭୈରବଶାଳ ପ୍ରଭୃତି ସ୍ଥାନମାନଙ୍କରେ ଚିତା ମୁରୁଜ ସିନ୍ଦୂର ପ୍ରଭୃତିର ବ୍ୟବହାର ଲକ୍ଷ୍ୟ କରାଯାଏ । ଆଦିବାସୀ ବାହାଘରରେ ସିନ୍ଦୂରର ବ୍ୟବହାର ସହିତ ଝୋଟି ଆଙ୍କିବା, ରଙ୍ଗ ଖେଳିବା ପ୍ରଭୃତିର ବ୍ୟବହାର ଦେଖାଯାଏ ।

ବିଭିନ୍ନ ପର୍ବ ସମୟରେ, ବିବାହ ବେଳେ ହୁଳହୁଳି ଦେବା ପ୍ରାୟ ସର୍ବତ୍ର ସବୁ ସମାଜରେ ଦେଖାଯାଏ ।

Digitized by srujanika@gmail.com

ନିଜ ଶରୀରରେ ଚିତା କୁଟାଇବା, ବିଭିନ୍ନ ପତ୍ର ଫୁଲ, କଣ୍ଠିମାଳ, ପଥରର ବିଭିନ୍ନ ଅଳଙ୍କାର ନାଇବା ଓ ବେଶଭୂଷାରେ ନିଜକୁ ସଜ୍ଜିତ କରିବା ନାରୀ ମନର ଏକ ଆଦିମ ପିପାସା । ପ୍ରାଚୀନ ଓଡ଼ିଶାରେ ନାରୀମାନେ ନିଜକୁ ନାନାପ୍ରକାର ଆକର୍ଷଣୀୟ ଉପାଦାନରେ ମଣ୍ଡିତ କରୁଥିଲେ । ବାହ୍ୟ ଆବରଣ ବ୍ୟତିତ ଦେହର ଚର୍ମକୁ ବିଭିନ୍ନ ପ୍ରକାରେ ଶୋଭନୀୟ କରାଯାଉଥିଲା । ଏଥିପାଇଁ ତେଲ, ହଳଦୀ, ବିଭିନ୍ନ ପତ୍ରର ରସ, ଲାକ୍ଷା, କୁଙ୍କୁମ, ଚନ୍ଦନ, ସିନ୍ଦୂର, କଜ୍ଜଳ, କସ୍ତୁରୀ, ତିଳକ ଓ ଗୋରଚନା ପ୍ରଭୃତି ବ୍ୟବହୃତ ହେଉଥିଲା ।

କେଶ ବିନ୍ୟାସ କରିବା ଏକ ପ୍ରାଚୀନ କଳା । ନାରୀ ଓ ପୁରୁଷ ଉଭୟେ କେଶସଜ୍ଜା କରିଥାନ୍ତି । ବିଶେଷତଃ ନାରୀମାନେ ଏ କଳାରେ ସିଦ୍ଧହସ୍ତା । ଆଲୋଚ୍ୟ ସମଗ୍ର ଅଞ୍ଚଳରେ ନାରୀ ପୁରୁଷ ଉଭୟେ ଏ କଳା ପ୍ରତି ଆଗ୍ରହୀ ।

ପୋଡ଼ାମାଟି କଣ୍ଢେଇ, ମାଟିର ପୋଡ଼ା ହାତୀ, ମଣିଷ, ଦୀପ, ଧୂଣାସରା ପ୍ରଭୃତି ଗାଁମୁଣ୍ଡ ଗଛ ପାଖରେ, ଗ୍ରାମ ଦେବତାଙ୍କ ଆସ୍ଥାନରେ ଏସବୁ ପୂଜା ପାଆନ୍ତି । ଦୁଆର-ସୁଣୀ, ବାସେଲୀ, ବଡ଼ାମ୍ ଶାଳ, ନାହରଥାନ ପ୍ରଭୃତିରେ ଘୋଡ଼ା ହାତୀ ଦେଇ ଉପାସନା କରିବା ପ୍ରଥା ପ୍ରଚଳିତ । ମୟୂରଭଞ୍ଜର ବାଙ୍ଗିରିପୋଷି ବ୍ଲକର ମୁଣ୍ଡାକଟା, ବାରିପଦାର ଶ୍ରୀନଗଡ଼ିଆ ପ୍ରଭୃତି ଅଞ୍ଚଳ ସମେତ ସମଗ୍ର ଆଲୋଚ୍ୟ ଅଞ୍ଚଳରେ କୁମ୍ଭାରମାନେ ଏପରି ଘୋଡ଼ା, ହାତୀ, କଣ୍ଢେଇ ସବୁ ତିଆରି କରନ୍ତି ।

ବିଭିନ୍ନ ଅଞ୍ଚଳରେ ମୁଖା ନିର୍ମାଣ ଅତି ପ୍ରାଚୀନ କାଳର ପରମ୍ପରା । ଅରଣ୍ୟର ଶିକାରୀ ମନୁଷ୍ୟ ପଶୁ ଭାବରେ ନିଜକୁ ସଜାଇ ସହଜରେ ଶିକାର କରୁଥିଲା । ଶିକାର ପାଇଁ ଏହା ଏକ କୌଶଳ ରୂପେ ବ୍ୟବହୃତ ହେଉଥିଲା । ଭୂୟାଁ, ବାଥୁଡ଼ି, ସାନ୍ତାଳ, ଭୂମିଜ ପ୍ରଭୃତି ଆଦିବାସୀମାନଙ୍କ ମଧ୍ୟରେ ମୁଖାର ପ୍ରଚଳନ ଅତି ପ୍ରାଚୀନ । କାଠ, ବାଉଁଶ, ଲାଉରେ ଅଡ଼ୁଆ କେଶ, ଝୋଟ, ଛଣି, ପକ୍ଷୀର ପର ସହିତ ବିଭିନ୍ନ ରଙ୍ଗରେ ସଜାଇ ମୁଖା ତିଆରି ହୁଏ । ଶସ୍ୟ କ୍ଷେତକୁ ବନ୍ୟଜନ୍ତୁଙ୍କ କୁ-ଦୃଷ୍ଟିରୁ ରକ୍ଷା କରିବା ପାଇଁ ମାଟିହାଣ୍ଡିକୁ ବିଭିନ୍ନ ରଙ୍ଗରେ ସଜାଇ, ଗୋବରମୁହାଁ, କୁଟା ଓ ମାଟିରେ ତିଆରି ମୁହାଁ ଦେଇ ଶସ୍ୟ କ୍ଷେତରେ ରଖିବା ଏକ ପ୍ରାଚୀନ ପ୍ରଚଳିତ ପରମ୍ପରା । ଷଣ୍ଢ ନାଚ, ଭାଲୁ ନାଚ, ଛଉ ନାଚରେ ମୁଖା ବ୍ୟବହାର ବହୁଳ ଓ ପ୍ରାଚୀନ । ଆଲୋଚ୍ୟ ସମଗ୍ର ଅଞ୍ଚଳରେ ପ୍ରଚଳିତ ବିଭିନ୍ନ ନାଚରେ ମୁଖାର ବ୍ୟବହାର ହେତୁ ପ୍ରାୟ ସବୁଠି ମୁଖା ତିଆରି ହୋଇଥାଏ । କୁମ୍ଭ ମୃତ୍ତିକାରେ ସିଲେଇ ବଟୁଆ, କନ୍ଥା, ଗୁନ୍ଦୁଆ, ଛଣୀ, ଆଳଟ, ତରା, ଜରି ପ୍ରଭୃତି ପ୍ରୟୋଜନୀୟ ସମସ୍ତ ବ୍ୟବହାର୍ଯ୍ୟ ପଦାର୍ଥ, ଦେବ ମନ୍ଦିରଠାରୁ ଅଭିଷେକ,

Digitized by srujanika@gmail.com

ବିବାହ, ବ୍ରତ ପ୍ରଭୃତି ସମସ୍ତ ସାମାଜିକ ଉତ୍ସବ, ନାଟ ଓ ଯାତ୍ରା ପ୍ରଭୃତିରେ ଏସବୁ ବ୍ୟବହୃତ ହୁଏ । ଉତ୍ତର ବାଲେଶ୍ୱର ଅଞ୍ଚଳରେ ନିର୍ମିତ କନ୍ଥା/କାନ୍ଥା ଜାମୁକୋଳି ଷ୍ଟିପାଯୁକ୍ତ, ସୁନ୍ଦର, ଚିତ୍ତାକର୍ଷକ ଓ ଦୀର୍ଘସ୍ଥାୟୀ ।

ବଡ଼ି ତିଆରିରେ ନାରୀ ଜାତିର ଶୈଳ୍ପିକ ବିଭବର ପ୍ରକାଶ ଘଟିଥାଏ । କଖାରୁ, ବିରି, ପୋସ୍ତ ପ୍ରଭୃତି ଭିନ୍ନ ଭିନ୍ନ ଫୁଲ ଓ ପତ୍ରରେ ସୁଲୁଣୀ କୁଲାରେ ବସାଇ ଶୁଖାଇ ବିଭିନ୍ନ ଚିତ୍ରଣରେ ବଡ଼ି ତିଆରି କରାଯାଏ ।

ପାଚିଲା ଧାନ କେଣ୍ଡାରେ ବେଣ୍ଟି ତିଆରି କରି ମାର୍ଗଶୀର ଗୁରୁବାରରେ ଲକ୍ଷ୍ମୀ ଠାକୁରାଣୀଙ୍କ ପାଖରେ ଲଗାଯାଏ । ଘରର ଦୁଆର ମୁହଁରେ, ସ୍ତମ୍ଭରେ ଓ ଅମାରରେ ଏସବୁ ଟଙ୍ଗାଯାଏ । ପାଚିଲା ଧାନ କେରାରେ ବେଣୀ ପକାଇ ଗୁଡ଼ାଇ ଦିଆଯାଏ । କେହି କେହି କୋରାର ପଛ ଭାଗକୁ କାଇଁଚ ପଙ୍ଗା ଆକୃତିରେ ସ୍ତରକୋଣିଆ କରି ବେଣ୍ଟି ତିଆରି କରି ଦ୍ୱାରପଥ ଠାକୁରାଣୀଙ୍କ ନିକଟରେ ଓହଳାଇ ଦିଅନ୍ତି ।

ପଥରରେ ବାସନ, ପଥୁରି, ଶିଳ ଶିଳପୁଆ, ବାଟି, ଧୂପଦାନୀ, ହାତୀ ଘୋଡ଼ା, ଶୁଆ, ପଦ୍ମ, ଘରର ବିଭିନ୍ନ ଉପକରଣ ଆଦି ମୟୂରଭଞ୍ଜ, ନୀଳଗିରି ପ୍ରଭୃତି ଅଞ୍ଚଳରେ ତିଆରି ହୁଏ । ଏଗୁଡ଼ିକର ଶିଳ୍ପକଳା ଅତି ଉଚ୍ଚକୋଟୀର ।

ସୋଲରେ ତିଆରି ମୁକୁଟ, ମଉଡ଼, ଡଙ୍ଗା, ହାର, ଫୁଲ ପ୍ରଭୃତି ଅତି ପ୍ରୟୋଜନୀୟ ପଦାର୍ଥ ରୂପେ ବ୍ୟବହୃତ ହୁଏ । ବିବାହ ଓ ପର୍ବପର୍ବାଣୀରେ ଏ ସବୁର ପ୍ରୟୋଜନ ଅପରିହାର୍ଯ୍ୟ । ମୁଖା ସଜ୍ଜା ନିମନ୍ତେ ସୋଲର ପ୍ରୟୋଜନ ହୁଏ ।

ବାଉଁଶ ଓ ବେତରେ ବିଭିନ୍ନ ବ୍ୟବହାର୍ଯ୍ୟ ବସ୍ତୁ ତିଆରି ହୁଏ । ବାଉଁଶରେ ଗୁମ୍ଫଡ଼ା, ପେଡ଼ି, ପେଟରା, ଫୁଲ, ଗୁଙ୍ଗୁଡ଼ି, ଡାଲା, ପାଛିଆ, କୁଲା, ଝୁଙ୍ଗା ଝୁଡ଼ି ଅତି ପ୍ରୟୋଜନୀୟ ଓ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ, କାଠକୁ କୁନ୍ଦ ଭଙ୍ଗିରେ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ତିଆରି ହୁଏ । ସବାଇଘାସ ଦଉଡ଼ିରେ ଖଟ; ମାଣ୍ଡି, ପାପୋଛ ପ୍ରଭୃତି ବ୍ୟବହାର୍ଯ୍ୟ ପଦାର୍ଥ ବୁଣିବା ସଙ୍ଗେ ସଙ୍ଗେ ବିଚିତ୍ର ଧରଣର ଚିତ୍ର ସବୁ କରାଯାଏ । କାଠରେ ଗୁଙ୍ଗୁଡ଼ି, ବିଞ୍ଚଣା, ଫରୁଆ, ଚକ୍ଳା, ପେଡ଼ି, ପାଛିଆ ପ୍ରଭୃତି ତିଆରି ହୁଏ । ଚମଡ଼ାରେ ଖୋଳ, ମାଦଳ, ଘୁଙ୍ଗୁ, ଧାମ୍‌ସା, ନାଗରା, ଡୁଗି, କେନ୍ଦରା, ଝଞ୍ଜଣି ପ୍ରଭୃତି ବିଭିନ୍ନ ବାଦ୍ୟଯନ୍ତ୍ର ଗ୍ରୁଆଣ ବିଗ୍ରୁଣ ହୁଏ । ସା'ନାଇ ଓ ବଇଁଶୀ କାଠ ଓ ବାଉଁଶରେ ତିଆରି ହୁଏ । ଖେଜୁରିପତ୍ର ଓ ପାଲରେ ଗ୍ରୁଞ୍ଚୁଣୀ, ପଟିଆ, ଚାଟେଇ ପ୍ରଭୃତି ତିଆରି ହୁଏ । ଛଣି ଓ ପାଟରେ ପଟି, ପଲଣ, ଆସନ ପ୍ରଭୃତି ତିଆରି ହୁଏ । ଲୁହା, ପିତଳ ଓ ସୁନା ପ୍ରଭୃତି

Digitized by srujanika@gmail.com

ଆରୁରେ ବିଭିନ୍ନ ବ୍ୟବହାର୍ଯ୍ୟ ଦ୍ରବ୍ୟ ତିଆରି ହୁଏ । ତାଳପତ୍ରରେ ଚଟେଇ, ପଙ୍ଖା ଓ ଡାଲା ପ୍ରଭୃତି ପଦାର୍ଥ ତିଆରି ହୁଏ । ଶିଙ୍ଗ, ଜହ୍ନ, ବାଉଁଶ, କାଠ ଓ ଦାନ୍ତ ପ୍ରଭୃତିରେ ପାନିଆଁ ତିଆରି ହୁଏ । ଏ ସମସ୍ତ ନିତ୍ୟ ବ୍ୟବହୃତ ଓ ସୌଖୀନ ପଦାର୍ଥଗୁଡ଼ିକରେ ବହୁ ଲୋକକଳାର ପରିପ୍ରକାଶ ଘଟିଥିବାର ଲକ୍ଷ୍ୟ କରାଯାଏ ।

ବିଭିନ୍ନ ପକ୍ଷୀର ପର ବ୍ୟବହାର କରି ବହୁ ପ୍ରକାରର ପଦାର୍ଥ ଯଥା—ମୟୂର ପରରେ ବିଞ୍ଚଣା, ଫୁଲଝାଡ଼ୁ ପ୍ରଭୃତି ତିଆରି ହୁଏ । ଏତଦ୍‌ବ୍ୟତୀତ ମୁକୁଟରେ ଏସବୁ ଶୋଭାପାଏ । କେହି କେହି ନିଜ କେଶରେ ଖୋସନ୍ତି । ମୁଖା ସଜ୍ଜାବେଳେ ମୟୂର ପର କୁକୁଡ଼ା ପର ପ୍ରଭୃତି ବ୍ୟବହୃତ ହୁଏ ।

ଆଲୋଚ୍ୟ ଅଞ୍ଚଳରେ ବ୍ୟବସାୟିକ କଳା (Commercial Art) କ୍ଷେତ୍ରରେ ବାଲେଶ୍ୱର, ବାରିପଦା, ଜଳେଶ୍ୱର, ରେମୁଣା, ମେଦିନୀପୁର, ଝାଡ଼ଗ୍ରାମ, ଖଡ଼ଗପୁର ପ୍ରଭୃତି ସ୍ଥାନରେ ବହୁ ଶିଳ୍ପୀ ଚିତ୍ରକଳାକୁ ବର୍ତ୍ତମାନ ବ୍ୟବସାୟିକ ଭିତ୍ତିରେ ପ୍ରୟୋଗ କରି ନିଜର ଶୈଳ୍ପିକ ମନୋବୃତ୍ତିର ପୁଷ୍ଟିସାଧନ କରିବା ସହିତ ଜୀବିକା ନିର୍ବାହ କରୁ-ଅଛନ୍ତି । ସାଇନ୍‌ବୋର୍ଡ଼ ନିର୍ମାଣ, ଥିଏଟର ନିମନ୍ତେ ସିନ୍ ଓ ମଞ୍ଚସଜ୍ଜା, ପୂଜାପାର୍ବଣ ସମୟରେ ତୋରଣ/ମଞ୍ଚସଜ୍ଜା, ବିଭିନ୍ନ ପ୍ରସ୍ତାର ପ୍ରଚାରପତ୍ର ତିଆରି, ଚଳଚିତ୍ର ତିଆରି, ପୁସ୍ତକ, ପତ୍ରପତ୍ରିକାର ପ୍ରଚ୍ଛଦ ଚିତ୍ର, ରଙ୍ଗ, କାଗଜ ଓ ପ୍ଲାଷ୍ଟିକରେ ବିଭିନ୍ନ ପ୍ରକାର ଫୁଲ, ବ୍ୟବହାର ଉପଯୋଗୀ ଦ୍ରବ୍ୟ ନିର୍ମାଣ ଏ ସବୁର ଅନ୍ତର୍ଭୁକ୍ତ ।

## ମନ୍ଦିର ସ୍ଥାପତ୍ୟ

ଭୌମକର, ଗଙ୍ଗ ଓ ସୂର୍ଯ୍ୟବଂଶୀ ନରପତିମାନଙ୍କ ରାଜତ୍ୱ କାଳରେ ଐତିହାସିକ ଓଡ଼ିଶାର ସମସ୍ତ ଅଞ୍ଚଳରେ ବହୁ ଦେବଦେବୀ ମନ୍ଦିର ନିର୍ମିତ ହୋଇଥିଲା । ସ୍ଥାପତ୍ୟ କଳାରେ ଓଡ଼ିଶୀ ସ୍ଥାପତ୍ୟ ରୀତି ଉଲ୍ଲେଖଯୋଗ୍ୟ । ଉତ୍ତର-ପୂର୍ବାଞ୍ଚଳର ନିର୍ମିତ ଦେବଦେବୀ ମନ୍ଦିର ସବୁ ମୁଖ୍ୟତଃ ଓଡ଼ିଶୀ ସ୍ଥାପତ୍ୟ ରୀତିରେ ଗଠିତ । ଏ ସବୁର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

ମେଦିନୀପୁରର ଝାଡ଼ଗ୍ରାମ, ଚିଲିକାଗଡ଼, ମୟୂରଭଞ୍ଜର ବହୁ ସ୍ଥାନରେ ନିର୍ମିତ ମନ୍ଦିର ସମୂହ ଅପେକ୍ଷାକୃତ ଅର୍ବାଚୀନ । ଅରଣ୍ୟାଞ୍ଚଳର ଦେବଦେବୀଗଣ ବୃକ୍ଷ ମୂଳରେ ନିଜର ଆସ୍ଥାନ ପ୍ରତିଷ୍ଠା କରି ନେଇଥିବାର ଦେଖାଯାଏ ।

Digitized by srujanika@gmail.com

ଓଡ଼ିଶାରେ ମନ୍ଦିର ସ୍ଥାପତ୍ୟ ଶୈଳୀ ତିନି ଭାଗରେ ବିଭକ୍ତ—(୧) ଜଗମୋହନ ବ୍ୟତିରେକ ବିମାନ (୨) ଜଗମୋହନ ସଂଶ୍ଳିଷ୍ଟ ବିମାନ ଓ (୩) ଜଗମୋହନ ନାଟ ମନ୍ଦିର ସଂଶ୍ଳିଷ୍ଟ ବିମାନ ।(୧୭) ବିଖ୍ୟାତ ପୁରାତତ୍ତ୍ୱବିଦ୍ ଓ ମନ୍ଦିର ବିଶେଷଜ୍ଞ "ମନମୋହନ ଗାଙ୍ଗୁଲି"ଙ୍କ ମତରେ ଓଡ଼ିଶାରେ ମନ୍ଦିରର ପ୍ରଧାନତଃ ଦୁଇଟି ଅଙ୍ଗ । ଯଥା —(୧) ବିମାନ ବା ବଡ଼ ଦେଉଳ (୨) ଜଗମୋହନ (Audiance Chamber) । ଏହାଛଡ଼ା ନାଟ ମନ୍ଦିର ଓ ଭୋଗ ମଣ୍ଡପ ଏପରି ଦୁଇଟି ଅଙ୍ଗ । ତାଙ୍କ ମତରେ ଓଡ଼ିଶାର ସ୍ଥାପତ୍ୟ ଶୈଳୀ ହିଁ ଅବିମିଶ୍ର ଆର୍ଯ୍ୟ ସ୍ଥାପତ୍ୟ ଶୈଳୀ ।(୧୮)

ଉତ୍କଳୀୟ ସ୍ଥାପତ୍ୟ ରୀତି ଅନୁସାରେ ଆଲୋଚ୍ୟ ଅଞ୍ଚଳରେ ମନ୍ଦିରମାନ ନିର୍ମିତ ହୋଇଥିବାର ଦେଖାଯାଏ । କେଶିଆଡ଼ିର ଗଗନେଶ୍ୱର, ସର୍ବମଙ୍ଗଳା ଓ ଜଗନ୍ନାଥ ମନ୍ଦିର, ଏଗ୍ରାର ହଟନାଗର ଶିବ ମନ୍ଦିର, ଦାନ୍ତନର ଶ୍ୟାମଳେଶ୍ୱର ମହାଦେବ ମନ୍ଦିର, କାନ୍ଥିର ଜଗନ୍ନାଥ ମନ୍ଦିର, ତମ୍ଲୁକ୍‌ର ସୁବିଖ୍ୟାତ ବର୍ଗଭୀମା ମନ୍ଦିର, ଗୋପୀ ବଲ୍ଲଭପୁରର ଗୋବିନ୍ଦଜିଓ ମନ୍ଦିର, ସହସ୍ର ଲିଙ୍ଗ ଶିବଙ୍କ ମନ୍ଦିର ଏବଂ ମୋଗଲପଡ଼ା ଓ ତଲକେଶୀ ଆଡ଼ର ମସ୍‌ଜିଦ ପ୍ରଭୃତି ଉତ୍କଳୀୟ ସ୍ଥାପତ୍ୟ ଶୈଳୀରେ ଗଠିତ । ଏହା ବ୍ୟତୀତ ମେଦିନୀପୁର ଜିଲ୍ଲାର ଗଡ଼ବେତାର ସର୍ବମଙ୍ଗଳା ମନ୍ଦିର କଂସେଶ୍ୱର ଓ ଝାଡ଼େଶ୍ୱର ସାହି ମନ୍ଦିର, ଚନ୍ଦ୍ରକୋଣାର ରଘୁନାଥ ଜୀଉଙ୍କ ମନ୍ଦିର । କେଶପୁର ଥାନାର କାମେଶ୍ୱର ମନ୍ଦିର, କର୍ଣ୍ଣଗଡ଼ର ଦଣ୍ଡେଶ୍ୱର ଓ ମହାମାୟା ମନ୍ଦିର ପ୍ରଭୃତି ସମସ୍ତ ଉତ୍କଳୀୟ ସ୍ଥାପତ୍ୟ ରୀତିରେ ଗଠିତ ।(୧୯) ଅତୀତରେ ଏ ସମସ୍ତ ଅଞ୍ଚଳ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବା ହେତୁ ଓଡ଼ିଆ ଶିଳ୍ପୀମାନଙ୍କ ଦ୍ୱାରା ଏ ମନ୍ଦିର ସମସ୍ତ ନିର୍ମିତ ହୋଇଥିଲା । ମେଦିନୀପୁର ବ୍ୟତୀତ ହୁଗୁଲୀ, ବର୍ଦ୍ଧମାନ, ପୁରୁଲିଆ, ବାଙ୍କୁଡ଼ା ଜିଲ୍ଲାରେ ମଧ୍ୟ ଉତ୍କଳୀୟ ସ୍ଥାପତ୍ୟ ଶୈଳୀରେ ପ୍ରାଚୀନ ମନ୍ଦିରମାନ ନିର୍ମିତ ହୋଇଥିଲା । ନିମ୍ନରେ କେତେଗୋଟି ପ୍ରଧାନ ମନ୍ଦିରର ସଂକ୍ଷିପ୍ତ ବିବରଣୀ ପ୍ରଦାନ କରୁଅଛୁ ।

**ରଘୁନାଥଜିଓ ମନ୍ଦିର (ଚନ୍ଦ୍ରକୋଣା)**—ଏହି ମନ୍ଦିର ନିର୍ମାଣରେ ଉତ୍କଳୀୟ ସ୍ଥାପତ୍ୟ ରୀତି ଅବିକଳ ଅନୁସୃତ ହୋଇଥିବାର ଲକ୍ଷ୍ୟ କରାଯାଏ । ପ୍ରାଚୀର ବେଷ୍ଟିତ ବିମାନ ବା ମୂଳ ମନ୍ଦିରଟି ଯଥାର୍ଥ ରେଖପଦ୍ଧତିର ଓ ତତ୍‌ସଂଲଗ୍ନ ଜଗମୋହନ ଭଦ୍ର ଶୈଳୀରେ ନିର୍ମିତ ତା'ର ଠିକ୍ ସମ୍ମୁଖରେ ନାଟ ମନ୍ଦିର ଭୋଗମଣ୍ଡପ ।(୨୦) ଏହାର ଠିକ୍ ଉତ୍ତର ଦିଗରେ ଥିବା ମନ୍ଦିରଟି ଓଡ଼ିଶୀ ଓ ବଙ୍ଗ ମିଶ୍ରିତ ସ୍ଥାପତ୍ୟ ଶୈଳୀରେ ଗଠିତ ।(୨୧)

**ସର୍ବମଙ୍ଗଳା ମନ୍ଦିର (ଗଡ଼ବେତା)**—ମଙ୍ଗଳା ମନ୍ଦିର ଉତ୍ତର ଦିଗକୁ ସବୁଠୁଁ ଉଚ୍ଚ ଓ ବଡ଼ ମନ୍ଦିର । ମନ୍ଦିରଟି କେବେ ନିର୍ମିତ ତାର ସମୟ ଜଣାଯାଇ ନାହିଁ ।

Digitized by srujanika@gmail.com

ଏହା ଓଡ଼ିଶୀ ସ୍ଥାପତ୍ୟ ରୀତିରେ ନିର୍ମିତ । ମନ୍ଦିର ଗାତ୍ରରେ କିନ୍ନର, ଗନ୍ଧର୍ବ, ଅପ୍‌ସରା ପ୍ରଭୃତିଙ୍କ ମୂର୍ତ୍ତି ଖୋଦିତ ।

**ରାଧାବଲ୍ଲଭ ଜୀଉଙ୍କର ମନ୍ଦିର**—ଏ ଅଞ୍ଚଳରେ ମନ୍ଦିରଟିର ପ୍ରସିଦ୍ଧି ଅଛି । ଏହା ଓଡ଼ିଶୀ ଓ ସ୍ଥାପତ୍ୟ ରୀତିରେ ନିର୍ମିତ ।

**ସର୍ବମଙ୍ଗଳା ମନ୍ଦିର (କେଶୀୟାଡ଼)**—ଏହି ମନ୍ଦିରଟି ତିନୋଟି ସୌଧ ଦ୍ଵାରା ଗଠିତ । ନାଟ ମନ୍ଦିର, ଜଗମୋହନ ଓ ଦେଉଳ । ମୋଟ ଦୈର୍ଘ୍ୟ ୭୫ ଫୁଟ୍ । ବାରଟକାସ୍ଥ ସିଂହ ମୂର୍ତ୍ତି ବାଲିପଥରରେ ନିର୍ମିତ । ଏହା ଉତ୍କଳୀୟ ସ୍ଥାପତ୍ୟ ରୀତିରେ ଗଠିତ ।

ଜଗମୋହନ ଓ ସର୍ବମଙ୍ଗଳା ସ୍ତମ୍ଭ ଦେହରେ ଦୁଇଟି ପ୍ରସ୍ତର ଫଳକ ରହିଅଛି । ଏ ଦୁଇଟି ଓଡ଼ିଆ ଭାଷା ଓ ଲିପିରେ ଲିଖିତ । ଜମିଦାର ରଘୁନାଥ ଶର୍ମାଙ୍କ ପୁତ୍ର ଚନ୍ଦ୍ରଧର ଭୂୟାଁ ୧୬୦୪ ମସିହାରେ ମନ୍ଦିର ଦୁଇଟି ଉତ୍ସର୍ଗ କରିଥିବାର ବିଷୟ ଫଳକ ଦ୍ଵୟରେ ଲିଖିତ । ରାଜମିସ୍ତ୍ରୀଙ୍କ ନାମ "ବାସୁରାମ" ଓ ସ୍ଥପତିଙ୍କର ନାମ "ରଘୁନାଥ କାମିଲା" ଅପରଟି ୧୬୧୦ ଖ୍ରୀ ରେ ରାଜମିସ୍ତ୍ରୀ ବନମାଳୀଙ୍କ ଦ୍ଵାରା ସୁନ୍ଦର ଦାସ ତିଆରି କରାନ୍ତି ।(୨୨)

**ମହାଦେବ ମନ୍ଦିର**—କେଶୀଆଡ଼ି ବଜାର ନିକଟରେ ଅବସ୍ଥିତ ଉକ୍ତ ମନ୍ଦିରଟି ଓଡ଼ିଶୀ ସ୍ଥାପତ୍ୟ ରୀତିରେ ଗଠିତ ।

**କୁରମବେଢ଼ା ଦୁର୍ଗର ଶିବ ମନ୍ଦିର**—କେଶୀୟାଡ଼ିର ଗ୍ରାମଠାରୁ ଦକ୍ଷିଣ ପୂର୍ବ ଦିଗରେ ପଥର ତିଆରି ଗୋଟିଏ ଜୀର୍ଣ୍ଣ ଦୁର୍ଗ ଅଛି । ପୂର୍ବେ ଏହା ଏକ ପାନ୍ଥଶାଳା ଥିବାର ଜଣାଯାଏ । ଦୁର୍ଗର ପୂର୍ବ ଦିଗରେ ଶିବ ମନ୍ଦିରର ଧ୍ଵଂସାବଶେଷ ବିଦ୍ୟମାନ । ଏଥିରେ ଥିବା ଓଡ଼ିଆ ଶିଳାଲେଖରୁ ଜଣାଯାଏ ଗଜପତି କପିଳେଶ୍ଵର ଦେବ (ଖ୍ରୀ· ୧୪୩୪—ଖ୍ରୀ. ୧୪୬୧)ଙ୍କ ସମୟରେ ମନ୍ଦିରଟି ନିର୍ମିତ ହୋଇଥିଲା । ଶିଳାଲେଖର ଲିପି ଓ ଭାଷା ଓଡ଼ିଆ ।(୨୩) ମନ୍ଦିରର ପଶ୍ଚିମ ଦିଗରେ ଗୋଟିଏ ମସ୍‌ଜିଦ୍ ଅବସ୍ଥିତ । ମସ୍‌ଜିଦ୍‌ର ଉତ୍କୀର୍ଣ୍ଣ ଲିପିରୁ ଜଣାଯାଏ ଯେ ସମ୍ରାଟ ଔରଙ୍ଗଜେବଙ୍କ ଆଦେଶରେ ମହମ୍ମଦ ତାହିର ଏହାକୁ ନିର୍ମାଣ କରାଇଥିଲେ । ହିନ୍ଦୁ ମନ୍ଦିରର ଉପକରଣ ନେଇ ଏହା ନିର୍ମିତ ହୋଇଥିବାର ଜଣାଯାଏ ।

**ଶ୍ୟାମଳେଶ୍ଵର ମନ୍ଦିର (ଦାନ୍ତନ)**—ଦୁଇଟି ସୌଧ ବିଶିଷ୍ଟ ମନ୍ଦିରଟି ଦେଖିବାକୁ ସୁଦୃଶ୍ୟ ପାଗୋଡ଼ା ପରି । ଏହା ଓଡ଼ିଶୀ ସ୍ଥାପତ୍ୟ ରୀତିରେ ନିର୍ମିତ ।

Digitized by srujanika@gmail.com

**ଗୋପୀନାଥଜୀଉ ମନ୍ଦିର (ଗୋପୀବଲ୍ଲଭପୁର)**—ଗୋପୀବଲ୍ଲଭପୁରର ଗୋସ୍ୱାମୀ ବଂଶ ଏହି ମନ୍ଦିର ଓ ମୂର୍ତ୍ତିର ଅଧିକର୍ତ୍ତା । ଜ୍ୟେଷ୍ଠ ମାସରେ ଚନ୍ଦନ ଉତ୍ସବ ଏଠାରେ ମହାମହୋତ୍ସବ ଅନୁଷ୍ଠିତ ହୁଏ ଓ ବଙ୍ଗ, ବିହାର, ଓଡ଼ିଶାର ବୈଷ୍ଣବଗଣ ସମବେତ ହୁଅନ୍ତି । ଏହା ଶ୍ୟାମାନନ୍ଦପନ୍ଥୀ ପରିବାରର ପ୍ରଧାନ ପୀଠସ୍ଥଳ । ଏ ସ୍ଥାନ ଲୋକଙ୍କ ମଧ୍ୟରେ "ଠାକୁର ବାଡ଼ି" ନାମରେ ପ୍ରସିଦ୍ଧ । ବୈଷ୍ଣବମାନଙ୍କ ମଧ୍ୟରେ ଏହା ଶ୍ରୀପାଟ ଗୋପୀବଲ୍ଲଭପୁର ନାମରେ ଆଖ୍ୟାତ । ଗୋପୀବଲ୍ଲଭପୁରର ସୁବର୍ଣ୍ଣରେଖା ତୀରରେ ଆଦିବାସୀ ସାନ୍ତାଳମାନଙ୍କର ବାର୍ଷିକ ଶ୍ରାଦ୍ଧୋତ୍ସବ ଅନୁଷ୍ଠିତ ହୁଏ । "ହରି-ବୋଲ" ଧ୍ୱନି ସହ ଶ୍ରୀମନ୍ଦିରରେ ବିଗ୍ରହ ଦର୍ଶନ ଏବଂ ମହନ୍ତମାନଙ୍କୁ 'ଭେଟି' ପ୍ରଦାନ—ସାନ୍ତାଳ ଗୋଷ୍ଠୀ ଉପରେ ବୈଷ୍ଣବ ଧର୍ମର ଅଖଣ୍ଡ ପ୍ରଭାବର ପ୍ରମାଣ ।

ଗୋପୀବଲ୍ଲଭପୁରର ପୂର୍ବର ନାମ ଥିଲା କାଶୀପୁର । ପ୍ରିୟ ଶିଷ୍ୟ ରସିକାନନ୍ଦଙ୍କ ଆତିଥ୍ୟ ଗ୍ରହଣ କରି କିଛିକାଳ ରହିବା ସମୟରେ ଶ୍ୟାମାନନ୍ଦ ସ୍ୱ ଇଷ୍ଟଦେବ ଶ୍ରୀ ବିଗ୍ରହଙ୍କୁ ଶ୍ରୀ ଗୋପୀବଲ୍ଲଭ ନାମ୍ ଏବଂ କାଶୀପୁର ନାମ ଶ୍ରୀ ଗୋପୀବଲ୍ଲଭପୁର ବୋଲି ନାମାନ୍ତରିତ କରିଥିଲେ । କେତେକଙ୍କ ମତରେ ମୟୂରଭଞ୍ଜର ମହାରାଜା ବୈଦ୍ୟନାଥ ଭଞ୍ଜ (ଷୋଡ଼ଶ ଶତକର ଶେଷ ଓ ସପ୍ତଦଶ ଶତାବ୍ଦୀର ପ୍ରଥମ ପାଦ) ଏହି ମଠ-ମନ୍ଦିର ନିର୍ମାଣ କରିଥିଲେ ।

**ସହସ୍ର ଲିଙ୍ଗ ଓ ରାମେଶ୍ୱର ନାଥ ମନ୍ଦିର (ନୟାଗ୍ରାମ**—ସୁବର୍ଣ୍ଣରେଖା ନଦୀର ଦକ୍ଷିଣ ତୀରବର୍ତ୍ତୀ ଦେଉଳବାଡ଼ ଗ୍ରାମରେ ୭୫ ଫୁଟ୍ ଉଚ୍ଚତା ବିଶିଷ୍ଟ ଏହି ମନ୍ଦିର ଅବସ୍ଥିତ । ଏହା ଉତ୍କଳ ସ୍ଥାପତ୍ୟ ଢଙ୍ଗରେ ନିର୍ମିତ । ରାଜା ଚନ୍ଦ୍ରକେତୁଙ୍କ ଦ୍ୱାରା ମନ୍ଦିରଟି ନିର୍ମିତ ବୋଲି ପ୍ରବାଦ ଅଛି ।

ଚୈତ୍ର ସଂକ୍ରାନ୍ତି ଓ ଗଙ୍ଗା ବାରୁଣୀ ସମୟରେ ଏଠାରେ ବଡ଼ ଧରଣର ମେଳା ଅନୁଷ୍ଠିତ ହୁଏ ।

**ହଟନାଗର ମନ୍ଦିର** (ଏଗ୍ରା)—ଏହି ମନ୍ଦିରଟି ଗଜପତି ମୁକୁନ୍ଦଦେବଙ୍କ କୀର୍ତ୍ତି ବୋଲି କଥିତ ଅଛି । ଉତ୍କଳ ସ୍ଥାପତ୍ୟ ଢଙ୍ଗରେ ଗଠିତ ମନ୍ଦିରଟି ଅତ୍ୟନ୍ତ ମନୋରମ ।

**ଗୋକୁଳାନନ୍ଦ ମନ୍ଦିର (ଅଲଙ୍ଗିର, ଏଗ୍ରା)**—ଏହି ମନ୍ଦିରଟି ପ୍ରାଚୀନ । ଗୋକୁଳାନନ୍ଦ (ଗୋପାଳ) ଠାକୁର ଉତ୍ତର ବାଲେଶ୍ୱରର ବାଣିଦା ଗ୍ରାମରୁ ଅପହୃତ ହୋଇଥିବା ହେତୁ ବାଣିଦା ଲୋକଙ୍କୁ ଦେବ ଦର୍ଶନର ସୁଯୋଗ ମିଳୁ ନ ଥିବାର ଜନଶ୍ରୁତି ଅଛି । କୁନ୍ଦ ଗ୍ରାମର ଉତ୍କଳ ସ୍ଥାପତ୍ୟ ଢଙ୍ଗରେ ନିର୍ମିତ ଶିବ ମନ୍ଦିରଟି ପ୍ରସିଦ୍ଧ ।

Digitized by srujanika@gmail.com

**ବର୍ଗଭୀମା ମନ୍ଦିର (ତାମ୍ରଲିପ୍ତ)—** ମନ୍ଦିରଟି ଅତ୍ୟନ୍ତ ପ୍ରାଚୀନ । ସମ୍ଭବତଃ ଏହା ଗୋଟିଏ ବୌଦ୍ଧ ବିହାର ଥିଲା । ପରେ ମନ୍ଦିର ରୂପରେ ରୂପାନ୍ତରିତ ହୋଇ-ଥିବାର ଜଣାଯାଏ । ବିଗ୍ରହ-ଉଗ୍ରତାରା ମୂର୍ତ୍ତି ଶିବଙ୍କ ଶରୀର ଉପରେ ଦଣ୍ଡାୟମାନ । କଳା ମୁଗୁନି ପଥରରେ ନିର୍ମିତ ଚତୁର୍ଭୁଜ ମନ୍ଦିରଟି ବଡ଼ ଦେଉଳ, ଜଗମୋହନ, ନାଟ ମନ୍ଦିର, ଭୋଗମଣ୍ଡପ—ଏପରି ଚାରି ଭାଗରେ ବିଭକ୍ତ । ଉତ୍କଳ ସ୍ଥାପତ୍ୟ ରୀତିର ଏକ ପ୍ରକୃଷ୍ଟ ନିଦର୍ଶନ ।

**ଜଲକୀଓ ମନ୍ଦିର (ଚନ୍ଦ୍ରକୋଣା)—**ରାଜା ହରିନାରାୟଣଙ୍କ ରାଣୀ ଲକ୍ଷଣାବତୀ (୧୫୫୫ ଖ୍ରୀ.—୧୫୭୭ ଖ୍ରୀ.) ମନ୍ଦିରଟି ନିର୍ମାଣ କରାଇଥିଲେ । ୬° ଫୁଟ ଉଚ୍ଚତା ବିଶିଷ୍ଟ ଏହି ମନ୍ଦିରଟି ଉତ୍କଳ ସ୍ଥାପତ୍ୟ ରୀତିରେ ନିର୍ମିତ ।

**ମଲ୍ଲେଶ୍ୱର ମହାଦେବ ମନ୍ଦିର (ଚନ୍ଦ୍ରକୋଣା)—**ବର୍ଦ୍ଧମାନର ମହାରାଜା କୀର୍ତ୍ତିଚନ୍ଦ୍ର ନିର୍ମାଣ କରାଇଥିଲେ । ଏହା ମିଶ୍ରିତ ସ୍ଥାପତ୍ୟ ରୀତିର ନିଦର୍ଶନ ଓ ଅପୂର୍ବ ଶ୍ରୀମଣ୍ଡିତ । ଏହା ନିକଟରେ ମାଙ୍କଡ଼ା ପଥରରେ ଓଡ଼ଶୀ ରୀତିରେ ନିର୍ମିତ ଅନ୍ୟଏକ ମନ୍ଦିର ବିଦ୍ୟମାନ ।

**ଚନ୍ଦନେଶ୍ୱରଙ୍କ ମନ୍ଦିର (ମେଦିନୀପୁର)—**ଉତ୍ତର ବାଲେଶ୍ୱରର ପ୍ରସିଦ୍ଧ ଶିବ କ୍ଷେତ୍ର । ଏଠାରେ 'ପଇତାପକା' ଉତ୍ସବରେ ହଜାର ହଜାର ଭକ୍ତ ବ୍ରତ ପାଳନ କରିଥାନ୍ତି । ମନ୍ଦିରଟି ଉତ୍କଳୀୟ ସ୍ଥାପତ୍ୟ ରୀତିରେ ନିର୍ମିତ । ବଙ୍ଗ, ବିହାର ଓ ଓଡ଼ିଶାର ଏକ ପ୍ରସିଦ୍ଧ ଶୈବପୀଠ ରୂପେ ପରିଗଣିତ ।

**ଭୂଷଣ୍ଡେଶ୍ୱର (ମେଦିନୀପୁର)—**ଭାରତର ସର୍ବବୃହତ୍ ଶିବ ଲିଙ୍ଗ ।

**ବିଜୟ ବାସୁଳୀ (ମେଦିନୀପୁର)—** କଳିଙ୍ଗର କୌଣସି ବିଜୟୀ ରାଜା ଏହି ଦାରୁମୂର୍ତ୍ତି ପ୍ରତିଷ୍ଠା କରିଥିବାର କେତେକ ମତ ପ୍ରଦାନ କରିଥାନ୍ତି । ରାଜା ତୋଡ଼ରମଲ୍ଲ ଏହାଙ୍କର ସେବା ପୂଜା ନିର୍ବାହ ନିମନ୍ତେ ତତ୍କାଳୀନ ଜଳେଶ୍ୱର ସୁବାରୁ ବିଶାଳ ଭୂସମ୍ପତ୍ତି ବନ୍ଦୋବସ୍ତ କରିଥିଲେ ।

**ବଣନାୟିକାଣୀ—** ଦେବୀ ଭଗବତୀଙ୍କର ଅଷ୍ଟସଖୀଙ୍କ ମଧ୍ୟରୁ ଅନ୍ୟତମା । କୀର୍ତ୍ତିଶାଳର ରାଜାଙ୍କ ସମୟରୁ ଏହାଙ୍କ ପ୍ରତିଷ୍ଠା ହୋଇଥିବାର ବିଶ୍ୱାସ ।

**ଶ୍ୟାମାସୁନ୍ଦରୀ ମନ୍ଦିର (ଲକ୍ଷ୍ମଣନାଥ)—**ଏହା ୧୦୩ ଫୁଟ ଉଚ୍ଚତାବିଶିଷ୍ଟ ପ୍ରାଚୀନ ଶିଳ୍ପ ରୀତିରେ ନିର୍ମିତ ସୁଦୃଶ୍ୟ ମନ୍ଦିର । ଏହା ଏକ ପ୍ରସିଦ୍ଧ ଶାକ୍ତପୀଠ ।

Digitized by srujanika@gmail.com

**ଲଙ୍କେଶ୍ୱର (ବାଲିଅପାଳ)**—ଏଠାରେ ଶିବ ଓ ପାର୍ବତୀ ମନ୍ଦିର ରହି-ଅଛି । ଏହା 'ଆଦି କୃଷକ'ର ପ୍ରତିଷ୍ଠାନ ଭାବେ ପ୍ରସିଦ୍ଧ । ମହାଦେବ ଓ ପାର୍ବତୀଙ୍କର 'ଶ୍ରୀବିଗ୍ରହ' ପୂଜିତ ହୁଅନ୍ତି ।

**କ୍ଷୀରଚୋରା ଗୋପୀନାଥ ମନ୍ଦିର (ରେମୁଣା)**--ବୈଷ୍ଣବ ଧର୍ମ ଓ ସଂସ୍କୃତିର ପ୍ରସିଦ୍ଧ ପୀଠ । ତ୍ରୟୋଦଶ ଶତକରେ ଲାଙ୍ଗୁଲା ନରସିଂହ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବାର ଐତିହାସିକମାନଙ୍କର ମତ । ଗୋପୀନାଥଙ୍କ ଆବିର୍ଭାବ ଓ କ୍ଷୀର ଚୋରା ନାମ ଧାରଣ ସମ୍ପର୍କରେ କିମ୍ବଦନ୍ତୀ ପ୍ରଚଳିତ ।

ରେମୁଣାରେ ଗୋପୀନାଥଜୀଉଙ୍କ ମନ୍ଦିର ବ୍ୟତୀତ ରସିକାନନ୍ଦଦେବ ଗୋସ୍ୱାମୀଙ୍କର ପୁଷ୍ପ ସମାଧି ମନ୍ଦିର, ଶ୍ରୀରାମଚଣ୍ଡୀ ମନ୍ଦିର, ଗର୍ଗେଶ୍ୱର ଶିବ ମନ୍ଦିର ସମସ୍ତ ପ୍ରସିଦ୍ଧ । ଏଠାରେ ଶ୍ରୀପାଦ ମାଧବେନ୍ଦ୍ର ପୁରୀଙ୍କର ସମାଧି ପୀଠ ବିଦ୍ୟମାନ ।

**ବାଲେଶ୍ୱର ଶିବ ମନ୍ଦିର**—ବାଲେଶ୍ୱର ସହର ଓ ନିକଟବର୍ତ୍ତୀ ଗ୍ରାମ-ମାନଙ୍କରେ ବାଲେଶ୍ୱର ମଣିନାଗେଶ୍ୱର, ଖଜୁରେଶ୍ୱର, ବନେଶ୍ୱର, ଗାର୍ଗେଶ୍ୱର, ଝାଡ଼େଶ୍ୱର, ବଟେଶ୍ୱର, ସିଦ୍ଧେଶ୍ୱର ପ୍ରଭୃତି ଶିବ ମନ୍ଦିର ପ୍ରସିଦ୍ଧ ।

ମହାଦାନୀ ବାଲିପୁତ୍ର ବାଣାସୁର ଏ ସବୁ ଶିବ ମନ୍ଦିର ପ୍ରତିଷ୍ଠା କରିଥିବା ଓ ପ୍ରତ୍ୟହ ବଙ୍ଗୋପସାଗରର ବାଣାସୁର ଘାଟରେ ସ୍ନାନ କରି ପଞ୍ଚଲିଙ୍ଗଙ୍କ ନିକଟରେ ଉପାସନା କରୁଥିବାର କିମ୍ବଦନ୍ତୀ ପ୍ରଚଳିତ ।

ମହାରାଜା ବୈକୁଣ୍ଠନାଥଦେ ଝାଡ଼େଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । 'ଝାଡ଼' (ଜଙ୍ଗଲ) ମଧ୍ୟରୁ ଉଦ୍ଧାର କରିଥିବାରୁ ଏହାଙ୍କର ନାମ ଝାଡେଶ୍ୱର ହୋଇଅଛି ।

ଏଠାର ସିଦ୍ଧେଶ୍ୱର ଶିବ ମନ୍ଦିର ଶ୍ମଶାନ ଭୈରବ ଭାବରେ ପ୍ରଖ୍ୟାତ ।

**ରସିକରାୟ ମନ୍ଦିର 'ହରିପୁର'**—ମୟୂରଭଞ୍ଜର ରାଜା ବିଷ୍ଣୁଭକ୍ତ ବୈଦ୍ୟନାଥ ଭଞ୍ଜ, ଏ ମନ୍ଦିର ନିର୍ମାଣ କରିଥିଲେ । ଓଡ଼ିଶାରେ ଏପରି ଇଟାରେ ନିର୍ମିତ ଟେରାକୋଟା ମନ୍ଦିର କେଉଁଠି ଦେଖାଯାଏ ନାହିଁ । ଏଠାରେ ରସିକରାୟ ମନ୍ଦିର ବ୍ୟତୀତ ରାଧାମୋହନ ମନ୍ଦିର, ପ୍ରତାପପୁରର ଜଗନ୍ନାଥ ମନ୍ଦିର ପଭୃତି ପ୍ରସିଦ୍ଧ । ରସିକରାୟ ମନ୍ଦିର ଓଡ଼ିଶୀ ସ୍ଥାପତ୍ୟ ରୀତି ଓ ଗୌଡ଼ୀୟ ଶୈଳୀର ଏକ ଅନୁପମ ନିଦର୍ଶନ ।

**କଞ୍ଚାରୁଆ ବୈଦ୍ୟନାଥ ମନ୍ଦିର ମାଣିତ୍ରୀ)**—ପଞ୍ଚଦଶ/ଷୋଡ଼ଶ ଶତକରେ ନିର୍ମିତ ମନ୍ଦିରଟି ନାଟମନ୍ଦିର, ଜଗମୋହନ ଓ ମୂଳ ମନ୍ଦିର ଏପରି ତିନି ଭାଗରେ

Digitized by srujanika@gmail.com

ବିଭକ୍ତ । ଧବଳ ରୋଗରେ ଆକ୍ରାନ୍ତ ହୋଇ "ପାଣିକଖାରୁ" ପରି ଦେଖାଯାଉଥିବା ସୋମବଂଶୀ ରାଜା ବୈଦ୍ୟନାଥ ମହାଦେବଙ୍କ ଆଶୀର୍ବାଦରୁ ରୋଗମୁକ୍ତ ହୋଇଥିବାରୁ ଏହାଙ୍କର ନାମ "କଖାରୁଆ ବୈଦ୍ୟନାଥ" ହୋଇଥିବା ପ୍ରବାଦ ପ୍ରଚଳିତ । ମନ୍ଦିର ଗାତ୍ର ଓ ଜଗମୋହନରେ ଅନେକ ଦେବ ଦେବୀଙ୍କର ସୁନ୍ଦର ସୁନ୍ଦର ପ୍ରତିମୂର୍ତ୍ତି ବିଦ୍ୟମାନ । ଶିବରାତ୍ରି ଉପଲକ୍ଷେ ପ୍ରତିବର୍ଷ ହଜାର ହଜାର ଭକ୍ତ ଏଠାରେ ସମ୍ମିଳିତ ହୁଅନ୍ତି । ଏହା ରେଖ ସ୍ଥାପତ୍ୟ ରୀତିରେ ନିର୍ମିତ ।

**ପାଣଚଣ୍ଡୀ ମନ୍ଦିର (ବଡ଼ସାହି)**—ଓଡ଼ିଶୀ ସ୍ଥାପତ୍ୟ ରୀତିର ଭଦ୍ର ଶୈଳୀରେ ନିର୍ମିତ ବଡ ସାହିର ପାଣଚଣ୍ଡୀ ମନ୍ଦିର ବାରିପଦାଠାରୁ ୧୭ ମାଇଲ ଦୂରରେ ଅବସ୍ଥିତ । ମନ୍ଦିରଟି ମଧ୍ୟଯୁଗରେ ନିର୍ମିତ ହୋଇଥିବା ଅନୁମେୟ ।

**ଜଗନ୍ନାଥ ମନ୍ଦିର (ବାରିପଦା)**—ଏହି ମନ୍ଦିରଟି ଓଡ଼ିଶୀ ସ୍ଥାପତ୍ୟ ରୀତିରେ ରେଖ ଶୈଳୀରେ ନିର୍ମିତ । ଏହା ରାଜା ବୈଦ୍ୟନାଥ ଭଞ୍ଜଦେବଙ୍କ କୀର୍ତ୍ତି । ମନ୍ଦିରଟି ମାଙ୍କଡ଼ା ପଥରରେ ନିର୍ମିତ । ମନ୍ଦିର ଗାତ୍ର ବିଭିନ୍ନ କାରୁକାର୍ଯ୍ୟ ପରିପୂର୍ଣ୍ଣ । ଚତୁଃପାର୍ଶ୍ୱ ପଥର ପ୍ରାଚୀର ଦ୍ୱାରା ବେଷ୍ଟିତ । ମାଣିନ୍ଦୀର କଖାରୁଆ ବୈଦ୍ୟନାଥ ମନ୍ଦିରପରି ବାରିପଦାର ଜଗନ୍ନାଥ ମନ୍ଦିରରେ ବିମାନ, ଜଗମୋହନ ଓ ନାଟ ମନ୍ଦିର ନିର୍ମିତ ।

**ଅମ୍ବିକା ମନ୍ଦିର (ବାରିପଦା)**—ବାରିପଦାରେ ମା' ଅମ୍ବିକାଙ୍କର ମନ୍ଦିର ଉତ୍କଳ ସ୍ଥାପତ୍ୟ ରୀତିର ଗୌଡ଼ୀୟ ଶୈଳୀରେ ନିର୍ମିତ । ବାରିପଦା ସହର ସହିତ ଅମ୍ବିକା ମନ୍ଦିର ନିର୍ମିତ ହୋଇଥିବାର ଜଣାଯାଏ ।

ଅମ୍ବିକା ମନ୍ଦିର ବ୍ୟତୀତ ବାରିପଦାର ବରୁଣେଶ୍ୱର ଶିବଙ୍କ ମନ୍ଦିର ମଧ୍ୟ ଗୌଡ଼ୀୟ ଶୈଳୀରେ ନିର୍ମିତ ।

ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ସମ୍ରାଟ ଔରଙ୍ଗଜେବ ଓ ତତ୍-ପରବର୍ତ୍ତୀ ମୁସଲମାନ ଶାସକ—ଆକ୍ରମଣକାରୀମାନଙ୍କ ଦ୍ୱାରା ବହୁ ହିନ୍ଦୁ ଦେବଦେବୀ ମନ୍ଦିର ଭଙ୍ଗି ମସଜିଦ୍‌ରେ ପରିଣତ କରାଯାଇଥିଲା । ବର୍ତ୍ତମାନ କେବଳ ଉଲ୍ଲିଖିତ କେତେକ ପ୍ରାଚୀନ ମନ୍ଦିରମାନ ଓଡ଼ିଶାର ଗୌରବମୟ ଇତିହାସର ସ୍ମୃତି ରୂପେ ବିଦ୍ୟମାନ ।

## ପ୍ରସିଦ୍ଧ ସ୍ଥାନ

ପ୍ରାଚୀନ ଉତ୍କଳର ଏକ ଅଂଶ ଉତ୍ତର-ପୂର୍ବାଞ୍ଚଳରେ ଅବସ୍ଥିତ ବିଶିଷ୍ଟ ସ୍ଥାନ-ମାନଙ୍କ ବିଷୟରେ ବର୍ତ୍ତମାନ ଉଲ୍ଲେଖ କରାଯାଉଛି । ସେଗୁଡ଼ିକ ଏକ ସମୟରେ

Digitized by srujanika@gmail.com

ଐତିହାସିକ ଓଡ଼ିଶାର ଗୌରବମୟ ସଂସ୍କୃତିର ପତାକ ସ୍ୱରୂପ ଥିଲା । ଏବେ ତାହା ମୂକ ସାକ୍ଷୀ ରୂପେ ବିଦ୍ୟମାନ । ସେ ସମସ୍ତ ପ୍ରସିଦ୍ଧ ଓ ପବିତ୍ର ପୀଠ ସମୂହ ଆଜି ନୀରବ ହେଲେହେଁ ନିଷ୍ଫଳ ନୁହେଁ । ତା'ର ବୁକୁରେ ପାଦ ଦେଲାକ୍ଷଣି ଆଜି ସମଗ୍ର ଶରୀର କମ୍ପି ଉଠେ । ଶିରାରେ ଶିରାରେ ଶିହରଣ ଖେଳିଯାଏ । ସଙ୍ଗେ ସଙ୍ଗେ କାରୁଣ୍ୟର ଦୀର୍ଘ ଶ୍ୱାସ ବୁକୁ ଅସ୍ଥିର ବୋଧ ଆସେ । ହାୟ, ସେଦିନର ସେ ରଣ ଦୁନ୍ଦୁଭି ଆଜି ଆଉ ବାଜୁନି । ଖଣ୍ଡା ତରୁଆଲର ଶବ୍ଦ ଝଙ୍କାର ବୁକୁ କମ୍ପାଇ ଦେଉ ନାହିଁ । ଦେବ ଆରାଧନାର ଶଙ୍ଖ, ଘଣ୍ଟା, ଧ୍ୱନି ଗଗନ ପବନ ମୁଖରିତ କରୁନାହିଁ । ସେ ଶବ୍ଦ ସେ ଝଙ୍କାର ମହାକାଶରେ ବିଲୀନ ହୋଇଯାଇଛି । ସେ ରକ୍ତ, ମେଦ, ମାଂସ ସବୁ ମାଟିରେ ମିଶି ଯାଇଛି । କେବଳ ସ୍ଥାନଟି ମୁଣ୍ଡି ମୃତ ଚର୍ମ ବନ୍ଦ କରି ପଡ଼ିରହିଛି ଅକ୍ଳା ହୋଇ । ସତେକି ତା'ର ମେରୁଦଣ୍ଡ ଭାଙ୍ଗି ଯାଇଛି । ସେ ଆଉ ଉଠି ପାରୁନି, ପାରିବ ନାହିଁ । ସେ ସବୁଠି ଆଜି ତାରୁଣ୍ୟର ଦୀପ୍ତି ନାହିଁ । ଧୂସର ବାର୍ଦ୍ଧକ୍ୟର କହେଳ ଗ୍ରସ୍ତା ବି ନାହିଁ । ଅଛି କେବଳ କଙ୍କାଳର ବଲ୍ମୀକ-ଧ୍ୱଂସ୍ତ ଅସ୍ଥି ରାଶି । ତାହା ଆଜି ନୀରବରେ 'ମରାମରା' ଜପ କରି ଭବିଷ୍ୟତରେ କେଉଁ ମହାକବିର ଆଗମନକୁ ଅପେକ୍ଷା କରିଛି ହୁଏତ ! ହେ ଅଜ୍ଞାତର ମହାବୀର, ଭାବି ମହାକବି ! ତୁମକୁ ପ୍ରଥମେ ପ୍ରଣତି ଜଣାଉଛି ।

ଗଜପତି ଅନଙ୍ଗଭୀମଦେବଙ୍କ ପୁତ୍ର ପ୍ରଥମ ନରସିଂହଦେବ (ଲାଙ୍ଗୁଳା ନରସିଂହଦେବ) ସମଗ୍ର ରାଜ୍ୟରେ ବିରାଟ ରଣସଜ୍ଜା କରିଥିଲେ । ବାଲେଶ୍ୱର ମେଦିନୀ-ପୁର ଜିଲ୍ଲାରେ ଅନେକଗୁଡ଼ିଏ ଦୁର୍ଗ ସ୍ଥାପନ କରି ଯାତାୟତ ପାଇଁ ପଥ ନିର୍ମାଣ ସହିତ ପଥ ଧାରରେ ସୈନ୍ୟମାନଙ୍କ ଗମନାଗମନ ସମୟରେ ସ୍ୱଚ୍ଛ ପାନୀୟ ଜଳର ସହଜ ପ୍ରାପ୍ତି ନିମନ୍ତେ ବହୁ ପ୍ରକାଣ୍ଡ ପୁଷ୍କରିଣୀ ସମସ୍ତ ଖୋଳାଇଥିଲେ ।

ନରସିଂହଦେବଙ୍କ ରାଜତ୍ୱର ପ୍ରଥମ ଅଙ୍କରେ ରେମୁଣାର ପ୍ରସିଦ୍ଧି ଥିଲା । ତତ୍‌କାଳୀନ ଭୌଗୋଳିକ ଦୃଷ୍ଟିକୋଣରୁ 'ରେମୁଣା' କଟକ ସାମରିକ ଦୃଷ୍ଟିକୋଣରୁ ଉପଯୁକ୍ତ ସ୍ଥାନରେ ନିର୍ମିତ ହୋଇଥିଲା । ଏଠାରେ ଗଜପତି ଲାଙ୍ଗୁଳା ନରସିଂହଦେବ ଅନେକ ସମୟରେ ଅବସ୍ଥାନ କରୁଥିଲେ ।

ରେମୁଣାଠାରୁ ଉତ୍ତର-ପଶ୍ଚିମ ଦିଗରେ ହରିଚନ୍ଦନ ଗଡର ଧ୍ୱଂସାବଶେଷ ଥିବାର ଜଣାଯାଏ । ରେମୁଣା କଟକର ଉତ୍ତର-ପୂର୍ବ କୋଣରେ ରାମଚନ୍ଦ୍ରପୁରଠାରେ ଗୋଟିଏ ଦୁର୍ଗ ଥିଲା । ସେଠାରେ ଗୋଟିଏ ପୋଖରୀ ଅଦ୍ୟାବଧି ରହିଅଛି । (୨୪)

Digitized by srujanika@gmail.com

**ଗଡ଼ପଦା ଗଡ଼ :**

ରାମଚନ୍ଦ୍ରପୁର ଉତ୍ତରକୁ କେତେ ମାଇଲ ଦୂରରେ ଆଧୁନିକ ରୂପ୍‌ସା ନିକଟରେ ଗଡ଼ପଦା ଗଡ଼ ଅବସ୍ଥିତ । ଏଠାର ଭୂୟାଁ ଜମିଦାର, ମୋଗଲ ଶାସନ କାଳରେ ମୁସଲମାନ ଧର୍ମ ଗ୍ରହଣ କରିଥିଲେ ।

ଗଡ଼ପଦା ନିକଟରେ ବିଦ୍ୟାଧର ନାମରେ ଏକ ବଡ଼ ପୋଖରୀ ଅଛି । ଏ ପୋଖରୀ କୌଣସି ଜଣେ ବିଦ୍ୟାଧର ନାମଧାରୀ ସେନାପତିଙ୍କର କୀର୍ତ୍ତି ବୋଲି ମନେ ହୁଏ ।

**ବସ୍ତା :**

ଗଡପଦା ଗଡ଼ର କେତେ ମାଇଲ ଉତ୍ତରକୁ 'ବଂଶଦା' ଆଧୁନିକ ବସ୍ତା ଗଡ଼ ଅବସ୍ଥିତ । ନରସିଂହଦେବଙ୍କର ଅସନ ଖୋଲି ତମ୍ବାପଟା (ଖ୍ରୀ: ୧୩୦୩)ରେ ଏ ଗଡ଼ର ଉଲ୍ଲେଖ ଅଛି । ବଙ୍ଗୀୟ ବୈଷ୍ଣବ ସାହିତ୍ୟରେ ମଧ୍ୟ 'ବଂଶଦାର' ଉଲ୍ଲେଖ ଦେଖାଯାଏ ।

**ନରସିଂହପୁର (କାମ୍ଭୁପୁର/କାନପୁର) ଗଡ଼ :**

ବସ୍ତାର କେତେ ମାଇଲ ଉତ୍ତରକୁ ନରସିଂହପୁର ଗଡ଼ ଅବସ୍ଥିତ ଥିଲା । ମୟୂରଭଞ୍ଜ ଜିଲ୍ଲାର ଉତ୍ତର-ପୂର୍ବ ସୀମାରେ ବାରିପଦା ଠାରୁ ୩୦ ମାଇଲ ଦୂରରେ ଅବସ୍ଥିତ । ପ୍ରାଚୀନ ରାସ୍ତାରେ ଶ୍ୟାମାନନ୍ଦଙ୍କର ମଠ ନିମନ୍ତେ ଏ ସ୍ଥାନ ବିଖ୍ୟାତ । ଖାନା-ଇ-ଦୂରିନଙ୍କ ଲିଖିତ ବିବରଣୀ ଓ 'ରସିକମଙ୍ଗଳ' କାବ୍ୟରେ ଏହାର ପୂର୍ବର ନାମ ନରସିଂହପୁର ଥିବାର ଜଣାଯାଏ । ପରବର୍ତ୍ତୀ ସମୟରେ ଏହା କାମ୍ଭୁପୁର ଓ ସମ୍ପ୍ରତି କାନପୁର ନାମରେ ନାମିତ ହୋଇଅଛି ।

**ଅମର୍ଦ୍ଦାଗଡ଼ :**

ନରସିଂହପୁରର ଦଶ ମାଇଲ ଦୂରରେ ଅମର୍ଦ୍ଦାଗଡ଼ ଅବସ୍ଥିତ । ଏଠାରେ ଏକ ଗଡ଼ର ଧ୍ୱଂସାବଶେଷ ଅଛି ଓ ବିଦ୍ୟାଧର ନାମରେ ଏକ ପ୍ରକାଣ୍ଡ ପୋଖରୀ ବିଦ୍ୟମାନ । ଏହି ସୁବୃହତ୍ ପୁଷ୍କରିଣୀକି ମୟୂରଭଞ୍ଜ ମହାରାଜା ବଳଭଦ୍ର ଭଞ୍ଜ (୧୪୬୩ ଖ୍ରୀ·—୧୪୫୪ ଖ୍ରୀ·) ଦେବ ଖୋଳାଇଥିଲେ ବୋଲି କଥିତ ଅଛି । ପୂର୍ବେ ଜଗନ୍ନାଥ ଟ୍ରାଙ୍କ ରୋଡ୍ ଅମର୍ଦ୍ଦା ମଧ୍ୟ ଦେଇ ଗତ କରିଥିବା ସମୟରେ ପୁରୀ ତୀର୍ଥ ଯାତ୍ରୀମାନଙ୍କର ଏ ସ୍ଥାନ ବିଶ୍ରାମସ୍ଥଳୀ ରୂପରେ ବିଦିତ ଥିଲା । ଏକଦା ଏହା ଅମର୍ଦ୍ଦାକ ତୀର୍ଥ ରୂପେ ବିଖ୍ୟାତ ଥିଲା । ମଧ୍ୟଯୁଗରେ ଏହା ଅମର୍ଦ୍ଦୀ ରୂପେ ପ୍ରସିଦ୍ଧ ଥିଲା । ଏହା ନିକଟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯--୧୯୪୫) ସମୟରେ ନିର୍ମିତ ଏକ ବୃହତ୍ ଉଡ଼ାଜାହାଜ ଅବତରଣ ଘାଟୀ ନିର୍ମିତ ହୋଇଥିଲା ।

Digitized by srujanika@gmail.com

**ରାଜଘାଟ :**

ଅମର୍ଦ୍ଦାଗଡ଼ର ଏକ ମାଇଲ ପୂର୍ବକୁ ସୁବର୍ଣ୍ଣରେଖା ନଦୀର ରାଜଘାଟ ଅବସ୍ଥିତ ।

**ବରଡ଼ହାଗଡ଼ :**

ଅମର୍ଦ୍ଦାଠାରୁ ଉତ୍ତର ଦିଗକୁ ଗଲେ ପ୍ରଥମେ "ବରଡ଼ହାଗଡ଼" ପଡ଼ିବ । ଏହା ଏକ କ୍ଷୁଦ୍ର ଗଡ଼ ।

**ରାଇବଣିଆ :**

ଅତୀତ ଉତ୍କଳର ଅନ୍ୟତମ ଓଡ଼ିଶାର ବୃହତ୍ତମ ଦୁର୍ଗ । ଏହି ଦୁର୍ଗ ବା ଗଡ଼ର ପ୍ରକୃତ ନାମ କ'ଣ ଥିଲା ତାହା ଠିକ୍ ଜଣାଯାଏ ନାହିଁ । ଗଜପତି ନରସିଂହ ଦେବଙ୍କ ସମୟରେ ଏହା ନିର୍ମିତ ହୋଇଥିବାର ଇତିହାସରୁ ଜଣାପଡ଼େ । ନରସିଂହ ଦେବ ରେମୁଣା କଟକରେ ଆସି ଅନେକ ସମୟରେ ରହୁଥିବାର ଅଲାଲପୁର, ଅସନଖଲି ପ୍ରଭୃତି ତାମ୍ର ଶାସନମାନଙ୍କରୁ ଜଣାଯାଏ । ଏହି ରେମୁଣା ପରବର୍ତ୍ତୀ ସମୟରେ 'ରାଇବଣିଆ' ✳ ହୋଇଥିବାର କେହି କେହି କହନ୍ତି ।(୨୫) ଦୁର୍ଗଟି ସୁବିସ୍ତୃତ ମାଙ୍କଡ଼ା ପଥରପୂର୍ଣ୍ଣ ଭୂମି ଉପରେ ନିର୍ମିତ । ଏହାର ପୂର୍ବପାଖ କାନ୍ଥର ଦୈର୍ଘ୍ୟ ୧୬୫୦ ଗଜ, ଉତ୍ତର ପାଖ ୧୬୫୦ ଗଜ; ଉତ୍ତର-ପଶ୍ଚିମ ପାଖ ୮୮୦ ଗଜ, ଦକ୍ଷିଣ-ପଶ୍ଚିମ ପାଖ ୧୫୫୦ ଗଜ ଓ ଦକ୍ଷିଣ ପାଖ ୮୮୦ ଗଜ । ଦୁର୍ଗ କାନ୍ଥର ମୂଳପତ୍ତନ ୧୧୨ ଫୁଟ ଓ ଉଚ୍ଚତା ୫୦ ଫୁଟ । ପ୍ରାଚୀର ଚତୁଃପାର୍ଶ୍ୱରେ ସୁଗଭୀର ବୃହତ୍ ପରିଖାମାନ ଥିଲା । ଅର୍ଦ୍ଧ ମାଇଲ୍ ଦୂରତ୍ୱରେ ଆଉ ଏକ ପରିଖା ଦୃଷ୍ଟିଗୋଚର ହୁଏ । ଏହା ଏକ ବିଶାଳ ସେନା ଶିବିର ଥିଲା । ଏଠାରେ "ଜୟ ଚଣ୍ଡୀ" ବନରେ ଅନେକ ଦେବଦେବୀ ପୂଜା ପାଇଥାନ୍ତି ।

ରାଇବଣିଆ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଗୋପ, ଗାବର ଘାଟ, ହାତିଗଡ଼ ପ୍ରଭୃତି ସ୍ଥାନମାନଙ୍କରେ ପ୍ରଚଳିତ ନାନା କିମ୍ବଦନ୍ତୀ ମହାଭାରତର ବିରାଟ ରାଜାଙ୍କ ସହିତ ସଂଯୁକ୍ତ । ଏହି ଦୁର୍ଗଠାରୁ ସାତ ମାଇଲ ଦକ୍ଷିଣ ପୂର୍ବକୁ "ବାଶିଦା" ନାମରେ (?) ଆଉ ଏକ ପ୍ରାଚୀନ ଦୁର୍ଗ/ଗଡ଼ର ଧ୍ୱଂସାବଶେଷ ଦୃଷ୍ଟିଗୋଚର ହୁଏ ।

---

✳ ରେମୁଣା > ରେବଣା > ରାଇବଣିଆ । ଏ ଅଞ୍ଚଳରେ ପ୍ରଚଳିତ ଲୋକଗୀତ ପିଲାଙ୍କୁ ଶୁଆଇବା ଗୀତ ନଂ ୫ ଦ୍ରଷ୍ଟବ୍ୟ)ରେ ଏହି 'ରେବଣା' ଶବ୍ଦର ଉଲ୍ଲେଖ ଥିବାର ଦେଖାଯାଏ ।

Digitized by srujanika@gmail.com

ଜଳେଶ୍ୱର ନିକଟରୁ ରାଇବଣିଆ ଦୁର୍ଗର ଦୂରତା ପ୍ରାୟ ୧୬ ମାଇଲ । ଜଳେଶ୍ୱରର ଉତ୍ତର ପଶ୍ଚିମ କୋଣରେ, ସୁବର୍ଣ୍ଣରେଖା ନଦୀର ତିନି ମାଇଲ ଦକ୍ଷିଣକୁ ଏହା ଅବସ୍ଥିତ । ଏଠାରେ ଦୁର୍ଗାଧିପତିଙ୍କ ନାମ ସମ୍ଭବତଃ 'ରାୟ ବଳିସ୍ତାରସିଂହ' ଥିଲା ।

ସୁବିଶାଳ ରାଇବଣିଆ ଦୁର୍ଗର ଧ୍ୱଂସାବଶେଷ ଓଡ଼ିଆ ସେନାମାନଙ୍କର ଗୌରବପୂର୍ଣ୍ଣ ସମର କୌଶଳରେ ଏକ ମର୍ମନ୍ତୁଦ ମୂର୍ତ୍ତି ମାତ୍ର । କବି ଗୋଦାବରୀଶ ତାଙ୍କ 'ହାଡ଼ଅସ୍ତ୍ର' କବିତାରେ ଏହାର ଗୌରବ ଗାନ କରିଛନ୍ତି । କବିବର ରାଧାନାଥ 'ଉଷା' କାବ୍ୟରେ ନିମ୍ନମତେ ଲେଖିଛନ୍ତି;

"ଜଳେଶ୍ୱର ଯାର ପ୍ରାନ୍ତେ ସତ୍ୱର ବକ୍ର ଗାମିନୀ
ସୁବର୍ଣ୍ଣ ତଟିନୀ ମଗ୍ନ୍ୟମଗ୍ନୀ ଗୁରୁ-ଜନବାକିନୀ
ମୃତ-ପ୍ରତାପର ମୂକ-ସାକ୍ଷୀ ପ୍ରାୟେ ଟେକଇ ଶିର
ଏକାଳେ ଯା'/ବୁଳେ ଶୂନ୍ୟାକାର ଦୁର୍ଗ ଐତିହାସିକ ।" ※

ଫକୀର ମୋହନ 'ଲଛମା' ଉପନ୍ୟାସରେ ଏହାର ଐତିହାସିକ ପ୍ରସିଦ୍ଧି ଉଲ୍ଲେଖ କରିଛନ୍ତି । ବର୍ତ୍ତମାନ ରାଇବଣିଆ ସମ୍ପର୍କରେ ଏତିକିମାତ୍ର କୁହାଯାଇପାରେ, "ଏହି ଦୁର୍ଗ ସ୍ୱାଧୀନ ଉତ୍କଳର ଶୌର୍ଯ୍ୟ, ବୀର୍ଯ୍ୟ, କ୍ରୀଡ଼ାର ମୂକସାକ୍ଷୀ । ବିଦେଶୀ ବିରୁଦ୍ଧରେ ଉତ୍କଳ ନରପତିମାନଙ୍କର ସମରଲୀଳା, ଯବନମାନଙ୍କର ଅତ୍ୟାଚାର, ମରହଟ୍ଟାମାନଙ୍କର ରାଜ୍ୟ ଲୁଣ୍ଠନ ସମସ୍ତ ସ୍ୱ ଚକ୍ଷୁରେ ସନ୍ଦର୍ଶନ କରି ଚିରଦିନ ପାଇଁ ଭୂମୀ ଆଲିଙ୍ଗନ କରିଛି ।" (୨୭)

**ବାଣିଦା ଦୁର୍ଗ :**

ଏକ ଅବହେଳିତ, ଉପେକ୍ଷିତ, ଅନାଲୋଚିତ ପ୍ରାଚୀନ ସ୍ଥାନ । ଜଳେଶ୍ୱର ନିକଟରୁ ୩ ମାଇଲ ଦୂର ପୂର୍ବ ଦିଗକୁ ଏହି କ୍ଷୁଦ୍ର ଗଡ଼ଟି ଅବସ୍ଥିତ । ଏବେ ପୋତି ହୋଇ ପଡ଼ିଛି, ଧ୍ୱଂସାବଶେଷ ବିଦ୍ୟମାନ । ବିସ୍ତୀର୍ଣ୍ଣ ଉଚ୍ଚଭୂମୀ ଉପରେ ଖପର ଖଣ୍ଡ ଜମା ହୋଇ ପଡ଼ିଛି । ବୋଧ ହୁଏ, ସ୍ଥାନଟିର ସମସ୍ତ ଗୃହ ଖପର ଦ୍ୱାରା ଛପର ହୋଇଥିଲା । ଏଥିରେ 'ଭୂୟାଁ' ଉପାଧିଧାରୀ ଅଧିପତି ରହୁଥିଲେ । ଏହାଙ୍କର ବଉଳ, କୁଞ୍ଜ ଓ କୋକିଳା ନାମରେ ତିନି ଝିଅ ଥିବାର କଥିତ ଅଛି ।

---

※ ରାଧାନାଥ ଗ୍ରନ୍ଥାବଳୀ, ୧୯୬୨, ପୃ.୮୭

Digitized by srujanika@gmail.com

ଗଡ଼ଟିର ଚାରିପାଖରେ ଗଡ଼ଖାଇ ରହିଥିଲା । ଏବେ ପୋତି ହୋଇ କୃଷି କ୍ଷେତ୍ରରେ ପରିଣତ ହୋଇଛି । ପୂର୍ବ ଦିଗରେ ଗଡ଼ଚଣ୍ଡୀ ମହାକାଳୀ, ଭଗବତୀ ଓ "ବାଣେଶ୍ୱର" ମହାଦେବଙ୍କ ମନ୍ଦିର ରହିଅଛି । ଗଡ଼ର ଦକ୍ଷିଣକୁ ପ୍ରାୟ ଦୁଇ କି. ମି. ଦୂରରେ 'ଭୁମ୍ବା' ପୋଖରୀ ନାମରେ ଗୋଟିଏ ବଡ଼ ପଦ୍ମ ପୋଖରୀ ରହିଅଛି । ଗଡ଼ର ପଶ୍ଚିମ ଦିଗରେ "ରାଣୀ ବଉଲା"ଙ୍କ ନାମରେ 'ବଉଲ' ପୋଖରୀ ବିଦ୍ୟମାନ । ରାଣୀ ବଉଲ ଦେବୀ ମେଦିନୀପୁରର ମୋହନପୁର ଥାନାର ରାଜନଗର ଗ୍ରାମରେ ତାଙ୍କ ନାମରେ ପୋଖରୀଟିଏ ଖୋଳାଇଥିଲେ । ଅନ୍ୟ ଦୁଇ ରାଣୀ କୃଷ୍ଣ ଓ କୋକିଳ ଦେବୀଙ୍କ ନାମରେ ମଧ୍ୟ ନାତି ବୃହତ୍ ପୁଷ୍କରିଣୀମାନ ରହିଅଛି ।

ଗଡ଼ର ତଳ ଅଂଶ ବିଭିନ୍ନ ସମୟରେ ଖୋଳା ହେବା ଫଳରେ ସପ୍ତମାତୃକା ମୂର୍ତ୍ତି, ଶିଳ, ଶିଳପୁଆ ପ୍ରଭୃତି ବାହାରିବାର ଦେଖାଯାଏ । ଭଗବତୀ ମନ୍ଦିର ସମ୍ମୁଖରେ ଗୋଟିଏ ବିଷ୍ଣୁ ମୂର୍ତ୍ତି ଭଗ୍ନ ଅବସ୍ଥାରେ ରହିଥିବାର ଦେଖାଯାଏ । ଏଠାକାର ଗୋକୁଳାନନ୍ଦ ମୂର୍ତ୍ତି ଆଲଗିରି (ଏଗ୍ରା)ର ସାମନ୍ତଙ୍କ ଦ୍ୱାରା ଅପହୃତ ହୋଇଥିବାର ଜନଶ୍ରୁତି ପ୍ରଚଳିତ ।

ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ରାଇବଣିଆର ପୂର୍ବକୁ ସୁବର୍ଣ୍ଣରେଖା କୂଳରେ ଯେଉଁ କ୍ଷୁଦ୍ର ଦୁର୍ଗର ଅବସ୍ଥିତି ବିଷୟ ଉଲ୍ଲେଖ କରିଛନ୍ତି (ନାମ ଉଲ୍ଲେଖ କରିନାହାନ୍ତି) ସମ୍ଭବତଃ ତାହା ବାଣିଦା ଦୁର୍ଗ ହୋଇପାରେ । ତେବେ ବାଣିଦା ଦୁର୍ଗ ସୁବର୍ଣ୍ଣରେଖାଠାରୁ ଅନ୍ତତଃ ୪/୫ ମାଇଲ ଦୂରବର୍ତ୍ତୀ ସ୍ଥାନରେ ଅବସ୍ଥିତ ।

**ଓଲମରା ଗଡ଼ ଓ ଜମିରପାଳ ଗଡ଼ :**

ଏ ଦୁଇଟି ମଧ୍ୟ ଆକାରରେ ବଡ଼ ନୁହେଁ ।

**ନୟାଗ୍ରାମ ଗଡ଼ :**

ସୁବର୍ଣ୍ଣରେଖାର ଠିକ୍ ଦକ୍ଷିଣ ତୀରରେ ଏକ ନାତିବୃହତ୍ ଦୁର୍ଗ ଅବସ୍ଥିତ ।

**ଗଗନେଶ୍ୱର ଦୁର୍ଗ :**

ସୁବର୍ଣ୍ଣରେଖାର ଉତ୍ତରକୁ ୪/୫ ମାଇଲ ଦୂରରେ ଏହି ଦୁର୍ଗ ଅବସ୍ଥିତ । ଏହା ମଧ୍ୟ ଗୋଟିଏ କ୍ଷୁଦ୍ର ଦୁର୍ଗ । ଏହାର ପଥର ପ୍ରାଚୀର ଲୋକମାନଙ୍କ ମଧ୍ୟରେ 'କୁରୁମବେଢ଼ା' ନାମରେ ଖ୍ୟାତ । କୁରୁମ ବେଢ଼ା ଦୁର୍ଗର ଶିବ ମନ୍ଦିର ପ୍ରସଙ୍ଗରେ ଉଲ୍ଲିଖିତ ବିବରଣୀ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

ରାଜଘାଟଠାରୁ ନିର୍ଗତ ପଥରେ ଜଳେଶ୍ୱର, ଜଳେଶ୍ୱର ପରେ ଉତ୍ତରକୁ ଦାନ୍ତୁଣି ପଡ଼ିବ । ସେଠାରେ ବିଦ୍ୟାଧର ନାମରେ ଗୋଟିଏ ସୁବୃହତ୍ ପୁଷ୍କରଣୀ ରହିଅଛି । ଉପରୋକ୍ତ ସମସ୍ତ 'ବିଦ୍ୟାଧର' ପୁଷ୍କରଣୀମାନଙ୍କ ମଧ୍ୟରେ ଏହା ବୃହତ୍ତମ ।

**ଶରଶଙ୍କ ପୁଷ୍କରଣୀ :**

ଏହା ଲମ୍ବରେ ୪୦୦୦ ଫୁଟ, ପ୍ରସ୍ଥ ୨୫୦୦ ଫୁଟ । ଏହାକୁ ନରସିଂହ ଦେବ ବା ଶରଶଙ୍କ ଦେବ ଖୋଳାଇଥିଲେ । ମକରସଂକ୍ରାନ୍ତି ଦିନ ଏଠାରେ ପ୍ରସିଦ୍ଧ ମେଳା ବସିଥାଏ । ହିନ୍ଦୁମାନେ ପବିତ୍ର ମାଘ ମାସରେ ମକର ସ୍ନାନ କରି ପୁଣ୍ୟ ଅର୍ଜନ କରିଥାନ୍ତି । କେତେକଙ୍କ ମତରେ ବଙ୍ଗ ରାଜା ଶଶାଙ୍କ ଏହା ଖୋଳାଇଥିଲେ । ପ୍ରଚଳିତ କିମ୍ବଦନ୍ତୀ ଓ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ ଏହି ପୋଖରୀ ସମ୍ପର୍କରେ ଲେଖିଛନ୍ତି "ଶଙ୍କ ନାମରେ ବିଖ୍ୟାତ ବିରାଟ ରାଜାର, ତନୟ ଖୋଳାଇଥିଲେ । ସରପାର୍ଶ୍ୱାକାର"* ଏହା ଯେ ଏକ ସାମରିକ କୀର୍ତ୍ତି, ଏହା ନିଃସନ୍ଦେହ । ଦାନ୍ତୁଣୀରେ ଦୀର୍ଘକାଳ ଧରି ଛାଉଣୀ ପଡ଼ିଥିବା ବେଳେ ସୈନ୍ୟମାନଙ୍କ କଠୋର ଦ୍ୱାରା ଏ ପୋଖରୀ ଖୋଳା ହୋଇଥିବା ଅନୁମାନ । (୨୭) ବର୍ତ୍ତମାନ ପଶ୍ଚିମ ବଙ୍ଗଳାରେ ଅନ୍ତର୍ଭୁକ୍ତ ଦାନ୍ତୁଣି ନିକଟରୁ ଉତ୍ତର-ପୂର୍ବକୁ ଗୁରି ପାଞ୍ଚ ମାଇଲ ଦୂରରେ ଏହା ଅବସ୍ଥିତ ।

**ମୋଗଲମାରୀ :**

ପୌରାଣିକ କାବ୍ୟ 'ଶଶିସେଣା'ଙ୍କର ପାଠଶାଳା ରୂପେ ବିଖ୍ୟାତ । ଏହି ସ୍ଥାନଟି ଐତିହାସିକ ଦିଗରୁ ମଧ୍ୟ ପ୍ରସିଦ୍ଧ । ଖ୍ରୀ. ୧୫୭୪ ଅବ୍ଦରେ ବଙ୍ଗର ସୁଲତାନ ଦାଉଦ ଖାଁଙ୍କୁ ଅଧୀନସ୍ଥ କରିବା ନିମନ୍ତେ ସମ୍ରାଟ ଆକବର ମୁନିମ୍ ଖାଁ ଓ ତୋଡ଼ର-ମଲ୍ଲଙ୍କୁ ପଠାଇଥିଲେ । ଦାଉଦଙ୍କୁ ଅନୁଧାବନ କରି ଏ ଦୁଇଜଣ ଜଳେଶ୍ୱର ପର୍ଯ୍ୟନ୍ତ ଅଗ୍ରସର ହେଲେ । ଜଳେଶ୍ୱରର ୭ ମାଇଲ ପଶ୍ଚିମରେ ଓ ଦାନ୍ତନର ଦୁଇ ମାଇଲ ଉତ୍ତରରେ ସୁବର୍ଣ୍ଣରେଖା କୂଳରେ ୧୫୭୫ ଖ୍ରୀ ରେ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଏ ଯୁଦ୍ଧରେ ଜଣେ ମୋଗଲ ସେନାପତି ନିହତ ହୋଇଥିଲେ । ରାଜା ତୋଡ଼ରମଲ୍ଲ ପଠାଣ ସୈନ୍ୟଙ୍କ ସହିତ ବିଜୟୀ ହୋଇଥିଲେ । ମୋଗଲ ସେନାପତି ନିହତ ହୋଇ-ଥିବାରୁ ଏ ସ୍ଥାନ 'ମୋଗଲମାରି' ନାମରେ ପରିଚିତ । ଏହା ଏବେ ମେଦନୀପୁର ଜିଲ୍ଲାରେ ଅବସ୍ଥିତ ।

---

* ବିରାଟ ନଗର ଓ ସ୍ୱର୍ଣ୍ଣରେଖା, ପ. ରୁଦ୍ରନାରାୟଣ ଷଡ଼ଙ୍ଗୀ ।

Digitized by srujanika@gmail.com

ଏହି ମୋଗଲମାରି ବା ମୁସଲମାରି ବିଷୟରେ ପ୍ରଚଳିତ କିମ୍ବଦନ୍ତୀକୁ ନେଇ ଓଡ଼ିଆ ଓ ବଙ୍ଗଳାର ବହୁ କାବ୍ୟ ରଚିତ ହୋଇଥିବାର ଦେଖାଯାଏ । ପୂର୍ବେ ଏଠାରେ ବିକ୍ରମ କିତ୍ ନାମରେ ଜଣେ ରାଜାଙ୍କର ରାଜଧାନୀ ଥିବାର କେତେକ ଧ୍ୱଂସାବଶେଷରୁ ପ୍ରମାଣ ମିଳେ । ବିକ୍ରମଜିତ୍ ବା ପ୍ରତାପାଦିତ୍ୟଙ୍କର ଶଶିସେଣା ନାମରେ ଅତି ସୁନ୍ଦରୀ କନ୍ୟାଟିଏ ଥିଲା । ଦୁର୍ଗ ସମ୍ମୁଖରେ ଥିବା ଚାଟଶାଳୀରେ ଶଶିସେଣା ପାଠ ପଢ଼ୁଥିଲେ । ଶଶିସେଣାଙ୍କ ସମ୍ପର୍କରେ ପ୍ରଚଳିତ କାହାଣୀକୁ ଅବଲମ୍ବନ କରି ଓଡ଼ିଆରେ ବନମାଳୀ ଦାସ 'ଚାଟଇଚ୍ଛାବତୀ', ରାଜକବି ଧନଞ୍ଜୟ 'ଇଚ୍ଛାବତୀ' ଓ ବଙ୍ଗ-ଦେଶୀୟ କବି ଫକୀର ରାମ 'ସଖିସେନା' ପ୍ରଭୃତି କାବ୍ୟମାନ ରଚନା କରିଛନ୍ତି । ଏ ସମ୍ବନ୍ଧରେ ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିଦ୍ ୰ ନଗେନ୍ଦ୍ରନାଥ ବସୁ ନିମ୍ନ ପ୍ରକାରେ ଲେଖିଛନ୍ତି ।

"ଶଶୀସେଣା ସମ୍ପର୍କୀୟ ଲୋକପ୍ରିୟ କାହାଣୀଟି ଏ ଅଞ୍ଚଳରେ ପ୍ରାୟ ସର୍ବତ୍ର ପ୍ରଚଳିତ । ସେ ବିକ୍ରମଜିତ୍/ପ୍ରତାପାଦିତ୍ୟଙ୍କର କନ୍ୟା ଥିଲେ । ସମସ୍ତ ଥିଲା ଯେତେ-ବେଳେ ତାଙ୍କ ସମ୍ପର୍କୀୟ କାହାଣୀଟି ଏ ଅଞ୍ଚଳ କେବଳ ନୁହେଁ ସମଗ୍ର ପଶ୍ଚିମ ବଙ୍ଗରେ ପ୍ରଚଳିତ ଥିଲା ।

ସ୍ଥାନୀୟ ଲୋକମାନଙ୍କର ବିଶ୍ୱାସ ଯେ ଶଶୀସେଣା ଓ ତାଙ୍କ ସ୍ୱାମୀ ପ୍ରତ୍ୟାବର୍ତ୍ତନ କରିବାପରେ ଚାଟଶାଳୀ ଥିବା ସ୍ଥାନରେ ଗଡ଼ଟି ନିର୍ମାଣ କରିଥିଲେ । ଆକ୍ରମଣକାରୀ ମୁସଲମାନଙ୍କ ଦ୍ୱାରା ଗଡ଼ଟି ଧ୍ୱଂସପ୍ରାପ୍ତ ହୋଇଥିଲା !"

("The story of Sasisena is almost universally known in this part of the country. She was the daughter of king Vikramajit, alias Pratapaditya. A time was when her story was both told and listened to with great interest not in this part alone, but through out the length and breadth ot West-Bengal.

There is a belief amongest the natives of this place that the gada was built by Sasisena and her husband, on their return, just on the spot where the school once stood. Hence, the place is still known by the name of Sasisena. It was at the hands of the Mohamedans that this gada met with its destruction.")

Digitized by srujanika@gmail.com

ନଗେନ୍ଦ୍ର ବସୁଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ପ୍ରାଚୀନ କାଳରେ 'ମୁଘଲ-ମାର୍ଗ'ରେ ଭଞ୍ଜ ବଂଶର ଗୋଟିଏ ଦୁର୍ଗ ଥିଲା । (୬୮)

ଏହି କମ୍ପଦନ୍ତୀକୁ ନେଇ ପ୍ରଥମେ ବନମାଳୀ ଦାସ କାବ୍ୟ ରଚନା କରିଥିବାର ଜଣାଯାଏ । ଭଞ୍ଜ ନରପତିଙ୍କୁ ସେ ଭୋଜ ରୂପେ କଳ୍ପନା କରିଥିବାର ଦେଖାଯାଏ । ତାଙ୍କ ରାଜ୍ୟର ସୀମା ସୁବର୍ଣ୍ଣରେଖା ନଦୀ ଥିବାର କଥା କବି ଉଲ୍ଲେଖ କରିଛନ୍ତି । କବି ଷଷ୍ଠ ଛାନ୍ଦରେ 'ଦାନ୍ତନ କଟକ'ର ନାମ ଉଲ୍ଲେଖକରି ଏହାର ଐତିହାସିକତା ପ୍ରଦାନ କରିଛନ୍ତି । କବି ବନମାଳୀ ଦାସ ସପ୍ତଦଶ ଶତକର ପ୍ରାକ୍ କାଳରେ ଆବିର୍ଭୂତ ହୋଇଥିବାର ସ୍ଥିର କରାଯାଇପାରେ ।

'ଗୁପ୍ତ ଇଚ୍ଛାବତୀ' କାବ୍ୟର ଭାଷା ଓ ଉପରୋକ୍ତ ବିଷୟ ଅର୍ଥାତ୍ ଏ ଅଞ୍ଚଳର କମ୍ପଦନ୍ତୀକୁ ଆଶ୍ରୟକରି ପ୍ରଥମେ କାବ୍ୟ ରଚନା କରିଥିବା ହେତୁ କବି ବନମାଳୀ ଦାସଙ୍କୁ ଉତ୍ତର-ପୂର୍ବାଞ୍ଚଳର ଜଣେ କବି ଭାବରେ ମନେ କରାଯାଇପାରେ ।

**ନାରାୟଣ ଗଡ଼ :**

ଦାନ୍ତୁଣିରୁ ପ୍ରାୟ ୬୦ ମାଇଲ ଉତ୍ତରକୁ ଅବସ୍ଥିତ । ଏହା ଏକ ବୃହତ୍ ଗଡ଼ । ଏକଦା ଏ ଅଞ୍ଚଳ ଠଗ ବା ଦସ୍ୟୁ ଅଧ୍ୟୁଷିତ ଥିଲା । ଫକୀର ମୋହନ ତାଙ୍କ ଆତ୍ମଜୀବନ ଚରିତରେ ଲେଖିଛନ୍ତି, "ହାଲଦୀ ମଝାମଝି, ନାରାଣ ଗଡ଼ ପାରହେଲେ କୁଣ୍ଟମୁଣ୍ଡ ଦେଖାଦେଖି ।"

କଂସାଇ ନଦୀର ଉତ୍ତରକୁ ମେଦିନୀପୁର ଦୁର୍ଗ, କର୍ଣ୍ଣଗଡ଼, ଗଡ଼ବେତା ଆଦି କେତୋଟି ଗଡ଼ର ଅବସ୍ଥିତି ରହିଥିଲା ।

**ଗଡ଼ମନ୍ଦାରଣ :**

ଉତ୍ତର ଦିଗରେ ସବାଶେଷକୁ ହୁଗୁଳି ଜିଲ୍ଲାରେ ଗଡ଼ମନ୍ଦାରଣ/ମନ୍ଦାରୁଣୀ ଅବସ୍ଥିତ ଥିଲା । ଲୋକଗୀତ (ପିଲା ଶୁଆଇବା ଗୀତ)ରେ ଏହି ଗଡ଼ର ଉଲ୍ଲେଖ ହୋଇଅଛି । (ଢୁଆ ଶାଶୁଘର ଗଡ଼ ମନ୍ଦାର) ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଗଙ୍ଗ ରାଜବଂଶ କାଳରେ ବାରାଣସୀ କଟକଠାରୁ ଗଡ଼ ମନ୍ଦାରଣ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ସାମରିକ ବ୍ୟବସ୍ଥା ଉପରୋକ୍ତ ଭାବରେ ଥିବାର ଜଣାଯାଏ ।

ମେଦିନୀପୁରର ଦକ୍ଷିଣ ପଶ୍ଚିମ ଦିଗ ଝାଡ଼ଗ୍ରାମ ଅଞ୍ଚଳର ପ୍ରଖ୍ୟାତ ସ୍ଥାନ ବିଷୟରେ ଉଲ୍ଲେଖ କରୁଛି ।

Digitized by srujanika@gmail.com

**ଝାଡ଼ଗ୍ରାମ ଗଡ଼ :**

ଝାଡ଼ଗ୍ରାମ ରାଜବଂଶ ଦ୍ୱାରା ନିର୍ମିତ ଗଡ଼ ଉଚ୍ଚ ପ୍ରାଚୀର ଓ ପରଖା ବେଷ୍ଟିତ । ଗଡ଼ ଭିତରେ ଗାୟତ୍ରୀ ଦେବୀଙ୍କର ମନ୍ଦିର ଅବସ୍ଥିତ ।

**ମେଳ ଓ କେରେଦା ପୁଷ୍କରଣୀ :**

ଝାଡ଼ଗ୍ରାମ ଗଡ଼ର ଦୁଇ ମାଇଲ ଦୂରରେ ଏ ଦୁଇଟି ବୃହତ୍ ପୁଷ୍କରଣୀ । ଏଠାକାର ରାଜା ଦର୍ପନାରାୟଣ ମଲ୍ଲ ଉଗାଲଷଣ୍ଡ ଏହି ଦୁଇଟି ପୁଷ୍କରଣୀ ଖୋଳାଇ ଥିଲେ ।

**ଚିଲକୀଗଡ଼ (ଜାମବଣୀ) :**

ଜାମବଣୀ ରାଜାଙ୍କର ଦୁର୍ଗ । ଏଠାରେ କେବଳ ଦୁର୍ଗାଙ୍କର ମନ୍ଦିର ପ୍ରସିଦ୍ଧ ଓ ଏହା ଏକ ଦର୍ଶନୀୟ ସ୍ଥାନ ।

**ରାମଗଡ଼, ଲାଲଗଡ଼ ଓ ଶୀଲ୍‌ଦା—ବୀନପୁର :**

ରାମଗଡ଼, ଲାଲଗଡ଼ ଓ ଶୀଲଦାର ପୂର୍ବ ରାଜନ୍ୟ ବର୍ଗଙ୍କର ଗଡ଼ ଓ ମନ୍ଦିରର ଧ୍ୱଂସାବଶେଷ ବିଦ୍ୟମାନ ।

**ଦାପାକୟ୍ୟାର ବୃଦ୍ଧ ପ୍ରସ୍ତର ସ୍ତମ୍ଭ :**

କେଶୀଆଡ଼ିରୁ ସାତମାଇଲ ଉତ୍ତର ଦିଗକୁ କୁଲଟିକରି ଯିବା ରାସ୍ତାରେ କୟ୍ୟାର ପାଞ୍ଚ/ଛଅ ସଂଖ୍ୟକ ପ୍ରସ୍ତର ସ୍ତମ୍ଭ ସବୁ ଦୃଷ୍ଟିଗୋଚର ହୁଏ । ଏହାକୁ ନେଇ ବହୁ ପ୍ରବାଦ ପ୍ରଚଳିତ ।

**ଚନ୍ଦ୍ରରେଖା ଗଡ଼ (ନୟାଗ୍ରାମ) :**

ଚନ୍ଦ୍ରକେତୁଙ୍କ ନିର୍ମିତ କୀର୍ତ୍ତି ।

**ଖେଲାଡ଼ ଗଡ଼ (ନୟାଗ୍ରାମ) :**

ଚନ୍ଦ୍ରରେଖା ଗଡ଼ଠାରୁ ଅଳ୍ପ ଦୂରରେ ଅବସ୍ଥିତ । ଏ ଗଡ଼ ବର୍ତ୍ତମାନ ଧ୍ୱଂସ ସ୍ତୂପରେ ପରିଣତ । ଏଠାରେ ନୀଳ ପଥରରେ ନିର୍ମିତ ମୂର୍ତ୍ତି ଥିବାର ଦେଖାଯାଏ ।

**ତପୋବନ :**

ରାମେଶ୍ୱର ନାଥ ମନ୍ଦିରଠାରୁ ଦୁଇ ମାଇଲ ଉତ୍ତର ଦିଗକୁ ଜଙ୍ଗଲ ମଝିରେ ଏହାର ଅବସ୍ଥିତି । ଏହାର ନିକଟରେ ଝରଣାଟିଏ ପ୍ରବାହିତ । ଏହା ବାଲ୍ମୀକିଙ୍କ ତପୋବନ ନାମରେ ଏ ଅଞ୍ଚଳର ଲୋକ ସମାଜରେ ପ୍ରସିଦ୍ଧ ।

Digitized by srujanika@gmail.com

**କାହ୍ନୁରୀ ଗ୍ରାମର ପ୍ରାଚୀନ କୀର୍ତ୍ତି :**

କାନ୍ଥୀ ବାହୁଗ୍ମ ଗ୍ରାମ ମଝିରେ ଗୃହଗୋଟି ମାଟିର ସ୍ତୂପ ଧ୍ୱଂସାବଶେଷ ଆକାରରେ ରହିଅଛି । ଏଗୁଡ଼ିକ ସମ୍ଭବତଃ ବୌଦ୍ଧ ସ୍ତୂପର ଧ୍ୱଂସାବଶେଷ । ପୂର୍ବେ ଏଠାରେ ଏକ 'ବିହାର' ଥିବା ଅନୁମାନ କରାଯାଏ ।

ଏଠାରେ ତିନିଗୋଟି ପ୍ରକାଣ୍ଡ ପୁଷ୍କରିଣୀ ଭୀମ ସାଗର, ହେମ ସାଗର ଓ ଲେହୁତ ସାଗର ନାମରେ ବିଦ୍ୟମାନ ।

**ଖେଜୁରୀ ବନ୍ଦର :**

ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବନ୍ଦର ରୂପେ ପ୍ରସିଦ୍ଧ ଥିଲା ।

**ଉତ୍କଳ ବିଦ୍ୟାପୀଠ ଖଡ଼ଗପୁର :**

ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରସାର କ୍ଷେତ୍ରରେ ଏହି ବିଦ୍ୟାଳୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । ୧୯୪୭ ମସିହା ଫେବୃଆରୀ ୨୩ ତାରିଖ ଦିନ ଡଃ ହରେକୃଷ୍ଣ ମହତାବ ଏହି ବିଦ୍ୟାପୀଠର ଭିତ୍ତି ସ୍ଥାପନ କରିଛନ୍ତି । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଉଦ୍ୟମରେ ୧୯୨୨ ମସିହାରେ ଏଠାରେ 'ଉତ୍କଳ ସମାଜ' ଗଠିତ ହୋଇଥିଲା । ୧୯୫୫ରେ ପ୍ରାଥମିକ ସ୍କୁଲ, ୧୯୫୬ ମସିହାରେ ଜୁନିଅର ହାଇସ୍କୁଲ ଏବଂ ୧୯୫୭ ମସିହାରେ ଏକ ପୂର୍ଣ୍ଣାଙ୍ଗ ହାଇସ୍କୁଲ ରୂପେ ପଶ୍ଚିମବଙ୍ଗ ସରକାରଙ୍କ ସ୍ୱୀକୃତିପ୍ରାପ୍ତ । ଏହି ବିଦ୍ୟାଳୟ ଗଠନରେ ପଣ୍ଡିତ ଗୋଦାବରୀଶ, ଚନ୍ଦ୍ରମଣି ଆଚାର୍ଯ୍ୟ, ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ବୈକୁଣ୍ଠ ନାଥ ଜେନା, ରାଧାନାଥ ରଥ, ଯଦୁନାଥ ଦାଶ ମହାପାତ୍ର, ସାତକଡ଼ି ହୋତା ଓ ଜୟକୃଷ୍ଣ ପାଣିଗ୍ରାହୀଙ୍କ ଅବଦାନ ଅବିସ୍ମରଣୀୟ । ଏଥିପାଇଁ ପଶ୍ଚିମବଙ୍ଗର ତତ୍କାଳୀନ ଉପମନ୍ତ୍ରୀ ଗୁରୁଚନ୍ଦ୍ର ମାଇତି (ମହାନ୍ତି)ଙ୍କ ଉଦ୍ୟମ ମଧ୍ୟ ଉଲ୍ଲେଖଯୋଗ୍ୟ । ଓଡ଼ିଆ ଭାଷା ଓ ସାହିତ୍ୟ ଶିକ୍ଷାଦାନ ସହିତ ଓଡ଼ିଶାର ବିଭିନ୍ନ ପର୍ବପର୍ବାଣୀ, ପ୍ରତିଷ୍ଠା ପୂଜା ପ୍ରଭୃତି ଅନୁଷ୍ଠାନ ଏହି ବିଦ୍ୟାପୀଠରେ ପାଳିତ ହୋଇଥାଏ ।

ମେଦିନୀପୁର ଅଞ୍ଚଳରେ ଅବସ୍ଥିତ ବିଭିନ୍ନ ଗ୍ରାମ ଓ ସ୍ଥାନମାନଙ୍କରୁ ଓଡ଼ିଆମିର ପରିଚୟ ମିଳେ । ଯଥା—କାନ୍ଥୀ, ପଶ୍ଚିମ ବାଡ଼, ବାଲିଚକ, ଆମ୍ବ ଗଡ଼ିଆ, ଫୁଲ ବାଡ଼ିଆ, କଣ୍ଡା ପୋଖରୀ, ଓଡ଼ିଆ ସାହି, ବ୍ରାହ୍ମଣ ବାଡ଼ିଆ, ହଳଦୀ ବାଡ଼ିଆ ପ୍ରଭୃତି ବହୁ ଗ୍ରାମର ନାମ ଓଡ଼ିଶା ଗ୍ରାମର ନାମ ପରି ।

ବର୍ତ୍ତମାନ ହଳଦୀ ନଦୀରେ ପ୍ରସିଦ୍ଧ ହଳଦିଆ ବନ୍ଦର ତିଆରି କାର୍ଯ୍ୟ ଚାଲିଅଛି । 'ହଳଦୀ' ନିଓଡ଼ିଆ ଶବ୍ଦ । ବଙ୍ଗଳାରେ ହଳଦିକୁ 'ହଲୁଦ୍' ବୋଲି କୁହାଯାଏ । ଏହିପରି

Digitized by srujanika@gmail.com

ମେଦନୀପୁରରେ ଅନେକ ଗ୍ରାମ ଓ ସ୍ଥାନ ରହିଅଛି—ଯେଉଁଥିରେ ଓଡ଼ିଆ ଚିହ୍ନ ଏବେ ବି ସ୍ପଷ୍ଟ ରହିଅଛି ।

**ଜଳେଶ୍ୱର :**

ଜଳେଶ୍ୱର ନାଥ ଶିବଙ୍କ ନାମାନୁସାରେ 'ଜଳେଶ୍ୱର' ହୋଇଅଛି । ଏହି ଶିବ ମନ୍ଦିରକୁ ଭାଙ୍ଗି ମୁସଲମାନ ଶାସନ ସମୟରେ ମସ୍‌ଜିଦ୍ ନିର୍ମିତ ହୋଇଥିବାର ପ୍ରମାଣ । ରାଜା ତୋଡ଼ରମଲ୍ଲଙ୍କ ବନ୍ଦୋବସ୍ତ ଅନୁସାରେ ତତ୍‌କାଳୀନ ଓଡ଼ିଶା ପାଞ୍ଚଗୋଟି ସରକାରରେ ବିଭକ୍ତ ଥିଲା ଓ ତନ୍ମଧ୍ୟରୁ ଜଳେଶ୍ୱର ସରକାର ଅନ୍ୟତମ ଥିଲା । ବର୍ତ୍ତମାନ ବାଙ୍କୁଡ଼ା/ହୁଗୁଳି ଜିଲ୍ଲାର କିଛି ଅଂଶ, ସମଗ୍ର ମେଦନୀପୁର ଜିଲ୍ଲା, ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର କିଛି ଅଂଶକୁ ନେଇ ଜଳେଶ୍ୱର ସରକାର ଗଠିତ ହୋଇଥିଲା । ଜଳେଶ୍ୱର ସରକାରର ମୁଖ୍ୟ ଦପ୍ତର ଜଳେଶ୍ୱରଠାରେ ରହିଥିଲା । ତୋଡ଼ରମଲ୍ଲଙ୍କ ସମୟରେ ତତ୍କାଳୀନ ମୁଖ୍ୟ ରାମଚନ୍ଦ୍ର ଖାନ୍ ପରେ 'ରାୟ' ଉପାଧି ଧାରଣ କରି ପ୍ରଥମେ ଜଳେଶ୍ୱର ଓ ପରେ ଲକ୍ଷ୍ମଣନାଥଠାରେ ବାସ କରିଥିଲେ ।

**ଲକ୍ଷ୍ମଣନାଥ :**

ପ୍ରସିଦ୍ଧ ଶାକ୍ତପୀଠ ଲକ୍ଷ୍ମଣନାଥ ଗଡ଼ ବହୁ ଦେବଦେବୀଙ୍କର ମନ୍ଦିର ନିମନ୍ତେ ପ୍ରସିଦ୍ଧ । ଏଠାରେ ବାଲେଶ୍ୱରର ଦ୍ୱିତୀୟ ପ୍ରାଚୀନ ଉଚ୍ଚ ଇଂରାଜୀ ବିଦ୍ୟାଳୟ (୧୮୭୭) ଅବସ୍ଥିତ ।

**ବୈରାଟ ପୁଷ୍କରିଣୀ :**

ଜଳେଶ୍ୱରଠାରୁ ୭ କି: ମି: ଉତ୍ତରକୁ ଜଗନ୍ନାଥ ସଡ଼କର ଦୁଇ କି: ମି: ପଶ୍ଚିମ ଦିଗରେ ଏହି ପ୍ରକାଣ୍ଡ ପୁଷ୍କରିଣୀ ଅବସ୍ଥିତ ।

**ବୀରକୁଳ :**

ବୀରକୁଳ, ବୋଗରାଇ, କାମ୍ପୁକୁଣ୍ଡା ପ୍ରଭୃତି ପ୍ରାଚୀନ ଓଡ଼ିଶାର ଗୌରବପୂର୍ଣ୍ଣ ସ୍ଥାନ ବିଷୟରେ ରାଧାନାଥ 'ଚିଲିକା' କାବ୍ୟରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି—

"ବୀରକୁଳ ନାମେ ବୀର ପରିପୂର୍ଣ୍ଣ-ସ୍ଥଳୀ ଜାତ
ସୁଗନ୍ଧ ଯହିଁ ନାଗ ବଲ୍ଲୀ ଦଳେ ଗାଢ଼େ ଜଡ଼ିତ;
ହେମଫଳେ ନମ୍ର ଯହିଁ ଲଙ୍କା-ଆମ୍ର-ପାଦପ-ପନ୍ତି
କ୍ଳାନ୍ତ ପଥିକେ ଶାଖା ସଞ୍ଚାଳନ—ଛଳେ ଡାକନ୍ତି,
କୁମାରଦା ଆଦିସ୍ଥଳୀ ବୀରଦ୍ରୁମ ନିକୁଞ୍ଜ ନୀଳ
ସୁବର୍ଣ୍ଣ ତଟିନୀ-ପଟ୍ଟରେ ଯାର ତନୁ ପର୍ଙ୍କିଳ,

Digitized by srujanika@gmail.com

ଖେଗସ୍ତ ଯାର ଦଗନ୍ତ ବସ୍ତାର ସିକତା ସ୍ତଣି-
ଣିରେ ଖେଳୁଥିଲା ରଙ୍ଗେ ଦନେ ସିନ୍ଧୁ-ତରଙ୍ଗ ଆସି,
ଏବେ ପାଦେ ଯାର ଚକ୍ରବାଳ-ବ୍ୟାପୀ ଶାଳ-କେଦାର
ଶରତେ ଧରଇ ବାତା-ହତ ସିନ୍ଧୁ-ତରଙ୍ଗାକାର;
ସେ ଶାଳ କେଦାରେ ଦୂରୁଁ ଦଶେ ଯାର ସିକତାକୂଦ,
ପାସ୍ତବାରେ ଯେସ୍ନେ ଜଳଦେବତାଙ୍କ ଶଙ୍ଖ-ସଉଧ ।
ଯାଗକୁଣ୍ଡ ସହି ଘନ-ତାଳୀବନ ଶ୍ୟାମଳ-ଛାସ୍ତ
ସୁବର୍ଣ୍ଣ-ତଟିନୀ ସିନ୍ଧୁ ଅଙ୍ଗେ ଅଙ୍ଗ ଢାଳେ ଗହ୍ୱାସ୍ତ,
ବେଦାଙ୍କର ସହି ମିର ସଘର୍ଷଜ ଧୀର ନର୍ଘୋଷ
ଉପୁଜାଏ ଦେବ ଭୂଷଣ୍ଡ-ଈଶ୍ୱରେ ନରତେ ତୋଷ;
ବୋଲଙ୍ଗ କୀଚକ-କୁଞ୍ଜ-ପୁଞ୍ଜେ ଯାର ମେଚକକାନ୍ତ
ଉପକୂଳେ ବାଲ-ସ୍ତୂପେ ଉପୁଜାନ୍ତ ଶଇଳ ଭ୍ରାନ୍ତ,
କରନ୍ତ ଯୁବକେ ପଣ୍ଡପକ୍ୱ ସହି ଆୟୁଧ-ଶିକ୍ଷା
ରୁକ୍ଷ ଯୁବତୀଙ୍କି ପାଶ୍ୱଧିରେ ଦେଇ ବୈଧବ୍ୟ-ଦୀକ୍ଷା ।" *

ଖେଗସ୍ତଇରେ ପ୍ରସିଦ୍ଧ ଚନ୍ଦନେଶ୍ୱର ମହାଦେବଙ୍କ ମନ୍ଦର ଅବସ୍ଥିତ । କବିବରଙ୍କ ବର୍ଣ୍ଣନାରୁ ଉଦ୍ଧୃତ ପ୍ରଦାନ କଲାପରେ ଖେଗସ୍ତଇ ସମ୍ପର୍କରେ ଅଧିକ କହିବା ନିଷ୍ପ୍ରୟୋଜନ ।

## ପିପିଲି :

"ଅମର୍ଦା-ସ୍ତଜଘାଟର ପୂର୍ବକୁ ପ୍ରାୟ ୮/୧୦ ମାଇଲ ଦୂରରେ ଓଡ଼ିଶାର ପ୍ରସିଦ୍ଧ 'ପିପିଲି' ବନ୍ଦର ସୁବର୍ଣ୍ଣରେଖା ନଦୀ ଉପରେ ଅବସ୍ଥିତ । 'ବଙ୍ଗରେ ପର୍ତ୍ତୁଗୀଜ' ପୁସ୍ତକରେ ଲିଖିତ ଅଛି ଯେ ପର୍ତ୍ତୁଗୀଜମାନେ ଖ୍ରୀ: ୧୫୧୪ରେ ପିପିଲିଠାରେ କୋଠି ସ୍ଥାପନ କରିଥିଲେ । ସମ୍ଭବତଃ ପିପିଲି ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ପୂର୍ବରୁ ପ୍ରସିଦ୍ଧ ଥିଲା । ମୋଗଲ ସମ୍ରାଟ ଶାହାଜାହାନଙ୍କ ସମୟରେ ଏହାର ନାମ 'ସାହ ବନ୍ଦର' ହେଲା, ଜାମକୁଣ୍ଡାରେ ଏକ ଦୁର୍ଗ ସ୍ଥାପିତ ହୋଇ ପିପିଲି ବନ୍ଦରର ସୁରକ୍ଷା ବ୍ୟବସ୍ଥା କରା-ଯାଇଥିଲା ।

---

* ରାଧାନାଥ ଗ୍ରନ୍ଥାବଳୀ, ପୃ. ୮୬-୮୭, ୧୯୬୨ ।

Digitized by srujanika@gmail.com

**ବାଲିଆପାଳ :**

ଉତ୍ତର ବାଲେଶ୍ୱରରେ ବସ୍ତାଠାରୁ ୧୫ ମାଇଲ ଦୂରକୁ ଏକ ସହର । ନିକଟରେ ଅତୀତର ପ୍ରସିଦ୍ଧ କରତତାଳ ଦୁର୍ଗ, ଜାମୁକୋଣ୍ଡା ଭୂୟାଁଙ୍କ ଗଡ଼ ପ୍ରତିଷ୍ଠିତ ଥିଲା । ନିକଟରେ ଲଙ୍ଗଳେଶ୍ୱର ମହାଦେବ ମନ୍ଦିର ଓ ଷୋଳଷାପାଣ୍ଡୁ ଅବସ୍ଥିତ । ଏଠାରୁ ପିପିଲି ବନ୍ଦରକୁ ଯାତାୟାତର ସୁବିଧା ଥିଲା । ଏହା ଏକ ବାଣିଜ୍ୟିକ ପେଣ୍ଠ ରୂପେ ପରିଚିତ ।

**ପିଣ୍ଡାବଣିଆ, ରୂପ୍‌ସା :**

ରୂପ୍‌ସାଠାରୁ ଦକ୍ଷିଣକୁ ଅଳ୍ପ ଦୂରରେ ଅବସ୍ଥିତ । ଏଠାରେ ଦୋଳପୂର୍ଣ୍ଣିମା ଉପଲକ୍ଷେ ସାତଦିନ ଧରି ମେଳନ ବସେ । ଏହା ଉତ୍ତର ବାଲେଶ୍ୱର ଅଞ୍ଚଳର ବଡ଼ ମେଳନ ପର୍ବ ।

**ବାଲେଶ୍ୱର :**

ପୌରାଣିକ ଅସୁର ରାଜା ବାଣାସୁର ଏଠାରେ ବାଣେଶ୍ୱର ମହାଦେବଙ୍କୁ ପ୍ରତିଷ୍ଠା କରିଥିଲେ । କାଳକ୍ରମେ ସ୍ଥାନଟି ବାଣେଶ୍ୱର ପରିଶେଷରେ ବାଲେଶ୍ୱର ନାମରେ ପରିଚିତ ହୋଇଥିବାର କୁହାଯାଏ । ମନ୍ଦିର ନିକଟସ୍ଥ ସ୍ଥାନ ଏବେ ପୁରୁଣା ବାଲେଶ୍ୱର ନାମରେ ପରିଚିତ । କେତେକଙ୍କ ମତରେ ବାଲେଶ୍ୱର ଶବ୍ଦଟି ମୋଗଲ ରାଜତ୍ୱ ସମୟରୁ ପ୍ରଚଳିତ ହେଲା । ପାର୍ଶୀ ଶବ୍ଦ ବାଲ୍‌-ଏ-ସର (ସମୁଦ୍ର ତଟବର୍ତ୍ତୀ ସହର)ରୁ ଏହା ସୃଷ୍ଟି ହୋଇଥିବାର ମଧ୍ୟ କୁହାଯାଏ । ଅନ୍ୟ କେତେକଙ୍କ ମତରେ ଏହି ନଗର ବାଲୁକା ରାଶି ଉପରେ ସ୍ଥାପିତ ହୋଇଥିବାରୁ ଏହାର ନାମ ବାଲେଶ୍ୱର ହୋଇଅଛି । ବାଲେଶ୍ୱର ନାମାନୁସାରେ ଜିଲ୍ଲାର ନାମ ହୋଇଅଛି । ଜିଲ୍ଲାର ସଦର ଦପ୍ତର ଏଠାରେ ଅବସ୍ଥିତ । ଏହା ବଙ୍ଗ ପ୍ରଦେଶର ସୀମାନ୍ତବର୍ତ୍ତୀ ସହର ଭାବରେ ଓଡ଼ିଶାର ଶିକ୍ଷା, ଭାଷା, ସାହିତ୍ୟ ଓ ସାଂସ୍କୃତିକ ଇତିହାସ ଗଠନରେ ବଳିଷ୍ଠ ଭୂମିକା ଗ୍ରହଣ କରିଅଛି । ଦକ୍ଷିଣ ପୂର୍ବ ରେଳପଥର ଏକ ପ୍ରଧାନ ବ୍ୟବସାୟିକ ସ୍ଥଳ ରୂପେ ବାଲେଶ୍ୱର ବିଦ୍ୟମାନ ।

ଅତୀତରେ ଏହା ବନ୍ଦର ସହର ଭାବରେ ବହୁ ଗୌରବର ଅଧିକାରୀ ହୋଇ-ଥିଲା । ଏଠାରେ ପର୍ତ୍ତୁଗୀଜ, ଦିନାମାର, ଓଲନ୍ଦାଜ, ଫରାସୀ ଓ ଇଂରେଜମାନଙ୍କର ବାଣିଜ୍ୟ କୋଠି ସ୍ଥାପିତ ହୋଇଥିଲା ।

**କୂଟ ପୋଖରୀ ଓ ବ୍ରଜ ପୋଖରୀ, ରେମୁଣା :**

ଗଜପତି ନରସିଂହ ଦେବଙ୍କ ସମୟରେ ଏ ଦୁଇଟି ବୃହତ୍ ପୁଷ୍କରିଣୀ ଖୋଳା ହୋଇଥିବାର ଅନୁମେୟ ।

Digitized by srujanika@gmail.com

**ବଡ଼ ସାହି :**

ମୟୂରଭଞ୍ଜର ଏକ ବଡ଼ ପ୍ରାଚୀନ ଗ୍ରାମ । ଏଠାରେ ବଡ଼ ପୋଖରୀ, ଦେବ-ଦେବୀ ମନ୍ଦିର ପ୍ରଭୃତି ବିଦ୍ୟମାନ । ଗ୍ରାମର ମୁଖ୍ୟ ଦେବତା ଚନ୍ଦ୍ରସେନଙ୍କ ସମ୍ମାନାର୍ଥେ ଆୟୋଜିତ ଉଡ଼ା ପର୍ବ (ଚଡ଼କ ପର୍ବ) ନିମନ୍ତେ ବିଖ୍ୟାତ । ଏଠାରେ ରଥଯାତ୍ରା ମଧ୍ୟ ପ୍ରସିଦ୍ଧ ।

**ବାରିପଦା :**

ପୂର୍ବତନ ମୟୂରଭଞ୍ଜ ରାଜ୍ୟର ରାଜଧାନୀ ବର୍ତ୍ତମାନ ଏ ଜିଲ୍ଲାର ପ୍ରଶାସନିକ ମୁଖ୍ୟ ଦପ୍ତର । ଭଞ୍ଜ ରାଜାଗଣ ନିଜର ରାଜଧାନୀ ହରିହରପୁରରୁ ଏଠାକୁ ସ୍ଥାନାନ୍ତରିତ କରିଥିଲେ । କେତେକଙ୍କ ମତରେ ବାଉରୀ ଅଥବା ବାଥୁଡ଼ି ଶବ୍ଦରୁ 'ବାରିପଦା'ର ଉତ୍ପତ୍ତି ହୋଇଥିବା ବେଳେ ଅନ୍ୟ କେତେକଙ୍କ ମତରେ 'ଜଳ ମଧ୍ୟ ସ୍ଥିତ ଭୂଖଣ୍ଡ' (ବାରି—ପଦା) ହୋଇଥିବାରୁ ଏହାର ନାମ 'ବାରିପଦା' ହୋଇଅଛି । ସ୍ଥାନଟି ତିନି ପଟରୁ ବୁଢ଼ା ବଳଙ୍ଗ, ଚପଟ, ଜଗନ୍ନାଥ ଓ ସରାଳ ନଦୀ ବେଷ୍ଟିତ ହୋଇଥିବାରୁ ଏପରି ନାମ ହୋଇଥିବା ଅନୁମେୟ ।

ବାରିପଦାରେ ଭଞ୍ଜ ରାଜାଙ୍କର ରାଜପ୍ରାସାଦ, ଅମ୍ବିକା ଦେବୀ ମନ୍ଦିର, ବଡ଼ ଜଗନ୍ନାଥ ମନ୍ଦିର, ବାଣ୍ଡିଆ ଜଗନ୍ନାଥ ମନ୍ଦିର, ଲକ୍ଷ୍ମୀନାରାୟଣ ମନ୍ଦିର, କୀଚକେଶ୍ୱରୀ ମନ୍ଦିର, ଜ୍ୱାଳାମୁଖି ମନ୍ଦିର, ରାଧାମୋହନ ମନ୍ଦିର, ଶ୍ରୀ ଚୈତନ୍ୟ ଦେବଙ୍କ ମନ୍ଦିର ପ୍ରଭୃତି ବହୁ ସ୍ଥାପତ୍ୟ ନିମନ୍ତେ ପ୍ରସିଦ୍ଧ । ବଡ଼ ଜଗନ୍ନାଥ ମନ୍ଦିର ରାଜା ବୈଦ୍ୟନାଥ ଭଞ୍ଜଙ୍କ ଦ୍ୱାରା ମାଣିକୀର କଣ୍ଟାରୁଆ ବୈଦ୍ୟନାଥ ମନ୍ଦିରର ଅନୁରୂପ ଶୈଳୀରେ ନିର୍ମିତ । ଓଡ଼ିଶାର ବୃହତ୍ତମ ଲାଇବ୍ରେରୀ ଶ୍ରୀରାମଚନ୍ଦ୍ର ପାଠାଗାର ଏଠାରେ ଅବସ୍ଥିତ । ଏଠାରେ ଗୋଟିଏ ଯାଦୁଘର ରହିଅଛି । ବାରିପଦା ଛଉ ନାଚ ପାଇଁ ପୃଥିବୀ ପ୍ରସିଦ୍ଧ ।

**ହରିପୁର :**

ଭଞ୍ଜ ରାଜା ହରିହର ଭଞ୍ଜ ୧୪୦୦ ଖ୍ରୀ·ରେ ଏ ସହର ସ୍ଥାପନ କରି ଖିଚିଂରୁ ଏଠାକୁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ତାଙ୍କ ନାମାନୁସାରେ ଏ ସ୍ଥାନର ନାମ ହରିପୁର ହୋଇଅଛି । ପ୍ରାଚୀନ ବଣକାଟୀ ଗଡ଼ ଏ ସ୍ଥାନର ନିକଟବର୍ତ୍ତୀ । ସମ୍ରାଟ ଆକବରଙ୍କ ସୈନ୍ୟବାହିନୀ ଦ୍ୱାରା ଆକ୍ରମିତ ହୋଇ ବଙ୍ଗଳାର ସୁଲତାନ୍ ଦାଉଦ୍ ଖାଁ ହରିପୁରଠାରେ ଆଶ୍ରୟ ନେଇଥିଲେ । ରାଜା ବୈଦ୍ୟନାଥ ଭଞ୍ଜ ଏଠାରେ ରସିକ ରାୟଙ୍କ ମନ୍ଦିର ନିର୍ମାଣ କରାଇଥିଲେ ।

Digitized by srujanika@gmail.com

**ଝୁଣ୍ଟା :**

ରଘୁନାଥ ଜୀଉଙ୍କ ମନ୍ଦିର ନିମନ୍ତେ ଖ୍ୟାତ । ଏଠାରେ ପୌଷ ପୂର୍ଣ୍ଣିମାରେ ଏକ ମେଳା ବସେ । ସ୍ଥାନଟି ରେଳଷ୍ଟେସନଠାରୁ ଏକ ମାଇଲ ଦୂରରେ ଅବସ୍ଥିତ ।

**କୁଟିଅଣା :**

ପ୍ରାଚୀନ ପ୍ରତ୍ନତତ୍ତ୍ୱ ଦିଗରୁ ସମୃଦ୍ଧ ସ୍ଥାନ । ଏଠାରେ ପ୍ରତ୍ନତତ୍ତ୍ୱ ସମ୍ବନ୍ଧରେ କଲିକତା ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ବିବରଣୀ ଉଲ୍ଲେଖଯୋଗ୍ୟ ।

**ପ୍ରତାପପୁର :**

ଦଧିବାମନ ଓ ଚୈତନ୍ୟଦେବଙ୍କ ମନ୍ଦିର ନିମନ୍ତେ ପ୍ରସିଦ୍ଧ । ଦୋଳ ପୂର୍ଣ୍ଣିମାରେ ଏଠାରେ ଏକ ବଡ଼ ମେଳା ବସେ ଓ ନାମ ସଙ୍କୀର୍ତ୍ତନ ଅନୁଷ୍ଠିତ ହୁଏ ।

**ରାଣୀବନ୍ଧ :**

ପଥର ନିର୍ମିତ ଏକ ପ୍ରାଚୀନ ଦୁର୍ଗ ।

**ଶମୀବୃକ୍ଷ :**

ପୋଡ଼ାଡ଼ିହା ପାହାଡ଼ର ଶୀର୍ଷ ଦେଶରେ ଅବସ୍ଥିତ । ଏହା ମହାଭାରତରେ ବର୍ଣ୍ଣିତ ଶମୀବୃକ୍ଷ ରୂପେ ପରିଚିତ । ଏହା ପ୍ରାୟ ୫୦୦ ଫୁଟ ଉଚ୍ଚତା ବିଶିଷ୍ଟ । ପାହାଡ଼ର ପଶ୍ଚିମ ପାର୍ଶ୍ୱରେ ପାଞ୍ଚଗୋଟି ଗୁହା ବିଦ୍ୟମାନ । ଚୈତ୍ର ମାସର ତ୍ରୟୋଦଶୀ ତିଥିରେ ବାରୁଣୀ ସ୍ନାନ ଓ ମକର ସଂକ୍ରାନ୍ତି ସମୟରେ ମେଳା ପାଇଁ ପ୍ରସିଦ୍ଧ । ପାହାଡ଼ ପାଦ ଦେଶରେ ଅବସ୍ଥିତ ମଠରେ ଭାଗବତ, ପୁରାଣ ଓ ଧର୍ମଶାସ୍ତ୍ର ସମୂହ (ତାଳପତ୍ର ପୋଥି) ସଂରକ୍ଷିତ ଓ ପୂଜିତ ହେଉଅଛି । ପାର୍ଶ୍ୱରେ 'କୁଶଭଦ୍ରା' ନାମକ ଏକ କ୍ଷୁଦ୍ର ନଦୀ ପ୍ରବାହିତ ।

**ଶୀର୍ଷା :**

ସୁବର୍ଣ୍ଣରେଖା ନଦୀ ତୀରରେ ଅବସ୍ଥିତ ଏକ ବଡ଼ ଗ୍ରାମ । ଏହା ମେରୁଯାଟି ନାମରେ କଥିତ । ମହିମା ଧର୍ମର ମଠ ଓ ମେଳା ନିମନ୍ତେ ପ୍ରସିଦ୍ଧ । ମକରସଂକ୍ରାନ୍ତି ସମୟରେ ଏକ ସପ୍ତାହବ୍ୟାପୀ ମେଳା ଅନୁଷ୍ଠିତ ହୁଏ ।

**ପ୍ରାଚୀନ ପଥ :**

**(କ) ସ୍ଥଳପଥ :**—ଅନଙ୍ଗଭୀମ ଦେବଙ୍କ ପରେ ପ୍ରଥମ ନରସିଂହ ଦେବ ବଙ୍ଗର ମୁସଲମାନମାନଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ଭବିଷ୍ୟତରେ ମୁସଲମାନ

Digitized by srujanika@gmail.com

ଆକ୍ରମଣକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ସେ ଦେଶରେ ସାମରିକ ବ୍ୟବସ୍ଥା ଗ୍ରହଣ କରିବା ସାଙ୍ଗକୁ 'ବାଲେଶ୍ୱର—ମେଦିନୀପୁର ଜିଲ୍ଲାରେ ଅନେକଗୁଡ଼ିଏ ଦୁର୍ଗ ସ୍ଥାପନ କରି ଯାତାୟାତ ପାଇଁ ସୁଗମ ପଥ ଗଠନ କରିଥିଲେ ଓ ପଥ ପାର୍ଶ୍ୱରେ ଯେଉଁଠାରେ ପ୍ରାକୃତିକ ଜଳଧାର ନଥିଲା ସେ ସ୍ଥାନରେ ପ୍ରକାଣ୍ଡ ପୁଷ୍କରିଣୀ ଖୋଳାଇ ସୈନ୍ୟମାନଙ୍କର ଗମନାଗମନ ସମୟରେ ସ୍ୱଚ୍ଛ ପାନୀୟ ଜଳର ବ୍ୟବସ୍ଥା କରିଥିଲେ । ଏହିସବୁ ପୁଷ୍କରିଣୀ ମଧ୍ୟ ସାମରିକ ବିଭାଗ ଦ୍ୱାରା ଖୋଦିତ ହୋଇଥିଲା । ଯହିଁରେ ସହସ୍ର ସହସ୍ର ସୈନ୍ୟ କୀଡ଼ା ଛଳରେ କାର୍ଯ୍ୟରେ ଲିପ୍ତ ଥିଲେ ।' ସୁବର୍ଣ୍ଣରେଖାଠାରୁ ଭଦ୍ରକ ପର୍ଯ୍ୟନ୍ତ ରାସ୍ତା ଧରି ଚୈତନ୍ୟ ଦେବ ଯାଇଥିଲେ । ତାହା ଜୟାନନ୍ଦଙ୍କ ଚୈତନ୍ୟ ମଙ୍ଗଳ (ଖ୍ରୀ. ୧୫୬୦ ପାଖାପାଖି ରେ ବର୍ଣ୍ଣିତ ହୋଇଛି । ବଙ୍ଗ ଦେଶରୁ ଚୈତନ୍ୟ ଦେବ ପୁରୀ ଆସିବାର ପଥ 'ଚୈତନ୍ୟ ମଙ୍ଗଳ' ଗ୍ରନ୍ଥରେ ଉଲ୍ଲେଖ ଅଛି । ନିମ୍ନରେ ତହିଁର କିଛିଅଂଶ ଉଦ୍ଧୃତ ହେଲା,—

"ରଜନୀ ପ୍ରଭାତେ ସୁବର୍ଣ୍ଣରେଖା ନଦୀ
ପାରହେୟାଁ ଉତରିଲ ବାରସତେ,
ତାହ୍ନ ଜଲେଶ୍ୱର ପାରହେୟା
ଉତରିଲ ଆମର ଦାତେ ।
ବାଁସଦା ଛାଡ଼ିୟା ରାମଚନ୍ଦ୍ର ପୁର ଦିୟା
ରେମୁନାଏଁ ଗୋପୀନାଥ ଦେଖି...ଇତ୍ୟାଦି ।" *

ପ୍ରଥମ ନରସିଂହ ଦେବଙ୍କ ରାଜତ୍ୱ କାଳରେ ରେମୁଣା ପ୍ରସିଦ୍ଧ ଥିଲା । ରେମୁଣା ଦୁର୍ଗର ଅବସ୍ଥିତି ଭୌଗୋଳିକ ଦୃଷ୍ଟିରୁ ଅତ୍ୟନ୍ତ ସୁରକ୍ଷିତ ଥିଲା । ପୂର୍ବକୁ ବୁଢ଼ାବଳଙ୍ଗ ନଦୀର ମୁହାଣ ପର୍ଯ୍ୟନ୍ତ ଗଡପଥ ସହଜ ଥିଲା । ରେମୁଣା କଟକର ଉତ୍ତର ପୂର୍ବ ଦିଗରେ ମୂଳରୁ ଘାଟର ଅବସ୍ଥିତି ଦୃଷ୍ଟିରୁ ଜଳପଥରେ ଯାତାୟତ କରିବା ସହଜ ଥିଲା । ରେମୁଣାର ଉତ୍ତର ପୂର୍ବ ଦିଗରେ ରାମଚନ୍ଦ୍ରପୁର ଦୁର୍ଗ, ଏହାର ଉତ୍ତରକୁ ଗଡପଦା ଗଡ଼, ଗଡ଼ପଦାର ଉତ୍ତରକୁ ବଂଶଦା (ଆଧୁନିକ ବସ୍ତା) ଗଡ଼ । ବସ୍ତାର ଉତ୍ତରକୁ ନରସିଂହପୁର (କାନ୍ଥୁପୁର, ଗଡ଼ ଓ ଏହାର ତିନିମାଇଲ ଦୂରରେ ଅମର୍ଦ୍ଦାଗଡ଼ ଅବସ୍ଥିତ । ଅମର୍ଦ୍ଦା-ଠାରୁ ଏକ ମାଇଲ ପୂର୍ବକୁ ସୁବର୍ଣ୍ଣରେଖାର ରାଜଘାଟ । ରାଜଘାଟରେ ନଦୀପାର ହେଲେ ଜଲେଶ୍ୱର ପର୍ଯ୍ୟନ୍ତ ରାସ୍ତା ଥିଲା, ଯାହା ଉପରେ ବର୍ତ୍ତମାନର ଜଗନ୍ନାଥ ସଡ଼କ

* ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ—ପରମାନନ୍ଦ ଆଚାର୍ଯ୍ୟ, ଓଡ଼ିଆ ସାହିତ୍ୟ ଏକାଡ଼େମୀ— ୧୯୬୯, ପୃ. ୬୪ ।

Digitized by srujanika@gmail.com

ପଡ଼ିଅଛି । ଅମର୍ଦ୍ଦାରୁ ଗୋଟିଏ ପଥ ରାହାସ ଗୋବିନ୍ଦପୁର, ରାଇକମା ହୋଇ ମୟୂରଭଞ୍ଜ ଭିତରେ ଫୁଲଝଡ଼ି ପାଟଣା ଯାଏ ପ୍ରସାରିତ ଥିଲା ଓ ଏହି ପଥରେ ବର୍ଷାକାଳରେ ଲୋକମାନେ ଯାତାୟତ କରୁଥିଲେ ।

ଅମର୍ଦ୍ଦା ରାଜଦାଣ୍ଡର ଉତ୍ତର ଦିଗକୁ ଦୁଇଟି ପଥ ବାହାରି ଗୋଟିଏ ରାଇବଣିଆ, ଓଲମରା, ଜମିରପାଳ, ନୟାଗ୍ରାମ, ଗଗନେଶ୍ୱର, କେଶିଆଡ଼ି ମଧ୍ୟ ଦେଇ ଖଡ଼ଗପୁର ଯାଏ ଯାଇଥିଲା । ଏହା ରେନେଲ ମାନଚିତ୍ରରେ ପ୍ରଦର୍ଶିତ ହୋଇଅଛି । ଅନ୍ୟ ପଥଟି ରାଜଘାଟଠାରୁ ସୁବର୍ଣ୍ଣରେଖା ନଦୀ ଅତିକ୍ରମ କରି ଜଳେଶ୍ୱର, ଦାନ୍ତୁଣୀ, ନାରାୟଣ ଗଡ଼ ଭିତର ଦେଇ ଖଡ଼ଗପୁର ଯାଏ ଯାଇଥିଲା । ଉପରୋକ୍ତ ଦୁଇଗୋଟି ପଥରେ ଥିବା ଦୁର୍ଗ/ଗଡ଼, ପୁଷ୍କରିଣୀ ସମ୍ପର୍କରେ ପୂର୍ବେ ଉଲ୍ଲେଖ କରାଯାଇଅଛି ।

ବ୍ରାହ୍ମଣ ଘାଟିରୁ ମିଳିଥିବା ରୋମକ ମୁଦ୍ରା ବିଷୟରେ ବେଗ୍ଲାର ସାହେବ ଲେଖିଛନ୍ତି ଯେ, ତାମ୍ରଲିପ୍ତି (ତମଲୁକ) ବନ୍ଦରଠାରୁ ବ୍ରାହ୍ମଣ ଘାଟି ମଧ୍ୟରେ ବାଣିଜ୍ୟ ପଥ ରହିଥିବା ହେତୁ ସେଠାକୁ ରୋମକ ମୁଦ୍ରା ଆସିଥିବା ସମ୍ଭବ ହୋଇଥିଲା । ଦ୍ୱାଦଶ ଶତାବ୍ଦୀ ସମୟକୁ ସମ୍ଭବତଃ । ବର୍ତ୍ତମାନ ହୁଗୁଳି ଜିଲ୍ଲାର ଗଡ଼ମନ୍ଦାରଣଠାରୁ ତତ୍କାଳୀନ ରାଜଧାନୀ ଯାଜପୁର ପର୍ଯ୍ୟନ୍ତ ପଥ ସୁଗମ ଥିଲା । ଗଙ୍ଗ ସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଗଡ଼ମନ୍ଦାରଣଠାରେ ଏକ ଦୁର୍ଗ ସ୍ଥାପିତ ହୋଇଥିଲା । ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଗଙ୍ଗ ସମ୍ରାଟ ପ୍ରଥମ ନରସିଂହଙ୍କ ସହ ବଙ୍ଗଳାର ମୁସଲମାନ ସୁଲତାନଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ସେହି ସମୟରେ ଓଡ଼ିଆ ସୈନ୍ୟବାହିନୀ ରେମୁଣାଠାରୁ ଗଡ଼ମନ୍ଦାରଣ ପର୍ଯ୍ୟନ୍ତ ଅଞ୍ଚଳରେ ଯାତାୟତ କରୁଥିଲେ । ସେତେ-ବେଳକୁ ବାଲେଶ୍ୱରଠାରୁ ମେଦିନୀପୁର ପର୍ଯ୍ୟନ୍ତ ଅଞ୍ଚଳରେ ଗୋଟିଏ ସୁଗମ ପଥ ଖୋଲି ଯାଇଥିଲା । ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀ ସମୟକୁ କଟକର ଉତ୍ତର ଦିଗରେ ଦୁଇଟି ପଥ ଥିବାର ଜଣାଯାଏ । ଗୋଟିଏ ମୟୂରଭଞ୍ଜର ପୂର୍ବ ଦିଗରେ ଓ ଅନ୍ୟ ପଥଟି ପଶ୍ଚିମ ଦିଗ ଦେଇ ଯାଇଥିଲା । ପଶ୍ଚିମ ଦିଗ ଦେଇ ଯେଉଁ ପଥ ପ୍ରସାରିତ ହୋଇଥିଲା, ତାହା ଗୟା ଅଞ୍ଚଳକୁ ଓ ପୂର୍ବ ଦିଗର ପଥଟି ବଙ୍ଗଳାର ଗଙ୍ଗାନଦୀ ତଟବର୍ତ୍ତୀ ଅଞ୍ଚଳକୁ ଯାଇଥିଲା ।

ଆଇନ୍-ଇ-ଆକବରୀ ଗ୍ରନ୍ଥରୁ ଜଣାଯାଏ ଯେ, ୧୫୬୮ ଖ୍ରୀ·ରେ ଓଡ଼ିଶା ପରାଧୀନ ହେବା ସମୟକୁ ଗଡ଼ମନ୍ଦାରଣ ଓଡ଼ିଶାର ଗୋଟିଏ ପ୍ରସିଦ୍ଧ ସରକାରରେ ପରିଗଣିତ ହୋଇଥିଲା । (୩୦) ଖ୍ରୀ. ୧୬୬୦ ସାଲରେ Ven Den Brokeଙ୍କ ଅଙ୍କିତ ମାନଚିତ୍ରରେ ଜଗନ୍ନାଥ, କଟକ, ଭଦ୍ରଖ, ବାଲେଶ୍ୱର, ରେମୁଣା, ନରସିଂହପୁର,

Digitized by srujanika@gmail.com

ପିପିଲି, ଜଳେଶ୍ୱର, ଦାନ୍ତୁଣୀ ପ୍ରଭୃତି ସ୍ଥାନ ଗୋଟିଏ ବଡ଼ ରାସ୍ତା ଉପରେ ପ୍ରଦର୍ଶିତ ହୋଇଅଛି । ଖ୍ରୀ. ୧୭୭୯ରେ ରେନେଲ ସାହେବ ଅଙ୍କିତ ମାନଚିତ୍ରରେ ଉତ୍ତର ଓଡ଼ିଶାର ଅନେକ ରାସ୍ତା ବର୍ଣ୍ଣିତ ହୋଇଛି ।

ଚୈତନ୍ୟଦେବ ପୁରୀ ଆସିଲାବେଳେ ଗଙ୍ଗା ନଦୀରେ ଦେବଗ୍ରାମ ପର୍ଯ୍ୟନ୍ତ ଜଳପଥରେ ଆସି ସେଠାରୁ ଦାନ୍ତୁଣୀ ପର୍ଯ୍ୟନ୍ତ ସ୍ଥଳପଥରେ ଆସି ଜଳେଶ୍ୱର, ରେମୁଣା, ଯାଜପୁର, କଟକ, ଭୁବନେଶ୍ୱର ଦେଇ ପୁରୀ ଯାଇଥିଲେ । ମୋଗଲ ଶାସନ ଅମଳରେ ବର୍ଦ୍ଧମାନଠାରୁ ଗଡ଼ମନ୍ଦାରଣ ମେଦନୀପୁର ହୋଇ ବାଲେଶ୍ୱର ପର୍ଯ୍ୟନ୍ତ ଲୋକେ ଯାତାୟତ କରୁଥିଲେ । ମେଦନୀପୁରରୁ ସୁବର୍ଣ୍ଣରେଖାର ରାଜଘାଟ ପର୍ଯ୍ୟନ୍ତ ଦୁଇଟି ପଥ ଥିବାର ରେନେଲ ମେପ୍‌ରେ ଦେଖାଯାଏ । ଏହି ରାସ୍ତାଗୁଡ଼ିକ ବାଦଶାହୀ ରାସ୍ତା ଖ୍ରୀ: ୧୭୬୬ରେ ମଟ ସାହେବ ଓ ଖ୍ରୀ: ୧୬୯୦ରେ ଜନ ସାହେବ ଜଳେଶ୍ୱରଠାରୁ ଏହି ବାଦ୍‌ଶାହୀ ରାସ୍ତାରେ କଟକ ପର୍ଯ୍ୟନ୍ତ ଆସିଥିଲେ ।

**(ଖ) ଜଳପଥ** :—ପ୍ରସିଦ୍ଧ ଭୂଗୋଳ ବେତ୍ତା ଟୋଲେମୀ ଓ ଐତିହାସିକ ପ୍ଲିନୀଙ୍କ ଲେଖାରୁ ଓଡ଼ିଶା ଉପକୂଳରେ ବନ୍ଦରମାନ ଥିବାର ଜଣାଯାଏ । ପ୍ରାଚୀନ କାଳରେ ଓଡ଼ିଆ ସାଧବମାନେ ବଙ୍ଗୋପସାଗର ପୂର୍ବ ପ୍ରାନ୍ତରେ ବ୍ରହ୍ମଦେଶ, ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପରେ ବାଣିଜ୍ୟ କାରବାର କରୁଥିବାର ଜଣାଯାଏ । ସେ ସ୍ଥାନମାନଙ୍କରେ କଳିଙ୍ଗ ସଭ୍ୟତାର ପ୍ରସାର ଏହାର ପ୍ରମାଣ ବହନ କରେ । ଏ ନିବନ୍ଧରେ ବ୍ୟବସାୟ ବାଣିଜ୍ୟ ବିଷୟ ଆଲୋଚନା ସମୟରେ ପ୍ରାଚୀନ ନୌବାଣିଜ୍ୟ ସମ୍ପର୍କୀୟ ତଥ୍ୟ ସଙ୍ଗୃହୀତ ଲୋକଗୀତରେ ବର୍ଣ୍ଣିତ ହୋଇଥିବାର ଦେଖୁଁ । (ସାଂପ୍ରତିକ କାଳରେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ ସହିତ ପ୍ରତିଷ୍ଠିତ ପ୍ରାଚୀନ ସାଂସ୍କୃତିକ ସମ୍ବନ୍ଧର ସ୍ମୃତି ସ୍ୱରୂପ ଓଡ଼ିଶା ସରକାର ସାଂସ୍କୃତିକ ବିଭାଗ ଆନୁକୂଲ୍ୟରେ ସେ ଦେଶକୁ ନୌଯାତ୍ରା ସହିତ ସେଠାରେ ଓଡ଼ିଶା ଉତ୍ସବ ଅନୁଷ୍ଠିତ କରାଉ ଅଛନ୍ତି ।) ୟୁରୋପୀୟ ବଣିକମାନଙ୍କର ବାଣିଜ୍ୟ କୋଠୀ ସର୍ବପ୍ରଥମେ ବଙ୍ଗୋପସାଗରର କୂଳରେ ଓଡ଼ିଶାରେ ସ୍ଥାପିତ ହୋଇଥିବା ବିଷୟରେ 'ବଙ୍ଗରେ ପର୍ତ୍ତୁଗୀଜ' (History of Partugeese in Bengal. ପୁସ୍ତକରେ ଲିଖିତ ଅଛି । ଖ୍ରୀ: ୧୫୧୪ ସାଲରେ ପର୍ତ୍ତୁଗୀଜମାନେ ସୁବର୍ଣ୍ଣରେଖା ମୁହାଣ ଉପରେ ପିପିଲିଠାରେ କୋଠୀ ସ୍ଥାପନ କରିଥିଲେ । ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ସମୟ ଷୋଡ଼ଶ ଶତାବ୍ଦୀ ବେଳକୁ ପୂର୍ବ ଭାରତରେ ସମୁଦ୍ର ବନ୍ଦର ରୂପେ ପିପିଲି ପ୍ରସିଦ୍ଧି ଲାଭ କରିଥିଲା । ମୋଗଲ ଅମଳରେ ନଦୀ ମୁହଁ ପୋତିହୋଇ ଯାଇଥିବାରୁ ପିପିଲି ବନ୍ଦର ଅବ୍ୟବହୃତ ହୋଇଥିଲେହେଁ ଶାହାଜାହାନଙ୍କ ସମୟରେ ବିଶେଷ ରୂପେ ବ୍ୟବହୃତ ହୋଇଥିବାର

Digitized by srujanika@gmail.com

ଜଣାଯାଏ । ସେତେବେଳେ ଏହା 'ସାହାବନ୍ଦର' ନାମରେ ପ୍ରସିଦ୍ଧ ହୋଇଥିଲା । 'ପିପିଲି' ବନ୍ଦର ରକ୍ଷଣାବେକ୍ଷଣ ପାଇଁ ଜାମୁକୁଣ୍ଡାରେ ଏକ ଦୁର୍ଗ ସ୍ଥାପିତ ହୋଇଥିଲା । ପିପିଲି ବ୍ୟତୀତ ବାଲେଶ୍ୱର ଉପକୂଳରେ ବାଲେଶ୍ୱର ସାର୍ଥା, ଛନୁଆ, ଲଇଛମନପୁର, ଚୂଡାମନ, ଧାମରା ପ୍ରଭୃତି ବନ୍ଦର ରହିଥିଲା । ମେଦନୀପୁରରେ ତମଲୁକ୍ ବ୍ୟତୀତ ହିଜଳୀଠାରେ ବନ୍ଦର ରହିଥିଲା ।

## ସାଂସ୍କୃତିକ ଅନୁଷ୍ଠାନ :

ସମାଜରେ ସାଂସ୍କୃତିକ ଚେତନାର ଉଜ୍ଜୀବନ ନିମନ୍ତେ ସାଂସ୍କୃତିକ ଅନୁଷ୍ଠାନର ସକ୍ରିୟ ଭୂମିକା ଏକାନ୍ତ ଅପରିହାର୍ଯ୍ୟ । ସାଂସ୍କୃତିକ ଚେତନା ବ୍ୟତିରେକେ ମାନବ ସମାଜର ପ୍ରଗତି ସମ୍ଭବ ହୁଏ ନାହିଁ । ତେଣୁ ସବୁ ସଭ୍ୟ ସମାଜରେ ଏପରି ଅନୁଷ୍ଠାନ ସୃଷ୍ଟି ହୋଇଥାଏ ।

ଅତୀତ କାଳର ସାଂସ୍କୃତିକ ଅନୁଷ୍ଠାନ ଭାବେ ବହୁ ପରିଚିତ 'ଭାଗବତ ଟୁଙ୍ଗୀ' ବ୍ୟତୀତ ଓଡ଼ିଆ ଲୋକ ସମାଜରେ ଲୋକାୟତ ଅନୁଷ୍ଠାନଗୁଡ଼ିକର ପ୍ରଭାବ ପରିଲକ୍ଷିତ ହୁଏ । ବିଭିନ୍ନ ପ୍ରକାର ପାଲା, ନାଟ, ନାଚ, ଯାତ୍ରା, ସୁଆଙ୍ଗ, ଗ୍ରାମ୍ୟ ଯାତ୍ରା ମେଳା ଆଦି ଅନୁଷ୍ଠିତ ହୋଇ ଜନସମାଜର ରସପିପାସା ମେଣ୍ଟିତ ହେଉଥିଲା । ସେ ସବୁର ଧାରାବାହିକ ଇତିହାସ ଖୋଜିଲେ ମିଳିବ ନାହିଁ । ଆଲୋଚ୍ୟ ଅଞ୍ଚଳର ସାଂସ୍କୃତିକ ଚେତନାର ସୃଷ୍ଟି ଓ ପୁଷ୍ଟି ଦିଗରେ ସେ ସବୁ ଲୋକାୟତ ଅନୁଷ୍ଠାନର ଭୂମିକା ଅବଶ୍ୟ ସ୍ୱୀକାର୍ଯ୍ୟ ।

ଊନବିଂଶ ଶତକର ସପ୍ତମ ଦଶନ୍ଧିରେ ନଅଙ୍କ ଦୁର୍ଭିକ୍ଷ ଓ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ ହେତୁ ଓଡ଼ିଆ ଜନସମାଜରେ ଗଭୀର ଆଲୋଡ଼ନ ସୃଷ୍ଟି ହୋଇଥିଲା । ଫଳରେ ଓଡ଼ିଶାରେ ଜାତୀୟ ଜାଗରଣ ସୃଷ୍ଟି ହୋଇଥିଲା । ଫକୀର ମୋହନ ସେନାପତି ବାଲେଶ୍ୱର ସହରରେ ଛାପାଖାନା ପ୍ରତିଷ୍ଠା କରି ଏକ ବଳିଷ୍ଠ ସାଂସ୍କୃତିକ ଜାଗରଣ ସୃଷ୍ଟି କରିଥିଲେ । ଉତ୍କଳ ଭାଷା ଉନ୍ନତି ବିଧାନର ସଭା (୧୮୬୭), ବୋଧଦାୟିନୀ, ବାଲେଶ୍ୱର ସମ୍ବାଦ ବାହିକା ମାଧ୍ୟମରେ ସାହିତ୍ୟିକ ଓ ସାଂସ୍କୃତିକ ବାତାବରଣ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ବହୁ ସାହିତ୍ୟ ସାଧକ ଅଫୁରନ୍ତ ପ୍ରେରଣା ଲାଭ କରିଥିଲେ । ବାଲେଶ୍ୱର ସମେତ ଓଡ଼ିଶାରେ ଓଡ଼ିଆ ସାହିତ୍ୟିକ ଓ ସାଂସ୍କୃତିକ ଜାଗରଣ ସୃଷ୍ଟି ଦିଗରେ ମହାରାଜା ବୈକୁଣ୍ଠନାଥ ଦେବଙ୍କ ଭୂମିକା ଉଲ୍ଲେଖନୀୟ ଥିଲା । ବାରିପଦାରେ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଦେଓ ଛାପାଖାନା ପ୍ରତିଷ୍ଠା କରି ପତ୍ରିକା ପ୍ରକାଶନ କରାଇଥିଲେ । ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେବଙ୍କ ସମୟରେ ଏ ଦିଗରେ ପ୍ରଭୂତ ଉନ୍ନତି ହୋଇଥିଲା । ଓଡ଼ିଆ ସାହିତ୍ୟର ପ୍ରସାର ଓ ସାଂସ୍କୃତିକ ଜାଗରଣ ସୃଷ୍ଟି କରିବାରେ 'ଉତ୍କଳ ପ୍ରଭା'ର ବଳିଷ୍ଠ ପ୍ରଭାବ ଅଭିନନ୍ଦନୀୟ ।

Digitized by srujanika@gmail.com

ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେବ ପାଇକ ଓ ଛଉ ନୃତ୍ୟରେ ଯେଉଁ ନବୀକରଣ କରାଇଥିଲେ ତାହାର ପ୍ରଭାବ ସୁଦୂର ପ୍ରସାରୀ ହୋଇଥିଲା । ବ୍ରିଟିଶ ସମ୍ରାଟ ସାମ୍ରାଜ୍ଞୀଙ୍କର ଭାରତ ଆଗମନ କାଳରେ ମୟୁରଭଞ୍ଜର ପାଇକ ନୃତ୍ୟ ପ୍ରଦର୍ଶନ ଫଳରେ ଯେଉଁ ସାଂସ୍କୃତିକ ଚେତନା ସୃଷ୍ଟି ହୋଇଥିଲା, ତାହା ଛଉ ନୃତ୍ୟର ଇତିହାସରେ ଏକ ନୂତନ ଦିଗ ଉନ୍ମୋଚନ କରିଥିଲେ । ମହାରାଜା ବାରିପଦାର ଛଉ ନୃତ୍ୟରେ ମୁଖାବରଣ ଶୈଳୀ ପ୍ରବର୍ତ୍ତନ କରାଇଥିଲେ । ଏହି ଅଭିନବ ଶୈଳୀର ପ୍ରଭାବରେ . ସମଗ୍ର ମୟୁରଭଞ୍ଜ ସହିତ ସନ୍ନିହିତ ଅଞ୍ଚଳର ଛଉନୃତ୍ୟ ସାଙ୍ଗଠନ ସମୂହ ବହୁଳ ପ୍ରଭାବିତ ହୋଇଛନ୍ତି ।

ଓଡ଼ିଶା ସ୍ୱାଧୀନତା ହରାଇବା ପୂର୍ବରୁ ଓ ପରେ, ଆଲୋଚ୍ୟ ସମଗ୍ର ଅଞ୍ଚଳରେ ବିଶେଷତଃ ବଙ୍ଗଳାର ବିସ୍ତୃତ ଅଞ୍ଚଳରେ ଓଡ଼ିଆ ଜମିଦାରମାନେ ପାରମ୍ପରିକ ଓଡ଼ିଆ ସାହିତ୍ୟ, ସଙ୍ଗୀତ ଓ ସଂସ୍କୃତି ଚର୍ଚ୍ଚାର ପରମ୍ପରା ରକ୍ଷା କରିଥିଲେ । ମୋଗଲ ଶାସନ କାଳରେ ବାଦଶାହ ଦରବାର ଅନୁକରଣରେ ରାଜା, ଜମିଦାରମାନେ ସେମାନଙ୍କ ଗଡ଼ରେ ସଙ୍ଗୀତ ଚର୍ଚ୍ଚା ନିମନ୍ତେ ପ୍ରଖ୍ୟାତ ଉସ୍ତାଦ୍, ସଙ୍ଗୀତଜ୍ଞ, ଗାୟକ ଓ କବି-ମାନଙ୍କର ପୃଷ୍ଠପୋଷକତା କରିଥିଲେ । ଏ ସବୁଥିରେ ଓଡ଼ିଶୀ, ହିନ୍ଦୁସ୍ତାନୀ ପ୍ରଭୃତି ସଙ୍ଗୀତ ଚର୍ଚ୍ଚାର ବିକାଶ ଲାଭ ଘଟିଥିଲା ।

ମୋଗଲ ମରହଟ୍ଟା ଶାସନ କାଳରେ ଉଲ୍ଲିଖିତ ରାଜା ଓ ଜମିଦାରମାନଙ୍କ ପୃଷ୍ଠପୋଷକତାରେ ନିଜ ନିଜ ଗଡ଼ରେ ସଙ୍ଗୀତ ଚର୍ଚ୍ଚାର 'ଘରାନା' ସବୁ ସୃଷ୍ଟି ହୋଇ ସାଂସ୍କୃତିକ ରସ ପିପାସା ମେଣ୍ଟାଉ କରୁଥିଲେ । ଖ୍ରୀ: ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କଲାପରେ ମଧ୍ୟ ଉପରୋକ୍ତ 'ଘରାନା' ସବୁ ସଙ୍ଗୀତ ଚର୍ଚ୍ଚାର କେନ୍ଦ୍ର ରୂପେ ରହିଥିଲା । ଇଂରେଜମାନଙ୍କ ବିରୁଦ୍ଧରେ ପାଇକ ବିଦ୍ରୋହ ଓଡ଼ିଶାର ସାମରିକ ବିଦ୍ରୋହ । ଏହା ଫଳରେ ବହୁ ପ୍ରାଚୀନ ଓଡ଼ିଆ ଜମିଦାର ନିଜର ସତ୍ତ୍ୱ ହରାଇଥିଲେ ଓ ସାଂସ୍କୃତିକ ବାତାବରଣ ବିପର୍ଯ୍ୟସ୍ତ ହୋଇଥିଲେହେଁ ଓଡ଼ିଆ ଗ୍ରାମୀଣ ସମାଜ ତାର ପାରମ୍ପରିକ ଗତିରେ ଗତି କରିଥିଲା । ଉପର ସ୍ତରରେ ନାନା ଅଘଟଣ, ବିଘଟଣ ପରିବର୍ତ୍ତନ ଓଡ଼ିଶାର ଗ୍ରାମୀଣ ସମାଜକୁ ବିଶେଷ ପ୍ରଭାବିତ କରିପାରି ନଥିଲା । କିନ୍ତୁ ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ନ'ଅଙ୍କ ଦୁର୍ଭିକ୍ଷର ଦାରୁଣ ଦୁର୍ବିପାକ, ପରେ ପରେ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ—ଏହିପରି ଦୁଇଗୋଟି ଘଟଣା ଓଡ଼ିଆ ଜାତିର ପ୍ରାଣରେ ଏକ ନବ ଉନ୍ମାଦନା ସୃଷ୍ଟି କଲା । ସେ ଉନ୍ମାଦନା ହେଉଛି ଓଡ଼ିଆ ଜାତୀୟ ଚେତନାର ପ୍ରାଣ ପ୍ରତିଷ୍ଠା, ଓଡ଼ିଆ ଜାତିର ଅସ୍ତିତ୍ୱକୁ ବିଲୋପ କରିବାର ଚେଷ୍ଟାକୁ

Digitized by srujanika@gmail.com

ପ୍ରତିହତ କରିବାର ପ୍ରଚେଷ୍ଟା, ଏହାର ଫଳରେ ସୃଷ୍ଟି ହୋଇଥିଲା ଭାଷା, ସାହିତ୍ୟ ଓ ସାଂସ୍କୃତିକ ନବ ଜାଗରଣ ।

ଓଡ଼ିଶାର ଏକତ୍ରୀକରଣ ନିମନ୍ତେ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଖ୍ରୀ: ୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ପୂର୍ବତନ ଓଡ଼ିଶାର ବହୁ ଅଞ୍ଚଳ ବାହାରେ ରହିଲା । ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ଅବସ୍ଥିତ ମେଦିନୀପୁରର ବିସ୍ତୃତ ଅଞ୍ଚଳ ପଶ୍ଚିମ ବଙ୍ଗରେ ମିଶିଲା । ଏହାର ପ୍ରତିବାଦ ସ୍ୱରୂପ ଉଭୟ ମେଦିନୀପୁର ଓ ଓଡ଼ିଶା ଭିତରେ ବହୁ ଅନୁଷ୍ଠାନ ଗଠିତ ହୋଇ ସ୍ମାରକପତ୍ର, ସମ୍ମେଳନ ପ୍ରଭୃତି ମାଧ୍ୟମରେ ସରକାରଙ୍କ ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳିତ ହୋଇଥିଲେହେଁ ରାଜନୀତିର ଚକ୍ର ବ୍ୟୂହରେ ସେ ସବୁ ମୂଲ୍ୟହୀନ ହୋଇଗଲା ।

ସ୍ୱାଧୀନତା ଲାଭ ପରେ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ନିମନ୍ତେ ପ୍ରାଦେଶିକ ସରକାରଙ୍କ ଅବ୍ୟାହତ ଉଦ୍ୟମ ସୀମିତ ସମ୍ବଳ ମଧ୍ୟରେ ଉଲ୍ଲେଖନୀୟ ନ ହେଲେହେଁ ଅଭିନନ୍ଦନୀୟ ।

ଅତୀତରେ ବେସରକାରୀ କ୍ଷେତ୍ରରେ ଅନେକ ସାଂସ୍କୃତିକ ସଂଗଠନ ସୃଷ୍ଟି ହୋଇଥିଲା ଓ ଏବେ ମଧ୍ୟ ହେଉଅଛି । ସେ ସବୁ ସାଂସ୍କୃତିକ ଆନ୍ଦୋଳନର ଧାରାବାହିକ ଇତିହାସ ଲିପିବଦ୍ଧ କରିବାର ସୁଯୋଗ ଏ କ୍ଷେତ୍ରରେ ନାହିଁ । ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ବାଲେଶ୍ୱର ଓ ବାରିପଦା ପରି ଓଡ଼ିଆ ସଂସ୍କୃତିର ପ୍ରାଣକେନ୍ଦ୍ର ସ୍ୱରୂପ ସ୍ଥାନମାନଙ୍କରେ ଜନସମାଜର ଅପ୍ରତିହତ ସାଂସ୍କୃତିକ ଜୀବନ ଧାରାକୁ ପ୍ରଗତିଶୀଳ କରାଇ ଓଡ଼ିଆ ସାଂସ୍କୃତିକ ଦିଗନ୍ତକୁ ପ୍ରସାରିତ କରିବା ଉଦ୍ଦେଶ୍ୟରେ ଗଠିତ ସଂଗଠନଗୁଡ଼ିକର ଅବଦାନ ଅତି ଗୁରୁତ୍ୱପୂର୍ଣ୍ଣ । ସେହିପରି ଧଳଭୂମ ମେଦିନୀପୁର ଅଞ୍ଚଳରେ ସୁଗଠିତ କେତେଗୋଟି ଅନୁଷ୍ଠାନ ମାଧ୍ୟମରେ ଓଡ଼ିଆ ସଂସ୍କୃତିର ପ୍ରଚାର ଓ ପ୍ରସାର ଅଭିନନ୍ଦନୀୟ । ସମଗ୍ର ଅଞ୍ଚଳରେ କେତେକ ଅନୁଷ୍ଠାନ ବହୁ ପ୍ରତିଶ୍ରୁତି ପୂର୍ଣ୍ଣ ସମ୍ଭାବନା ନେଇ ସୃଷ୍ଟି ହୋଇଥାଲେହେଁ ବିଭିନ୍ନ ପରିବେଶ ମଧ୍ୟରେ ବହୁ କାରଣରୁ ଲୁପ୍ତ ହୋଇଛନ୍ତି । ପୁଣି ନୂତନ ଅନୁଷ୍ଠାନ ସୃଷ୍ଟି ହେଉଛି, ହେଉଥିବ ସେ ସବୁର ସ୍ଥାନ ପୂରଣ କରି ସମୟର ଆବଶ୍ୟକତାକୁ ମେଣ୍ଟାଇବା ପାଇଁ ।

## କେତେକ ପ୍ରଚଳିତ ବିଧି

### ସୁନିଆଁ-ନବବର୍ଷ ଆରମ୍ଭ :

ଭାଦ୍ର ମାସର ଶୁକ୍ଳପକ୍ଷ ଇନ୍ଦ୍ର ଦ୍ୱାଦଶୀ ତିଥିରେ ଓଡ଼ିଆମାନଙ୍କର ନବବର୍ଷର ଆରମ୍ଭ ହୋଇଥାଏ । ପ୍ରାଚୀନ କାଳରେ ଏହି ପର୍ବ ସମଗ୍ର ଉତ୍କଳରେ ଆଡ଼ମ୍ବର

Digitized by srujanika@gmail.com

ପଦ୍ଧତିରେ ପାଳିତ ହେଉଥିଲା । ପ୍ରଜାମାନଙ୍କର ଶୁଭକାମନାରେ ରାଜାମାନେ ଷମ୍ଭ ପୋତି ଉଚ୍ଚ ମଞ୍ଚଟିଏ ନିର୍ମାଣ କରି ସେଥିରେ ଇନ୍ଦ୍ରଧ୍ୱଜ ସ୍ଥାପନ ପୂର୍ବକ ତାଙ୍କର ପୂଜା କରୁଥାନ୍ତି । ଏହି ପର୍ବ ଶୁନିଆଁ ନାମରେ ପ୍ରସିଦ୍ଧ । 'ଶୂନ୍ୟସ୍ବମହି' ଶବ୍ଦଟି ଅପଭ୍ରଂଶ ହୋଇ ସୁନିଆଁରେ ପରିଣତ ହୋଇଥିବାର ଜଣାଯାଏ । ଏହିଦିନ ରାଜାମାନଙ୍କୁ ପ୍ରଜାମାନେ ଭେଟି ଦେବାର ପ୍ରଥା ସର୍ବତ୍ର ପ୍ରଚଳିତ ଥିଲା । ଉପାନ୍ତ ଅଞ୍ଚଳରେ ମଧ୍ୟ ଏହା ପ୍ରଚଳିତ ହେଉଥିଲା । 'ସୁନିଆଁ ଭେଟି' ପ୍ରଥା ଆଧୁନିକ କାଳରେ ଲୋପ ପାଇଥିଲେହେଁ ଅମଳ ଦିନ ଭାବରେ ଏହାର ପ୍ରଚଳନ ରହିଅଛି । ସରକାରୀ କାଗଜ ପତ୍ରରେ ଖ୍ରୀଷ୍ଟିୟାବ୍ଦ ମସିହାର ପ୍ରଚଳନ ଥିଲେହେଁ ସମସ୍ତ କୋଷ୍ଠୀ ଓ ପାଞ୍ଜି ପ୍ରଭୃତିରେ "ସୁନିଆଁ" ସାଲ ବ୍ୟବହୃତ ହୋଇଥାଏ । ଏହି ପ୍ରଥା ଅତି ପ୍ରାଚୀନ । ଯଯାତି କେଶରୀଙ୍କ (ଖ୍ରୀ: ୫୩୨— ଖ୍ରୀ: ୫୯୮) ରାଜତ୍ୱ ସମୟରୁ ଏହି ସାଲ ପ୍ରଚଳିତ ହୋଇଥିବାର କେତେକ ଐତିହାସିକ ମତ ଦେଇଥାନ୍ତି । ଉତ୍ତର-ପୂର୍ବାଞ୍ଚଳରେ ସୁନିଆଁ ତାର ନିଜର ବୈଶିଷ୍ଟ୍ୟ ରକ୍ଷା କରି ବର୍ତ୍ତମାନ ମଧ୍ୟ ପ୍ରଚଳିତ ରହିଅଛି ।

**ଜମିଜମା ମାପ :**

ଗଜପତିମାନଙ୍କ ସମୟରୁ ଓଡ଼ିଶାରେ ଜମିଜମା ମାପ ସମ୍ପର୍କୀୟ ରୀତି ଯଥା— ମାଣ, ଗୁଣ୍ଠ, ବିଶ୍ୱା ପ୍ରଭୃତି ସମଗ୍ର ଓଡ଼ିଶାରେ ପ୍ରଚଳିତ । ବଙ୍ଗଳାରେ ବିଘା, କାଠା ଇତ୍ୟାଦି ପ୍ରଚଳିତ । ସୀମାନ୍ତ ମେଦିନୀପୁର ଅଞ୍ଚଳର ଓଡ଼ିଶୀ ରୀତିରେ ଉଭୟ ସମ୍ପତ୍ତିର ମାପ ପ୍ରଚଳିତ । ଧାନ ପ୍ରଭୃତି ଉତ୍ପାଦିତ ଶସ୍ୟ ପ୍ରଭୃତିର ପରିମାଣ ରୀତି ଯଥା— ଅଢ଼ା, କୁ ଣ୍ଡି, ସେର, ମହଣ ପ୍ରଭୃତି ରୀତି ପ୍ରଚଳିତ ।

**ପୋଥିବସା :**

ଉତ୍ତର ବାଲେଶ୍ୱର ଓ ଦକ୍ଷିଣ ମେଦିନୀପୁରର ଗ୍ରାମାଞ୍ଚଳରେ "ପୋଥିବସା" ଏକ ବହୁ ପ୍ରଚଳିତ ରୀତି । କାର୍ତ୍ତିକ ମାଘ ଓ ବୈଶାଖ ମାସରେ ଗ୍ରାମାଞ୍ଚଳର ଧର୍ମପିପାସୁ ଜନସାଧାରଣ ଏହି ଅନୁଷ୍ଠାନ ପାଳନ କରନ୍ତି । ଜଗନ୍ନାଥ ଦାସଙ୍କ ଓଡ଼ିଆ 'ଭାଗବତ' ଏଥିରେ ପଠନ ହୁଏ । ତାଳପତ୍ରରେ ଲିଖିତ 'ପୋଥି ଗୋସାଇଁ' ପୂଜିତ ହୁଅନ୍ତି । ଏହା ଏକ ବ୍ୟକ୍ତି ବିଶେଷ, କିମ୍ବା ସାମୂହିକ ଅନୁଷ୍ଠାନ । ଏହା ସପ୍ତାହ, ପକ୍ଷ, ମାସ ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ଏଥିରେ ଶ୍ରୋତା ଓ ବକ୍ତା ରହିଥାନ୍ତି । କାର୍ତ୍ତିକ ମାଘ ଓ ବୈଶାଖ

Digitized by srujanika@gmail.com

ଧର୍ମ ମାସ ଭାବରେ ଗଣ୍ୟ । ପୋଥି ବସାଇ ଧର୍ମପିପାଶୁ ନରନାରୀଗଣ ଧର୍ମାଲୋଚନ କରିବ । ସହିତ ଜୀବନକୁ ଧର୍ମ ପଥରେ ପରିଚାଳିତ କରନ୍ତି ।*

**ରାଣୀହାଟି ସଂକୀର୍ତ୍ତନ :**

ଓଡ଼ିଶାର ଗାଁ ଗହଳରେ ଦୋଳପୂର୍ଣ୍ଣିମା, ଠାକୁର ମେଲଣ, ଯାନିଯାତ୍ରା-ମାନଙ୍କରେ ଯେଉଁ ଓଡ଼ିଶୀ କୀର୍ତ୍ତନ ପ୍ରଚଳିତ ଅଛି, ତା'ର ପ୍ରବର୍ତ୍ତକ ହେଉଛନ୍ତି ନିତ୍ୟାନନ୍ଦ ଗୋସ୍ୱାମୀ । ଶ୍ରୀନିବାସ ଆଚାର୍ଯ୍ୟ, ନରୋତ୍ତମ ଠାକୁର ଓ ଶ୍ୟାମାନନ୍ଦ—ତିନି-

---

* ଓଡ଼ିଆ ଭାଗବତ ସମ୍ପର୍କରେ ପ୍ରଖ୍ୟାତ ସମାଲୋଚକ ଶ୍ରୀ ସୁରେନ୍ଦ୍ରନାଥ ମହାନ୍ତିଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି " × 'ଭାଗବତ'ର ଅକୃତ୍ରିମ ସୌନ୍ଦର୍ଯ୍ୟ ଏହାକୁ ପୃଥିବୀର ଶ୍ରେଷ୍ଠ ଆଧ୍ୟାତ୍ମିକ ସାହିତ୍ୟର ପଂକ୍ତିଭୁକ୍ତ କରି ପାରିଅଛି । ଏହାର କବିତ୍ୱ ନିଶୀଥର ତାରାଖଚିତ ଆକାଶ ପରି ରହସ୍ୟମୟ, ଶିଶିର ସ୍ନାତ ସକାଳ ପରି ସ୍ନିଗ୍ଧ ଓ ନବୀନ, ଗୋଧୂଳିର ସ୍ତିମିତ ଆଲୋକ ପରି ଭାବୋଦ୍ଦୀର୍ଣ୍ଣ । ସ୍ୱଳ୍ପୋକ୍ତି ମଧ୍ୟରେ ଭାଗବତର ପଦାବଳୀ ସବୁବେଳେ ସହଜ ବୋଧଗମ୍ୟ ନୁହେଁ । ତଥାପି ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟ ଓ ରହସ୍ୟମୟ କବିତ୍ୱ ମଧ୍ୟରେ ପୂର୍ଣ୍ଣଭାବ ପୁଷ୍ଟି ସାଧିତ ହୋଇଥାଏ । ଓଡ଼ିଆ ଜାତିର •ଅବଚେତନରେ ଭାଗବତ ଏପରି ପ୍ରତିଷ୍ଠା ଲାଭ କରିଅଛି ଯେ ଭାଗବତର ପଦାବଳୀ ଉଦ୍ଧାର କରି ସବୁ ଯୁକ୍ତି ଓ ବିତର୍କର ଚରମ ସିଦ୍ଧାନ୍ତ ମିଳିଥାଏ । × × × । ବସ୍ତୁତଃ 'ଭାଗବତ'ର ପଦାବଳୀ ଆବୃତ୍ତି କରି ଓଡ଼ିଆ ଜାତିର ପ୍ରାଣସତ୍ତା ଯେପରି ତୃପ୍ତ ହୋଇଥାଏ । × × × । ଆଧ୍ୟାତ୍ମିକ ଭାବନା ଓ ଦର୍ଶନ ବା କବିତ୍ୱ ଦୃଷ୍ଟିରୁ କେବଳ ନୁହେଁ, ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବ୍ୟକ୍ତି ଦୃଷ୍ଟିରୁ ମଧ୍ୟ 'ଭାଗବତ'ର ଏକ ବିଶିଷ୍ଟ ସ୍ଥାନ ରହିଅଛି । × × । ଆଧୁନିକ ଓଡ଼ିଆ ଭାଷା ପ୍ରକୃତ ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା ବୋଲି କହିଲେ ତେଣୁ ଅତ୍ୟୁକ୍ତି ହେବ ନାହିଁ । ···ସ୍ୱଳ୍ପୋକ୍ତି ମାଧ୍ୟମରେ କ୍ଲିଷ୍ଟ ଭାବରାଶିର ସରଳ ନିରାଡ଼ମ୍ବର ପ୍ରକାଶଭଙ୍ଗୀ ଏହାର ବିଶେଷତ୍ୱ । ···ଓଡ଼ିଶାର ଜୀବନ ତଥା ସାହିତ୍ୟର ଇତିହାସରେ 'ଭାଗବତ'ର ସ୍ଥାନ ପର୍ଯ୍ୟାପ୍ତ ଭାବରେ ବର୍ଣ୍ଣିତ କରିବା ସମ୍ଭବ ନୁହେଁ । ···ଓଡ଼ିଶାର ଜାତୀୟ ଚରିତ୍ର ଗଠନ କରିବାରେ ଏହା ଯେ ନିର୍ଭର-ଯୋଗ୍ୟ ଭିତ୍ତିଭୂମି ନିର୍ମାଣ କରିଅଛି ତାହା ଉଲ୍ଲେଖ କରିବା ଦ୍ୱିରୁକ୍ତି ମାତ୍ର । ଓଡ଼ିଶାର ଜନସମାଜରେ ଭାଗବତର ଲୋକପ୍ରିୟତା ଓ ସ୍ଥାନ ସମ୍ପର୍କରେ ଜଗବନ୍ଧୁ ସିଂହ ପ୍ରାଚୀନ ଉତ୍କଳରେ ଲେଖିଛନ୍ତି, "···ଚାଟଶାଳୀରେ ପିଲାମାନଙ୍କର ଭାଗବତର ପ୍ରଧାନ ପାଠ୍ୟପୁସ୍ତକ ଥିଲା । ଯେଉଁ ପିଲା ଅଧ୍ୟାୟେ ଭାଗବତ ବୋଲି ପାରିଲା ତା'ର ବିଦ୍ୟା ଶେଷ ହେଉଥିଲା । ଲୋକର ଆସନ୍ନ ମୃତ୍ୟୁ, ତାହାର ପୁତ୍ର ପୌତ୍ରାଦି ଆତ୍ମୀୟ ସ୍ୱଜନ

Digitized by srujanika@gmail.com

କଣ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ପ୍ରବର୍ତ୍ତିତ ପ୍ରେମ ଧର୍ମର ପ୍ରଚାରକ ରୂପେ ଚାରୋଟି ମୌଳିକ କୀର୍ତ୍ତନ ପଦ୍ଧତି, ସ୍ୱର, ସଙ୍ଗୀତ, ତାଳ—ମାନ ଆଦି ପ୍ରବର୍ତ୍ତନ କରିଥିଲେ । ଶ୍ରୀନିବାସ ଆଚାର୍ଯ୍ୟ ମନ୍‌ହର୍ ସାହି (ଗୌଡ଼ଦେଶୀ), ନରୋତ୍ତମ ଗଡ଼େର ହାଟି *(ରାଢ଼ଦେଶୀ) ଓ ଶ୍ୟାମାନନ୍ଦଙ୍କ ପ୍ରବର୍ତ୍ତିତ କୀର୍ତ୍ତନ ପଦ୍ଧତି ହେଲା ରାଣୀହାଟି (ଓଡ଼ିଶୀ) । (୩୧)

---

ତା କାନରେ ଅଧ୍ୟାୟେ ଭାଗବତ ଶୁଣାଉଥିଲେ । ଗ୍ରାମରେ ବସନ୍ତିକା, ମାରିଭୟ ପ୍ରଭୃତି ଉପଦ୍ରବ ହେଲେ, ଭାଗବତ ପାଠ, ହରିନାମ, ସପ୍ତାଙ୍ଗ ଭାଗବତ ପ୍ରଭୃତି ହେଉଥିଲା । ଭାଗବତ ପାଠ ହେଲେ ଗ୍ରାମରୁ କାଳଭୟ ଦୂର ହେଉଥିଲା ବୋଲି ଲୋକଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ଅନେକ ଲୋକଙ୍କର ସକାଳେ ସ୍ନାନ ପରେ ସନ୍ଧ୍ୟା-ବେଳେ ଭାଗବତ ପାଠ କରିବା ନିତ୍ୟ ନୈମିତ୍ତିକ କାର୍ଯ୍ୟ ଥିଲା ।

ଭାଗବତ ଆବୃତ୍ତି ପାଇଁ ଓଡ଼ିଶାର ଜନସମାଜରେ ବ୍ୟଗ୍ରତା, ଓଡ଼ିଶାର ସାକ୍ଷରତା ଓ ଶିକ୍ଷାର ପ୍ରସାରରେ ଯେପରି ସହାୟକ ହେଉଥିଲା, ବି· ସି· ମଜୁମଦାର ତାହା 'ଟିପିକାଲ ସିଲେକ୍‌ସନ ଫ୍ରମ ଓଡ଼ିଆ ଲିଟରେଚର'ରେ ନିମ୍ନରୂପେ ଲିପିବଦ୍ଧ କରିଅଛନ୍ତି ।

"...ଭାଗବତ ପାଠ ପାଇଁ ଜନସାଧାରଣଙ୍କ ମଧ୍ୟରେ ପ୍ରବଳ ଆଗ୍ରହ ହେତୁ, ଲିଖନ ଓ ପଠନ ବଙ୍ଗଳାର ଜନସମାଜ ଅପେକ୍ଷା ଓଡ଼ିଶାର ଜନ ସମାଜରେ ଆଦୃତ ଓ ଆଚରିତ ହୋଇଥାଏ । ଓଡ଼ିଶାରେ ଶିକ୍ଷାର ବ୍ୟାପକତା ସମ୍ପର୍କରେ ଏହି ଆଭିମୁଖ୍ୟ, ବହୁକାଳ ପୂର୍ବେ ଭୂଦେବ ମୁଖାର୍ଜି ସ୍କୁଲ ଇନ୍‌ସପେକ୍ଟର ଥିବାବେଳେ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ ।" (ଓଡ଼ିଆ ସାହିତ୍ୟର ମଧ୍ୟପର୍ବ—ପୃ. ୬୭୯-୬୮୭) ୨ୟ ସଂ., ୧୯୭୩ ।)

* ଶ୍ରୀ ଦିଲୀପ କୁମାର ମୁଖାର୍ଜି ତାଙ୍କର ଚୈତନ୍ୟ' ଗ୍ରନ୍ଥରେ ଲେଖିଅଛନ୍ତି— "ନରୋତ୍ତମ ଦାସଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହି କୀର୍ତ୍ତନ 'ଗରନହାଟୀ ବା ଗାରେର ହାଟୀ କୀର୍ତ୍ତନ' ରୂପେ ପରିଚିତ । ସମ୍ଭବତଃ ଖେତାରୀ ଯେଉଁ ପ୍ରଗଣାରେ ଅବସ୍ଥିତ ଥିଲା ତା'ର ନାମ ଥିଲା ଗାରେର ହାଟ । (ଖେତାରୀ ଉତ୍ତର ବଙ୍ଗରେ ଅବସ୍ଥିତ । ଚୈତନ୍ୟଙ୍କ ଦେହାବସାନର ପଚାଶ ବର୍ଷ ବେଳକୁ ଏଠାରେ ବିଖ୍ୟାତ ବୈଷ୍ଣବ ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ଏଥିରେ ଚୈତନ୍ୟଙ୍କ ବିଧବା ପତ୍ନୀ ଉପସ୍ଥିତ ଥିଲେ ।)

ପରବର୍ତ୍ତୀ କାଳରେ ମନୋହର ସାହି, ରେନେଟି, ମନ୍ଦାରଣି ଓ ଝାଡ଼ଖଣ୍ଡୀ କୀର୍ତ୍ତନ ଘାଟମାନ ସଂପୃକ୍ତ ଅଞ୍ଚଳରୁ ସୃଷ୍ଟି ହୋଇଥିଲା । ସେହି ଅଞ୍ଚଳଗୁଡ଼ିକ ହେଲା

Digitized by srujanika@gmail.com

**ମିତାକ୍ଷର :**

ବଙ୍ଗଳାରେ 'ଦାୟଭାଗ' ପ୍ରଥା ପ୍ରଚଳିତ । ଓଡ଼ିଶାରେ ପ୍ରଚଳିତ 'ମିତାକ୍ଷର' ପ୍ରଥାର ପରମ୍ପରା ସମଗ୍ର ଉତ୍ତର-ପୂର୍ବାଞ୍ଚଳରେ ପ୍ରଚଳିତ ରହିଅଛି । ଦାୟଭାଗରେ ଜ୍ୟେଷ୍ଠ ପୁତ୍ର 'ଶ୍ରେଷ୍ଠାଂଶ'ର ଅଧିକାରୀ, ମିତାକ୍ଷରା ପ୍ରଥାନୁଯାୟୀ ସମ୍ପତ୍ତିରେ କନ୍ୟାର ଅଂଶ ନ ଥାଏ ।

**ମୁଠି ଅନୁକୂଳ :**

ଅକ୍ଷୟ ତୃତୀୟାରେ ଏ ଅଞ୍ଚଳର କୃଷକମାନେ ଧାନ ଉତ୍ପାଦନ ନିମନ୍ତେ ନିଜ ନିଜ ଭୂମିରେ ଶୁକ୍ଳ ଧାନରେ 'ମୁଠି ଅନୁକୂଳ' କରି ବୀଜ ବପନର ଶୁଭାରମ୍ଭ କରିଥାନ୍ତି ।

**ମୃତାହକ୍ରିୟା :**

ବଙ୍ଗଳାରେ ବ୍ରାହ୍ମଣେତର ଜାତିର ଲୋକେ ମୃତ୍ୟୁକାଳୀନ ଅଶୌଚ ଏକ ମାସ ଧରି ପାଳନ କରିଥାନ୍ତି । ମାତ୍ର ମେଦିନୀପୁରର ଅଧିବାସୀ ଆବ୍ରାହ୍ମଣ ସମସ୍ତେ ଓଡ଼ିଶା ପରି ଏ ପରିସ୍ଥିତିରେ ଦଶଦିନ ଅଶୌଚ ପାଳନ କରିଥାନ୍ତି । କେତେକ ଜାତିରେ ଏହାର ବ୍ୟତିକ୍ରମ ମଧ୍ୟ ପରିଲକ୍ଷିତ ହୁଏ ।

---

ଯଥାକ୍ରମେ ମନୋହର ସାହି ପ୍ରଗଣା (ବର୍ଦ୍ଧମାନ), ରାଣୀହାଟ (ବର୍ଦ୍ଧମାନ), ମନ୍ଦାରନ (ମିଦନାପୁର) ଓ ଝାଡ଼ଖଣ୍ଡ (ମିଦନାପୁର) । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକର କିଛିନା କିଛି ବିଶେଷତ୍ୱ ଥିଲା ।

ରେନେଟି ଓ ମନ୍ଦାରଣୀର ସ୍ୱର ମନୋହର ସାହି କୀର୍ତ୍ତନଠାରୁ ସରଳ ଥିଲା । ସ୍ୱର ସଂଯୋଜନା ପାଇଁ ମନୋହର ସାହି କୀର୍ତ୍ତନ ପ୍ରଖ୍ୟାତ ଥିଲା । କୁହାଯାଏ ଯେ ଶ୍ରୀ ନିବାସ ଆଚାର୍ଯ୍ୟ ମନୋହର ସାହି ଓ ରେନେଟି କୀର୍ତ୍ତନର ସ୍ରଷ୍ଟା ଥିଲେ ।"

× × × ×

"କୀର୍ତ୍ତନର ପାଞ୍ଚଟି ଶୈଳୀରୁ ଝାଡ଼ଖଣ୍ଡୀ ଖୁବ୍ କମ୍ ଦିନ ତିଷ୍ଠି ରହିଥିଲା । ପ୍ରଥମେ ମୁଖ୍ୟ ଚାରୋଟି ଶୈଳୀ—ଗରନ ହାଟୀ, ମନୋହର ସାହି, ରେନେଟି ଓ ମନ୍ଦାରନୀ ନିଜ ନିଜର ସ୍ୱତନ୍ତ୍ର ସ୍ୱର ସଂଯୋଜନା କରିଥିଲେ । ଗରନ ହାଟୀ ଶୈଳୀ ସରଳ ଅଥଚ ଗମ୍ଭୀର ଓ ଧ୍ରୁପଦ ବିଶିଷ୍ଟ ଥିଲା । ସ୍ୱରର ଭିନ୍ନତା ପାଇଁ ମନୋହର ସାହି ପ୍ରଖ୍ୟାତ ଥିଲା; କିନ୍ତୁ ସମୟକ୍ରମେ ଏହି ସ୍ୱତନ୍ତ୍ରତା କ୍ରମେ ଲୋପ ପାଇଯାଇଥିଲା । ପଶ୍ଚିମ ବଙ୍ଗରେ ମନୋହର ସାହି ଶୈଳୀ ଅଧିକ ପ୍ରଚଳିତ ଥିଲା ।"
ଚୈତନ୍ୟ—ଏନ୍. ବି. ଟି. ଇଣ୍ଡିଆ (ଓଡ଼ିଆ)—୧୯୭୧, ପୃ. ୧୨୩-୧୨୪ ।

Digitized by srujanika@gmail.com

**ଉଚ୍ଚାରଣ ପଦ୍ଧତି, 'ଳ' ଉଚ୍ଚାରଣ :**

ଓଡ଼ିଆ ଭାଷାରେ 'ଲ' ଓ 'ଳ'ର ଦୁଇଟି ସ୍ୱତନ୍ତ୍ର ଅକ୍ଷର ପ୍ରଚଳିତ ରହିଅଛି । ଏହା ଓଡ଼ିଆ ଭାଷାର ପ୍ରାଚୀନତାର ନିଦର୍ଶନ । ବଙ୍ଗଳା ଭାଷାରେ 'ଳ' ଲିପି ନାହିଁ । କିନ୍ତୁ ମେଦିନୀପୁର ବାସୀଗଣ 'ଲ' ଓ 'ଳ' ଉଭୟ ସୁନ୍ଦର ଭାବେ ଉଚ୍ଚାରଣ କରିଥାନ୍ତି ।

**ଖଣ୍ଡ (ତ) କାର :**

ଖଣ୍ଡ (ତ) କାର ଯୁକ୍ତ ଦନ୍ତ୍ୟସ୍ୱରକାର ବର୍ଣ୍ଣକୁ ଓଡ଼ିଆମାନେ 'ଛ' ବର୍ଣ୍ଣ ପରି ଉଚ୍ଚାରଣ କରିଥାନ୍ତି । ଯଥା—ମହୋତ୍ସବ >ମଉଛବ, 'ଉତ୍ସବ'>ଉଛବ ଇତ୍ୟାଦି । ସମଗ୍ର ମେଦିନୀପୁରବାସୀ ପ୍ରାଚୀନ ପଣ୍ଡିତ ଓ ବୃଦ୍ଧମାନଙ୍କ ମୁଖରୁ ଏପରି ଉଚ୍ଚାରଣ ଶୁଣାଯାଇଥାଏ ।

**ନାଁ ବଦଳେଇବା :**

ଘରର ସ୍ତ୍ରୀଲୋକେ ସାଧାରଣତଃ ବୋହୂମାନେ ଶ୍ୱଶୁର, ଶାଶୂ, ଗୋସେଇଁ ଶ୍ୱଶୁର, ଗୋସେଇଁ ଶାଶୂ, ଦେଢ଼ଶୁର, ଦେଢ଼ଶାଶୂ ଓ ସ୍ୱାମୀ ପ୍ରଭୃତି ଗୁରୁଜନମାନଙ୍କର ନାମଧରି ଡାକିବା, ସେମାନଙ୍କ ନାମ ଧରିବା କିମ୍ବା ନାମର ଆଦ୍ୟ ଅକ୍ଷର ବ୍ୟବହୃତ (କୌଣସି ବସ୍ତୁ, ପଦାର୍ଥ, ଜୀବଜନ୍ତୁ ପ୍ରଭୃତିର) ନାମ ଉଚ୍ଚାରଣ କରିବା ଅକର୍ତ୍ତବ୍ୟ ରୂପେ ବିବେଚିତ ହୁଏ । ତେଣୁ କୌଣସି ପରିସ୍ଥିତିରେ ସେସବୁ ନାମକୁ ସାଙ୍କେତିକ ଭାଷାରେ କହିବା ବିଧି । ଜଣେ ଶାଶୁଙ୍କର ନାମ କୌଶଲ୍ୟା ହେଲେ ବୋହୂ ତାଙ୍କ ନାମ ନ ଧରି ସାଙ୍କେତିକ ଭାଷାରେ ପ୍ରକାଶ କରିବା ସାଙ୍ଗେ ସାଙ୍ଗେ 'କ' ଅକ୍ଷରରେ ଆରମ୍ଭ ଅନ୍ୟ କୌଣସି ପଦାର୍ଥ କିମ୍ବା ଜୀବର ନାମକୁ ଭିନ୍ନ ରୂପେ ପ୍ରକାଶ କରିବ । ଯଥା—ମାଛର ନାମ 'କଉ' କହିବାକୁ ହେଲେ 'ନଉ' ବୋଲି ଉଚ୍ଚାରଣ କରିବେ । ଦକ୍ଷିଣ ମେଦିନୀପୁର—ଉତ୍ତର ବାଲେଶ୍ୱର ଅଞ୍ଚଳରେ ଏ ପ୍ରଥା ବହୁଳ ପ୍ରଚଳିତ ।

**ନାଉଳୀ ପ୍ରଥା :**

ଓଡ଼ିଶାରେ କରଣମାନେ ବ୍ରାତ୍ୟ କ୍ଷତ୍ରିୟ । ଖଣ୍ଡାୟତ ଓ ରାଜୁମାନେ ଉଗ୍ର-କ୍ଷତ୍ରିୟ । ଏ ତିନି ଜାତିଙ୍କ ମଧ୍ୟରେ କେତେକ ସ୍ଥାନରେ 'ନାଉଳୀ ପ୍ରଥ' ରୂପ ଯେଉଁ ନବ ସଂସ୍କାର କର୍ମ ରହିଅଛି ତାହା ବେଦବହିତ ଓ ସ୍ମୃତ୍ୟାନୁଷ୍ଠାନ । ସମଗ୍ର ଉତ୍ତର-ପୂର୍ବା-ଞ୍ଚଳରେ ଏଥିର ପ୍ରଚଳନ ରହିଅଛି ।

Digitized by srujanika@gmail.com

ସମସ୍ତ ଅଞ୍ଚଳରେ ପୂଜା ଅର୍ଚ୍ଚନା ସମୟରେ ବ୍ରାହ୍ମଣମାନେ ମନ୍ତ୍ରପାଠ କଲା-ବେଳେ 'ଉତ୍କଳ ଦେଶେ' ଏହି ପଦ ଉଚ୍ଚାରଣ କରିଥାନ୍ତି । (ବର୍ତ୍ତମାନ କେତେକ ସ୍ଥଳରେ 'ଉତ୍କଳଦେଶେ' ଶବ୍ଦ ପରିତ୍ୟାଗ କରି ମନ୍ତ୍ର ଉଚ୍ଚାରିତ ହେଉଅଛି ।) ମେଦିନୀ-ପୁର ଅଞ୍ଚଳରେ ଗ୍ରାମ୍ୟ ନିର୍ମାଣ କୌଶଳ; ଲୋକ-ସମାଜ-ଜୀବନ, ପର୍ବପର୍ବାଣୀ, ବାର-ବ୍ରତ ଓଷା, ବିଶ୍ବାସ ଏ ସଂସ୍କାର ସମସ୍ତ ସମ୍ଭ୍ରାନ୍ତ ଓଡ଼ିଶୀ ପରମ୍ପରାର ପ୍ରତୀକ । ଏଠାରେ ଓଡ଼ିଆ ସମାଜ ସମ୍ପର୍କରେ ଚୌଧୁରୀ ମହେଶ୍ବର ପଣ୍ଡାଙ୍କ ଲିଖିତ ପୁସ୍ତକରୁ କିଛି ଅଂଶ ଉଦ୍ଧାର କରୁଅଛୁ—

"ଉତ୍କଳୀୟ ସମାଜ ତାହାର କୃଷକ ଭାଇ ଏବଂ ଅନୁନ୍ନତ ଭାଇଦେର ଶ୍ରେଷ୍ଠ ମନେ କରେନା, ସକଲେଇ ମାଥେର ଛେଲେ ସମାନ ଜ୍ଞାନ କରେ । ଏଇଟାଇ ତା'ର ମହତ୍ତ୍ବ, ତା'ର ଉଦାରତା । ପ୍ରତ୍ୟେକ ପୂଜା ଅର୍ଚ୍ଚନାଦି ଏବଂ ଶୁଭ କାର୍ଯ୍ୟେର ଅନୁଷ୍ଠାନେର ସମୟ ଯଖନ ପୁରୋହିତ ସଙ୍କଳ୍ପ କରେନ୍, ତଖନ୍, ତାଁରା ମନ୍ତ୍ରପାଠ କରେନ୍ ତାହା କଖନ ପ୍ରଣିଧାନ କରି ଆଛେନ୍‌କି ? "ଅଦ୍ୟ ପୃଥିବ୍ୟାଂ ଜମ୍ବୁଦ୍ବୀପେ ଭାରତ ଭୂଖଣ୍ଡେ ଉତ୍କଳ ଦେଶେ ଅମୁକ ମାସେ ଅମୁକ ତିଥୌ ଇତ୍ୟାଦି", ଇହା ନିଃସନ୍ଦେହେ ପ୍ରମାନ କରିତେଛେ ଯେ ଆମ୍‌ରା ଉତ୍କଳ ଦେଶେଇ ଆଛି ତବେ ରାଜନୈତିକ ବ୍ୟବଚ୍ଛେଦ ବାଂଲାର ଅନ୍ତର୍ଗତ ହଇଆ ପଡ଼ିଆଛି ।" (୩୬)

ଏହା ୧୯୩୬ ମସିହା ଅପ୍ରେଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପରେ ପଶ୍ଚିମବଙ୍ଗ ଅନ୍ତର୍ଭୁକ୍ତ ମେଦିନୀପୁରର ଓଡ଼ିଆ ଅଧିବାସୀମାନଙ୍କ ହୃଦୟର କରୁଣ ଅଭିବ୍ୟକ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ । ଉପରୋକ୍ତ ଆଲୋଚନାରୁ ପଣ୍ଡିତ ମହେଶ୍ବର ପଣ୍ଡାଙ୍କର ଉକ୍ତିର ସାରବତ୍ତା ଓ ସତ୍ୟତା ସହଜରେ ପ୍ରତିପନ୍ନ ହେବ ।

**ଓଡ଼ିଆ ଭାଷୀ ଜନସଂଖ୍ୟାର କ୍ରମହ୍ରାସପତନ :**

ବର୍ତ୍ତମାନ ଶ୍ରୀ ମହେଶ୍ବର ପଣ୍ଡାଙ୍କ ଉପରୋକ୍ତ ଉକ୍ତିର ଶେଷାଂଶ ("......ତବେ ରାଜନୈତିକ ବ୍ୟବଚ୍ଛେଦେ ବାଂଲାର ଅନ୍ତର୍ଗତ ହଇଆ ପଡ଼ିଆଛି") ଆଲୋଚନା କରୁଅଛୁ ।

ଜନ ସୁମାରୀ ତଥ୍ୟାନୁସାରେ କେତୋଟି ବର୍ଷର ଲୋକସଂଖ୍ୟାର ତାଲିକା ନିମ୍ନରେ ପ୍ରଦତ୍ତ ହେଲା ।

Digitized by srujanika@gmail.com

| ବର୍ଷ | ଜିଲ୍ଲାର ମୋଟ ଲୋକସଂଖ୍ୟା | ଜିଲ୍ଲାର ଓଡ଼ିଆ ଭାଷୀ ଲୋକସଂଖ୍ୟା | ବଙ୍ଗାଳୀ ଲୋକସଂଖ୍ୟା | ହିନ୍ଦୀ ଭାଷୀ ଲୋକସଂଖ୍ୟା |
|---|---|---|---|---|
| ୧୮୯୧ | ୨,୬୪୩,୬୯୨ | ୫୭୨, ୭୯୮ | — | — |
| ୧୯୦୧ | ୨,୭୮୯,୧୧୪ | ୨୭୦,୪୯୫ | ୨,୨୪୩,୭୧୬ | — |
| ୧୯୧୧ | ୨,୮୨୧,୨୦୧ | ୧୮୧,୮୦୧ ?? | ୨,୩୩୭;୬୯୯ | — |
| ୧୯୨୧ | ୨,୬୬୬,୬୬୦ | ୧୪୨,୧୦୭ | ୨,୨୬୪,୯୪୩ | — |
| ୧୯୩୧ | ୨,୭୯୯,୦୯୩ | ୪୫,୧୦୧ ?? | ୨,୪୬୩,୮୧୦ | ୫୦,୬୫୭ |
| ୧୯୪୧ | — | — | — | — |
| ୧୯୫୧ | ୩,୩୫୯,୦୨୨ | ୨୮,୧୯୨ ?? | ୩,୦୧୪;୧୦୨ | ୪୩,୨୮୯ |
| ୧୯୬୧ | ୪,୩୪୧,୮୫୫ | ୨୧,୦୧୯ | — | — |
| ୧୯୭୧ | ୫,୫୦୯,୨୪୭ | ୨୮,୦୭୯ | — | — |
| ୧୯୮୧ | | | | |
| ୧୯୯୧ | | | | |

ପ୍ରଦତ୍ତ ତାଲିକାରୁ ପ୍ରମାଣିତ ହେବ ଯେ, ସମୟକ୍ରମେ ମେଦନୀପୁର ଜିଲ୍ଲାରୁ ଓଡ଼ିଆ ଭାଷୀ ଲୋକମାନଙ୍କର ସଂଖ୍ୟା ହ୍ରାସ ପାଇଛି । ଏ ସମ୍ପର୍କରେ ୧୯୦୧ ମସିହାରେ ଜନସୁମାରି ରିପୋର୍ଟରେ ଲିଖିତ ତଥ୍ୟଟି ପ୍ରଣିଧାନଯୋଗ୍ୟ । ତାହା—“The dialect classed as Oriya in 1891 has at the recent census been treated in many cases as Bengali.” (୩୩) ୧୮୯୧ ଜନଗଣନାନୁସାରେ ଦାନ୍ତନ ଥାନାର ୧,୨୩,୫୪୯ ଜଣ ଲୋକ ମଧ୍ୟରୁ ୯୧,୪୮୦ ଜଣ ଓଡ଼ିଆ ଲୋକ ରହୁଥିଲେ । ଗୋପୀବଲ୍ଲଭପୁର ଓ ନୟା ଗ୍ରାମରେ ୧୬୩,୧୫୮ ଜଣ ଲୋକଙ୍କ ମଧ୍ୟରୁ ୯୬,୨୮୭ ଜଣ ଅର୍ଥାତ୍ ଶତକଡ଼ା ୫୯ ଜଣ ଓଡ଼ିଆ ଭାଷୀ ଲୋକ ବାସ କରୁଥିଲେ । ଏଗ୍ରାରେ ୭୭,୮୮୪ ଜଣଙ୍କ ମଧ୍ୟରୁ ୫୭,୨୯୨ ଜଣ ଅର୍ଥାତ୍ ଶତକଡ଼ା ୭୪ ଜଣ ଓଡ଼ିଆ ଭାଷୀ ଲୋକ ବାସ କରୁଥିଲେ । ରାମନଗର ଥାନାରେ ୭୫,୨୦୦ ଜଣଙ୍କ ମଧ୍ୟରୁ ୧୦,୭୪୧ ଜଣ ଓଡ଼ିଆ ଲୋକ ଥିଲେ । ନାରାୟଣ ଗଡ଼, କେଶିଆଡ଼ି, ଝାଡ଼ଗାଁ ଏବଂ ମେଦନୀପୁରର ଅନ୍ୟ ଥାନାମାନଙ୍କରେ ଓଡ଼ିଆ ଲୋକମାନେ ରହୁଥିଲେ । ୧୯୦୧ ମସିହାର ଜନଗଣନା ଅନୁସାରେ ଗୋପୀବଲ୍ଲଭପୁର ଥାନାରେ ଶତକଡ଼ା ୫୯ ଜଣ ଓଡ଼ିଆ ଲୋକ ଥିଲେ । କିନ୍ତୁ ୧୯୧୧ ମସିହାର ଜନଗଣନା ସମୟକୁ ଏହା ଶତକଡ଼ା ୩୮ ଜଣକୁ କମି ଆସିଥିଲା । ପୁଣି ୧୯୨୧ ମସିହା ବେଳକୁ ଏହା ଶତକଡ଼ା ୫୫ ଜଣକୁ ବୃଦ୍ଧି ପାଇଥିବାର ଦେଖାଯାଏ ।

Digitized by srujanika@gmail.com

ରାମନଗର ଥାନାରେ ଏହା ୧୯୧୧ ବେଲକୁ ଶତକଡ଼ା ୧୦ରୁ ୭୭ ପର୍ଯ୍ୟନ୍ତ ବୃଦ୍ଧି ଲାଭ ଘଟିଥିଲା । ମାତ୍ର ୧୯୨୧ ମସିହାର ଜନସଂଖ୍ୟା ବେଲକୁ ଏହା ଶୂନ୍ୟରେ ପରିଣତ ହୋଇଥିଲା । ମୋହନପୁର ଥାନାରେ ୧୯୧୧ ଓ ୧୯୨୧ ଜନଗଣନାନୁସାରେ ଶତକଡ଼ା ୯୩ ଜଣ ଓଡ଼ିଆ ଭାଷୀ ଲୋକ ଥିବାର ଦେଖାଯାଏ । ୧୯୨୧ ବେଲକୁ ଏ ଅଞ୍ଚଳରେ ଥିବା କରଣ ଜାତିର ଲୋକେ ବଙ୍ଗାଳୀ କାୟସ୍ଥରେ ପରିଣତ ହୋଇଥିବାର ଦେଖୁ । ଅନ୍ୟ ଜାତିମାନଙ୍କ କ୍ଷେତ୍ରରେ ମଧ୍ୟ ଏପରି ଘଟିଥିବାର ଦେଖାଯାଏ । ୧୯୧୧ ଜନସଂଖ୍ୟା ରିପୋର୍ଟରେ ମେଦିନୀପୁରରେ ୫୯,୦୦୦ ରାଜୁ, ୪୯,୩୮୯ ଜଣ କରଣ; ୩୯,୮୯୫ କଣ୍ଡରା; ୪୪,୨୩୩ ଜଣ ଭୂମିଜ; ୨୮,୪୯୦ ଜଣ ଶୁକ୍ଳ, ୨୭,୭୨୫ ଜଣ କାସ୍ତ; ୮୮୩,୪୯୪ ଜଣ କୈବର୍ତ୍ତ (ମାହିଷ୍ୟ); ୫୭,୩୭୫ ଜଣ ଖଣ୍ଡାୟତ; ୮୭,୭୦୮ ଜଣ ତନ୍ତୀ; ୭୦,୨୮୭ ଜଣ ତେଲି; ୨୭,୯୩୨ ଜଣ କୁମ୍ଭାର, ୩୭,୫୧୫ ଜଣ କମାର; ୩୭,୫୨୨ ଜଣ ଧୋବା; ୫୦,୧୧୭ ଜଣ ଗୋଲା ଏବଂ ଅସଂଖ୍ୟ ବ୍ରାହ୍ମଣ ବାସ କରୁଥିବାର ଦେଖାଯାଏ । ଏହି ଜାତିଗୁଡ଼ିକ ମଧ୍ୟରୁ ବ୍ରାହ୍ମଣ ବ୍ୟତୀତ ବଙ୍ଗଳାର ଅନ୍ୟ ସ୍ଥାନମାନଙ୍କରେ ଅନ୍ୟ ଜାତିର ଲୋକେ ବାସ କରୁଥିବାର ଦେଖାଯାଏ ନାହିଁ । ପରେ କୈବର୍ତ୍ତମାନେ ମାହିଷ୍ୟ ରୂପେ ପରିଣତ ହୋଇଥିଲେ । ୧୯୩୨ ମସିହାରେ O' Donnell କମିଟି ମତ ଦେଇଥିଲେ,—

"If by the Oriya race we mean castes which had their origin in Orissa, it is possible that this clasification under-estimated the Oriya race. The Kaibartas who now style themselves as Mahisyas are the largest caste in Midnapur." (୩୪)

ଶ୍ରୀଯୁକ୍ତ ମନ ମଧ୍ୟ ଏକଥା ସ୍ୱୀକାର କରି କହନ୍ତି ଯେ, ମାହିଷ୍ୟମାନେ ଜାତି ଓ ଭାଷାରେ ଓଡ଼ିଆ କୈବର୍ତ୍ତ । ଏମାନେ ୧୯୦୧ ଜନଗଣନା ସମୟକୁ ମାହିଷ୍ୟରେ ପରିଣତ ହୋଇଥିବାର ଦେଖୁଁ । ସଦ୍‌ଗୋପ୍‌ମାନେ ଓଡ଼ିଆ ଗୋଲା, ଏବଂ କଦମାମାନେ ଓଡ଼ିଆ କଣ୍ଡରା ଜାତିର ଲୋକ । ଏମାନଙ୍କର ଭାଷା ଓଡ଼ିଆ ।

ଉପରୋକ୍ତ ବିବରଣୀରୁ ଜଣାଯିବ ଯେ, ମେଦିନୀପୁରରୁ ଓଡ଼ିଆଭାଷୀ ଲୋକସଂଖ୍ୟାର ହ୍ରାସ ସମ୍ପୂର୍ଣ୍ଣ ରାଜନୈତିକ କାରଣରୁ ଘଟିଅଛି ।

Digitized by srujanika@gmail.com

## କେତେକ ବହୁ ପ୍ରଚଳିତ ଶବ୍ଦର ସମ୍ଭାବ୍ୟ ଐତିହାସିକ ଗୁରୁତ୍ୱ :

### ନର୍‌ସିଙ୍ଗା :

ଉତ୍ତର ପୂର୍ବ ଉପାନ୍ତ ଅଞ୍ଚଳରେ ବିଶେଷତଃ ଉତ୍ତର ବାଲେଶ୍ୱର ଦକ୍ଷିଣ ମେଦିନୀପୁର ଅଞ୍ଚଳରେ ଏ କଥାଟି ଖୁବ୍ ପ୍ରଚଳିତ । କାନ୍ଦୁଥିବା ଛୋଟ ପିଲାଙ୍କୁ ଭୟ ଦେଖାଇ ଶୋଇ ଦେବା/ନିରବ କରିବା ନିମନ୍ତେ ମାଆ/ବୁଢ଼ୀମାଆମାନେ "ହେଇ ନରସିଙ୍ଗା ଆଇଲା", "ନର୍ସିଙ୍ଗା ଆସିବ, ବାପ ଶୁଇପଡ୍" ପ୍ରଭୃତି ଉକ୍ତି ପ୍ରକାଶ କରିଥାନ୍ତି । ଏହାର ଅର୍ଥ ସମ୍ଭବତଃ ଏହିପରି ହୋଇପାରେ । ଯେଉଁ ନରସିଂହ ଦେବଙ୍କ ଶାସନ କାଳରେ ଓଡ଼ିଶାର ସାମରିକ ସଂଗଠନ ଅତି ଉନ୍ନତ ରହିଥିଲା; ଯାହାଙ୍କ ପ୍ରବଳ ପରାକ୍ରମ ବଳରେ ଉତ୍ତର ଦିଗର "ମୁସଲମାନ ରମଣୀମାନଙ୍କ ନୟନର କଜ୍ଜଳରେ ଗଙ୍ଗାର ଶୁଭ୍ର ଜଳଧାରା ଯମୁନା ପରି ନୀଳ ଜଳରେ ପରିଣତ ହୋଇଥିଲା"; * ସେହି ଲାଙ୍ଗୁଳା ନରସିଂହ ଦେବଙ୍କ ପରାକ୍ରମର ସ୍ମୃତି ଏବେ ବି ପୁରୁଷାନୁକ୍ରମେ ଉତ୍ତର ପୂର୍ବାଞ୍ଚଳୀୟ ଜନମାନସରେ ଜୀବିତ ରହିଅଛି । ସମଗ୍ର ଅଞ୍ଚଳରେ ପ୍ରଚଳିତ ଫୁଙ୍କାଝଡ଼ା, ଗୁଣି ଗାରଡ଼ିରେ 'ନରସିଂହ' ନାମର ବହୁଳ ଉଲ୍ଲେଖ ଦେଖାଯାଏ ।

### ଫାସିଁଙ୍ଗା :

ଉତ୍ତର ପୂର୍ବାଞ୍ଚଳର ଜନହମାଜ ବିଶେଷତଃ ଉତ୍ତର ବାଲେଶ୍ୱର, ଦକ୍ଷିଣ ମେଦିନୀପୁର, ମୟୂରଭଞ୍ଜ ସଲଗ୍ନ ଅଞ୍ଚଳରେ ଏ ଉକ୍ତିଟି ବହୁ ପ୍ରଚଳିତ । କୌଣସି

---

* ନରସିଂହ ଦେବଙ୍କ ବଂଶ ଦେଶ ବିଜୟ ସମ୍ପର୍କରେ ଅଲଲପୁର, କେନ୍ଦୁପାଟଣା, ଅସନଖଲି, ଶଙ୍କରାନନ୍ଦ ମଠ ଓ କେନ୍ଦୁଲି ତାମ୍ର ଶାସନମାନଙ୍କରେ ନିମ୍ନମତେ ବର୍ଣ୍ଣିତ ହୋଇଛି ।

"ରାଢ଼ା ବରେନ୍ଦ୍ର ଯବନୀ ନୟନାଞ୍ଜନାଶ୍ରୁ
ପୂରେଣ ଦୂର ବିନ ବେଶିତ କାଳିମ ଶ୍ରୀଃ ।
ତଦ୍ ବିପ୍ରଲମ୍ଭ କରଣାଭୃତ ନିସ୍ତରଙ୍ଗା
ଗଙ୍ଗା ପି ନୂନ ଯମୁନା ଯମୁନାଧୁନଭୂତ୍ ।"

ଅର୍ଥାତ୍, ରାଢ଼ ଓ ବରେନ୍ଦ୍ର ଦେଶର ଯବନୀମାନଙ୍କ କ୍ରନ୍ଦନ ଫଳରେ ସେମାନଙ୍କ ଚକ୍ଷୁର କଜ୍ଜଳ ବିଗଳିତ ଲୋତକ ଧାରରେ ବୋହିଯାଇ ଗଙ୍ଗା ନଦୀର ଧଳାଜଳ ରାଶିକୁ ବହୁ ଦୂର ପର୍ଯ୍ୟନ୍ତ କଳା କରିଦେଲା । ମନେ ହେଲା, ଯେପରି ରାଜାଙ୍କ ଦ୍ୱାରା ସମ୍ପନ୍ନ ଅଦ୍ଭୁତ କାର୍ଯ୍ୟ ସମୂହ ଦର୍ଶନରେ ତରଙ୍ଗାକୂଳ ଗଙ୍ଗାନଦୀ ସ୍ତବ୍ଧ ହୋଇ କୃଷ୍ଣ ଜଳପୂର୍ଣ୍ଣ ଯମୁନା ନଦୀରେ ପରିଣତ ହେଲା ।

Digitized by srujanika@gmail.com

ବ୍ୟକ୍ତିର ଉଚ୍ଛୃଙ୍ଖଳ କାର୍ଯ୍ୟ କଳାପକୁ ଏ ଉକ୍ତି ଦ୍ୱାରା ସମାଲୋଚନା କରାଯାଏ । ଯଥା— "ତୁ ଆଉ ସେ ଫାର୍ସିଡଙ୍ଗିଆ କଥା କହନା", "ସେ ପରା ଫାର୍ସିଡଙ୍ଗାର ଘର କରିଚ, ତାକୁ ପାରିହବନି ପରା", "ତୁ ଆଉ ଏଠି ସିଏ ଫାର୍ସିଡ଼ଙ୍ଗା ଫୁଟାଣୀ କର୍‌ନା; ସେ ଆଡ଼େ ଦେଖେଇବୁ ଯାଆ" ଇତ୍ୟାଦି । ଏହାର ଅର୍ଥ ସମ୍ଭବତଃ ଏପରି ହୋଇପାରେ —ଓଡ଼ିଶାର ଉତ୍ତର-ପୂର୍ବ ଉପକୂଳାଞ୍ଚଳରେ ମୁଖ୍ୟତଃ ବାଲେଶ୍ୱର, ହିଜ୍‌ଲି ପ୍ରଭୃତି ସ୍ଥାନରେ ଫରାସୀମାନଙ୍କର ବାଣିଜ୍ୟ କୋଠି ସ୍ଥାପିତ ହୋଇଥିଲା । ତା'ର ଚିହ୍ନ ସ୍ୱରୂପ ଏବେ ବି ବାଲେଶ୍ୱର ସହରରେ "ଫରାସୀ ଡଙ୍ଗା" * ନାମକ ସ୍ଥାନ ଅଛି । ତତ୍କାଳୀନ ଓଡ଼ିଶାରେ ମୋଗଲ-ମରହଟ୍ଟା-ଇଂରେଜମାନଙ୍କର ଅସ୍ଥିର ଶାସନର ସୁଯୋଗ ନେଇ ଫରାସୀମାନେ ବାଣିଜ୍ୟ କରିବା ସଙ୍ଗେ ସଙ୍ଗେ ଉପକୂଳବର୍ତ୍ତୀ ଗ୍ରାମାଞ୍ଚଳରୁ ଲୁଣ୍ଠନ, ଅପହରଣ, କଳାବଜାର ଅତ୍ୟାଚାର ପ୍ରଭୃତି ଦ୍ୱାରା ବ୍ୟବସାୟ ଚଳାଇଥିଲେ । ଦେଶରେ ଶୃଙ୍ଖଳିତ ଶାସନର ଅଭାବରୁ ସେମାନଙ୍କର ଏପରି ଅତ୍ୟାଚାର ଓ କୁକର୍ମ ପ୍ରତିହତ କରିବାର କ୍ଷମତା ଜନସାଧାରଣଙ୍କର ନଥିଲା । ନିରୀହ ପ୍ରଜାଗଣ କେବଳ ଦୁଃଖ ଓ ଅପମାନ ଭାରବରେ ସହ୍ୟ କରିବା ସହିତ 'ଫରାସୀ ଡଙ୍ଗା'ର କୁକର୍ମ ଲିପ୍ତ ବ୍ୟବସାୟୀମାନଙ୍କୁ ଘୃଣା ମିଶ୍ରିତ ଭୟ ଚକ୍ଷୁରେ ଦେଖୁଥିଲେ । ତେଣୁ ପରବର୍ତ୍ତୀତ ପରିସ୍ଥିତିରେ ମଧ୍ୟ ଅନ୍ତରର ସେ ଅସନ୍ତୋଷ, କରୁଣ ଓ ଦୁଃଖଦ ସ୍ମୃତି ଜୀବନ୍ତ ହୋଇ ରହିଥିବା ଅନୁମେୟ ।

ଏତଦ୍‌ବ୍ୟତୀତ ଓଡ଼ିଶାର ଅନ୍ୟ ଅଞ୍ଚଳ ପରି ସମଗ୍ର ଅଞ୍ଚଳର ଲୋକ ସମାଜରେ ପ୍ରଚଳିତ ପଦପଦାଣୀ ସମୂହ ଓଡ଼ିଶାର ପ୍ରାଚୀନ ସାମରିକ ପରମ୍ପରାର ସ୍ମୃତି ବହନ କରିଅଛି । ନାମ ପୂର୍ବରୁ ଓ ପରେ ବ୍ୟବହୃତ ପଦବୀ ଯଥା—ନାୟକ, ପଣ୍ଡନାୟକ,

* "The Freunch Settlement···which is still called Farashdanga has been washed away by the river, and the area is now only 38 acres.······It was at one time habitually used for the disposal of stolen property and it was a center for the smuggling of opium and other contraband articles: in 1883 it gave rise to a case in which the lessee was charged with kidnapping a man out of British territory."

(Bengal District Gazetteers, Balasore; L.S.S.O' Malley, 1907, P. 190.)

Digitized by srujanika@gmail.com

ମହା ନାଏକ, ଦଳ ନାଏକ, ଦଳେଇ, ବଶୋଇ, ମହାପାତ୍ର, ଉତ୍ତର କବାଟ, ଦକ୍ଷିଣ କବାଟ, ସେନାପତି, ମଲ୍ଲ, ଉଗାଳ ଷଣ୍ଢ, ସର୍ଦ୍ଦାର. ସିଂହ, ବାଘ ସିଂହ ପ୍ରଭୃତି ଏହାର ନିଦର୍ଶନ । 'ମହାପାତ୍ର' ପଦବୀ ସମ୍ଭବତଃ ସମ୍ରାଟ ଅଶୋକଙ୍କ ପ୍ରଶାସନରେ ସୃଷ୍ଟ 'ମହାପାତ୍ର' ପଦବୀରୁ ସୃଷ୍ଟି ହୋଇଥିବ । ଗଜପତିମାନଙ୍କ ଦ୍ୱାରା ପ୍ରଦତ୍ତ ଏପରି ଅନେକ ପଦବୀ ଓ ଉପାଧୀ ଅଦ୍ୟାବଧି ଏ ଅଞ୍ଚଳର ଲୋକ ସମାଜରେ ପ୍ରଚଳିତ ଯାହା ସ୍ମୃତି ବହନ କରୁଅଛି ମାତ୍ର ।

**ସହାୟିକା ସୂଚୀ :**


୧—ମିଶ୍ର ନରେନ୍ଦ୍ର ନାଥ : ବଳରାମ ଦାସ ଓ ଓଡ଼ିଆ ରାମାୟଣ-ପୃ. ୭୧

୨—ସାମନ୍ତରାୟ ନଟବର : ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ପୃ. ୧୨୬, ୧୯୬୪ ।

୩—ଷଡ଼ଙ୍ଗୀ ଭୁବନାରାୟଣ : ଭଗ୍ନ ନଗର ଓ ସ୍ୱର୍ଣ୍ଣରେଖା, ପୃ. ୧୪-୧୫ ୧୯୩୨ ।

୪—ମହତାବ ହରେକୃଷ୍ଣ : ଓଡ଼ିଶା ଇତିହାସ ପୃ. ୯୪-୯୬

୫—ମହତାବ ହରେକୃଷ୍ଣ : ଇତିହାସ ଓ ସଂସ୍କୃତି, ପୃ· ୭୨-୭୩, ୨ୟ ସଂକଳନ—୧୯୭୪ ।

୬—ମିଶ୍ର କୃପାସିନ୍ଧୁ : ଉତ୍କଳ ଇତିହାସ, ପୃ. ୨୭ ।

୭—Hunter W. W. : S. A. B vol. VIII P. 2 Reprinted 1973.

୮—ଷଡ଼ଙ୍ଗୀ ଭୁବନାରାୟଣ : ଭଗ୍ନ ନଗର ଓ ସ୍ୱର୍ଣ୍ଣରେଖା ପୃ. ୧୧ ।

୯—ମହତାବ ହରେକୃଷ୍ଣ : ଓଡ଼ିଶା ଇତିହାସ ପୃ. ୩୩୦ ।

୧୦—ସେନାପତି ନୀଳମଣି, ସାହୁ ନବୀନ କୁମାର } Orissa D. g. Mayurbhanj, 1967.

୧୧—ରହିମ ଏମ୍. ଏ. : ଖେଗରାଇର କଥା—୧ମ ଓ ୨ୟ ଖଣ୍ଡ, ୧୯୫୫ ।

୧୨—Panigrahi K. C. : History of Orissa, P. 268, 1981.


Digitized by srujanika@gmail.com

୧୩—Panigrahi K. C. : ପୌରୁଷ, ପୃ. ୨୦, ଅଗଷ୍ଟ, ୧୯୮୦ ।
୧୪—ରଥ ବନମାଳୀ : କୋଣାର୍କ ୪୩ ସଂଖ୍ୟା, ୧୯୮୦ ।
୧୫—ପଣ୍ଡା ମହେଶ୍ୱର : ଆଧୁନିକ ବାଂଲାର ଅଧିବାସୀ ଉତ୍କଳୀୟ ସାଇଦେର ପ୍ରତି ନିବେଦନ, ୧୯୪୦ ।
୧୬—ପାଠୀ ଯୀନନାଥ : ଓଡ଼ିଶା ଲୋକ ସଂସ୍କୃତି, ପୃ. ୧୫୨, ୧୯୮୫ ।
୧୭—ମହତାବ ହରେକୃଷ୍ଣ : ଓଡ଼ିଶାର ଇତିହାସ, ପୃ. ୨୨୦ ।
୧୮—ଗାଙ୍ଗୁଲି ମ. ମୋହନ : ଓଡ଼ିଶାର ଦେବ ଦେଉଳ, ପୃ. ୧୨-୧୩ ।
୧୯—ସଂକଳନ : ଇତିହାସ ଓ ସଂସ୍କୃତି, ମେଦିନୀପୁର ଜିଲ୍ଲା, ପୃ. ୧୭, ୨ୟ ସଂକଳନ ।
୨୦—ସଂକଳନ : ତତ୍ରୈବ
୨୧—ଭଟ୍ଟାଚାର୍ଯ୍ୟ ତରୁଣ ଦେବ : ମେଦିନୀପୁର, ପୃ. ୨୨୮ ।
୨୨— ,, : ତତ୍ରୈବ ପୃ. ୨୩୪ ।
୨୩— ,, : ତତ୍ରୈବ ପୃ. ୨୮୬ ।
୨୪—ଆଚାର୍ଯ୍ୟ ପରମାନନ୍ଦ : ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର ।
୨୫—ମହତାବ ହରେକୃଷ୍ଣ : ଓଡ଼ିଶା ଇତିହାସ, ପୃ. ୧୮୪ ।
୨୬—ଦଳାଇ କୁବେର : ଉତ୍କଳ ସାହିତ୍ୟ, ପୃ. ୪୪୩ ୪୧ଶ ଭାଗ, ୧୩୪୫ ।
୨୭—ଆଚାର୍ଯ୍ୟ ପରମାନନ୍ଦ : ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ
୨୮—ମହାପାତ୍ର କେଦାରନାଥ : ଗୁଡ଼ ଇଚ୍ଛାବଳୀ (ସ) ଭୂମିକା, ୧୯୬୧ ।
୨୯— ,, : ତତ୍ରୈବ
୩୦—ଆଚାର୍ଯ୍ୟ ପରମାନନ୍ଦ : ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ ପୃ. ୩୨୫ ।
୩୧—ନନ୍ଦ ନରସିଂହ : ଶ୍ରୀ ଶ୍ରୀ ଶ୍ୟାମାନନ୍ଦ ଲୀଳାମୃତ (ସ), ପୃ. ୪୬, ୧୯୭୮ ।

Digitized by srujanika@gmail.com

୩୨—ପଣ୍ଡ ମହେଶ୍ୱର : ଆଧୁନିକ ବାଂଲର ଅଧିବାସୀ ହରିଜନଙ୍କ ଖଇଦେର ପ୍ରଣ ନିବେଦନ ।

୩୩—Patra S. C. : The Fornation of the Province of Crissa Ph. D. thesis (MSS) (Utkal university).

—୩.୪ ,, : Ibid.

—*—

# ପଞ୍ଚମ ଅଧ୍ୟାୟ

## ସଂକଳନାର ସମୀକ୍ଷା ଓ ସିଦ୍ଧାନ୍ତ :

ସଂଗୃହୀତ ଲୋକ ସାହିତ୍ୟ, ପ୍ରକାଶିତ ପ୍ରବନ୍ଧ ଗବେଷଣା ବିବରଣୀ, ଜିଲ୍ଲା ଗେଜେଟିଅର୍ ଓ ମୋର କ୍ଷେତ୍ର ଅଧ୍ୟୟନ ରିପୋର୍ଟ ସମୂହର ଉପଲବ୍‌ଧ ତଥ୍ୟକୁ ଭିତ୍ତି କରି ନିବନ୍ଧ ରଚନା ସମ୍ପୂର୍ଣ୍ଣ କରିବା ସହିତ ପୂର୍ବ ସଂକଳନାର ସମୀକ୍ଷା ପୂର୍ବକ ନିମ୍ନଲିଖିତ ସିଦ୍ଧାନ୍ତମାନ ଗ୍ରହଣ କରାଯାଇଅଛି ।

(୧) ଅଧ୍ୟୟନ ସମ୍ପୃକ୍ତ ଅଞ୍ଚଳ ରାଜନୈତିକ କାରଣରୁ ଦୁଇଗୋଟି ସ୍ୱତନ୍ତ୍ର ପ୍ରଦେଶାନ୍ତର୍ଗତ ହୋଇଥିଲେ ହେଁ, ଏହା ଏକ ଭାଷା ସାଂସ୍କୃତିକ ପରିମଣ୍ଡଳ ଅନ୍ତର୍ଗତ ଅଞ୍ଚଳ । ବର୍ତ୍ତମାନ ଓଡ଼ିଶା ପ୍ରଦେଶ ବାହାରେ ଥିବା ମେଦିନୀପୁର ଅଞ୍ଚଳ ଅତୀତରେ ଶହ ଶହ ବର୍ଷ ଧରି ସମୃଦ୍ଧ କଳିଙ୍ଗ/ଉତ୍କଳୀୟ/ଓଡ଼ିଶୀ, ସଂସ୍କୃତି ଓ ସଭ୍ୟତାର ଅନ୍ତର୍ଭୁକ୍ତ ରହିଥିଲା । ଅନୁଦାର ରାଜନୈତିକ ନେତୃମଣ୍ଡଳୀଙ୍କର ସ୍ୱାର୍ଥ ସାଧନ ଫଳରେ ମେଦିନୀପୁରର ବିସ୍ତୃତ ଅଞ୍ଚଳ ପଶ୍ଚିମ ବଙ୍ଗଳା ସହିତ ମିଶି ଯାଇଥିଲେ ହେଁ, ସାଧାରଣ ଲୋକଙ୍କ କଥାବାର୍ତ୍ତା, ଚାଲିଚଳନ, ଆଚାର ବିଚାର, ବିବାହ ଓ ମୃତକ ସଂସ୍କାର ଆଦି ସମସ୍ତ ଆନୁଷ୍ଠାନିକ କର୍ମ କମାଣୀ ଓଡ଼ିଶୀ ପଦ୍ଧତିରେ ଅବାଧ ସମ୍ପନ୍ନ ହେଉଅଛି ।

(୨) ଅଧ୍ୟୟନ ସମ୍ପୃକ୍ତ ଅଞ୍ଚଳର ଅଧିବାସୀମାନଙ୍କର ଜାତିଗତ ଓ ସାମାଜିକ ଅବସ୍ଥାରେ ସମାନତା ରହିଥିଲେ ହେଁ ଦୁଇଗୋଟି ଭିନ୍ନ ପ୍ରଦେଶାନ୍ତର୍ଗତ ହୋଇଥିବାରୁ ସମୀଲ ସ୍ତରରେ ଭାଷା ଓ ସାହିତ୍ୟ ଶିକ୍ଷାର ମାନ ଭିନ୍ନ ହୋଇଛି । ଆଧୁନିକତାର ପ୍ରଭାବକୁ ବାଦଦେଇ ନିରୀକ୍ଷା କଲେ ଆଞ୍ଚଳିକ ସଂସ୍କୃତିର ଅଭିନ୍ନ ରୂପ ପରିଲକ୍ଷିତ ହୁଏ । କେତେକ କ୍ଷେତ୍ରରେ ପରିଲକ୍ଷିତ ବ୍ୟତିକ୍ରମର ଉଦାହରଣ ସ୍ୱରୂପ ମେଦିନୀପୁର ଅଞ୍ଚଳର ଅନେକ ଲୋକ ସେମାନଙ୍କର ଉତ୍କଳୀୟ ସାଙ୍ଗ ଗ୍ରହଣ କରି ବଙ୍ଗ ସମାଜରେ ଚଳପ୍ରଚଳ ହେବାକୁ ପସନ୍ଦ କରନ୍ତି ନାହିଁ । ତେଣୁ ଉତ୍କଳୀୟ ସାଙ୍ଗ ପ୍ରଭୃତି ଜାତିଗତ ପ୍ରତୀକକୁ ନୂତନ ରୂପରେ ପ୍ରକାଶ କରିବାର ମାନସିକତା ଅନେକ ଦିନରୁ ସୃଷ୍ଟି ହୋଇଅଛି । ପାରିବାରିକ ସାଙ୍ଗ ଯଥା - -ବେହେରା, ମହାନ୍ତି, ସାହୁସମନ୍ତ, ଜେନା, ପରମାଣିକ, ରଣା, ଦଳାଇ, ସାହୁ, ପରିଡ଼ା ସାଙ୍ଗଧାରୀ ଲୋକେ ଯଥାକ୍ରମେ ବେରା, ମାଇତି, ସାସମଲ,

Digitized by srujanika@gmail.com

ଜାନା, ପ୍ରମାନକ, ଗ୍ନା, ଦୋଲଇ, ସାଉ, ପଡ଼୍ୟା ପ୍ରଭୃତି ରୂପରେ ପରିଚିତ ହେବା ଶ୍ରେୟ ମଣିଛନ୍ତି ।

(୩) ଭାଷାତାତ୍ତ୍ୱିକ ଦୃଷ୍ଟିରୁ ଭୋଗରାଇ, ବାଲିଆପାଳ, ଜଳେଶ୍ୱର, ବସ୍ତା (ବାଲେଶ୍ୱର ସଦର) ମୁରୁଡ଼ା, ଶୂଳିଆପଦା, କୁଳିଅଁଳା (ବାରିପଦା ସଦର) ନୟାଗ୍ରାମ (ଝାଡ଼ଗ୍ରାମ ସବ୍‌ଡ଼ିଭିଜନ) ଦାନ୍ତନ, ମୋହନପୁର, ରାମ ନଗର, କାନ୍ଥୀ (ମେଦନୀପୁର ସଦର) ଅଞ୍ଚଳରେ ପ୍ରଚଳିତ କଥିତ ଭାଷା ରୂପରେ ଅଧିକ ଘନିଷ୍ଠ ଐକ୍ୟ ରକ୍ଷିତ ହୋଇଥିବା ସ୍ଥଳେ ଆଧୁନିକ କାଳରେ ଶିକ୍ଷା ଓ ସଭ୍ୟତାର ପ୍ରସାର ଓ ପ୍ରଭାବ ଫଳରେ ବାଲେଶ୍ୱର, ବାରିପଦା ଓ ମେଦନୀପୁର ସହରାଞ୍ଚଳରେ ମାନକ ଭାଷା (ଓଡ଼ିଆ ଓ ବଙ୍ଗଳା)ର ପ୍ରଚଳନ ଅଧିକ । ଓଡ଼ିଶାର ପଶ୍ଚିମ ବଙ୍ଗ ସଂଲଗ୍ନ ବିହାର ସିଂଭୂମ ସୀମାନ୍ତ ଗୋପୀବଲ୍ଲଭପୁର (ଝାଡ଼ଗ୍ରାମ), ବାହାଡ଼ା ଗୋଡ଼ା (ଧଳଭୂମ) ଝଡ଼େଇକଳା, ଖରସୁଆଁ ଅଞ୍ଚଳରେ (କେତେକାଂଶରେ ପୂର୍ବୀ ହିନ୍ଦୀ ପ୍ରଭାବିତ) ଏ ଉପଭାଷା ପ୍ରଚଳିତ ।

(୪) ଦୁଇଗୋଟି ଭିନ୍ନ ପ୍ରଦେଶାନ୍ତର୍ଗତ ହୋଇଥିବାରୁ କେବଳ ଫର୍ମାଲ ସ୍ତରରେ ମାନକ ଓଡ଼ିଆ ଓ ବଙ୍ଗଳାଭାଷାରେ ଶିକ୍ଷା, ସାହିତ୍ୟ ଲିଖନ ଓ ପଠନ ସମ୍ପନ୍ନ ହେଉଅଛି । ଅଫିସିଆଲ ଭାଷା ରୂପେ ମୁଖ୍ୟତଃ ଇଂରେଜୀ ବ୍ୟବହୃତ ହେଉଅଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲାପରେ ଦକ୍ଷିଣ-ପଶ୍ଚିମ ମେଦନୀପୁର ବାସୀ ବଙ୍ଗଲିପି ମାଧ୍ୟମରେ ଓଡ଼ିଆ ଭକ୍ତ ସାହିତ୍ୟ ରସ ଉପଭୋଗ କରିଛନ୍ତି । ଗ୍ରାମାଞ୍ଚଳରେ ବଙ୍ଗ ଲିପିରେ ଓଡ଼ିଆ ସାହିତ୍ୟର ପ୍ରଚଳନ ଅଦ୍ୟାବଧି ପରିଲକ୍ଷିତ ହୁଏ । ଫର୍ମାଲ ସ୍ତରରେ ଉଭୟ ଭାଷା ସାହିତ୍ୟର ସ୍ପଷ୍ଟ ନୂତନ ଭାବାଦର୍ଶ ଆଦାନ ପ୍ରଦାନ ନିମନ୍ତେ ଉଭୟ ପକ୍ଷର ସାହିତ୍ୟିକମାନଙ୍କ ମଧ୍ୟରେ ବିଭିନ୍ନ ସମୟରେ ସମ୍ମେଳନ ଅନୁଷ୍ଠିତ ହେଉଅଛି ।

(୫) ସୀମାରେଖାର ଦୁଇ ପକ୍ଷରେ ଅବସ୍ଥିତ ସମଜାତି/ଗୋଷ୍ଠୀର ଲୋକ ସମାଜରେ ବିବାହ ସୂତ୍ରରେ କନ୍ୟା ଆଦାନ ପ୍ରଦାନ ହେଉଅଛି । ଅତୀତ କାଳରୁ ଆଜି ପର୍ଯ୍ୟନ୍ତ ଏପରି ପରମ୍ପରା ପ୍ରଚଳିତ । ଓଡ଼ିଶା ଅଞ୍ଚଳରୁ ବିବାହ ସୂତ୍ରରେ ବଙ୍ଗଳାର ବିଭିନ୍ନ ଅଞ୍ଚଳକୁ ଯାଉଥିବା କନ୍ୟାମାନେ ବଙ୍ଗ ଭାଷା କହିବାରେ ସ୍ୱାଭାବିକ ଆଗ୍ରହ ପ୍ରକାଶ କରୁଛନ୍ତି ଓ ଶୀଘ୍ର ବଙ୍ଗଳା ଭାଷାରେ କଥା କହି ପାରୁଛନ୍ତି । କିନ୍ତୁ; ପରିବର୍ତ୍ତିତ ପରିସ୍ଥିତିରେ ଶିକ୍ଷିତା ବଙ୍ଗ କନ୍ୟା- ଓଡ଼ିଆ ବଧୂଗଣ ଓଡ଼ିଆ ଭାଷାରେ କଥା ହେବାରେ ସ୍ୱାଭାବିକ ଆଗ୍ରହୀ ହୁଅନ୍ତି ନାହିଁ । ଏପରି କ୍ଷେତ୍ରରେ ସେମାନଙ୍କର ନିଜ ମାତୃଭାଷା ବଙ୍ଗଳାରେ କଥା ହେବାରେ ଦୃଢ଼ ମାନସିକତା ପରିଲକ୍ଷିତ ହୁଏ । ତେବେ ପରିବର୍ତ୍ତିତ ଅବସ୍ଥାରେ ଫର୍ମାଲ ସ୍ତରରେ ସ୍ଥାନୀୟ ଭାଷା ଶିକ୍ଷା ଓ ଲେଖା ପ୍ରୟୋଜନୀୟ କର୍ତ୍ତବ୍ୟ ହୋଇଥାଏ ।

Digitized by srujanika@gmail.com

(ସୀମାରେଖାର ଦୁଇପଟରେ ଏକଶହ ଜଣ କନ୍ୟା-ବଧୂଙ୍କୁ ସାକ୍ଷାତ କରି ତଥ୍ୟ ସଂଗୃହୀତ ହୋଇଅଛି ।)

(୬) ବାଲେଶ୍ୱର ଓ ମେଦିନୀପୁରର ଉପକୂଳାଞ୍ଚଳ, ମେଦିନୀପୁରର ଝାଡ଼ଗ୍ରାମ ବାରିପଦା ମଧ୍ୟବର୍ତ୍ତୀ ଅରଣ୍ୟ ପାର୍ବତ୍ୟାଞ୍ଚଳ—ଏପରି ଦୁଇଗୋଟି ପ୍ରାକୃତିକ ଓ ଭୌଗୋଳିକ ପରିବେଶ ବିଦ୍ୟମାନ ଓ ଏପରି ଦୁଇଗୋଟି ଅଞ୍ଚଳର ଜନସାଧାରଣଙ୍କ ରୁଚି, ଚଳଣୀ, ସଂସ୍କୃତି ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହା ଭୌଗୋଳିକ ପରିବେଶ ସମ୍ପର୍କିତ ପ୍ରଭାବର ଫଳ । ପ୍ରାକୃତିକ ପରିବେଶ ଅରଣ୍ୟାଞ୍ଚଳର ମଣିଷକୁ କଷ୍ଟସହିଷ୍ଣୁ, ସାହସୀ କରି ତୋଳିଛି ତ ଉପକୂଳାଞ୍ଚଳରେ ମଣିଷ ଅଳ୍ପ ଆୟାସରେ ପ୍ରଚୁର ଉତ୍ପାଦନ ଓ ଆମଦାନୀ ଫଳରେ ବିଳାସପୂର୍ଣ୍ଣ ଜୀବନଯାପନ କରିବା ସହ ଜୀବନର ଅନ୍ୟ ଦିଗଗୁଡ଼ିକ ପ୍ରତି ସଚେତନ ହୋଇଛି । ଉପକୂଳାଞ୍ଚଳୀୟ ମଣିଷ ଅଧିକ ଶିକ୍ଷିତ, ଚତୁର, ଅସ୍ଥିର ଜୀବନଧର୍ମୀ, ଆଧୁନିକ ବୈଷୟିକ ଶିକ୍ଷା ଓ ସଭ୍ୟତାର ଅନୁଗାମୀ· ବନାଞ୍ଚଳୀୟ ଲୋକେ ଜୀବନ ସଂଗ୍ରାମରେ ଅହରହ ସଂଘର୍ଷରତ । ପାରମ୍ପରିକ ଶିକ୍ଷା ବ୍ୟତୀତ ଆଧୁନିକ ଶିକ୍ଷା ଓ ସଭ୍ୟତାର କମ୍ ଅନୁଗାମୀ । ତେଣୁ ବାଲେଶ୍ୱର ଓ ମେଦିନୀପୁର ଜିଲ୍ଲାର ଉପକୂଳାଞ୍ଚଳୀୟ ଜନ ସମାଜର ପ୍ରଚଳିତ ସଂସ୍କୃତିର ରୂପ ସର୍ମିଳ ସ୍ତରର କେତେକ ମୁଷ୍ଟିମେୟ ଘଟଣାକୁ ବାଦ୍ ଦେଲେ ପ୍ରାୟ ସମପର୍ଯ୍ୟାୟର । ସେହିପରି ବାରିପଦା—ଝାଡ଼ଗ୍ରାମ, (ମେଦିନୀପୁର) ଅଞ୍ଚଳର ଜନସାଧାରଣଙ୍କ ଶିକ୍ଷା ଓ ସଂସ୍କୃତିର ସମପର୍ଯ୍ୟାୟର । (ସଂକଳନ। ୬ ଓ ୭ ନଂ)

(୭) ଓଡ଼ିଶାର ଉତ୍ତର ପୂର୍ବ ଉପାନ୍ତ ଅଞ୍ଚଳର ଭାଷା, ସାହିତ୍ୟ ଓ ସଂସ୍କୃତିର ରୂପରେଖ ମୂଳତଃ ଉଡ୍ର-ମାଗଧୀ-ବଙ୍ଗ ମିଶ୍ରିତ ପର୍ଯ୍ୟାୟଭୁକ୍ତ । ଏଥିରେ ଅନେକ ପାର୍ଥକ୍ୟ ଓ ସାମଞ୍ଜସ୍ୟ ବିଦ୍ୟମାନ ।

ଅନେକ ସମୟରେ ପାରିବାରିକ ସ୍ତରରେ ଅନୁଷ୍ଠିତ ପୂଜା ପଦ୍ଧତି, ବିବାହ, ମୃତକକ୍ରିୟା; ସମ୍ପତ୍ତି ଭାଗ ବଣ୍ଟନ: ସାମାଜିକ ସ୍ତରରେ—ନୂଆବର୍ଷ ପାଳନ (ପୁନିଆଁ) ବାରବ୍ରତ, ଓଷା, ପର୍ବ ପାଳନ ସମୟରେ କେତେକ ଓଡ଼ିଶୀ ସ୍ୱୀକୃତ ଓଡ଼ିଆ ପଞ୍ଜିକା ଅନୁସାରେ ପ୍ରଚଳିତ ହେଉଅଛି । ଅନେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ହେଉଥିବାର ମଧ୍ୟ ଲକ୍ଷ୍ୟ କରାଯାଏ । ଉଦାହରଣ ସ୍ୱରୂପ—ପାରିବାରିକ ଓ ସାମାଜିକ ସ୍ତରରେ ଅନୁଷ୍ଠିତ ପୂଜା ପଦ୍ଧତିରେ ବର୍ତ୍ତମାନ ସବୁ କ୍ଷେତ୍ରରେ ଉତ୍କଳ ଶ୍ରେଣୀ ବ୍ରାହ୍ମଣ ନିଯୁକ୍ତ ନ ହୋଇ ରାଢ଼ୀ ଶ୍ରେଣୀ ବ୍ରାହ୍ମଣଙ୍କ ଦ୍ୱାରା ଅନୁଷ୍ଠିତ ହେଉଅଛି । ପୂର୍ବ ପ୍ରଚଳିତ ଓ

Digitized by srujanika@gmail.com

ଉଚ୍ଚାରିତ ମନ୍ତ୍ରରୁ 'ଉତ୍କଳ ଦେଶେ' ଉଚ୍ଚାରଣ ସଚେତନ ଭାବରେ ପରିହାର କରୁଥିବା ପରିଲକ୍ଷିତ ହୁଏ । *

ଫର୍ମାଲ ସ୍ତର ବ୍ୟତୀତ ସାଧାରଣ ସ୍ତରର ଜନ ସମାଜରେ ବର୍ତ୍ତମାନ ମଧ୍ୟ ଓଡ଼ିଶା ବଙ୍ଗଳା କିମ୍ବା ଓଡ଼ିଆ/ବଙ୍ଗାଳୀ ପ୍ରଭେଦ ପୂର୍ଣ୍ଣ ମାନସିକତା ଦେଖାଯାଏ ନାହିଁ । ପ୍ରାଦେଶିକ ସୀମାରେଖାର ବିଦ୍ୟମାନତା ଓ କେତେକ କ୍ଷେତ୍ରରେ ସରକାରୀ କଟକଣା ରହିଥିଲେ ହେଁ ସୀମାରେଖାର ଦୁଇପଟରେ ବାସ କରୁଥିବା ସମାନ ଜାତି/ଗୋଷ୍ଠୀର ଲୋକଙ୍କ ମଧ୍ୟରେ କନ୍ୟା ଆଦାନ ପ୍ରଦାନ ଫଳରେ ପାରିବାରିକ ସାମାଜିକ, ସାଂସ୍କୃତିକ କ୍ଷେତ୍ରରେ ଚିରାଚରିତ ସମ୍ପର୍କ ସୃଷ୍ଟି ହେଉଅଛି । ଅନେକ କ୍ଷେତ୍ରରେ ବରଂ ସାଂସ୍କୃତିକ ଓ ଆନୁଷ୍ଠାନିକ ଆଚାର ପାଳନ କାଳରେ ସୁବିଧାବାଦୀ ଚଳଣୀର ଉପଯୋଗ କରାଯାଉଛି । ସୀମାରେଖାର ଦୁଇ ପଟର ଜନ ସମାଜ ଦୁଇ ଭିନ୍ନ ପଞ୍ଜିକାର ସୁଯୋଗ ନେଇ ନିଜର ପ୍ରୟୋଜନ ଭିତ୍ତିକ ଚଳଣୀ ପ୍ରଚଳନ କରାଉଛନ୍ତି । ଅନେକ କ୍ଷେତ୍ରରେ ବଙ୍ଗ ପଟରେ ଓଡ଼ିଆ ପଞ୍ଜିକା, ଓଡ଼ିଆ ପଟରେ ବଙ୍ଗଳା ପଞ୍ଜିକା ଅନୁସାରେ ବାରବ୍ରତ, ଓଷା, ବିବାହ, ଶ୍ରାଦ୍ଧ ପ୍ରଭୃତି ଅନୁଷ୍ଠିତ ହେଉଅଛି । (ଓଡ଼ିଶାର ପଞ୍ଜିକା ଗଣନା ପୂର୍ତ୍ତିମାନ୍ତ, ବଙ୍ଗଳାର ଗଣନା ଅମାନ୍ତ) । ଏଥିରୁ ଅଧିବାସୀମାନଙ୍କର ପାରିସ୍ଥିତିକ ସୁବିଧାର ଉପଯୋଗ ମନୋବୃତ୍ତି କିମ୍ବା ସୁବିଧାବାଦୀ ଚଳଣୀ ସ୍ଥିର କରିବାର ମାନସିକତା—ଏସବୁ ଯାହା ହେଉନା କାହିଁକି ସେମାନେ ଯେ ସଙ୍କୀର୍ଣ୍ଣ ପ୍ରାଦେଶିକତାର ଊର୍ଦ୍ଧ୍ୱରେ ଅବସ୍ଥାନ କରୁଛନ୍ତି—ଏହା ତା'ର ଏକ ବଳିଷ୍ଠ ଓ ବଳିଷ୍ଠ ପ୍ରମାଣ । ତେଣୁ ଫର୍ମାଲ ସ୍ତରରେ କେତେକ ଆଧୁନିକ ଉଚ୍ଚସ୍ତରୀୟ ମୁଷ୍ଟିମେୟ କ୍ଷେତ୍ର ବ୍ୟତୀତ ସଂସ୍କୃତି କ୍ଷେତ୍ରରେ ପ୍ରଭେଦ ମୂଳକ ସଙ୍କୀର୍ଣ୍ଣତା ନଥିଲା, ଏବେ ମଧ୍ୟ ନାହିଁ ।

ସୀମାରେଖାର ଦୁଇ ପଟର ଲୋକଙ୍କ ମଧ୍ୟରେ ପରସ୍ପରକୁ ନ୍ୟୂନ ପ୍ରତିପାଦନ କରିବା ପାଇଁ କେତେକ ପରିହାସ ସୂଚକ ଢଗ/ଛଡ଼ା ପ୍ରଚଳିତ । ଏଗୁଡ଼ିକ ସାଧାରଣତଃ ଘନିଷ୍ଠ ସମ୍ପର୍କୀୟ/ଆତ୍ମୀୟମାନଙ୍କ ମଧ୍ୟରେ ପ୍ରଚଳିତ ଥିଲେହେଁ ଅନ୍ୟ କେତେକ କ୍ଷେତ୍ରରେ ମଧ୍ୟ ପ୍ରୟୋଗ ହୁଏ । କେତେକ ବଙ୍ଗାଳୀ ଭାରତର ଅନ୍ୟ ସମସ୍ତ ପ୍ରଦେଶ-ବାସୀ—ବିଶେଷ କରି ଓଡ଼ିଆମାନଙ୍କୁ ଭଲ ଦୃଷ୍ଟିରେ ଦେଖନ୍ତି ନାହିଁ । ତା'ର କାରଣ ହେଲା—ଇଂରେଜ ଭାରତରେ କଲିକତା ବହୁ ବର୍ଷ ଧରି ରାଜଧାନୀ/ମୁଖ୍ୟ ପ୍ରଶାସନିକ

* ଝାଡ଼ଗ୍ରାମ ସବ୍‌ଡିଭିଜନ ନୟାଗ୍ରାମ ଥାନାନ୍ତର୍ଗତ ରାମେଶ୍ୱର ଶିବ ମନ୍ଦିର ପୂଜକ ଏପରି କରିଥିଲେ ।

Digitized by srujanika@gmail.com

ଉତ୍ତର ଭାରତରେ ଆଧୁନିକ ଶିକ୍ଷା, ସଭ୍ୟତା, ବାଣିଜ୍ୟ ବ୍ୟବସାୟର ପ୍ରଧାନ କେନ୍ଦ୍ର ରୂପେ ପରିଗଣିତ ହେବାରୁ ତା'ର ପ୍ରାଧାନ୍ୟ ସମସ୍ତ ଭାରତରେ ପ୍ରତିଷ୍ଠିତ ହୋଇଥିଲା । ପଡ଼ୋଶୀ ରାଜ୍ୟ ଓଡ଼ିଶା ସର୍ବଭାରତୀୟ ସ୍ତରରେ ପଛୁଆ ରାଜ୍ୟ ରୂପେ ପରିଗଣିତ ହେଉଥିବାରୁ ଏ ରାଜ୍ୟର ବହୁ ଅଞ୍ଚଳ ଅନ୍ୟ ପଡ଼ୋଶୀ ରାଜ୍ୟମାନଙ୍କରେ ମିଶି ରହିଲା । କେତେକ ତଥାକଥିତ ସଭ୍ୟ ବଙ୍ଗଭାଷୀ ଓଡ଼ିଆମାନଙ୍କୁ ହୀନ ଚକ୍ଷୁରେ ଦେଖିବା ସଙ୍ଗେ ସଙ୍ଗେ ମେଦିନୀପୁରର ବିସ୍ତୃତ ଓଡ଼ିଆ ଭାଷୀ ଅଞ୍ଚଳ ପଶ୍ଚିମବଙ୍ଗରେ ମିଶ୍ରଣ ସାଙ୍ଗକୁ ଏକ ସମୟରେ ଓଡ଼ିଆ ଭାଷାକୁ ଲୋପ କରିଦେବାର ଚେଷ୍ଟା ଚଳାଇଥିଲେ । ମେଦିନୀପୁର-ବାସୀ ପଶ୍ଚିମ ବଙ୍ଗରେ ମିଶିବା ଫଳରେ କଲିକତା ସଭ୍ୟତା ଓ ବଙ୍ଗ ନେତୃମଣ୍ଡଳୀଙ୍କର ମନୋଭାବ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଆମାନଙ୍କୁ ଘୃଣା କଲେ । (କିନ୍ତୁ କଲିକତାର ସଭ୍ୟ ବଙ୍ଗାଳୀ ବାବୁମାନେ ଯେ ମେଦିନୀପୁର ବଙ୍ଗାଳୀମାନଙ୍କୁ "ହାଫ୍ ବେଙ୍ଗଲି" (ଅଧା ବଙ୍ଗାଳୀ) ରୂପେ ଅଭିହିତ କରନ୍ତି । ଏହି ମାନସିକତା ଏତେ ପ୍ରଚଣ୍ଡ ଥିଲା ଯେ, ଯେଉଁ ବୀରେନ୍ଦ୍ର ନାଥଙ୍କ ପ୍ରଚେଷ୍ଟା ଫଳରେ ମେଦିନୀପୁର ଅଞ୍ଚଳ ପଶ୍ଚିମ ବଙ୍ଗରେ ମିଶିଲା, ସେହି ବୀରେନ୍ଦ୍ର ନାଥଙ୍କୁ କଲିକତା'ରୁ ଓକିଲାତି ବ୍ୟବସାୟ ପରିତ୍ୟାଗ କରିବାକୁ ପଡ଼ିଥିଲା !) ସୀମା ସେପାଖେ ପ୍ରଚଳିତ ଛଡ଼ା'ଟି ଏହିପରି;—

"ଉଡ଼ିଆ, ଦେଡ଼ ଗୁଡ଼ିଆ, ପଚା ମାଛ୍ ଖାଏ,
ବାଙ୍ଗାଲୀର ପାଆ ଧରି ସ୍ୱର୍ଗ ବାସ୍ ଯାଏ ।"

ଓଡ଼ିଆ ଅଞ୍ଚଳରେ ଏହାର ଉତ୍ତର ସୂଚକ ବୋଲିଟିଏ ପ୍ରଚଳିତ । ତାହା ହେଲା;—

"ବଙ୍ଗାଳୀ ଟଙ୍ଗ୍ ଟଙ୍ଗାଳୀ, ପଚା ମାଛ ଖାଏ
ଓଡ଼ିଆର ଗୁଡ଼ଧରି ସଗ ବାସ୍ ଯାଏ/ସ୍ୱର୍ଗ ବାସେ ଧାଏ ।"

ଆଧୁନିକ କାଳରେ ଶିକ୍ଷା ଓ ସଭ୍ୟତାର ବିକାଶ ସମୟରେ ମଣିଷ ସଂଘର୍ଷପୂର୍ଣ୍ଣ ଜୀବନ ଯାପନ ପ୍ରଣାଳୀ ପରିହାର କରି ସହାବସ୍ଥାନ କରିବାରେ ପକ୍ଷପାତୀ—ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ ଅଞ୍ଚଳରେ ଭାଷାଗତ, ସାହିତ୍ୟିକ ଓ ସାଂସ୍କୃତିକ ମିଶ୍ରଣ ପ୍ରକ୍ରିୟା ଲାଗି ରହିଥିଲେ ହେଁ ତାହାର ପ୍ରଭାବର ପରିଣାମ ନୈରାଶ୍ୟଜନକ ନୁହେଁ । ଓଡ଼ିଶାର ବିଚ୍ଛିନ୍ନ ଅଞ୍ଚଳ ଯଦ୍ୟପି ନିକଟ ଭବିଷ୍ୟତରେ ଓଡ଼ିଶାର ଅନ୍ତର୍ଭୁକ୍ତ ହୋଇ-ନପାରେ, ବର୍ତ୍ତମାନ ମେଦିନୀପୁର ଓ ସଂଲଗ୍ନ ସିଂଭୂମ ଅଞ୍ଚଳର ଫର୍ମାଲ ସ୍ତରରେ ବଙ୍ଗ ଓ ହିନ୍ଦୀ ଭାଷା, ସାହିତ୍ୟ ଶିକ୍ଷାର ପ୍ରଚଳନ ରହିଅଛି ଓ ରହିବ । ଏ ସତ୍ତ୍ୱେ ଉତ୍କଳୀୟ ଉପଭାଷାର ପ୍ରଚଳନ ସାଧାରଣ ସ୍ତରରେ ରହିଅଛି ଓ ରହିବ—ଏହାହିଁ ଆଶ୍ୱାସନାର ବିଷୟ ।

Digitized by srujanika@gmail.com

**ଭାଷା, ସାହିତ୍ୟ ଓ ସଂସ୍କୃତିର ସମନ୍ୱୟ :**

ମେଦିନୀପୁର ଅଞ୍ଚଳ ରାଜନୀତିଙ୍କ ଦୃଷ୍ଟିକୋଣରୁ ପଶ୍ଚିମ ବଙ୍ଗଳାର ଅନ୍ତର୍ଭୁକ୍ତ ହୋଇଅଛି । ଏଠାରେ ୧୯୩୭ ମସିହା ପରଠାରୁ ଓଡ଼ିଆ ଭାଷା ଶିକ୍ଷାର ପ୍ରଚଳନ ନାହିଁ, ବିଦ୍ୟାଳୟମାନଙ୍କରେ ବଙ୍ଗଳା ଭାଷା ଶିକ୍ଷା ବ୍ୟବସ୍ଥା ପ୍ରଚଳିତ । ଓଡ଼ିଆ ଭାଷା କ୍ରମେ ସଙ୍କୁଚିତ ହୋଇଛି, ହେଉଛି ବା । କେବଳ ଘରୋଇ ସ୍ତରରେ, ପ୍ରଚଳିତ ଉପଭାଷାର ଉପଯୋଗ ହେଉଅଛି । ଉଦାହରଣ ସ୍ୱରୂପ : ଗ୍ରାମାଞ୍ଚଳର ପ୍ରାଥମିକ ବିଦ୍ୟାଳୟ-ମାନଙ୍କରେ ଲେଖାପଢ଼ା କାର୍ଯ୍ୟ ମାନଙ୍କ ବଙ୍ଗଳା ଭାଷାରେ ଅନୁଷ୍ଠିତ ହେଉଥିବା'ବେଳେ ମୌଖିକ ପ୍ରଶ୍ନ ଉତ୍ତର, ସରଳାର୍ଥ, କଥାବାର୍ତ୍ତା ପ୍ରଚଳିତ ଓଡ଼ିଆ ଉପଭାଷାରେ ସମ୍ପନ୍ନ ହେଉଥିଲା; କେତେକ କ୍ଷେତ୍ରରେ ଏବେବି ହେଉଅଛି । ସେହିପରି—ଶାନ୍ତିଶୃଙ୍ଖଳା ରକ୍ଷା ଦାୟିତ୍ୱରେ ରହିଥିବା ପୋଲିସ କର୍ମଚାରୀ କୌଣସି ଘଟଣାରେ କେସ୍. ଏଫ୍ , ଆଇ,ଆର ନେଲାବେଳେ ମାନଙ୍କ ବଙ୍ଗଳା ଭାଷା ବ୍ୟବହାର କରୁଥିବା ବେଳେ ଦୋଷୀକୁ ପଚରା ପଚରି କରିବା, ଘଟଣାର ତଦନ୍ତ ପାଇଁ ଗ୍ରାମାଞ୍ଚଳକୁ ଯାଇ ଅନୁସନ୍ଧାନ କରିବା କାଳରେ କଥାବାର୍ତ୍ତା କାର୍ଯ୍ୟ ପ୍ରଚଳିତ ଉପ ଭାଷାରେ ସମ୍ପନ୍ନ କରୁଅଛନ୍ତି । ସାମାଜିକ ଓ ପାରିବାରିକ ସ୍ତରରେ ଏପରି କାର୍ଯ୍ୟ ଅନୁଷ୍ଠିତ ହେବା, ବଙ୍ଗଳା ଭାଷାର ପ୍ରୟୋଗ ବୃଦ୍ଧି ଘଟିବା ସ୍ୱାଭାବିକ ହେଲେହେଁ, ପ୍ରଚଳିତ ଉପଭାଷା ଯେ ଏ ଅଞ୍ଚଳର ଲୋକ ସମାଜରୁ ଲୋପ ପାଇଯିବ—ବର୍ତ୍ତମାନ ଏହା ଏକ ଅସ୍ୱାଭାବିକ ଧାରଣା । ତେଣୁ ମେଦିନୀପୁର ଅଞ୍ଚଳ ସହିତ ବାଲେଶ୍ୱର—ମୟୂରଭଞ୍ଜର ସନ୍ନିହିତ ସଂଲଗ୍ନ ଅଞ୍ଚଳର ଅଧିବାସୀଗଣ ସବୁ ସମୟ ପାଇଁ ଭାଷା ଓ ସଂସ୍କୃତି କ୍ଷେତ୍ରରେ ସମନ୍ୱୟ ମାଧ୍ୟମରେ ହିଁ ସମସ୍ତ କାର୍ଯ୍ୟ ସୁସମ୍ପାଦନ କରିପାରୁଛନ୍ତି ଓ ଭବିଷ୍ୟତରେ ମଧ୍ୟ ଏପରି ଘଟିବ—ଏହା ଅପରିହାର୍ଯ୍ୟ । ଏହି ପରିପ୍ରେକ୍ଷୀରେ ହଣ୍ଟର ସାହେବଙ୍କର ଉକ୍ତିଟିଏ ପ୍ରଣିଧାନଯୋଗ୍ୟ । ସେ ତାଙ୍କ ଷ୍ଟାଟିଷ୍ଟିକାଲ ଏକାଉଣ୍ଟ ଅବ ବେଙ୍ଗଲ, (ଭଲ୍ୟୁମ ଥାର୍ଡ଼) ପୁସ୍ତକରେ ଉପଯୁକ୍ତ କଥାଟିଏ ଲେଖିଛନ୍ତି । ତାଙ୍କର ଉକ୍ତିଟି ହେଉଛି, "Medinipur being an intermediate district between Bengal and Orissa, the population possesses characteristic common to the people of the both provinces." ସାହିତ୍ୟ କ୍ଷେତ୍ରରେ ଯେପରି ଓଡ଼ିଆ ସାହିତ୍ୟ ବଙ୍ଗଳା ଲିପିରେ ମୁଦ୍ରିତ ହୋଇ ପ୍ରକାଶିତ ଓ ବହୁଳ ପ୍ରଚଳିତ ଆଞ୍ଚଳିକ ଜନସାଧାରଣଙ୍କର ଓଡ଼ିଆ ସାହିତ୍ୟ ପ୍ରତି ପ୍ରୀତିପୂର୍ଣ୍ଣ ମାନସିକତା ଏପରି ଭାବରେ ବିକଶିତ ହୋଇଛି । ଏ ସବୁକୁ ସମ୍ଭବତଃ କୌଣସି ସରକାରୀ ନୀତି ଅବଦମିତ କରି-ପାରିବା—ଏକ ଅସ୍ୱାଭାବିକ କାର୍ଯ୍ୟ ।

Digitized by srujanika@gmail.com

**ଉପସଂହାର :—**

ସମୟୋପଯୋଗୀ ପଦକ୍ଷେପ ଗ୍ରହଣ କରିବାରେ ଅତୀତରେ ଓଡ଼ିଶାର ନେତୃତ୍ୱର ଅକ୍ଷମତା ହେତୁ ମେଦନୀପୁର ପରି ଅନ୍ୟ ସମସ୍ତ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାର ମୂଳ ଭୂଖଣ୍ଡରୁ ବାଦ ପଡ଼ି ଯାଇଛନ୍ତି । ଅନ୍ୟ ଉପାନ୍ତ ଅଞ୍ଚଳଗୁଡ଼ିକର ଅବସ୍ଥା ମେଦନୀପୁର ପରି ହେବା ପୂର୍ବରୁ ଓଡ଼ିଶାରେ ସରକାରୀ ଓ ବେସରକାରୀ ସ୍ତରରେ ଏଥିପାଇଁ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରିପାରିଲେ ଯାଇ ହେବ । ଉତ୍କଳ ସମ୍ମିଳନୀ, ନୀଳଶୈଳ ପରି କେତେଗୋଟି ବେସରକାରୀ ସଂସ୍ଥା ବିଚ୍ଛିନ୍ନାଞ୍ଚଳମାନଙ୍କରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଅନେକ ଉତ୍ସାହଜନକ ଓ ଉଲ୍ଲେଖନୀୟ କାର୍ଯ୍ୟପନ୍ଥା ଗ୍ରହଣ କରି ଆସୁଅଛନ୍ତି । ସେମାନଙ୍କର କାର୍ଯ୍ୟ ପ୍ରଶଂସାର ଯୋଗ୍ୟ ହେଲେ ହେଁ ସରକାରୀ ସ୍ତରରେ ଏଥିପାଇଁ ଫଳପ୍ରଦ ଯୋଜନା ପ୍ରୟୋଜନ । ସମ୍ଭବତଃ; ସମ୍ବଳର ଅଭାବ, ରାଜନୈତିକ ନେତୃ-ମଣ୍ଡଳୀଙ୍କର ସମୟୋପଯୋଗୀ ପଦକ୍ଷେପ ଗ୍ରହଣରେ ଅନାଗ୍ରହ—ଏ ସବୁ ଦିଗରେ ଅଗ୍ରସର ହେବାରେ ବାଧା ସୃଷ୍ଟି କରୁଛି ।

୧୯୩୬ ମସିହାରେ ଗଠିତ ଓଡ଼ିଶା ପ୍ରଦେଶ; ବାହାରେ ରହିଥିବା ଅଞ୍ଚଳ-ଗୁଡ଼ିକରେ ଶାସନ କରୁଥିବା ରାଜ୍ୟ ସରକାର ମାନଙ୍କର ସଂଖ୍ୟା ଲଘୁଭାଷାଗୁଡ଼ିକର ସୁରକ୍ଷା ପ୍ରତି ଦୃଷ୍ଟି ନଥିବା ହେତୁ , ଓଡ଼ିଆ ଭାଷା ନିଜର ସୁରକ୍ଷା କରିପାରି ନାହିଁ । ସମ୍ପୃକ୍ତ ରାଜ୍ୟମାନଙ୍କରେ ବାସ କରୁଥିବା ଓଡ଼ିଆମାନେ ଆଞ୍ଚଳିକ ଭାଷାରେ ଶିକ୍ଷା ପାଇଛନ୍ତି ଓ ଚଳପ୍ରଚଳ ହେବାକୁ ବାଧ ହୋଇଛନ୍ତି । ମେଦନୀପୁର ଜିଲ୍ଲାରେ ବଙ୍ଗଳା ଭାଷା, ଶ୍ରୀକାକୁଲମ୍ , ବିଜୟ ନଗର ଓ ବିଶାଖା ପାଟଣା ଜିଲ୍ଲାମାନଙ୍କରେ ତେଲଗୁ ଭାଷା, ସିଂହଭୂମ ଓ ରାୟପୁର ଏବଂ ବସ୍ତର ଜିଲ୍ଲାଗୁଡ଼ିକରେ ହିନ୍ଦୀ ଭାଷା ମାଧ୍ୟମରେ ସେଠାକାର ସଂଖ୍ୟାଲଘୁ ଓଡ଼ିଆ ଅଧିବାସୀଗଣ ନିଜର ସମସ୍ତ କାର୍ଯ୍ୟକ୍ରମ ପରିଚାଳନା କରିଛନ୍ତି ଓ କରୁଅଛନ୍ତି । ଓଡ଼ିଆ ଭାଷା କ୍ରମଶଃ ଦୁର୍ବଳ ହୋଇ ଅନେକ ସ୍ଥାନରେ ଲୋପ ପାଉଛି । କେତେକ ସ୍ଥାନରେ ଲୋପ ପାଇ ଆସୁଛି ଓ ଆଉ କେତେକ ସ୍ଥାନରେ ବହୁବିଧ ସଂଗ୍ରାମ କରି କେବଳ ନିଜ ସତ୍ତା ବଜାଇ ରଖିପାରିଛି । ଏହି ପରିପ୍ରେକ୍ଷୀରେ ମେଦନୀ-ପୁରର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ରୂପରେଖ ସମ୍ପର୍କରେ ପ୍ରସ୍ତୁତ ନିବନ୍ଧରେ ଆଲୋକପାତ କରାଯାଇଛି । ଭବିଷ୍ୟତକୁ ଦୃଷ୍ଟିରେ ରଖି ଏଠାରେ କେତେକ ପ୍ରସ୍ତାବର ଉଲ୍ଲେଖ କରାଯାଉଅଛି ।

(୧) ପ୍ରବାସୀ ଓଡ଼ିଆ ଓ ବିଚ୍ଛିନ୍ନାଞ୍ଚଳ ଓଡ଼ିଆମାନଙ୍କ ମଧ୍ୟରେ ମାତୃଭାଷାରେ ଚଳପ୍ରଚଳ ହେବା ନିମନ୍ତେ ମାତୃଭାଷା ଶିକ୍ଷା ଏକ ନିର୍ଦ୍ଧିତ ଆବଶ୍ୟକତା ଦୃଷ୍ଟିରୁ ସବୁ

Digitized by srujanika@gmail.com

ସ୍ଥାନମାନଙ୍କରେ ଜନସାଧାରଣଙ୍କ ଚେଷ୍ଟାରେ ଓଡ଼ିଆ ସଙ୍ଗଠନ ସବୁ ସୃଷ୍ଟି କରିଯାଇ ଆବଶ୍ୟକତା ଅନୁଯାୟୀ ଓଡ଼ିଆ ବିଦ୍ୟାଳୟ ସ୍ଥାପନ କରିସିବା ପ୍ରୟୋଜନ । ଏ ସବୁକୁ ଓଡ଼ିଶା ସରକାର ସରକାରୀ ସ୍ତରରେ ବାସ୍ତବିକ ମଞ୍ଜୁରୀ ଓ ଆର୍ଥିକ ସାହାଯ୍ୟ ପ୍ରଦାନ କରିବା ପ୍ରୟୋଜନ;

(୨) ବେସରକାରୀ ସ୍ତରରେ ପ୍ରବାସୀ ଓଡ଼ିଆ ଓ ବିଚ୍ଛିନ୍ନାଞ୍ଚଳ ଓଡ଼ିଆମାନଙ୍କ ହିତାର୍ଥେ ଆବଶ୍ୟକ ମାଗଣି ଯୋଗାଡ଼ ନିମନ୍ତେ ଏକ ବଳିଷ୍ଠ ସଙ୍ଗଠନର ଆବଶ୍ୟକତା ରହିଅଛି;

(୩) ବିଭିନ୍ନ ପ୍ରାଦେଶିକ ସରକାରଙ୍କ ସହ ବିଚ୍ଛିନ୍ନାଞ୍ଚଳ ଓଡ଼ିଆମାନଙ୍କ ସ୍ୱାର୍ଥ-ରକ୍ଷା, ବିଦ୍ୟାଳୟ ସ୍ଥାପନ, ବିଦ୍ୟାଳୟରେ ଓଡ଼ିଆ ଶିକ୍ଷା ବ୍ୟବସ୍ଥା ଓ ଶିକ୍ଷକ ନିଯୁକ୍ତି, ପାଠ୍ୟପୁସ୍ତକ ଯୋଗାଣ ପ୍ରଭୃତି ବିଷୟରେ ଓଡ଼ିଶା ସରକାରଙ୍କ ତରଫରୁ ଯୋଗା-ଯୋଗ, ଆଲୋଚନା ଓ ସମୟୋପଯୋଗୀ ପ୍ରୟୋଜନୀୟ ସରକାରୀ ପଦକ୍ଷେପ ଗ୍ରହଣ—ଏ ସବୁର ଆବଶ୍ୟକତା ରହିଅଛି;

(୪) ବିଷୟ ସମ୍ପନ୍ନ, ଆର୍ଥିକ ଉନ୍ନତ ଓ ଶିକ୍ଷିତ ଚାକିରିଆ ଓଡ଼ିଆମାନେ ସେମାନଙ୍କର ପିଲାମାନଙ୍କୁ ହିନ୍ଦୀ ଓ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପାଠ ପଢ଼େଇବାର ସୁଯୋଗ ନେଉଥିବା ସମୟରେ ଉପରୋକ୍ତ ଅଞ୍ଚଳରେ ଗରିବ କୁଲି ଶ୍ରେଣୀର ଓଡ଼ିଆ-ମାନେ ସେମାନଙ୍କର ପିଲାମାନଙ୍କୁ ଓଡ଼ିଆ ଶିକ୍ଷା ଦେବା ସମୟରେ ସଚେତନ ହୋଇ ପାରିନଥାନ୍ତି । ତାଙ୍କର ପିଲାମାନେ ପିତୃ ବୃତ୍ତିର ଆଶ୍ରୟ ନେବାକୁ ବାଧ୍ୟ ହୋଇଥାନ୍ତି । ଏହି ପରିସ୍ଥିତିରେ ପ୍ରବାସୀ ଓ ବିଚ୍ଛିନ୍ନାଞ୍ଚଳର ବିଷୟ ସମ୍ପନ୍ନ ଶିକ୍ଷିତ ଓଡ଼ିଆମାନେ ନିଜ ମାତୃଭାଷାର ସୁରକ୍ଷା ସହିତ ସେଠାକାର ଗରିବ ଓଡ଼ିଆ ପିଲାମାନଙ୍କର ଓଡ଼ିଆ ଶିକ୍ଷାର ବ୍ୟବସ୍ଥା କରିବା ଓ ନିଜ ନିଜ ପିଲାମାନଙ୍କୁ ଓଡ଼ିଆ ଶିକ୍ଷା ଦେବାର ବନ୍ଦୋବସ୍ତ କରିଇବା ନିମନ୍ତେ ସବୁ ପ୍ରକାର କାର୍ଯ୍ୟ କରିବା ପ୍ରୟୋଜନ;

(୫) ଓଡ଼ିଶାରେ "ଏକ ଓଡ଼ିଆ ଭାଷା ଏକାଡ଼େମୀ" ପ୍ରତିଷ୍ଠା କରି ତା'ର ମାଧ୍ୟମରେ ଭିତର ଓ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଭାଷା ବିଷୟକ ସମସ୍ତ ସମସ୍ୟାର ସମାଧାନ ନିମନ୍ତେ ପ୍ରଚେଷ୍ଟା କରିବା, ଓଡ଼ିଶାର ବିଭିନ୍ନ ଅଞ୍ଚଳର ପ୍ରଚଳିତ ଭାଷା ସମୂହର ଭାଷାବିତ୍ ପ୍ରତିନିଧିତ୍ୱ କରିବା ସହିତ ଉପାନ୍ତ ଓ ବିଚ୍ଛିନ୍ନାଞ୍ଚଳ ଓଡ଼ିଆମାନଙ୍କର ପ୍ରତିନିଧିତ୍ୱର ପ୍ରୟୋଜନ ରହିଅଛି । ଏପରି ଅନେକ ପ୍ରସ୍ତାବ—ଯାହା କି ଉତ୍କଳ ସମ୍ମିଳନୀ ମଞ୍ଚରେ ବାରମ୍ବାର ଉତ୍ଥାପିତ; ସେ ସବୁର ପ୍ରୟୋଜନୀୟତା ରହିଥିଲେହେଁ କାର୍ଯ୍ୟକାରୀ ନ ହେବା ଯୋଗୁଁ ମୂଲ୍ୟହୀନ ହେବାକୁ ବାଧ୍ୟ । ଏବଂ—

Digitized by srujanika@gmail.com

(୬) ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟବର୍ତ୍ତୀ ସ୍ଥାନରେ ସରକାରୀ/ବେସରକାରୀ ସହଯୋଗରେ ଏକ ସାଂସ୍କୃତିକ ଅନୁଷ୍ଠାନ—ସଂଗ୍ରହଶାଳା ଓ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରିବା—ଯେଉଁଠି ଉପାନ୍ତ ଅଞ୍ଚଳର ସାରସ୍ୱତ ସାଧକମାନଙ୍କର ପୁସ୍ତକ, ପାଣ୍ଡୁଲିପି ଓ ପ୍ରୟୋଜନୀୟ ବ୍ୟବହାର୍ଯ୍ୟ ସାମଗ୍ରୀ ସହ ଲୋକ ସାହିତ୍ୟ ସଂଗ୍ରହ, ଗବେଷଣା ଓ ପ୍ରକାଶନ କାର୍ଯ୍ୟ ସମ୍ପାଦନ, ତାଳପତ୍ର ପୋଥି, ବିଗ୍ରହ, ସନନ୍ଦ ପ୍ରଭୃତି ସଂଗୃହୀତ ଓ ସଂରକ୍ଷିତ ହେବ ।

ଏତଦ୍‌ବ୍ୟତୀତ ନିକଟରେ କଟକଠାରେ ସମ୍ପୂର୍ଣ୍ଣ ହୋଇଥିବା ବିଶ୍ୱ ଓଡ଼ିଆ ସମ୍ମେଳନ ମଞ୍ଚରେ ଗୃହୀତ ସର୍ବସମ୍ମତ ପ୍ରସ୍ତାବଗୁଡ଼ିକ କାର୍ଯ୍ୟକାରୀ ହେଲେ ଓଡ଼ିଶାର ଉପାନ୍ତ ଅଞ୍ଚଳମାନଙ୍କରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଓ ବିକାଶ ହୋଇ ପାରିବ, ଏଥିରେ ଦ୍ୱିମତ ହେବାର ନାହିଁ । ଉପରନ୍ତୁ, ଉଭୟ ପକ୍ଷର ସମୟୋପଯୋଗୀ ସାମୂହିକ ଓ ସଫଳ ପ୍ରଚେଷ୍ଟା ଫଳରେ ବିଚ୍ଛିନ୍ନାଞ୍ଚଳ ସବୁ ପୁଣିଥରେ ଓଡ଼ିଶାରେ ମିଶିବାର ଆକାଂକ୍ଷା ସହିତ ବୃହତ୍ତର ଓଡ଼ିଶା ଗଠିତ ହେବାରେ ସୁଯୋଗ ସୃଷ୍ଟି ହେବ ।

ନିକଟରେ ଓଡ଼ିଆ ଭାଷା ଓ ସଂସ୍କୃତିର ଐକ୍ୟ ଓ ସୁରକ୍ଷା ଲାଗି ଓଡ଼ିଶା ସରକାରଙ୍କ ଘୋଷିତ କେତେକ ସରକାରୀ ପଦକ୍ଷେପକୁ ସ୍ୱାଗତ କରାଯାଉଛି । ସରକାରୀ ନିର୍ଦ୍ଦେଶ ଅନୁଯାୟୀ—

(୧) ଓଡ଼ିଆ ଭାଷାର ପ୍ରଚାର ଓ ଅଭିବୃଦ୍ଧି ଲାଗି ଏକ 'ଓଡ଼ିଆ ଭାଷା ପ୍ରତିଷ୍ଠାନ' ସ୍ଥାପନ କରାଯିବ ।

(୨) ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ଏବଂ ଓଡ଼ିଶା ବାହାରେ ରହିଥିବା ବିଚ୍ଛିନ୍ନ ଏବଂ ପ୍ରବାସୀ ଓଡ଼ିଆଙ୍କ ମାତୃଭାଷାର ସୁରକ୍ଷା ଲାଗି ପଡ଼ୋଶୀ ରାଜ୍ୟ ସରକାରମାନଙ୍କ ସହ ଯୋଗାଯୋଗ କରିବା ପାଇଁ ଏକ ସ୍ୱତନ୍ତ୍ର ଅଧିକାରୀଙ୍କ ଅଧୀନରେ ଶିକ୍ଷା ବିଭାଗରେ ଏକ ଉପବିଭାଗ ଖୋଲାଯିବ ।

(୩) ରାଜ୍ୟର ସମସ୍ତ ଇଂରାଜୀ ଭାଷା ମାଧ୍ୟମରେ ଶିକ୍ଷା ଦିଆଯାଉଥିବା ବିଦ୍ୟାଳୟଗୁଡ଼ିକରେ ଓଡ଼ିଆ ଭାଷା ଶିକ୍ଷାକୁ ବାଧ୍ୟତାମୂଳକ କରାଯିବ ।

(୪) ଓଡ଼ିଶା ଦୋକାନ ଏବଂ ବ୍ୟବସାୟିକ ପ୍ରତିଷ୍ଠାନ ଆଇନର ଉପଯୁକ୍ତ ସଂଶୋଧନ କରି ରାଜ୍ୟର ସମସ୍ତ ନାମଫଳକଗୁଡ଼ିକରେ ପ୍ରଥମେ ଓଡ଼ିଆ ଭାଷାରେ ପ୍ରତିଷ୍ଠାନର ନାମ ଲେଖାଯିବ ।

Digitized by srujanika@gmail.com

ଓଡ଼ିଶାର ବହିଃର୍ଭୂତାଞ୍ଚଳଗୁଡ଼ିକରେ ଉତ୍କଳୀୟ ସଂସ୍କୃତିର ବିକାଶ ଓ ସୁରକ୍ଷା ଦିଗରେ ରାଜ୍ୟର ସାଂସ୍କୃତିକ ବିଭାଗ ସମୁଚିତ ପଦକ୍ଷେପ ଗ୍ରହଣ କରିବ । *

**ଭବିଷ୍ୟତ ଗବେଷଣାର ଦିଗଦର୍ଶନ :**

ଓଡ଼ିଶାର ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳ ପରି ଅନ୍ୟ ସମସ୍ତ ଉପାନ୍ତ ଅଞ୍ଚଳମାନଙ୍କରେ ଏପରି କାର୍ଯ୍ୟକ୍ରମ ହାତକୁ ନେଇ ଯୋଜନାବଦ୍ଧ ଭାବରେ ସେ ସବୁ ସ୍ଥାନର ଓଡ଼ିଆ, ଭାଷା ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଅଧ୍ୟୟନ ସମ୍ପନ୍ନ ହେବା ଆବଶ୍ୟକ ।

ସଂପ୍ରତି ଓଡ଼ିଶାର ବର୍ତ୍ତମାନର ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ 'ଓଡିଆ ଭାଷା ସଂସ୍ଥାନ' ଗଠିତ ହୋଇଛି । ଏହା ଏକ ଅତି ପ୍ରୟୋଜନୀୟ, ବାସ୍ତବ ଓ ସମୟୋପଯୋଗୀ ପଦକ୍ଷେପ । ନିଃସନ୍ଦେହରେ ଏହା ଏକ ଉତ୍ତମ ଏବଂ ଅଭିନନ୍ଦନୀୟ ପ୍ରଚେଷ୍ଟା । ମୁକ୍ତ କଣ୍ଠରେ ଏଥିପ୍ରତି ଆମର ସାଧୁବାଦ ଜ୍ଞାପନ କରୁଅଛୁ । ଏହି ସଂସ୍ଥାନ ଉପକୂଳବର୍ତ୍ତୀ ଓଡ଼ିଆ ଭାଷା ସମେତ ସମଗ୍ର ଓଡ଼ିଆ ଭାଷାଭାଷୀ ଭୂଖଣ୍ଡର ପ୍ରଚଳିତ ବିଭିନ୍ନ ବୋଲିଗୁଡ଼ିକ ସହିତ ଆଦିବାସୀ ଭାଷା ପ୍ରକୃତିର ସହଯୋଗରେ ଏକ ସମୃଦ୍ଧ ଓଡ଼ିଆ ମାନକ ଭାଷା ପ୍ରଚଳନ ଦିଗରେ ସତତ ବିହିତ ପଦକ୍ଷେପ ଗ୍ରହଣ କରିବ, ବିଶ୍ବାସ ।

## ସହାୟକ ଗ୍ରନ୍ଥ

**ଓଡ଼ିଆ :**


୧ — ଅନେକ ଇତ୍ୟାଦି ପରେ : ଅଧ୍ୟାପକ ଡଃ ରମାକାନ୍ତ ବେହେରା ।

୨—ଅସ୍ତି ଭଗୀରଥ ତୀରେ : ଶ୍ରୀ ନୀହାର ରଞ୍ଜନ ହୋତା, ୧୯୬୮ ।

୩—ଆଜିର ବିକ୍ଷିପ୍ତ ଭାବନା : ଶ୍ରୀ ରମେଶ ଚନ୍ଦ୍ର ଦତ୍ତ, ୧୯୭୩ ।

୪—ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି : ପ୍ରଫେସର ଡଃ ନଟବର ସାମନ୍ତରାୟ, ୧୯୬୪

୫—ଆମ ସମୟର କାହାଣୀ : ଅଧ୍ୟାପକ ବୈଷ୍ଣବ ଚରଣ ସାମଲ, ୧୯୮୯ ।

୬—ଆତ୍ମ ଜୀବନ ଚରିତ : ବ୍ୟାସକବି ଫକୀର ମୋହନ ସେନାପତି, ଗ୍ରନ୍ଥମନ୍ଦିର—୧୯୮୮ ।


* ସମାଜ ତା ୨୯-୧୨-୯୨ ରିଖ ଓ ସମାଜ ତା ୨୫-୬-୯୫ ରିଖ ।

Digitized by srujanika@gmail.com

୭—ଉତ୍କଳ ଅତି ପ୍ରାଚୀନ : ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ, ୧୯୩୧ ।

୮—ଋଷିପ୍ରାଣ ହରିହର : ଶ୍ରୀ ନରହରି ସ୍ୱାଇଁ ।

୯—ଓଡ଼ିଆ ସାହିତ୍ୟର ଆଦିପର୍ବ } ୧୯୭୧,
ଶ୍ରୀ ସୁରେନ୍ଦ୍ର ମହାନ୍ତି
୧୦—ଓଡ଼ିଆ ସାହିତ୍ୟର ମଧ୍ୟପର୍ବ } ୧୯୭୩ ।

୧୧—ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତପରିଚୟ : ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ୧୯୮୯ ।

୧୨—ଓଡ଼ିଆ ଲିପି ଓ ଭାଷା : ଡକ୍ଟର ଖଗେଶ୍ୱର ମହାପାତ୍ର, ୧୯୭୭ ।

୧୩—ଓଡ଼ିଆ ଲୋକଗୀତ ଓ କାହାଣୀ : ଡକ୍ଟର କୁଞ୍ଜବିହାରୀ ଦାଶ, ୧୯୫୮ ।

୧୪—ଓଡ଼ିଶା ଇତିହାସ : ଡକ୍ଟର ହରେକୃଷ୍ଣ ମହତାବ

୧୫—ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ : ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ୧୯୬୯ ।

୧୬—ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ, ୨ୟ ଭାଗ : ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ୧୯୭୨ ।

୧୭—ଓଡ଼ିଶାର ସାଂସ୍କୃତିକ ଇତିହାସ: (ସଂ) ମହେଶ ପ୍ରସାଦ ଦାଶ, ୧୯୮୪ ।

୧୮—ଓଡ଼ିଶାର ଲୋକ ସଂସ୍କୃତି : (ସଂ) ମହେଶ ପ୍ରସାଦ ଦାଶ, ୧୯୭୮ ।

୧୯—ଓଡ଼ିଆ ଲୋକନାଟ୍ୟ : (ସଂ) ରଜନୀକାନ୍ତ ଦାସ, ୧୯୭୭ ।

୨୦ – କୁମ୍ଭାର ଚକ : କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ୧୯୬୫ ।

୨୧—ଚନ୍ଦନେଶ୍ୱର ମହାତ୍ମ : ଶ୍ରୀ ନନ୍ଦଗୋପାଳ ଶତପଥୀ ।

୨୨—ସ୍ତୁତି ଚିନ୍ତାମଣି (ସଂ) କେଦାରନାଥ ମହାପାତ୍ର, ୧୯୬୧ ।

୨୩—ଚୈତନ୍ୟ : ଦିଲୀପ କୁମାର ମୁଖାର୍ଜୀ , ଏନ୍.ବି.ଟି,
(ଓଡ଼ିଆ) ୧୯୭୧ ।

Digitized by srujanika@gmail.com

୨୦—ଛଉନୃତ୍ୟ : ଏକ ସାଂସ୍କୃତିକ
ଅଧ୍ୟୟନ : ଡକ୍ଟର ନରେନ୍ଦ୍ର ନାଥ ମହାପାତ୍ର, ୧୯୯୦ ।
ପିଏଚ୍.ଡ଼ି. ଥେସିସ, ଉତ୍କଳ ବିଶ୍ୱବିଦ୍ୟାଳୟ ।

୨୫—ଧ୍ୱନି ବିଜ୍ଞାନ : ଡକ୍ଟର ଗୋଲୋକ ବିହାରୀ ଧଳ ।

୨୬—ନିମଗ୍ନ ବହ୍ନି : ଶ୍ରୀ ମଧୁସୂଦନ ଦାସ ।

୨୭—ପଲ୍ଲୀଗୀତ ସଞ୍ଚୟନ ତୃତୀୟ ଭାଗ : ଡକ୍ଟର କୁଞ୍ଜବିହାରୀ ଦାଶ, ୧୯୭୪ ।

୨୮—ପୂର୍ଣ୍ଣଚନ୍ଦ୍ର ଭାଷା କୋଷ : ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜ ।

୨୯—ବଳରାମ ଦାସ ଓ ଓଡ଼ିଆ ରାମାୟଣ: ଡକ୍ଟର ନରେନ୍ଦ୍ର ନାଥ ମିଶ୍ର, ୧୯୫୩ ।

୩୦—ବାଲେଶ୍ୱର ଇତିବୃତ୍ତ : (ସ) ବିପିନ ବିହାରୀ ବିଶ୍ୱାଳ, ୧୯୮୭ ।

୩୧—ବିରାଟ ନଗର ଓ ସ୍ୱର୍ଣ୍ଣ ରେଖା : ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ, ୧୯୩୨ ।

୩୨—ଭୋଗରାଇର କଥା
୧ମ ଓ ୨ୟ ଖଣ୍ଡ : ଏମ୍. ଏ. ରହିମ (ପାଣ୍ଡୁଲିପି), ୧୯୫୫ ।

୩୩—ଭ୍ରମରବର ପାଲି : କବି କର୍ଣ୍ଣ ।

୩୪—ମରା ଛେଲେର ବିଏ : ଭାଗୁକ ଚରଣ ଦାସ ।

୩୫—ମୟୂରଭଞ୍ଜ ଏକ ଦୃଷ୍ଟିପାତ : ଦ୍ୱିଜ କିଶୋର ପରିଡ଼ା,
ମନୋଜ ଦଳବେହେରା ।

୩୬—ମୟୂରଭଞ୍ଜ ଇତିହାସ : ଶ୍ରୀ ଶ୍ୟାମସୁନ୍ଦର ଷଡ଼ଙ୍ଗୀ, (୨ୟ ସ. ନିମନ୍ତେ ପ୍ରସ୍ତୁତ ପାଣ୍ଡୁଲିପି)

୩୭—ମନୋଜ ଦାସଙ୍କ କଥା
ଓ କାହାଣୀ : ମନୋଜ ଦାସ ।

୩୮—ମାଟିର ସ୍ୱର୍ଗ : ଶ୍ରୀ ରାମଚନ୍ଦ୍ର ସାହୁ ।

୩୯—ଶିଶିର ବନ୍ଧୁ : ମୁରାରି ମୋହନ ସାହୁ, ୧୯୬୨ ।

୪୦—ଶାନ୍ତିର ଉପାନ୍ତେ : ମୁରାରି ମୋହନ ସାହୁ, ୧୯୬୬ ।

Digitized by srujanika@gmail.com

୪୧—ଶ୍ରୀମଦ୍ ଭଗବତ ଗୀତା : ପଣ୍ଡିତ ଭୁବନାରାୟଣ ଷଡ଼ଙ୍ଗୀ ।

୪୨—ଶ୍ରୀ ଶ୍ରୀ ଶ୍ୟାମାନନ୍ଦ ଲୀଳାମୃତ : (ସ) ନରସିଂହ ନନ୍ଦ, ୧୯୨୮ ।

୪୩—ସାଧବ ଝିଅ : ଡକ୍ଟର ଅଦ୍ୱୈତ ଚନ୍ଦ୍ର ମହାନ୍ତି, ୧୯୭୪ ।

୪୪—ସିଦ୍ଧେଶ୍ୱର ଜୀବନୀ (ପାଣ୍ଡୁଲିପି) : ଶ୍ରୀ ଦେବୀ କୁମାର ପଣ୍ଡା ।

୪୫—ସପ୍ତୁର୍ଷି କଥା ଭାଗବତ : ପଣ୍ଡିତ ନୀଳମଣି ମିଶ୍ର, ୧୯୮୪ ।

୪୬—ସମାଲୋଚନା : ଡକ୍ଟର କୃଷ୍ଣଚନ୍ଦ୍ର ଦାଶ, ୧୯୭୨ ।

୪୭—ସାରଳା ମହାଭାରତରେ ସାମାଜିକ ଜୀବନ : ଡକ୍ଟର ଦୀନବନ୍ଧୁ ରଥ, ୧୯୭୪ ।

୪୮—ଲୋକ ଗଳ୍ପ ସଞ୍ଚୟନ : ଡକ୍ଟର କୃଷ୍ଣଚନ୍ଦ୍ର ଦାଶ, ୧୯୭୭ ।

୪୯—ରାଧାନାଥ ଗ୍ରନ୍ଥାବଳୀ, ୧୯୬୨ ।

**ଶ୍ରଦ୍ଧାଞ୍ଜଳି ସଂକଳନ :—**

୫୦—କହ୍ନାଇ ନାମା—୧୯୭୬; ସମ୍ପାଦନା—ଶ୍ରୀ ବ୍ରଜନାଥ ରଥ ।

୫୧—ପଣ୍ଡିତ ସ୍ୱର୍ଗତଃ ପୂର୍ଣ୍ଣଚନ୍ଦ୍ରଙ୍କ

୭୭ତମ ଜୟନ୍ତୀ ଉତ୍ସବ—୧୯୮୯; ସମ୍ପାଦନା—ବ. ବ. ବର୍ଣ୍ଣାଳ
ଦୀନକୃଷ୍ଣ ସ୍ମୃତି ପରିଷଦ, ଜଳେଶ୍ୱର, ବାଲେଶ୍ୱର ।

## ଓଡ଼ିଆ ପତ୍ରପତ୍ରିକା

୧—ଉତ୍କଳ ସାହିତ୍ୟ—୪୧ଶ ଭାଗ, ୧୩୪୫ ।

୨—ଏଷଣା—୧, ୧୯୮୦ ।

୩—କୋଣାର୍କ—୪୩ ସଂଖ୍ୟା, ୧୯୮୦ ।

Digitized by srujanika@gmail.com

୪—ଚରୈବେତ—୧ (୧୯୮୪-୮୫) ବାରିପଦା ସାହିତ୍ୟ ସଂସଦ ମୁଖପତ୍ର ।

୫—ଝଙ୍କାର—ନଭେମ୍ବର ୧୯୭୯, ଡିସେମ୍ବର ୧୯୭୨, ମାର୍ଚ୍ଚ ୧୯୮୦ ।

୬—ଦିଗନ୍ତ

୭—ନବପତ୍ର—ଏକବିଂଶ ବର୍ଷ, ୧ମ ସଂଖ୍ୟା ।

୮—ପୌରୁଷ, ଅଗଷ୍ଟ, ୧୯୮୦ ।

୯—ପ୍ରଜାତନ୍ତ୍ର—ତା ୭-୭-୮୦ ରିଖ ।

୧୦—ପ୍ରସ୍ତୁରପନ୍ଥ ତା ୧୨-୧୨-୫୪ ରିଖ । ପ୍ରସ୍ତୁରପନ୍ଥ ଅମର ସିଂହ । କମଳା ନାଟ୍ୟ ସମାଜ ଶାଳକୋଠା, ବାଲେଶ୍ୱର ।

୧୧—ପ୍ରଶ୍ନ—ଶାଳକୋଠା, ଜଲେଶ୍ୱର, ବାଲେଶ୍ୱର ।

୧୨—ବିଶ୍ୱଭାରତୀ ଦୀପିକା ୭ : ୧୯୮୫ ।

୧୩—ବିଶ୍ୱଭାରତୀ ଦୀପିକା ୮ : ୧୯୮୭ ।

୧୪—ସମାଜ ତା ୨୯-୧୨-୯୨ ରିଖ ଓ ତା ୨୫-୭-୯୫ ରିଖ ।

୧୫—ଉଗର—ମେ, ୧୯୫୪ ।

**ବଙ୍ଗଳା :**

୧—ଆଧୁନିକ ବାଂଲାର ଅଧିବାସୀ
ଉତ୍କଳୀୟ ଭାଇଦେର ପ୍ରତି ନିବେଦନ
—୧୯୪୦ । : ଗ୍ରୈଧୁରି ଶ୍ରୀ ମହେଶ୍ୱର ପତିଶର୍ମା

୨—ଇତିହାସ ସଂସ୍କୃତି ମେଦିନୀପୁର ଜେଲା
୧ମ ଓ ୨ୟ—୧୯୬୪ । : ସଂକଳନ

୩—ଚଣ୍ଡୀ ମଙ୍ଗଳ

୪—ଟୀକା ଭାଗବତ ବା ଭାଗବତ ସାର (ବଙ୍ଗଳିପି ଓଡ଼ିଆ ଭାଷା)

Digitized by srujanika@gmail.com

୫—ବିଦ୍ୟାସାଗର ସ୍ମାରକ ଗ୍ରନ୍ଥ : ବିଦ୍ୟାସାଗର ସାରସ୍ୱତ ସମାଜ, ୧୯୭୪

୬—ଶ୍ରୀକୃଷ୍ଣ କୀର୍ତ୍ତନ

୭—ସଖି ସେନାର ଗାନ (ବଙ୍ଗଳିପି ଓଡ଼ିଆ ଭାଷା) ।

**English Books :**

1. Bengal District Gazetteers, Balasore : L.S.S. O'Mallty
2. B.D.G. Midnapur : L.S.S. O'Malley
3. History of Orissa : Dr. K. C. Panigrahi
4. L.S.I. vol. V Part II : G. A. Grierson.
5. Orissa District Gazetteer, Mayurbhanj, 1967 : Nilmani Senapati, N. K. Sahu
6. Oriya Nationalism ? The guest for a limited Orissa, 1866-1936, Ph. D. Disbertation (MSS) : Dr. Nibedita Mohanty
7. Statistical Account of Bengal, vol III, Midnapur, Reprinted 1973. : W. W. Hunter
8. The Bhaumakarns and their times, 1978. : Dr. Biswarup Das
9. The Formation of the Province of Orissa Ph.D. Thesis (Mss.) (Utkal University) : Dr. S. C. Patra.

Digitized by srujanika@gmail.com

**Memorandum :**

Submitted to the
State Re-organisation Committee.
Demanding the out-lying Oriya Tracts.
By The Kalikata Utkal Chhatra Sangha,
Calcutta.

**Journals :**

1. Souvenir 1978 : Mayurbhanj Chhawnrutya Pratisthan, Baripada.
2. The Prachi : Bichhanda Ch. Pattanayak.

———

Digitized by srujanika@gmail.com

# ଶୁଦ୍ଧିପତ୍ର

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| ପ୍ରଥମ ଅଧ୍ୟାୟ | ୧ | ୨ | ୬ | ମଧ୍ୟରେ ଅବସ୍ଥିତ | ମଧ୍ୟରେ ମୟୂରଭଞ୍ଜ |
| | ୩ | | | | ଜିଲ୍ଲା ଅବସ୍ଥିତ । |
| | ୩ | ୪ | ୨ | ˆହିବା ପ୍ରଚ୍ଳିତ | ରହିବା ପ୍ରଥା ପ୍ରଚ୍ଳିତ |
| | | | ୨ | ଘର ଜୋଇଙ୍କ | ଘର ଜୋଇଁଆଁ |
| | ୪ | ୩ | ୨ | ନିବଦ୍ଧ | ନିଷିଦ୍ଧ |
| | | | ୩-୪ | ପ୍ରଥମ ସନ୍ତାନହୀନା | ପ୍ରଥମ ସ୍ତ୍ରୀ ସନ୍ତାନହୀନା |
| | ୬ | ୬ | ୩ | ସଂକଳନ | ସଂକଳକ |
| | ୭ | ୨ | ୨ | ସଂସ୍କୃତି | ସଂସ୍କୃତ |
| | | ୨ | ୧୩ | ରାମେଶ୍ୱରୀ | ସାମେଶ୍ୱରମ୍ |
| | ୯ | ୧ | ୧୦ | ମନ୍ଧାରଣ | ମନ୍ଦାରଣ |
| | | ୧ | ୧୧ | ଚୋଡ଼ରଂଗଠାରୁ | ଚୋଡ଼ଗଙ୍ଗଠାରୁ |
| | ୯ | ୨ | ୧ | ପ୍ରତାପ ଦେବଙ୍କ ରାଜତ୍ୱ | ପ୍ରତାପ ଦେବଙ୍କ ରାଜତ୍ୱ* |
| | ୧୦ | ୪ | | ଆରମ୍ଭରୁ ପୃଷ୍ଠାର | ଲିଖିତ ବିବରଣୀ |
| | | | | ଶେଷ ପର୍ଯ୍ୟନ୍ତ | ତାରା ଚିହ୍ନ ସହ ସଂଯୁକ୍ତ |
| | ୧୧ | ୨ | ୪ | Zamidars | Zamindars |
| | ୧୩ | ୩ | ୧୧ | ନୟାବଣ | ନୟାବସାଣ |
| ଦ୍ୱିତୀୟ ଅଧ୍ୟାୟ | ୧୫ | ୧ | ୨ | ମୂଳତ | ମୂଳତଃ |
| | | | ୧୦ | ମାନିବ | ମାନବ |
| ଦ୍ୱିତୀୟ ଅଧ୍ୟାୟ | ୧୬ | ୧ | ୪ | କରଣ | କାରଣ |
| | | | ୪ | ଉପଲବ୍ଧ୍ ହେବ | ଉପଲବ୍ଧ ହେବ |
| | | ୨ | ୪ | ଶାଲରେ | ସାଲରେ |
| | | | ୭ | ନିଯୁକ୍ତି | ନିଯୁକ୍ତ |
| | ୧୭ | ୪ | ୪ | from | form |
| ଧ୍ୱନି : | ୨୪ | (ଖ) | ୨ | ବିବୃତି | ବିବୃତ |
| | ୨୪(ଖ) | | ୩ | ଗାଚେ | ଗଚେ |
| | | | | ଟର | ଟର୍ |
| ଧ୍ୱନି | ୨୫(ଘ) | | ୨ | ପାଖିର | ଫାଖିର |
| | ୨୬(ଚ) | | ୨ | ସ୍ୱରଧ୍ୱନି | ସ୍ୱରଧ୍ୱନି |
| | ୨୭ | ୧ | ୧ | ସ୍ୱହାଜର | ଗ୍ୱହାଜର |
| ଆକାର | ୨୮ | ୧ | | ସେଢ଼ | ସେଢ଼େ |
| | ୨୯ | | | ମାଗ | ମା'ର |
| ସନ୍ଧାନସୂଚକ | | | ୨ | ଭାଳି | ଭଳି |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| ଐତିହାସିକ ଭାଷାତତ୍ତ୍ୱ କେତେକ ବ୍ୟତିକ୍ରମ | ୩୧(ଙ) | | ୨ | ନମ୍ପ ନେମ୍ପ | ନମ୍ପ/ନେମ୍ପୁ |
| ଉ.ପୂ. ପ୍ରଚଳିତ ଉପ ଭାଷାର ତଥ୍ୟ ସଂଗ୍ରହ ବିବରଣୀ | ୩୩ | ୪ନଂ | ଦକ୍ଷିଣ-ପୂର୍ବ ମେଦିନୀପୁର | ମୁଁ ନଦୀକୁ ଗାଧିତୋ ଗାଧେଇତେ ଯିମି । | ମୁଁ ନଦୀକୁ ଗାଧିତେ/ ଗାଧେଇତେ ଯିବି । |
| | | ୭ନଂ | ” | ତୁମେ ମାଛ ଧରତେ ଯିବ ? | ତୁମେ ମାଛ ଧରତେ ଯିବ । ହଁ ?? |
| | | ୯ନଂ | ଦକ୍ଷିଣ-ପଶ୍ଚିମ ମେଦିନୀପୁର | ସବ୍ ସମୟେ ଘରେ କିସ କରୁଛି | ସେ ସବ୍ ସମୟେ ଘରେ କିସ କରୁଚି ? |
| | | ୩ନଂ | | ବିମଳ କୁମାର ମହାନ୍ତି | ବିମଳ କୁମାର ମହାନ୍ତ |
| | | ୪ଂନଂ | | ଗ୍ରାମ ଧଡାରୀ | ଗ୍ରାମ - ଧଡାଂରୀ |
| | | | ୫-୧୦ | ପରବର୍ତ୍ତୀ...କରିଥିଲେ | “ପରବର୍ତ୍ତୀ.. କରିଥିଲେ” |
| | ୩୪ | ୨ | ୨ | ଫକୀରମୋହନଙ୍କ | ଫକୀରମୋହନ |
| | ୩୫ | | | ଫର୍ମାର | ଫର୍ମାଲ |
| | ୩୯ | ୩ନଂ | ୪ | ଚାପ | ରୂପ |
| | ୪୦ | | ୪ | ଲୁକ | ଲୁକ/ନୁକ |
| | | | ୧୧ | ସକ୍ଷୀକରଣ | ସନ୍ଧୀକରଣ |
| | ୪୦ | | ୧୧ | କାଲି | କାଲ୍ |
| | ୪୧ | (ଖ) | ୧୪ | ଫର୍ମାଲ ମା:ଓ: ଆପଣ-ମେନେ | ଫର୍ମାଲ ମା: ଓ: ଆପଣ - ମାନେ |
| | ୪୬ | (ଗ) କୋଷଗତ | | କଲୁ ପୋହୋରା | କଲୁଁ ପେ (ହେ) ରା |
| | ୪୮ | ପରିଶିଷ୍ଟ ୧(କ) | ୧ | ବେଲ୍କାର | ବେଲ୍କାର |
| | ୪୯ | ପରିଶିଷ୍ଟ (୨) | ୩ | ବେହ୍ନା | ବେହ୍ନା |
| | | ଗୀତ(ଗ) | ୧ | ଗମରି | ଗ ମରି |
| | ୫୦ | ପରିଶିଷ୍ଟ ୩(କ) | ୪ | ଭତ୍‌ଭୁତି | ଭୁଡ୍‌ଭୁଡ଼ି |
| | | | ୭ | ବିଧାନ | ବିଧାନ |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୫୧(କ) | | ୧ | ଆଇନିକି | ଆଇନିକି |
| | (ଖ) | | ୫ | ଦୁଅ | ପୁଅ |
| | | | ୨ | ଦାଦା, କାକୁ | ଦାଦା'ବୁ |
| | | | ୫ | ରେକେଟ୍ଟାରି ହେଉଚି । | ରେକେଟ୍ଟାରି ହେଇଚି । |
| | | | ୬ | ଦାଦା'କୁ | ଦାଦା'କୁ |
| | | | | ପାଦଟୀକାର ୨ୟ ତାରା | ପାଦଟୀକାର ୨ୟ ତାରା |
| | | | | ଚିହ୍ନ : ଗ୍ରାମ-ଷିଂପୁର | ଚିହ୍ନ : ଗ୍ରାମ-ଷିପୁର |
| | | | | | ଚାଟ୍ଦା ଚାଟ୍ଦା |
| | ୫୨ | | ୨ | ମାରିହେଲା | ମାରିଦେଲା |
| | ପରିଶିଷ୍ଟ | | | | |
| | (କ) | | ୪ | ପୁଳି (ଣି) | ପୁନି (ଣି) |
| | | | | *ପାଦଟୀକା : | * ପାଦଟୀକା : |
| | | | | ଲୟସ ୮୦ | ବୟସ ୮୦ |
| | ୫୪ | (ଢ଼) | | ସାରା-ସର୍ବାଙ୍ଗ | ସାରା - ସର୍ବ/ସବୁ |
| | ୫୫ | (ଚ) | | ଥାସ | ଥାମ (ରୋକିଯିବା) |
| | ୫୬ | (ଛ) | ୭ | ଆଉଣ୍ଡିବା | ଆଉଣ୍ଡିବା |
| | | | ୧୧ | ଛିପା | ଛିପା |
| | ୫୮ | | ୧୯ | ଆଙ୍କ-ଛାଟି | ଆଙ୍କ-ଚାଟି |
| | ୫୯ | | ୭ | ଉଦ୍କୁଣ୍ଡୁଳୀ | ଉଦ୍କୁଣ୍ଡୁଳୀ |
| | | | ୨୧ | ଏରକନ୍ | ଏରଙ୍କମ୍ |
| | ୬୦ | | ୯ | ଝିଢ଼ିପୋକ | ଝିଢ଼ିପୋକ୍ |
| | ୬୧ | | ୧୬ | ଗିଳିବା | ଗିଳିବା |
| | ୬୨ | | ୧୧ | ଚଙ୍ଗାଚଲା | ଚୁଙ୍ଗାଚଲା |
| | | | ୨୬ | ଜନ୍ଲା | ଛାନ୍ଲା |
| | ୬୩ | | ୧୬ | ଡର୍କା | ଡରକା |
| | | | ୩୦ | ଦହଗଣ୍ଡ | ଦହଗଞ୍ଜ |
| | | | ୩୧ | ବାକୁ | ଦାକୁ |
| | ୬୪ | | ୩ | ଧକ୍ଲି | ଧକଲି |
| | ୬୪ | | ୨୦ | ନାହାଳିଆ | ନାହାଳିବା |
| | ୬୫ | | ୨ | ପାତୁ | ପାଡୁ |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୬୫ | | ୨୧ | ଫାର୍ଣିଡିଙ୍ଗା | ଫାଣିଡିଙ୍ଗା |
| | ୬୬ | | ୨୦ | ଭକୁଆ | ଭକୁଆ |
| | | | ୨୪ | ରେଣି | ଭେଣି |
| | ୬୭ | | ୧୯ | ସାଜ-ପ୍ରଥମ ଉଦ୍ରାବର ବା କନ୍ୟା | ସାଜ-ପ୍ରଥମ ବାହା ବର ବା କନ୍ୟା |
| | | | ୨୪ | ଉଥ | ହଥ |
| ତୃତୀୟ ଅଧ୍ୟାୟ | ୭୨ | ୧ | ୫ | ଫିଲା | ପିଂଲା |
| | | ୧ | ୭ | ଫତେଟଗଡ଼ | ପଂତେଟଗଡ଼ |
| | | ୧ | ୧୦ | ଫିଲାର | ପିଂଲାର |
| | | ୨ | ୨ | କରିଥିବାର | କରିଥିବାର |
| ପାଦଟୀକାର | | | ୨ | 'ମେଦିନୀ କୋପ' | 'ମେଦିନୀକୋଷ' |
| | ୭୫ | ୪ | ୧ | ଜାନକୀବଲ୍ଲଭଙ୍କର | ଜାନକୀବଲ୍ଲଭ କର |
| ଦୀନକୃଷ୍ଣ ଦାସ | | ଉଦ୍ଧୃତି | ୪ | ସର୍ବନାଶ | ସର୍ବବାସନା |
| ବନ୍ଧନୀ ମଧ୍ୟରେ | | | ୬ | ରସକଲ୍ଲୋଳ | ରସ ବିନୋଦ |
| ବଳଦେବ ବିଦ୍ୟା ଭୂଷଣ ରଘୁନାଥ ଭଂଜ ରାମେଶ୍ୱର | ୭୭ | ୧ | ୨ | ଉକ୍ତ | ଭକ୍ତ |
| ଭଟ୍ଟାଚାର୍ଯ୍ୟ | ୭୯ | ୨ | ୧୧ | [illegible] | ଭକ୍ତି |
| ଶ୍ୟାମାନନ୍ଦ ଦେବ ଗୋସ୍ୱାମୀ ସନାତନ | ୭୯ | | ୫ | '[illegible]' | '[illegible]' |
| ବିଦ୍ୟାବାଗୀଶ | | | ୧୬ | ସନାତନ [illegible] | [illegible] |
| | ୮୦ | | ୮ | ନବାକ୍ଷ | [illegible] |
| | | | ୯ | ଭାଷାବନ୍ଧ | [illegible] |
| | ୮୪ | | ୧୦ | ନିଯୁକ୍ତି | ନିଯୁକ୍ତ |
| | ୮୫ | ୩ | ୨ | ଦଦ୍ୟାଳୟ | ବିଦ୍ୟାଳୟ |
| | | ୫ | ୧ | 'ଉତ୍କଳ-ଅଜ୍ଞାନ-ତମ-ଧ୍ୱଂସକାରୀ | 'ଉତ୍କଳ-ଅଜ୍ଞାନ-ତମ ଧ୍ୱଂସକାରୀ' |
| ଲାଇବ୍ରେରୀ ଓ | ୮୬ | ୧ | ୨ | ବୁବୁଲି | ବୁବୁଲି |
| ଯାଦୁଘର | ୮୭ | ୧ | ୪ | ପ୍ରତାଶିତ | ପ୍ରକାଶିତ |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୮୬ | ୨ | ୪ | ଏତଦ୍‌ବ୍ୟତୀତ ବିଦ୍ୟାଧର | ଏତଦ୍‌ବ୍ୟତୀତ ଶିଳ୍ପୀ ବିଦ୍ୟାଧର |
| କେତେକଣ ଅନାଲୋଚିତ | ୮୭ | | | ଆଲୋଚିତ | ଅଦ୍ୟାଲୋଚିତ |
| କାଳୀପ୍ରସନ୍ନ ଶତପଥୀ | ୮୮ | ୩୯ | ୩ | ପଞ୍ଚନଟୀ | ପଞ୍ଚବଟୀ |
| ଚନ୍ଦ୍ରମୋହନ ମହାରଣା | | ୪ | ୭ | କଲେଜସୁ | କଲେଜରୁ |
| | ୮୯ | ୧ | ୧ | ପରିଦର୍ଶନ | ପରିଦର୍ଶକ |
| | | ୨ | ୧୦ | ସହାୟିକା ସୂଚୀ | ସଂଯୋଗ ସେତୁ |
| | ୯୦ | ୨ | ୪ | କେକେକ | କେତେକ |
| | | | ୧୧ | ସହାୟିକା ସୂଚୀ | ହୋଇନାହିଁ |
| ଯଦୁନାଥ ଶତପଥୀ | ୯୧ | ୪ | ୨ | ସୀତ ବନବାସ | ସୀତା ବନବାସ |
| | | ୫ | ୩ | ନହୁଷ | ନହୁଷ |
| | ୯୨ | ୮ | ୪ | କାରଣ | କରଣ |
| ରାମକୃଷ୍ଣ ସାହୁ | ୯୪ | ୨ | ୧ | ଚଢ଼ା | ଛଢ଼ା |
| ରୁଦ୍ରନାରାୟଣ ପଟ୍ଟନାୟକ | | | ୮ | ଦେହୁଦୋ | ଦେହୁଢ଼ଦା |
| | ୯୭ | ୨ | ୬ | ଏ କଥାରେ କହଚି | କଥାରେ କହଚି |
| | | ୪ | ୨ | ମାଗୁଣୁର | ମାଗୁଣୀର |
| | ୯୮ | ୩ | ୨ | ଖାଦନ | ଗାଜନ |
| ସତ୍ୟନାରାୟଣପାଲ | | ୪ | ୭ | 'ସତ୍ୟବାଦୀ'ର | ସତ୍ୟପୀର |
| | ୯୯ | | ୨୫ | (ପଙ୍କଜ) ପ୍ରଧାନ ଥାଏ | ପଖାଜ (ପଖଉଜ) ପ୍ରଧାନ ବାଦ୍ୟ |
| [illegible] | ୧୦୦ | ୧ | ୨ | ପ୍ରକାଶଭାଂଗୀ | ପ୍ରକାଶଭଂଗୀ |
| [illegible] | ୧୦୧ | ୩ | ୪ | ରୀତିର | ଗୀତର |
| | ୧୦୨ | ୧ | ୭ | ଫଂକୀର ମୋହର | ଫକୀର ମୋହନ |
| | | | ୩ | ସମ୍ବଳିତ | ସମ୍ବଳିତ |
| ତନ୍ତ ସାହିତ୍ୟ | ୧୦୩ | ୧ | ୬ | ହନୁମନ୍ତ | ହନୁମତ |
| | | | ୨ | ପିଚେଲ ଶଉଦୁଣୀ | ପିତେଇ ଶଉରୁଣୀ |
| ପାଲା | ୧୦୩ | ୩ | ୧୩ | ଧାଡ଼ି ଶେଷରେ - ପାଲା କଥାର "ଆରେଦତ | ପାଲା କଥାର କେତେକାଂଶ ଭକ୍ତ ହେଲା "ଆରେଦତ |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୧୦୪ | ୧ | ୨ | ଦେଖିଥିବୁ | ଦେଖିଅଛି |
| ଚଢ଼େୟାଣୀ... | ୧୦୫ | | ୨୧ | ଉକ୍ତ | ଉକ୍ତ |
| ମାନପାଲା | ୧୦୬ | ୩ | ୬ | ଖୋଲା ସ୍ଥାନରେ ହୋଇ | ଖୋଲା ସ୍ଥାନରେ ନିର୍ମିତ ହୋଇ |
| | ୧୦୭ | ୩ | ୧ | ଫାର୍ଶ | ଫାର୍ଶ |
| | | ୪ | ୧ | ଘୁସୁରା | ଘୁମୁରା |
| | ୧୦୮ | ୧ | ୧ | ଚକଡ଼ | ଚଡ଼କ |
| | | ୪ | ୧ | ମାଁଢ଼ | ମାଁଢ଼ |
| | | | | ସୁପ୍ରତିଷ୍ଠ | ସୁପ୍ରତିଷ୍ଠିତ |
| | | | ୨ | ଷାଢ଼େିକଳା | ଷଢ଼େିକଳା |
| | | ୫ | ୫ | ସାଅର | ଶଅର |
| ସାଧନନାଚ | ୧୦୯ | ୩ | ୧ | ସାଧନା ନାଚ | ସାଧନ ନାଚ |
| ପାଇକନାଚ | | ୪ | ୩ | ଅଧିନସ୍ଥ | ଅଧିନସ୍ଥ |
| | | ୫ | ୧ | ନିଦ୍ଦଷ୍ଟ | ନିର୍ଦ୍ଦିଷ୍ଟ |
| | | ୬ | ୧ | ରାଜ/ଜମିହାରଙ୍କୁ | ରାଜା/ଜମିଦାରଙ୍କୁ |
| | ୧୧୧ | ୧ | ୫ | ମୋଗଲ ତିମସା | ମୋଗଲ ତାମସା |
| | ୧୧୧ | ୩ | ୫ | କାଛ୍ଣ | କାଛୀ |
| | ୧୧୩ | ୧ | ୩ | ଢାଲିଆ | ଢାଲିଆ |
| | | ୩ | ୧ | ଯାତ୍ରୀ | ଯାତ୍ରା |
| | ୧୧୪ | ୧ | ୩ | ଚର୍ଚ୍ଚା-ଉତ୍କଳ | ସେ ଚର୍ଚ୍ଚା-ଉତ୍କଳ |
| | | | ୭ | ଗର୍ରରେ | ଗର୍ଭରେ |
| | | ୪ | ୧ | ନଗେନ୍ଦ୍ର ନାଥ ମହାପାତ୍ର | ନରେନ୍ଦ୍ରନାଥ ଦାସ ମହାପାତ୍ର |
| | | | ୭ | ଦେହୁଡ଼ିଦା | ଦେହୁଡ଼ିଦା |
| | | ୨ | ୭ | ଉପାନ୍ତ ଅଂଚଳରେ | ଉପାନ୍ତ ଅଂଚଳର |
| | ୧୧୭ | ୧ | ୬ | ବଗୋବର୍ଗୀ | ବର୍ଗୋବର୍ଗୀ |
| | | ୨ | ୪ | ସଂସ୍କୃତି ବିକାଶ | ସଂସ୍କୃତିର ବିକାଶ |
| | | ୪ | ୧ | ବାଟେଶ୍ୱର | ବଟେଶ୍ୱର |
| | ୧୧୮ | ୧ | ୩ | ରମାକାଥ ମିଶ୍ର | ରମାନାଥ ମିଶ୍ର |
| | | | ୩ | ଏକ ପାରିବାରିକା | ଏକ ପାରିବାରିକ |
| | | | ୯ | ପରିବାର ସାଂସ୍କୃତିକ | ପରିବାରର ସାଂସ୍କୃତିକ |
| | | | ୧୧ | ଅଭିନୟ ଜଗଜ | ଅଭିନୟ ଜଗତ |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୧୧୯ | ୨ | ୧ | ଶ୍ରୀରାଧାନାଥ ଦାସ | ଶ୍ରୀ ରାଧାକମଳ ଦାସ |
| | | ୪ | ୩ | ମର୍ଦିରାଜ | ମର୍ଦ୍ଦରାଜ |
| | | ୯ | | ନାଟଇ | ନାଟକ |
| | | ୧୩ | | ସୁନାମ | ସ୍ୱନାମ |
| | | | ୪ | ବାର୍ଥଡେ | ବାର୍ଥଡେ |
| | | ୩ | ୫ | ରୁମନଂ ଟୁଏଣ୍ଟା | ରୁମ ନଂ ଟୁଏଣ୍ଟି |
| | ୧୨୨ | ୨ | ୫ | ଝାଡ଼ିଗ୍ରାମ | ଝାଡଗ୍ରାମ |
| | | ୩ | ୧ | ଗାୟକ | ଗାୟନ |
| | ୧୨୩ | ୧ | ୩ | ପୃଷ୍ଠପୋଷକ | ପୃଷ୍ଠପୋଷକତା |
| | | ୨ | ୫ | ସବଂସାଧାରଣର | ସର୍ବସାଧାରଣର |
| | | | ୭ | ବାନ୍ଧକ ନାଟ୍ୟସମାଜ | ବାନ୍ଧବ ନାଟ୍ୟ ସମାଜ |
| | | ୪ | ୧ | ବିହାରୀ ପାଲା | ବିହାରୀ ପାଲି |
| | | ୫ | ୨ | ଅନେକ | ଅନେକ |
| | ୧୨୪ | ୧ | ୨ | ବୀରବର ପାଲା | ବୀରବର ପାଲି |
| | ୧୨୬ | ୨ନଂ ଗୀତ | ୪ | ନିକସ୍ୱ | ନିଜସ୍ୱ |
| | | ୩ନଂ ଗୀତ | ୧୧ | ଶଳା | ଢଳା |
| | ୧୨୭ | ୪ନଂଗୀତ | ୧ | ଦଶଭଥ | ଦଶରଥ |
| | ୧୨୮ | ୪ନଂଗୀତ | ୧ | ମୋ ଯାଉସୀ | ମୋ ମାଉସୀ |
| | | ୫ନଂଗୀତ | ୨ | ଗାଢ୍ଢ | ଗାଳି |
| | | | ୨ | ଖେଲି | ଖେଳି |
| | ୧୨୯ | ୧ନଂଗୀତ | ୧୮ | ଋଗା | ଲୁଗା |
| | | | ୨ | ଗାଳି ଦେବେ | ଗାଳିଦେନେ |
| | | | ୬ | ଗଛଥା | ଗଛର |
| | | ୪ନଂଗୀତ | ୫ | ହଦ ମଉଜ | ହଦ ମଉଦ |
| | | | ୭ | ଶାଶୁଚର | ଶାଶୁଘର |
| ଦୋଳିଗୀତ | ୧୩୧ | ୫ନଂଗୀତ | ୧ | କୋଳିଜନ୍ମ | ଦୋଳି ଜନ୍ମ |
| | | | ୫ | ସେହିଠାରୁ ଦୋଳି | ସେହିଠାରୁ ହେଲା ଦୋଳି |
| ଚଇତ ପରବ ଗୀତ | | | | ଭକ୍ତ ଗୀତା | ଭକ୍ତା ଗୀତ |
| କର୍ମଗୀତ | ୧୩୩ | ୨ନଂଗୀତ | ୩ | ପଚାରି ନଉଁଲୁ | ପଚାରି ନଉଛୁଁ |
| | | ୩ନଂ ଗୀତ | ୧ | ଗଲି ପରେ | ଗଲି ପଣେ |
| ବଗାଛିଆ (କର୍ମଗୀତ) | | | | ଜଗାଲିଆ ଗୀତ (କମଗୀତ) | ବଗାଲିଆ ଗୀତ (କର୍ମ ଗୀତ) |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| ହଲୁଆ ଗୀତ | ୧୩୪ | ୪ନଂଗୀତ | ୩ | ବୁଡ଼ାଇଲୁ | ବୁଡ଼ାଇଲୁ |
| ଲୋକଗଳ୍ପ(ଯରାଣ୍ଡ) | ୧୩୫ | ୭ | ୨ | ତାକୂ | ତାକୁ |
| | ୧୩୬ | ୧ | ୩ | ପାଳଦିନ | ପାଳିଦିନ |
| | ୧୩୬ | ୯ | ୨ | ତଳିଫୁଙ୍କା | ନଳିଫୁଙ୍କା |
| କଣ୍ଢାକଥା ୧୩୭ | ୨ | ୨ | | ଦେଇକିର | ଦେଇକିରି |
| | ୧୩୭ | ୫ | ୩ | ବାଡ଼ିକରେ | ବାଡ଼ିକଡ଼େ |
| କୁକ୍‌ଲାଆର ଶିଆଳ କଥା | ୧୩୮ | ୨ | ୪ | ଖାଇନ୍ | ଖାଇକ୍ |
| | | | ୮ | ବୁଦ୍ଦି | ବୁଦ୍ଧି |
| | ୧୪୦ | ୧ | ୨ | ପାଖଲ୍ | ପାଖାଲ୍ |
| | ୧୪୩ | ୧ | ୧୧ | ଆନ୍‌ଦୁ | ଆଦ୍‌ଦୁ |
| | ୧୪୪ | ୨ | ୧ | ଗୁଛେ | ଗୁଟେ |
| | ୧୪୬ | ୧ | ୧ | ପର ପାଖର | ଘର ପାଖରୁ |
| ନାଉଖଣ୍ଡିଆ (ବାଣ୍ଡିଆ) ଶିଆଳ କଥା | ୧୪୬ | ୨ | ୩ | ମକା, କାକୁଳ | ମକା ଆର୍ କାକୁଲ୍ |
| | | - | ୫ | ପାଗୁଚୁତ୍‌ନି | ପାଗୁଛତ୍‌ନି |
| | | | ୮ | ସିମେନେ | ସେମେନେ |
| | | ୩ | ୨ | ଆଣିଚୁତ୍ | ଆଣିଛତ୍ |
| | ୧୪୭ | ୧ | ୪ | ନେବୁ | ନେଞ୍ଚ |
| | | | ୭ | ଦରବାଟେ | ଆର୍ ବାଟେ |
| | | ୨ | ୪ | ନିଧିଆତ୍ | ନିଧିଆତ |
| | | ୪ | ୯ | ନଛଣ ! | ନଛଣା । |
| | ୧୪୮ | ୨ | ୫ | ଗୋଧେୟ | ଗୋଟେୟ |
| | | | ୪ | ବସିପଲ | ବସିପଳ |
| | | | ୭ | ଖୁଲା | ଖୁଇ |
| | | ୪ | ୧୦ | ହେଇଛକ | ହେଇଛନ୍ |
| | ୧୫୦ | ୪ | ୭ | ଶଳାକ | ଶଲାକ |
| | | | ୧ | ଯେଠକି | ଯେଠିକି |
| | | | ୨ | ହୁଟୁ ହୁଟୁ | ହୁଟ ହୁଟ |
| | | ୨ | ୧ | ଧୂରିଯାଗା | ଧୃରିଆଯାଗା |
| | | | ୧୨ | ବୂଢ଼ଟା | ଗୁଢ଼ଟା |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୧୫୦ | | ୧୩ | ଆଲଫାଲ ଢାଳିତେ ଢାଳିତେ | ଆଲଫାଲ ଢାଳିତେ |
| | | | ୨୧ | ଯିବି | ଯିବ । |
| ବେଗଲା | ୧୫୨ | ୨ | ୧୫ | ବେଗଲା | ବେଗଲି ! |
| ବେଗଲି କଥା | ୧୫୩ | ୧ | ୩ | ଆଣ ତଗୋ | ଆଣତ ଗୋ |
| | ୧୫୪ | ୨ | ୨ | ଭେଣେଇଁ ତାକୁ | ଭେଣେଇଁ ଦାକୁ |
| ୩/ଅର୍ଜ୍ଜୁନ ଚରଣ ରାଂଜ | ୧୫୫ | ଆରମ୍ଭରେ | ୩ | ଖ୍ୟାତ | ଖ୍ୟାତି |
| ୫/ଅନନ୍ତ କୁମାର ପଣ୍ଡା | ୧୫୬ | | ୭ | ଫାରନ୍ | ଫାଇନ୍ |
| ୮/ଅନନ୍ତ କୁମାର ପରିଡ଼ା | ୧୫୭ | | ୮ | ଶେଷରେ ଯୋଗହେବ | କେତେକ ପାଠ୍ୟ ପୁସ୍ତକର ମାନେ ବହି ମଧ୍ୟ ପ୍ରକାଶିତ |
| ୯/ଅନ୍ନଦା ପ୍ରସାଦ ରକ୍ଷିତ | | | ୧୩ | ପବିତ୍ରା ଅପ୍ରକାଶିତ | ପବିତ୍ର । (ଅପ୍ରକାଶିତ) |
| | | | ୧୪ | ..ଗାନ୍ଧୀ) । ପ୍ରକାଶିତ | ..ଗାନ୍ଧୀ) ପ୍ରକାଶିତ । |
| ୧୩/ଆନନ୍ଦ ଶଙ୍କର ଦାସ | ୧୫୯ | | ୩ | ଅବସରି | ଅବସର |
| ୧୪/ଇନ୍ଦୁଭୂଷଣ କର | ୧୬୦ | ୩ | ୨ | ବଂଶାନୁବାଦ | ବଂଗାନୁବାଦ |
| ୧୯/କନିତା ବାରିକ | ୧୬୧ | | ୩ | ସ୍ୱରରେ | ସ୍ୱରର |
| ୨୨/କାର୍ତ୍ତିକେଶ୍ୱର ପାତ୍ର | ୧୬୩ | | ୯ | ପ୍ରଭାତ ପରୀକ୍ଷାରେ | ପ୍ରଭାତ ପ୍ରତୀକ୍ଷାରେ |
| | | | ୧୦ | ପ୍ରବନ୍ଧ | ପ୍ରବନ୍ଧ ଓ ନିବନ୍ଧ |
| ୨୪/କାଶୀନାଥ ବାରିକ | ୧୬୪ | | ୩ | ଲୁପ୍ତପ୍ରାୟ ଝୁଇଲା | ଲୁପ୍ତ ପ୍ରାୟ ଟୁଇଲା |
| ୨୫/କୁଞ୍ଜାନନ୍ଦ ମହାପାତ୍ର | | | ୩ | ବିରିଳ | ବିଭିନ୍ନ |
| ୩୦/ଗଦାଧର ପାଢ଼ୀ | | | ୬ | ଭଂଗୀ ଦର୍ପଣ | ଇଙ୍ଗା ଦର୍ପଣ |
| | | | ୪ | ପ୍ରଶ୍ନତତ୍ତ୍ୱ | ପ୍ରତ୍ନତତ୍ତ୍ୱ |
| | | | ୩ | Status | Status |
| | | | ୧୨ | Vern | Very |
| | | | ୧୬ | Epigraphia India Urkamund | Epigraphia Indica Utkamund |
| | | | ୨୦ | Decean | Deccan |
| | | | ୨୨ | Busdhism | Budhism |
| | | | ୩ | ବା.ସା.ସଂବାଦ | ବାରିପଦା ସାହିତ୍ୟ ସଂସଦ |
| | | | ୨ | ଲେଖକ | ଲେଖିକା |
| ୪୨/ଚିନ୍ତାମଣି ବେହେରା୧୭୩ | ୧୬୯ | ଅନୁବାଦ ୩ | ୩ | ସନ୍ତୋଷ ଘୋଷଙ୍କର ସୁଯୋଗ୍ୟ ରାଷ୍ଟ୍ରପତି-ପୁରସ୍କାର ପ୍ରାପ୍ତ ସନ୍ତାନ | ସନ୍ତୋଷ ଘୋଷଙ୍କର ସୁଯୋଗ୍ୟ ସନ୍ତାନ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ |
| ୬୩/ନିହାର ରଂଜନ ହୋତା | ୧୭୪ | | ୨ | ପାନ୍ଦିଡ଼ା | ପାନ୍ଧଡ଼ା |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରିଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| ୬୮/ପୁଣ୍ଡରୀକାକ୍ଷ ମିଶ୍ର | ୧୭୬ | ୨ | ୧ | ସଂସ୍କୃତ ବିଦ୍ୟାନ | ସଂସ୍କୃତ ବିଦ୍ୱାନ |
| ୭୫/ପ୍ରତିଭା ସୁନ୍ଦରୀ ଓଟା | | ୧ | ୮ | ପ୍ରକାଶିତ | ପ୍ରସାରିତ |
| ୭୬/ପ୍ରଭାକର ପାତ୍ର | | | ୭ | ମୃଷୁର୍ଖାଁ | ମୃଷାର୍ଖାଁ |
| | ୧୮୦ | ୧ | ୩ | ୧୯୪୭ | ୧୯୪୨ |
| | | | ୫ | ବ୍ୟୋମ | ବେଗମ୍ |
| ୮୧/ପଦ୍ମାଳ ଚରଣ ମହାନ୍ତି | ୧୮୧ | ୨ | ୧୨ | ଆବୃତ | ଆଦୃତ |
| ୮୨/ଫକୀରମୋହନ ସେନାପତି | | ୩ | ୧ | ଲକ୍ଷ୍ମ ଚରଣ | ଲକ୍ଷ୍ମଣ ଚରଣ |
| ୮୪/ ମହାପାତ୍ର | ୧୮୪ | | | ମହାପାତ୍ର | ବନୁ ମହାପାତ୍ର |
| ୮୬/ବସନ୍ତକୁମାର ଶତପଥୀ | | ୩ | ୬ | କାଳନା | କଳନା |
| | | ୨ | ୧୦ | ନୀଡ଼ାଶ୍ରୟୀ | ନୀଡ଼ାଶ୍ରୟୀ |
| | | ୩ | ୨ | ବାସନ୍ତି | ବାସନ୍ତୀ |
| ୯୨/ବିଜୟ କୁମାର ବାରିକ | ୧୮୭ | ୨ | ୪ | ସାଧନା ବ୍ରତୀ | ସାଧନାରେ ବ୍ରତୀ । |
| ୯୯/ବୃନ୍ଦାବନ ଦାଶ | ୧୮୯ | ୩ | ୨ | 'ମୁନାଚାନ୍ଦ' | 'ସୁନାଚାନ୍ଦ' |
| ୧୦୦/ବୃନ୍ଦାବନ ଦାସ ଅଧିକାରୀ | | ୪ | ୩ | ସାରସ୍ୱସ୍ମ | ସାରସ୍ୱତ |
| ୧୦୧/ବ୍ରଜନାଥ ରଥ | ୧୯୦ | ୨ | ୧୧ | (୬) ଭନ୍ତତୀର୍ଥ | (୬) ରନ୍ତତୀର୍ଥ |
| | | ୫ | ୬ | ଆଲୋତନା | ଆଲୋଚନା |
| ୧୦୬/ଭବେନ୍ଦ୍ର ନାଥ ମହାପାତ୍ର ଶର୍ମା | ୧୯୨ | ୧ | ୧୦ | ସଂପାଦିକ | ସାପାଦକ |
| | | | ୧୩ | ଗଭରୀ | ଗଉରୀ |
| ୧୧୩/ମନ୍ମଥ ନାଥ ଦାସ | ୧୯୬ | ୧ | ୧ | ଅଧ୍ୟାପନା କରି | ଅଧ୍ୟାପନା ସହ ପ୍ରଶାସନିକ ଭାବେ |
| | | ୨ | ୪ | Morley & Minto | Morley & Minto |
| | | | ୧୩ | The odyssey | The Odessey |
| ୧୨୪/ମନୋଜ ଦାସ | ୧୯୭ | | | ୧୨୦— ମନୋଜ ଦାସ | ୧୧୪- ମନୋଜ ଦାସ |
| | | | ୧୮ | (୧୨) ଉପନିଶେଦ | (୧୨) ଉପନିବେଶ |
| ୧୧୬/ମନୋରମା ବି. ମହାପାତ୍ର | ୧୯୯ | ୬ | ୫ | ସ୍ୱତି ଶ୍ରାବଣ | ସ୍ମୃତି ଶ୍ରାବଣ |
| ୧୪୨/ଲକ୍ଷ୍ମୀଧର ମହାନ୍ତି | ୨୦୮ | ୧ | ୩ | ପ୍ରାକ୍ସରେ | ଫ୍ରାନ୍ସରେ |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| ୧୫୮/ସୁରେନ୍ଦ୍ର ନାଥ ଦାସ | ୨୧୪ | ୨ | ୪ | ଗାଣ ୮ ହୁ | ଗାରେ ଲହୁ ଶେଷରେ ବାରିପଦାରେ ସ୍ଥାୟୀଭାବରେ ବାସ କରିଛନ୍ତି । |
| ୧୫୯/ସୁରେନ୍ଦ୍ର ନାଥ ମଡୁଆଳ | | ୩ | ୨ | ବାଲେଶ୍ୱରର | ବାଲେଶ୍ୱର; |
| ୧୬୧/ସୁଭାଷ ଚନ୍ଦ୍ର ହୋତା | ୨୧୫ | ୧ | ୪ | ମାୟାମ୍ | ମାୟମ୍ |
| | ୨୧୯ | ୨ | ୧ | ସାଧନା୨ରେ | ସାଧନାର |
| | ୨୨୦ | ୧ | ୨ | କବି ବିଭୂତିଭୂଷଣ ମହାନ୍ତି | କବି ବାଞ୍ଛାନିଧି ମହାନ୍ତି |
| | | | ୧୪ | ସାନ କଟିମୂଲଣ | ସାନ କଟିମିଲା |
| | | | ୧୫ | ଶ୍ରୀ ନିରଞ୍ଜନ ପାଢ଼ୀ (ଜଳେଶ୍ୱର) | ଶ୍ରୀ ନିରଞ୍ଜନ ପାଢ଼ୀ (ଜଳେଶ୍ୱର) |
| | | | ୧୬ | ସାଧୁକଗଣ | ସାଧକଗଣ |
| | | | ୧୭ | ପରବର୍ତ୍ତି ସଂଯୋଜଗ | ପରବର୍ତ୍ତୀ ସଂଯୋଜନ |
| ୧୮୦/ଗୌରାଙ୍ଗ ଚରଣ ସୋମ | | ୪ | ୨ | ଶା ନିକେତନରୁ | ଶାନ୍ତିନିକେତନରୁ |
| | | | ୩ | ସୁଷ୍ଠୁ ବିକାଶ | ସୁଷ୍ଠୁ ବିକାଶ |
| | ୨୨୨ | ୧ | ୩ | ଶ୍ରୀ ରୋମ | ଶ୍ରୀ ସୋମ |
| ୧୮୧/ଚଣ୍ଡୀଚରଣ କର | | | ୬ | ପ୍ରଫେସର ରୋମ | ପ୍ରଫେସର ସୋମ |
| | | ୨ | ୪ | ଲବ୍ଧ ପ୍ରତିଷ୍ଠା | ଲବ୍ଧ ପ୍ରତିଷ୍ଠ |
| ୧୮୮/ପଞ୍ଚାନନ ପାତ୍ର | ୨୨୪ | ୨ | ୧୫ | ପାହାନ୍ତି ତାହାକୁ | ପାହାନ୍ତି ତାରାକୁ |
| | | | ୧୬ | ଫିଟି ମାଇଥିବା | ଫିଟି ଯାଇଥିବା |
| ୧୮୯/ପରମାନନ୍ଦ ଆଚାର୍ଯ୍ୟ | | ୨ | ୧୦ | ଓଡ଼ିଆ ସାହିତ୍ୟ ଏକାଡେମୀ | ଓଡ଼ିଶା ସାହିତ୍ୟ ଏକାଡେମୀ |
| ୧୯୨/ବନମାଳି ଜେନା | ୨୨୬ | ୪ | ୩ | ଆକାଶବାଣୀ ନାଟକ | ଆକାଶ ବାଣୀ କଟକ |
| ୧୯୪/ମଥୁରାନାଥ ହୋତା | ୨୨୭ | ୨ | ୧ | ଖୁସୁଡ଼ା ଗ୍ରାମରେ | ଖୁଲୁଡ଼ା ଗ୍ରାମରେ |
| | | | ୫ | ପାଣ୍ଡୁତିପି | ପାଣ୍ଡୁଲିପି |
| ୧୯୮/ଶରତ ଚନ୍ଦ୍ର ଭଞ୍ଜଦେଓ | ୨୨୮ | ୩ | ୪ | ଓଡ଼ିଶା ଏକାଡେମୀ | ଓଡ଼ିଶା ସାହିତ୍ୟ ଏକାଡେମୀ |
| ଅଭିନେତା(କ)ଯାତ୍ରା | ୨୩୨ | | ୨୩ | ଚେଙ୍ଗୁଡ଼ି ସାହି | ନେଙ୍ଗୁଡ଼ ସାହି |
| ୧୩ନଂ-ଦହିବାଲୀ | ୨୩୮ | | ୩ | ପୋ: ସୁରେ | ପୋ : ସୁରୋ |
| ଗୀତ ଓ ଓଡ଼ିଆ ନାଚ | | | | | |
| | ୨୫୧ | ୬ | ୨ | ବ୍ରହ୍ମବିଦ୍ୟା | ବହୁବିଦ୍ୟା |
| | ୨୫୨ | ୪ | ୧ | ବୃଦ୍ଧ | ବୃଦ୍ଧି |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୨୫୩ | ଉଦ୍ଧୃତି | ୨ | ନଳି ଗୁଝର | ନଳି ଗୁଡ଼ର |
| | ୨୫୪ | ୧ | ୫ | କର୍ରୀ | କର୍ତ୍ତ୍ରୀ |
| | ୨୫୫ | ୧ | ୬ | "ପୁଅର ନାତି | "ନାତି (ପୁଅର ପୁଅ) |
| | ୨୫୬ | ୩ | ୩ | (ଡାହାଣିଆ ଓ ବର୍ଯା) | (ଡାହାଣିଆ ଓ ବାୟାଁ) |
| | ୨୫୮ | | | ମାହିଷ୍ୟ (କେଉଟ, କୈବର୍ତ୍ତ) | ମାହିଷ୍ୟ (କେଉଟ, କୈବର୍ତ୍ତ) |
| ଶବର | ୨୬୧ | ୨ | ୫ | ଘଡ଼ା (ଧାଡ଼ା) | ଧଡ଼ା (ଧାଡ଼ା) |
| ଖଡ଼ିଆ | ୨୬୨ | ୧ | ୫ | ବେରଗା | ବେଇଗା |
| | ୨୬୪ | ୨ | ୧୮ | ପାଇଁ କାଗଚ | ପାଇଁ କାଡିପ୍ରୀତି କାଗତ |
| | ୨୬୫ | ୧ | ୪ | ଯୁବରାଜଙ୍କୁ | ଯୁବରାଜଙ୍କ |
| | | ୫ | ୨ | ଖାଇବାକୁ ବସିବା, ଉଲୁଗୁଣା ଦେବା... | ଖାଇବାକୁ ବସିବା, ଶାଶୁକୁ ଖାଇବାକୁ ଦେବା, ଶାଶୁ-ନଣନ୍ଦ ମିଶି ବୋହୂ ସହିତ କଳି କରିବା, ଉଲୁଗୁଣା ଦେବା, ଇତ୍ୟାଦି (ଯାହା ପ.ପୃ.୨୬୮ ୪ର୍ଥ ପରିଚ୍ଛେଦରେ ଯୋଡ଼ି ଯାଇଛି) |
| | ୨୬୮ | ୩ | ୨ | ମଲ୍ଲୀବଢ଼ି | ମଲ୍ଲୀକଢ଼ି |
| | ୨୬୯ | ୧ | ୪ | ତୋରିଆ | ତୋରିଆ |
| | | ୩ | ୧ | ଧର୍ମ ଦେତତା | ଧର୍ମ ଦେବତା |
| | | ॥ | ୧ | ସପ୍ତାଦଶ | ସପ୍ତଦଶ |
| | | | ୬ | ଦାସୀ ତୋର କଣ୍ଠି ସେର୍କଇସ | ଦାସୀ, ଗେରଙ୍କଡ଼ି ସେକଲସ୍ |
| | ୨୭୦ | ୨ର ଉଦ୍ଧୃତାଂଶ | ୪ | ମାଡ଼ାଦିଆ ବାଢ଼ା | ନାଢ଼ା ଦିଆ ଛାଡ଼ା |
| | ୨୭୧ | ୧ | ୧୧ | ଚଉ/ଛେ ନୃତ୍ୟ | ଛଉ/ଛୋ ନୃତ୍ୟ |
| | | ॥ | ୧୯ | ବୌଦ୍ଧ-ତ୍ତନ୍ତ | ବୌଦ୍ଧ-ତନ୍ତ୍ର |
| | ୨୭୩ | ୪ | ୮ | ସଂପର୍କପୂର୍ଣ୍ଣ | ସଂପର୍କ କ୍ଷୁର୍ଣ୍ଣ |
| | | ୫ | ୪ | ଭୋକ ଧର୍ମୀୟ | ଲୋକ ଧର୍ମୀୟ |
| | | ୬ | ୨ | ସରସ୍ୱନୀ | ସରସ୍ୱତୀ |
| | | | | ମହିମା-ଅଲେକ, | ମହିମା-ଅଲେଖ |
| | ୨୭୪ | ୧ | ୨ | ବାଦଣା | ବାଦ୍ଣା |
| ପୂଜାପାର୍ବଣ | | | | ଷଷ୍ଠୀ ତୂଜା | ଷଷ୍ଠୀ ପୂଜା : |

Digitized by srujanika@gmail.com

| ବିଷୟ/ନାମ | ପୃଷ୍ଠା | ପରି-ଚ୍ଛେଦ | ଧାଡ଼ି | ଭୁଲ | ଠିକ୍ |
|---|---|---|---|---|---|
| | ୨୭୮ | ୧ | ୯ | ଏହାର ଚଳନ | ଏହାର ପ୍ରଚଳନ |
| | ୨୮୦ | . | ୧୩ | ମଧ୍ୟ "ଗୋରୁନାଚ" ପର୍ବ | ମଧ୍ୟ "ବାନ୍ଦଣା" (ଗୋରୁନାଚ) ପର୍ବ |
| ପିଠାପଣା, ଭୋଗରାଗ | ୨୮୩ | ୨ | ୩ | ଉଦାମଣ୍ଡା | ଭଙ୍ଗାମଣ୍ଡା |
| | | | ୪ | ଏରୁଣି | ଏଣ୍ଡୁରି |
| | ୨୮୫ | ୩ ଉଦ୍ଧୃତି | | 'ଛାନୁଆ' 'ସିଝୁଆ' | 'ସିଝୁଆ' 'ଛାନୁଆଁ' |
| | ୨୮୬ | ୨ | ୭ | ନିଯୁକ୍ତି କର୍ମଚାରୀ | ନିଯୁକ୍ତ କର୍ମଚାରୀ |
| | ୨୮୮ | ୪ର ଉଦ୍ଧୃତି | ୧ | ଦ୍ୟୁର୍ଭରେ | ଦ୍ୟୁରରେ |
| | | ୫ | ୧ | 'ପୁଅର ପୁଅନାତି, | 'ନାତି (ପୁଅର ପୁଅ) |
| | ୨୯୧ | ୪ | ୬-୨ | ଚିତ୍ର ସୁମା | ଚିତ୍ର ସୁଷମା |
| | ୨୯୨ | ୧ | ୨୭ | ଗୁଟି ଫୁଟିବା | ଫୁଟି ଫୁଟିକା |
| | ୨୯୭ | ୨ | ୭ | ମେଦିଙ୍କାପୁର | ମେଦିନୀପୁର |
| କୁରୁମବେଢ଼ା ଦୁର୍ଗର ଶିବ ମନ୍ଦିର | ୨୯୮ | ୬ | ୮ | ସହକଦ | ମହକଦ |
| | ୩୦୩ | ୧ | ୩ | ନିସ୍ତୁଳ ନୁହେଁ | ନିସ୍ତନ୍ଦ ନୁହେଁ |
| | | | ୧୨ | ଅଛିରାଶି | ଅସ୍ଥିପୂର୍ଣ୍ଣ ମୃତ୍ତିକା ରାଶି |
| | ୩୦୪ | ୫ | ୬ | ଅମର୍ଦ୍ଧାକ | ଅମର୍ଦ୍ଦକ |
| | ୩୦୫ | ୩ | ୧ | ଉତ୍କଳର ଅନ୍ୟତମ ଓଡ଼ିଶାର | ଉତ୍କଳର ଅନ୍ୟତମ |
| | | | ୬ | ନାମରେ ତିନି ଥିବାର | ନାମରେ ତିନିରାଣୀ ଥିବା |
| | ୩୦୭ | ୧ | ୫ | "ରାଣୀ ବଡଲୀ'ଙ୍କ ନାମରେ | ରାଣୀ 'ବଡଳ' ଙ୍କ ନାମରେ |
| | ୩୦୯ | ୩ | ୩ | ମୁସଲମାନଙ୍କ ଦ୍ୱାରା | ମୁସଲମାନମାନଙ୍କ ଦ୍ୱାରା |
| | ୩୧୦ | ୫ | ୧ | ଗଡ଼ିବେତା | ଗଡ଼ବେତା |
| | | | | ଅବସ୍ଥିତ ରହିଥିଲା | ଅବସ୍ଥିତି ରହିଥିବାର ଜଣାଯାଏ |
| | ୩୧୧ | ୫ | ୨ | ପାଞ୍ଚ/ଛଅ ସଂଖ୍ୟକ | ପାଞ୍ଚ/ଛଅ ଶହ ସଂଖ୍ୟ |
| | ୩୧୪ | | ୭ | ଯାଗକୁଣ୍ଡ | ଯାମକୁଣ୍ଡ |
| | ୩୧୭ | ୧ | ୧ | ପୈଷ ପୂର୍ଣ୍ଣିମାରେ | ପୌଷ ପୂର୍ଣ୍ଣିମାରେ |
| | | ୨ | ୧ | ଏଠାରେ ପ୍ରତ୍ନତତ୍ତ୍ୱ | ଏଠାର ପ୍ରତ୍ନତତ୍ତ୍ୱ |
| | | ୨ | ୭ | ଅବସିତ | ଅବସ୍ଥିତ |

Digitized by srujanika@gmail.com

